# ଶ୍ରୀଶ୍ରୀ ରାମକୃଷ୍ଣ ଲୀଳାମୃତ

## ପ୍ରଥମ ଭାଗ




ଶ୍ରୀ କୈଳାସଚନ୍ଦ୍ର ସେନ

# ଶ୍ରୀଶ୍ରୀ ରାମକୃଷ୍ଣ ଲୀଳାମୃତ

## ପ୍ରଥମ ଭାଗ




"तवकथामृतं तप्तजीवनम् कविभिरीड़ितं कल्मषापहं
श्रवणमङ्गलम् श्रीमदाततं भूवि गृणन्ति ये भूरिदा जनाः ।"

ଦ୍ୱିତୀୟ ସଂସ୍କରଣ

ପ୍ରକାଶକ— ସ୍ୱାମୀ ଅସଙ୍ଗାନନ୍ଦ

ଶ୍ରୀ ରାମକୃଷ୍ଣ ମଠ, ଭୁବନେଶ୍ୱର

ମୂଲ୍ୟ ଟ ୧୩·୫୦ ନ. ପ.

# ଉତ୍ସର୍ଗ ପତ୍ର

ଶ୍ରୀମନ୍ମହାରାଜ ସ୍ୱାମୀ **ବ୍ରହ୍ମାନନ୍ଦଜୀଙ୍କ**

ସ୍ମୃତିକଳ୍ପେ ଉତ୍ସର୍ଗୀକୃତ

ଯୁଗାବତାର ଭଗବାନ ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ ଦର୍ଶନଲାଭ ଲେଖକଙ୍କର ଭାଗ୍ୟରେ ଘଟି ନ ଥିଲା । କିନ୍ତୁ ସୌଭାଗ୍ୟ ବଶତଃ ହେଉ ଅଥବା ପରମପିତା ପରମେଶ୍ୱରଙ୍କର ଅପାର କରୁଣା ବଳରୁ ହେଉ, ଅଧମ ଲେଖକ ସେହି ମହାପୁରୁଷଙ୍କର ସହଧର୍ମିଣୀ ଜଗନ୍ମାତା ଶ୍ରୀ ଶ୍ରୀ ଶାରଦା ଦେବୀ ଓ ତାଙ୍କର ମାନସପୁତ୍ର ଶ୍ରୀମନ୍ମହାରାଜ ବ୍ରହ୍ମାନନ୍ଦଜୀଙ୍କର ଓ ଅନ୍ୟ କେତେଜଣ ଅନ୍ତରଙ୍ଗ ଭକ୍ତଙ୍କର ପବିତ୍ର ଦର୍ଶନ ଲାଭ କରି ଆପଣାକୁ ଧନ୍ୟ ମଣୁଅଛି । ପରମାରାଧ୍ୟ ଶ୍ରୀମନ୍ମହାରାଜ ସ୍ୱାମୀ ବ୍ରହ୍ମାନନ୍ଦଜୀଙ୍କର ଏହି ଶ୍ରୀକ୍ଷେତ୍ରରେ ଅବସ୍ଥିତି ସମୟରେ ଲେଖକ ତାଙ୍କର ପବିତ୍ର ସଂସ୍ପର୍ଶର ସୁଯୋଗ ଲାଭ କରିବା ସଙ୍ଗେ ସଙ୍ଗେ ତାଙ୍କର ବିଶ୍ୱଜନୀନ ପ୍ରେମ ଓ ଶ୍ରଦ୍ଧାଲାଭ କରି ଥିଲା । ତାହାର ସ୍ମାରକ ସ୍ୱରୂପ ଶ୍ରୀ ଶ୍ରୀ ରାମକୃଷ୍ଣ ଲୀଳାମୃତ ନାମକ ପୁସ୍ତକ ଖଣ୍ଡି ସେହି ମହାପୁରୁଷଙ୍କ ପୂତ ନାମରେ ଉତ୍ସର୍ଗୀକୃତ ହେଲା

। ଇତି ।

ପୁରୀ

ତା ୧ । ୯ । ୩୯

ବିନୀତ ଲେଖକ

**ଶ୍ରୀ କୈଳାସଚନ୍ଦ୍ର ସେନ**

# ଭୂମିକା

ଅବହମାନ କାଳରୁ ପୁଣ୍ୟଭୂମି ଭାରତ ବର୍ଷରେ ଯେଉଁ ଲୋକୋତ୍ତର ମହାପୁରୁଷମାନେ ଆବିର୍ଭୂତ ହୋଇ ସନାତନ ଧର୍ମର ପୁନଃ ପ୍ରତିଷ୍ଠା କରିଅଛନ୍ତି, ଭଗବାନ ଶ୍ରୀ ଶ୍ରୀ ରାମକୃଷ୍ଣ ଦେବ ସେମାନଙ୍କ ମଧ୍ୟରେ ଅନ୍ୟତମ । ସେ ଏହି ମର୍ତ୍ତ୍ୟ-ଜଗତରେ କେବଳ ମାତ୍ର ଅର୍ଦ୍ଧ ଶତାବ୍ଦୀ କାଳ ପର୍ଯ୍ୟନ୍ତ ରହି ସ୍ୱଳ୍ପ ସମୟ ମଧ୍ୟରେ ଧର୍ମରାଜ୍ୟର ଯେଉଁ ଗୂଢ଼ ରହସ୍ୟର ସନ୍ଧାନ ଦେଇ ଯାଇଅଛନ୍ତି, ତାହା ଚିନ୍ତା କଲେ ବିସ୍ମିତ ହେବାକୁ ହୁଏ । ବଙ୍ଗାବ୍ଦ ୧୨୪୨ ସାଲର ଫାଲଗୁନ ମାସର ୬ଷ୍ଠ ଦିବସରେ ବଙ୍ଗଦେଶର ହୁଗୁଳୀ ଜିଲ୍ଲା ଅନ୍ତର୍ଗତ କାମାରପୁକୁର ନାମକ ପଲ୍ଲୀ ଗ୍ରାମର ଗୋଟିଏ ଦରିଦ୍ର ବ୍ରାହ୍ମଣ ବଂଶରେ ତାହାଙ୍କର ଜନ୍ମ ହୋଇଥିଲା । ତାହାଙ୍କର ପିତା ଶ୍ରୀ କ୍ଷୁଦିରାମ ଚଟ୍ଟୋପାଧ୍ୟାୟ ଜଣେ ପରମ ଧାର୍ମିକ ଓ ତେଜସ୍ୱୀ ପୁରୁଷ ଥିଲେ ଏବଂ ମାତା ଶ୍ରୀମତୀ ଚନ୍ଦ୍ରମଣି ଦେବୀ ମଧ୍ୟ ଦୟା ଓ ସରଳତାର ମୂର୍ତ୍ତିସ୍ୱରୂପା ଥିଲେ । କ୍ଷୁଦିରାମ ୬ ଗୟାଧାମରେ ଦିନେ ସ୍ୱପ୍ନ ଦେଖିଲେ ଯେ ସ୍ୱୟଂ ଭଗବାନ ତାଙ୍କର ପୁତ୍ର ରୂପରେ ଜନ୍ମଗ୍ରହଣ କରିବେ । ଏହି ଘଟଣାର ବର୍ଷକ ପରେ ତାଙ୍କର ତୃତୀୟ ପୁତ୍ର ଜନ୍ମ ହେଲା । ସେ ତାହାର ନାମ ଗଦାଧର ରଖିଲେ । ବାଳକ ଗଦାଧର ଗ୍ରାମର ଆବାଳବୃଦ୍ଧବନିତାଙ୍କର ପ୍ରିୟପାତ୍ର ଥିଲେ; କିନ୍ତୁ ପ୍ରଥମରୁ ପଢ଼ାଶୁଣା କାର୍ଯ୍ୟରେ ତାଙ୍କର ବିଶେଷ ବିତୃଷ୍ଣା ଥିବାର ଦେଖାଗଲା । ଫଳରେ ସେହି ଗ୍ରାମର ପାଠଶାଳାରେହିଁ ତାଙ୍କର ଲେଖା ପଢ଼ାର କାର୍ଯ୍ୟ ସାଙ୍ଗ ହୋଇଥିଲା । ସେ ସୁଗାୟକ ଥିଲେ ଓ ତାଙ୍କର ଧୀଶକ୍ତି ଅତ୍ୟନ୍ତ ତୀକ୍ଷ୍ଣ ଥିଲା । ସଙ୍ଗ ମେଳରେ ଖେଳରେ ବ୍ୟାପୃତ ଥିଲେ ସୁଦ୍ଧା ଅତି ଶୈଶବ କାଳରୁ ତାଙ୍କଠାରେ ଧ୍ୟାନ-ତନ୍ମୟତାର ଲକ୍ଷଣ ପ୍ରକାଶ ପାଉଥିଲା । ସେତେବେଳେ ସେ ଏକାଧିକ ଥର ଈଶ୍ୱରୀୟ ଭାବରେ ତନ୍ମୟ ହୋଇ ସଂଜ୍ଞାଶୂନ୍ୟ ହୋଇ ପଡ଼ୁଥିଲେ ।

ପିତୃ ବିୟୋଗାନ୍ତେ ସାଂସାରିକ ଅଭାବର ତାଡ଼ନାରୁ ଜ୍ୟେଷ୍ଠଭ୍ରାତା ରାମକୁମାରଙ୍କ ସାହାଯ୍ୟାର୍ଥେ ବଙ୍ଗାବ୍ଦ ୧୨୫୯ ସାଲରେ ଗଦାଧରଙ୍କୁ କଲିକତା ଆସିବାକୁ ପଡ଼ିଲା । ଭ୍ରାତା ରାମକୁମାର ତାହାଙ୍କୁ ସେଠାରେ କିଛି ସଂସ୍କୃତ ଶିଖାଇବାର ପ୍ରୟାସ କରିବାରୁ ସେ କହିଥିଲେ "ମୁଁ ସେ ଚାଉଳ କଦଳୀ ବାନ୍ଧିବାର ବିଦ୍ୟା ଶିଖିବି ନାହିଁ ।" ଏହାର କିଛିଦିନ ପରେ କଲିକତାଠାରୁ ଚାରି ମାଇଲ ଉତ୍ତରରେ ଥିବା ଦକ୍ଷିଣେଶ୍ୱର ଗ୍ରାମରେ ରାଣୀ ରାସମଣି ସ୍ୱପ୍ନାଦେଶ ପାଇ ଗୋଟିଏ କାଳୀ ମନ୍ଦିର ସ୍ଥାପନ କଲେ । ପ୍ରଥମେ ଶ୍ରୀରାମକୁମାର ସେହି ମନ୍ଦିରରେ ପ୍ରଧାନ ପୁରୋହିତ ଏବଂ ବାଳକ ଗଦାଧର ତାଙ୍କର ସହକାରୀ ରୂପେ ନିଯୁକ୍ତ ହେଲେ । ତାହାର ଅଳ୍ପଦିନ ପରେ ଶ୍ରୀ ଶ୍ରୀ କାଳୀ ମାତାଙ୍କ ପୂଜାର ଭାର ଗଦାଧରଙ୍କ ଉପରେ ପଡ଼ିଲା । ଏହି ସମୟରେ ସେ ଯଥାରୀତି ତାନ୍ତ୍ରିକ ଦୀକ୍ଷା ଗ୍ରହଣ କରିଥିଲେ ।

ଅଳ୍ପଦିନ ପୂଜାକାର୍ଯ୍ୟରେ ବ୍ୟାପୃତ ହେବା ପରେ ଗଦାଧରଙ୍କ ମନ ଶ୍ରୀ ଶ୍ରୀ ଜଗନ୍ମାତାଙ୍କୁ ପ୍ରତ୍ୟକ୍ଷ କରିବା ସକାଶେ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଲା । ସେ ମାତାଙ୍କ ଚରଣରେ କାତର ପ୍ରାର୍ଥନା ଜଣାଇବାକୁ ଲାଗିଲେ । କି ଉପାୟରେ ତାଙ୍କୁ ଲାଭ କରି ପାରିବେ ସେହି ଗୋଟିଏ ମାତ୍ର ଚିନ୍ତା ଗଦାଧରଙ୍କ ଧ୍ୟାନଜ୍ଞାନ ହେଲା । ଦିନବେଳେ କୌଣସି ପ୍ରକାରେ ନିଜକୁ ସଂଯତ ରଖି ପ୍ରତିଦିନ ସନ୍ଧ୍ୟା ସମୟରେ ପ୍ରାଣର ଆବେଗ ଯୋଗୁଁ ସେ ଉଚ୍ଚସ୍ୱରେ କ୍ରନ୍ଦନ କରି

କହୁଥିଲେ "ମା ଦିନ ପରେ ଦିନ ଚାଲିଯାଉଛୁ, ମୁଁ ତୋତେ ନ ଦେଖି ଆଉ ରହି ପାରୁନାହିଁ । ତୁ ମୋତେ ଦେଖା ଦେ ।" ଅନୁରାଗର ପ୍ରାବଲ୍ୟରୁ ତାହାଙ୍କ ପକ୍ଷରେ ଦେବୀଙ୍କର ବାହ୍ୟପୂଜା କରିବା କ୍ରମେ ଅସମ୍ଭବ ହୋଇ ପଡ଼ିଲା । ଦିନେ ବିରହ ଯନ୍ତ୍ରଣା ସହ୍ୟ କରି ନ ପାରି ସେ ମା'ଙ୍କ ମନ୍ଦିରରେ ଥିବା ଖଡ଼୍ଗ ଯେନି ଆତ୍ମହତ୍ୟା କରିବାକୁ ଉଦ୍ୟତ ହେଉଛନ୍ତି, ସେତିକି-ବେଳେ ବରାଭୟକରା ଶ୍ରୀ ଶ୍ରୀ ଜଗଦମ୍ବା ତାହାଙ୍କୁ ଦର୍ଶନ ଦେଇ କୃତାର୍ଥ କଲେ ।

ସାଧାରଣ ସିଦ୍ଧପୁରୁଷଙ୍କର ଏହିପରି ଥରେ ମାତ୍ର ଦର୍ଶନଲାଭ ଘଟିଲେ ପରମ ଶାନ୍ତି ଲାଭ ହୁଏ । କିନ୍ତୁ ଶ୍ରୀ ରାମକୃଷ୍ଣ (ଏହି ସମୟରୁ ସେ ଏହି ନାମରେ ବିଖ୍ୟାତ ହେଲେ ) ସାଧାରଣ ସିଦ୍ଧପୁରୁଷ ନ ଥିଲେ । ସେ ଏହି ମରଜଗତର ଧର୍ମଦ୍ୱନ୍ଦ୍ୱ ଦୂର କରିବା ପାଇଁ ଆସିଥିଲେ । ସେଥିଯୋଗୁଁ ଜଗନ୍ମାତାଙ୍କର ସାକ୍ଷାତ ଲାଭ କରି ସୁଦ୍ଧା, ତାହାଙ୍କୁ ନାନାଭାବରେ ଉପଲବ୍ଧି କରିବାର ପ୍ରବଳ କାମନା ତାଙ୍କ ମନରେ ଉପସ୍ଥିତ ହେଲା । ଆଶ୍ଚର୍ଯ୍ୟର ବିଷୟ ଶ୍ରୀରାମକୃଷ୍ଣଙ୍କୁ ତାହାଙ୍କର ଉପଯୋଗୀ ବିଭିନ୍ନ ପ୍ରକାରର ସାଧନାମାନ ଶିକ୍ଷା ଦେବା ନିମିତ୍ତ ଗୋଟିକ ପରେ ଆଉ ଗୋଟିଏ ଏପରି ସୁଯୋଗ୍ୟ ଗୁରୁମାନେ କ୍ରମେ କ୍ରମେ ତାଙ୍କ ନିକଟକୁ ଆସିବାକୁ ଲାଗିଲେ । ପ୍ରଥମରେ ସେ ତନ୍ତ୍ରଶାସ୍ତ୍ରୋକ୍ତ ସାଧନାରେ ବ୍ରତୀ ହେଲେ ଏବଂ ଯୋଗେଶ୍ୱରୀ ନାମ୍ନୀ (ଶ୍ରୀରାମକୃଷ୍ଣ ତାହାଙ୍କୁ ଭୈରବୀ ବ୍ରାହ୍ମଣୀ ନାମରେ ଅଭିହିତ କରୁଥିଲେ) ଜଣେ୍କା ପରମ ବିଦୁଷୀ ସନ୍ନ୍ୟାସିନୀଙ୍କ ସାହାଯ୍ୟରେ ଅତି ଅଳ୍ପ ସମୟ ମଧ୍ୟରେ ସେ କଠିନ ତାନ୍ତ୍ରିକ ସାଧନାମାନଙ୍କରେ ଅନାୟାସରେ ଉତ୍ତୀର୍ଣ୍ଣ ହୋଇଥିଲେ । ତାହାଙ୍କ ତାନ୍ତ୍ରିକ ସାଧନାରେ ଗୋଟିଏ ବିଶେଷତ୍ୱ ଥିଲା ଯେ ସେ ଏହି ସାଧନାରେ ବିନ୍ଦୁମାତ୍ର କାରଣ (ମଦ୍ୟ) ଗ୍ରହଣ କରି ନାହାନ୍ତି । ତାହା ଦେଖିବାମାତ୍ରେ ତାଙ୍କର ମନ କାରଣ ରୂପିଣୀ ଜଗନ୍ମାତାଙ୍କ ଭାବରେ ଲୀନ ହୋଇ ଯାଉଥିଲା ଏବଂ ନାରୀଜାତି ପ୍ରତି ତାଙ୍କର ଯେ ସ୍ୱାଭାବିକ ମାତୃଭାବ ଥିଲା ସାଧନ ସମୟରେ ମଧ୍ୟ ଥରେ ମାତ୍ର ତାହାର ବ୍ୟତିକ୍ରମ ଘଟୁ ନଥିଲା ।

ତନ୍ତ୍ରମତରେ ସିଦ୍ଧିଲାଭ କରିବା ପରେ ସେ ବୈଷ୍ଣବଶାସ୍ତ୍ରୋକ୍ତ ଦାସ୍ୟାଦି ଭାବ-ମାନଙ୍କର ସାଧନାରେ ଆତ୍ମ ନିୟୋଗ କଲେ । ଏଥିରେ ମଧ୍ୟ ଭୈରବୀ ବ୍ରାହ୍ମଣୀ ତାହାଙ୍କୁ ସାହାଯ୍ୟ କରିଥିଲେ । ଦାସ୍ୟଭାବର ସାଧନା ସମୟରେ ସେ ନିଜକୁ ମହାବୀର ହନୁମାନଙ୍କ ସହିତ ଅଭେଦ ଜ୍ଞାନ କରୁଥିଲେ ଏବଂ ଗାଢ଼ ଅନୁରାଗ ଫଳରେ ସୀତା ଓ ରାମଚନ୍ଦ୍ରଙ୍କ ଦର୍ଶନ ଲାଭ କରିଥିଲେ । ବାତ୍ସଲ୍ୟ ଭାବର ସାଧନ ସମୟରେ ସେ ଜଟାଧାରୀ ନାମକ ଜଣେ ରାମାୟତ୍ ସାଧୁଙ୍କର ଧାତୁ ନିର୍ମିତ କ୍ଷୁଦ୍ର ରାମଲାଲା ବିଗ୍ରହଟିକୁ ସାକ୍ଷାତ ବାଳକ ରାମଚନ୍ଦ୍ର ରୂପେ ପ୍ରତ୍ୟକ୍ଷ କରି ତାଙ୍କପ୍ରତି ଠିକ୍ ମାତା କୌଶଲ୍ୟାଙ୍କ ପରି ଅପୂର୍ବ ବ୍ୟବହାର କରୁଥିଲେ । ଜଟାଧାରୀ ତାହା ଦେଖି ବିସ୍ମୟରେ ଅଭିଭୂତ ହୋଇ ବିଗ୍ରହଟିକୁ ତାହାଙ୍କୁ ଦେଇଗଲେ । ମଧୁର ଭାବ ସାଧନ ସମୟରେ ସେ ନିଜକୁ ନାରୀ ବୋଲି ମନେ କରୁଥିଲେ ଓ ସ୍ତ୍ରୀ ବେଶରେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ରହୁଥିଲେ ଏବଂ ରାଧା ଭାବରେ ଭାବିତ ହୋଇ ଶ୍ରୀକୃଷ୍ଣଙ୍କ ସାକ୍ଷାତକାର ଲାଭ କରିଥିଲେ ।

ଏହା ପରେ ସେ ଜଗନ୍ମାତାଙ୍କ ଆଦେଶ ଗ୍ରହଣ କରି ତୋତାପୁରୀ ନାମକ ଜଣେ ସାଧୁଙ୍କ ସାହାଯ୍ୟରେ ଅଦ୍ୱୈତ ବେଦାନ୍ତ ସାଧନ କରିଥିଲେ । ତୋତାପୁରୀ ୪୦ ବର୍ଷ କଠୋର ସାଧନା କରି ଏହି ମାର୍ଗର ଚରମ ଅବସ୍ଥା 'ନିର୍ବିକଳ୍ପ ସମାଧି' ଲାଭ କରିଥିଲେ । କିନ୍ତୁ ଶ୍ରୀରାମକୃଷ୍ଣଙ୍କର ଏପରି ଏକାଗ୍ରତା ଓ କଠୋର ବୈରାଗ୍ୟ ଥିଲା ଯେ, ସେ ତିନିଦିନ ମଧ୍ୟରେ

ଏହି ଭାବାବସ୍ଥା ଲାଭ କରିଥିଲେ । ତୋତାପୁରୀ ଏହା ଦେଖି ସ୍ତମ୍ଭିତ ହୋଇ ଯାଇଥିଲେ । ଯେଉଁ ନିର୍ବିକଳ୍ପ ଅବସ୍ଥାରେ ମନୁଷ୍ୟ କୌଣସି ପ୍ରକାରେ ଥରେ ମାତ୍ର ପହଞ୍ଚି ପାରିଲେ ନିଜକୁ କୃତାର୍ଥ ମନେକରେ, ଶ୍ରୀରାମକୃଷ୍ଣ ସେହି ଅଦ୍ୱୈତ ଭୂମିରେ ଦୀର୍ଘ ଛ'ମାସକାଳ ଅବସ୍ଥାନ କରିଥିଲେ । ସେ ସମୟରେ ତାଙ୍କର ବାହ୍ୟଜ୍ଞାନ ନ ଥାଏ । ଜଣେ ଆଗନ୍ତୁକ ସାଧୁ ତାଙ୍କର ଭାବାବସ୍ଥା ବୁଝିପାରି ଏବଂ ତାଙ୍କର ଶରୀର ରହିଲେ ସେଥିରେ ଲୋକମାନଙ୍କର ପରମ କଲ୍ୟାଣ ସାଧିତ ହେବ ଭାବି ତାହାଙ୍କୁ ପ୍ରତ୍ୟେକ ଦିନ ବେଲବାଡ଼ିରେ ଆଘାତ କରି ତାଙ୍କର କଥଞ୍ଚିତ ବାହ୍ୟଜ୍ଞାନ ଅଣାଉଥିଲେ ଏବଂ ସେହି ସମୟରେ ଦୁଇ ଗୁଣ୍ଡା ବା ଗୁଣ୍ଡାଏ ଅନ୍ନ ମୁହଁରେ ଗୁଞ୍ଜି ଦେଉଥିଲେ । ଏଥିରେ ତାଙ୍କର ଶରୀର ରକ୍ଷା ହୋଇଥିଲା । ଜଗତର ସାଧନେତିହାସରେ ଏପରି ଦୃଷ୍ଟାନ୍ତ ଅନ୍ୟ କୁହାପି ଦୃଷ୍ଟ ହୁଏ ନାହିଁ । ହିନ୍ଦୁଧର୍ମର ସମସ୍ତ ମତର ସାଧନାରେ ସିଦ୍ଧିଲାଭ କରି ଶ୍ରୀରାମକୃଷ୍ଣ ସୁଫି ଗୋବିନ୍ଦରାୟଙ୍କ ସାହାଯ୍ୟରେ ଇସ୍‌ଲାମ ଧର୍ମର ସାଧନା କରି-ଥିଲେ । ସେ ସମୟରେ ସେ କାଳୀମନ୍ଦିରର ଚତୁଃସୀମା ନିକଟକୁ ଆସୁ ନ ଥିଲେ । ଠିକ୍ ମୁସଲମାନଙ୍କ ପରି ଆଲ୍ଲାଙ୍କ ଭାବରେ ମଗ୍ନ ହୋଇ ରହୁଥିଲେ ଏବଂ ଅତ୍ୟଳ୍ପ ସମୟ ଭିତରେ ତାହାଙ୍କୁ ଉପଲବ୍ଧି କରିଥିଲେ । ଏହାର କିଛି ସମୟ ପରେ ଦିନେ ହଠାତ୍ ଯୀଶୁଖ୍ରୀଷ୍ଟଙ୍କର ଦର୍ଶନ ଲାଭ କରିଥିଲେ ଏବଂ ତାଙ୍କ ଭାବରେ ବିଭୋର ହୋଇ କେତେକ ଦିନ ଅବସ୍ଥାନ କରିଥିଲେ । ସେ ସମୟରେ ହିନ୍ଦୁ ଦେବଦେବୀଙ୍କ ପ୍ରତି ଭକ୍ତିଭାବ ତାଙ୍କ ମନରୁ ଏକାବେଳେ ଅନ୍ତର୍ହିତ ହୋଇଥିଲା ।

ଶ୍ରୀରାମକୃଷ୍ଣଙ୍କ ଉପରେ ଦେଇ ଯେତେବେଳେ ସାଧନା ଝଡ଼ର ପ୍ରବାହ ବହୁଥିଲା ସେହି ସମୟରେ ତାଙ୍କର କାମାରପୁକୁର ଗ୍ରାମର ଅନତିଦୂରବର୍ତ୍ତୀ ଜୟରାମବାଟୀ ନାମକ ଗ୍ରାମର ୬ ବର୍ଷ ବୟସ୍କା ଶ୍ରୀମତୀ ସାରଦାମଣି ଦେବୀଙ୍କ ସହିତ ତାଙ୍କର ବିବାହ ହେଲା । ସେତେବେଳେ ଶ୍ରୀରାମକୃଷ୍ଣଙ୍କ ବୟସ ୨୪ ବର୍ଷ ମାତ୍ର । ତାଙ୍କର ମାତା ଓ ଅନ୍ୟାନ୍ୟ ଆତ୍ମୀୟ-ମାନେ ମନେ କରିଥିଲେ ଯେ, ବିବାହ ହେଲେ ତାଙ୍କର ବୈରାଗ୍ୟର ଉପଶମ ହେବ । ଏତେବେଳେ ମଧ୍ୟ ତାଙ୍କର ଆତ୍ମୀୟମାନେ ଶ୍ରୀରାମକୃଷ୍ଣଙ୍କ ସକାଶେ ପାତ୍ରୀର ଅନୁସନ୍ଧାନ କରି ଯେତେବେଳେ ବିଫଳମନୋରଥ ହୋଇଥିଲେ, ସେତେବେଳେ ଶ୍ରୀରାମକୃଷ୍ଣ ନିଜେ ଦୈବ-କଳ୍ପିତ ନିର୍ଦ୍ଦିଷ୍ଟ ପାତ୍ରୀର ସନ୍ଧାନ କହି ଦେଇଥିଲେ । କିନ୍ତୁ ଶ୍ରୀରାମକୃଷ୍ଣଙ୍କୁ ସଂସାରୀ କରିବାର ବାସନା ସେମାନଙ୍କର ସଫଳ ହେଲା ନାହିଁ । ପବିତ୍ରତା-ରୂପିଣୀ ଶ୍ରୀମତୀ ସାରଦାମଣି ପରେ ତାଙ୍କର ପ୍ରଧାନ ଶିଷ୍ୟା ଓ ସେବିକା ହୋଇ ଯଥାର୍ଥ ସହଧର୍ମିଣୀ ପଦବାଚ୍ୟା ହୋଇଥିଲେ । ଶ୍ରୀରାମକୃଷ୍ଣଙ୍କ ଶେଷ ସାଧନା ଷୋଡ଼ଶୀ ପୂଜା । ୧୨୮୦ ସାଲରେ ଦକ୍ଷିଣେଶ୍ୱରଠାରେ ସେ ନିଜେ ପତ୍ନୀଙ୍କୁ ସାକ୍ଷାତ୍ ଜଗନ୍ମାତା ଜ୍ଞାନରେ ଯଥାବିଧି ପୂଜା କରି ତାଙ୍କ ଚରଣରେ ନିଜର ଜପମାଳା ସମର୍ପଣ କରିଥିଲେ । ତାଙ୍କର ବାହ୍ୟ ପୂଜା ଏହିଠାରେ ଶେଷ ହୋଇଥିଲା ।

ଏହି ସମସ୍ତ ସାଧନାରେ ଶ୍ରୀରାମକୃଷ୍ଣଙ୍କର ଦ୍ୱାଦଶ ବର୍ଷ ବିତିଗଲା । ଏହି ଦୀର୍ଘକାଳ ମଧ୍ୟରେ ସେ ଜଗନ୍ମାତାଙ୍କୁ ନାନାଭାବରେ ସାକ୍ଷାତ୍ କରି ତାଙ୍କ ସହିତ ଅପୂର୍ବ ଲୀଳା କରି-ଥିଲେ । ଦ୍ୱୈତ, ଅଦ୍ୱୈତ ରାଜ୍ୟର କେତେ ଅନୁଭୂତି ଯେ ତାଙ୍କର ହୋଇଥିଲା ତାହା କଳନା କରି ହେବ ନାହିଁ । ଏହି ସମସ୍ତ ଅନୁଭୂତି ଫଳରେ ସେ ପରେ ଯେ କୌଣସି ଆଧ୍ୟାତ୍ମିକ ପ୍ରଶ୍ନମାନଙ୍କର ସ୍ପଷ୍ଟ ଉତ୍ତର ଦେଇ ପାରୁଥିଲେ । ସେଥିରେ ପ୍ରଶ୍ନକର୍ତ୍ତାଙ୍କର ସମସ୍ତ ସନ୍ଦେହ ଦୂର ହୋଇ ଯାଉଥିଲା । ଅନେକ ଥର ବହୁ ଉଚ୍ଚ ଶ୍ରେଣୀର ପଣ୍ଡିତ ସାଧକମାନେ ତାହାଙ୍କୁ ବିଶେଷ

ଭାବରେ ପରୀକ୍ଷା କରି ତାଙ୍କର ସେହି ସମସ୍ତ ଉପଲବ୍ଧି ଯେ ଯଥାର୍ଥ ଏବଂ ଶାସ୍ତ୍ରସମ୍ମତ ତାହା ପ୍ରତ୍ୟକ୍ଷ ଭାବରେ ଘୋଷଣା କରିଥିଲେ । କାହାରିକୁ ଦେଖିବା ମାତ୍ରକେ ତାଙ୍କର ବାହାର, ଭିତର, ଭୂତ, ଭବିଷ୍ୟତ ସମସ୍ତ କଥା ବୁଝି ପାରିବାର ଯେ ଅଦ୍ଭୁତ ଶକ୍ତି ତାଙ୍କର ଥିଲା, ତାର ମୂଳରେ ଏହି ଅନୁଭୂତ । ଏହି ସମୟର ଶେଷ ଭାଗରେ ସେ ଜଗନ୍ମାତାଙ୍କର ଅଶରୀରୀ ବାଣୀ ଶୁଣି ପାରିଥିଲେ—"ତୁ ଭାବ ମୁଖରେ ରହ ।" କ୍ରମେ ତାଙ୍କର ମନ ଦ୍ୱୈତଭୂମିକୁ ଖସି ଆସିଲା । ତଥାପି ଭଗବତ୍ ପ୍ରସଙ୍ଗ ପଡ଼ିଲେ ବା ଈଶ୍ୱରୀୟ ସଙ୍ଗୀତ ଶ୍ରବଣ କଲେ ତାଙ୍କର ମନ ହଠାତ୍ ଈଶ୍ୱରଙ୍କର ସେହି ସେହି ଭାବରେ ବିଲୀନ ହୋଇ ଯାଉଥିଲା । ଦେହ ସେତେବେଳେ ନିଶ୍ଚଳ ଓ ନିଷ୍ପନ୍ଦ ହୋଇ ରହୁଥିଲା ।

ଫୁଲ ଫୁଟିଲେ ଭ୍ରମର ଦଳେ ଆସେ । ଶ୍ରୀରାମକୃଷ୍ଣ ନିଜକୁ ଗୋପନ ରଖିବା ନିମନ୍ତେ ଚେଷ୍ଟା କରିଥିଲେ ସୁଦ୍ଧା ତାଙ୍କର ମାହାତ୍ମ୍ୟ କ୍ରମେ ଚାରିଆଡ଼େ ପ୍ରକାଶିତ ହୋଇ ପଡ଼ିଲା । କୌଣସି ବିଶିଷ୍ଟ ଭକ୍ତଙ୍କ କଥା ଶ୍ରବଣ କଲେ ସେ ନିଜେ ଯାଇ ତାଙ୍କ ସହିତ ସାକ୍ଷାତ୍ କରୁଥିଲେ । ଭାରତବର୍ଷର ବ୍ରାହ୍ମସମାଜର ବାଗ୍ମୀ ପ୍ରବର ଶ୍ରୀଯୁକ୍ତ କେଶବ ଚନ୍ଦ୍ର ସେନ ୧୮୭୫ ସାଲରେ ତାଙ୍କର ଦର୍ଶନଲାଭ କରି ତାଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇଥିଲେ ଏବଂ ତାଙ୍କର ନିଜ ସମ୍ବାଦପତ୍ର "ସୁଲଭ ସମାଚାର"ରେ ଶ୍ରୀରାମକୃଷ୍ଣଙ୍କର ଅପୂର୍ବ ଜୀବନ ଓ ଉପଦେଶର ଆଲୋଚନା କରିବାକୁ ଲାଗିଲେ । ଏହାର ଫଳରେ କଲିକତା ଓ ତାହା ନିକଟବର୍ତ୍ତୀ ସ୍ଥାନସମୂହରୁ ଦଲ ଦଲ ହୋଇ ଭକ୍ତ ଓ ଦର୍ଶକମାନେ ଶ୍ରୀରାମକୃଷ୍ଣଙ୍କ ନିକଟକୁ ଆସିବାକୁ ଲାଗିଲେ ଏବଂ ପ୍ରତ୍ୟେକେ ତାହାଙ୍କୁ ନିଜ ନିଜ ମତର ଶ୍ରେଷ୍ଠ ମହାପୁରୁଷ ଜ୍ଞାନରେ ଭକ୍ତି କରିବାକୁ ଲାଗିଲେ । ସାଧନାର ଶେଷ ଭାଗରେ ମା ଜଗଦମ୍ବା ତାଙ୍କୁ ଯେଉଁ ତ୍ୟାଗୀ ଅନ୍ତରଙ୍ଗ ଭକ୍ତମାନଙ୍କର ଆଗମନ ବାର୍ତ୍ତା ଜଣାଇ ଦେଇଥିଲେ, ନରେନ୍ଦ୍ର ନାଥ (ସ୍ୱାମୀ ବିବେକାନନ୍ଦ) ପ୍ରମୁଖ ସେହି ସବୁ ଶୁଦ୍ଧସତ୍ତ୍ୱ ଈଶ୍ୱରାନୁରାଗୀ ବାଳକ ଭକ୍ତବୃନ୍ଦ କ୍ରମେ ତାଙ୍କ ନିକଟରେ ଉପସ୍ଥିତ ହେଲେ । ଶ୍ରୀରାମକୃଷ୍ଣ ସେମାନଙ୍କୁ ତାଙ୍କର ମହାସମନ୍ୱୟର ବାଣୀ ଜଗତରେ ପ୍ରଚାର କରିବାର ଉପଯୁକ୍ତ ଯନ୍ତ୍ର ସ୍ୱରୂପ ଭାବି ସେମାନଙ୍କୁ ପ୍ରସ୍ତୁତ କରିବାକୁ ଲାଗିଲେ । ଦେଖୁଁ ଦେଖୁଁ ଦକ୍ଷିଣେଶ୍ୱର ସମସ୍ତ ସମ୍ପ୍ରଦାୟର ଓ ସମସ୍ତ ଶ୍ରେଣୀର ଧର୍ମ୍ମ-ପିପାସୁମାନଙ୍କର ମହାତୀର୍ଥସ୍ଥାନରେ ପରିଣତ ହେଲା । ଧନୀ ନିର୍ଦ୍ଧନ, ଉଚ୍ଚ ନୀଚ, ସ୍ତ୍ରୀ ପୁରୁଷ ସମସ୍ତେ ସେଠାକୁ ଯାଇ ଧର୍ମ୍ମ ସମ୍ବନ୍ଧରେ ନିଜ ନିଜ ସଂଶୟର ମୀମାଂସା କରିବାକୁ ଲାଗିଲେ । ଶ୍ରୀରାମକୃଷ୍ଣଙ୍କର ମୁହୁର୍ମୁହୁଃ ସମାଧି ଓ ସରଳ ଭାଷାରେ ସାଧାରଣ ଦୃଷ୍ଟାନ୍ତ ସାହାଯ୍ୟରେ ଜଟିଳ ତତ୍ତ୍ୱମାନଙ୍କର ସମାଧାନ ଦେଖି ଧର୍ମ୍ମ ଯେ କେବଳ କଥାରେ ନାହିଁ ଓ ତାହା ଯେ ଅନ୍ତରର ଉପଲବ୍ଧିର ବିଷୟ ତାହା ସେମାନେ ହୃଦୟଙ୍ଗମ କରିଥିଲେ । ଗୋଟିଏ ଦିଗରେ ତାଙ୍କର ଯେପରି ଅନ୍ତର୍ଯାମିତ୍ୱ ଅନ୍ୟ ଦିଗରେ ସେହିପରି ତାଙ୍କର ଅପାର୍ଥିବ ସ୍ନେହ ସମସ୍ତଙ୍କୁ ମୁଗ୍ଧ କରି ପକାଇଥିଲା । ଦକ୍ଷିଣେଶ୍ୱରକୁ ଆସିଲେ ସେମାନଙ୍କର ସାଂସାରିକ ଶୋକତାପ ଯେପରି କୁଆଡ଼େ ଚାଲି ଯାଉଥିଲା ।

ଶ୍ରୀରାମକୃଷ୍ଣଙ୍କର ଜୀବନର ଶେଷ ଅଙ୍କ ଅତ୍ୟନ୍ତ କରୁଣ ଓ ମର୍ମସ୍ପର୍ଶୀ । କେତେବର୍ଷ ପର୍ଯ୍ୟନ୍ତ ଅବିଶ୍ରାନ୍ତ ଈଶ୍ୱରୀୟ ପ୍ରସଙ୍ଗ ଫଳରେ ୧୮୮୫ ମସିହାର ଗ୍ରୀଷ୍ମକାଳରେ ତାଙ୍କର ଗଳନାଳରେ ବ୍ୟଥା ହେଲା । କ୍ରମେ ତାହା କ୍ଷତରେ ପରିଣତ ହେଲା ଏବଂ ତାହା ଦୁଃସାଧ୍ୟ ରୋହିଣୀ ରୋଗ (cancer) ବୋଲି ବିବେଚିତ ହେଲା । ଯନ୍ତ୍ରଣା ଯୋଗୁଁ ତରଳ ପଥ୍ୟ ମଧ୍ୟ

ଢୋକିବା ତାଙ୍କ ପକ୍ଷରେ କଷ୍ଟସାଧ୍ୟ ହୋଇଥିଲା । ତଥାପି ଭଗବତ୍ କଥାର ଓ ଉନ୍ନତ ଭାବାବସ୍ଥାର ବିରାମ ହେଲା ନାହିଁ । ସମସ୍ତଙ୍କୁ ବିଶେଷତଃ ତାଙ୍କ ବାଳ ଭକ୍ତମାନଙ୍କୁ ଅନୁଚ୍ଚ ସ୍ୱରରେ କେତେବେଳେ ବା ଇଙ୍ଗିତରେ ମନୁଷ୍ୟ ଜୀବନର ସାର ବସ୍ତୁ ଈଶ୍ୱରଙ୍କୁ ଅନ୍ତରେ ପ୍ରତ୍ୟକ୍ଷ କରିପାରିବା ବିଷୟରେ ଉପଦେଶ ଦେବାକୁ ଲାଗିଲେ । ଚିକିତ୍ସା ସକାଶେ ତାହାଙ୍କୁ ପ୍ରଥମରେ କଲିକତାର ଶ୍ୟାମପୁକୁର ଏବଂ ପରେ କାଶୀପୁରର ଗୋଟିଏ ଉଦ୍ୟାନ ଗୃହରେ ରଖାଗଲା । ଡାକ୍ତର ମହେନ୍ଦ୍ରଲାଲ ସରକାର ପ୍ରମୁଖ ଚିକିତ୍ସକମାନେ ତାଙ୍କର ଚିକିତ୍ସା ଭାର ଗ୍ରହଣ କଲେ ; କିନ୍ତୁ କାହିଁରେ କିଛି ହେଲା ନାହିଁ । ସେ ନିଜେ ବେଶ ବୁଝିପାରିଥିଲେ ଯେ ତାଙ୍କର ଶରୀର ଆଉ ରହିପାରିବ ନାହିଁ, ଏବଂ ତାହା ସେ ଭକ୍ତମାନଙ୍କୁ ଜଣାଇ ଦେଇଥିଲେ । ୧୮୮୬ ସାଲର ଅଗଷ୍ଟ ମାସରେ ରୋଗର ବିଶେଷ ବୃଦ୍ଧି ହେଲା । ସେ ପାଞ୍ଜି ଅଣାଇ ଶ୍ରାବଣମାସର କେତେଟା ଦିନର ବିବରଣ ପଢ଼ି ଶୁଣାଇବାକୁ କହିଲେ । ୩୧ ତାରିଖ ପରେ ଆଉ ପଢ଼ିବା ନିମନ୍ତେ ନିଷେଧ କଲେ । ସେହିଦିନ (ଅଗଷ୍ଟ ୧୬ ତାରିଖ) ରାତି ଘ ୧ । ୨ ମିନିଟ ସମୟରେ କାଳୀ ନାମ ଉଚ୍ଚାରଣ କରି ଗଭୀର ସମାଧିରେ ସେ ମଗ୍ନ ହେଲେ । ତାହା ଶେଷରେ ମହାସମାଧିରେ ପରିଣତ ହେଲା । ପରଦିନ କାଶୀପୁରର ଶ୍ମଶାନଠାରେ ତାଙ୍କର ପୁଣ୍ୟ ଦେହର ସତ୍କାର କରାଗଲା ।

ନରେନ୍ଦ୍ରନାଥ ପ୍ରମୁଖ କେତେଜଣଙ୍କୁ ଶ୍ରୀ ରାମକୃଷ୍ଣ ସନ୍ନ୍ୟାସ ଧର୍ମରେ ଦୀକ୍ଷିତ କରିଥିଲେ, ଏବଂ ସମସ୍ତଙ୍କୁ ଏକତ୍ର ରଖିବାର ଭାର ନରେନ୍ଦ୍ରନାଥଙ୍କୁ ଦେଇଥିଲେ । ସେମାନେ ତାଙ୍କର ପୂତ ଦେହାବଶେଷ ସଯତ୍ନରେ ରକ୍ଷା କରି କଲିକତା ଓ ଦକ୍ଷିଣେଶ୍ୱର ମଧ୍ୟବର୍ତ୍ତୀ ବରାହନଗରଠାରେ ଗୋଟିଏ ଜୀର୍ଣ୍ଣ ଗୃହରେ ନିତ୍ୟ ପୂଜାର ବ୍ୟବସ୍ଥା କରିଥିଲେ ଓ କ୍ରମେ କ୍ରମେ ସମସ୍ତେ ସେଠାରେ ଏକତ୍ରିତ ହେଲେ । ଏହାହିଁ ଶ୍ରୀ ରାମକୃଷ୍ଣଙ୍କ ସମ୍ପ୍ରଦାୟର ପ୍ରଥମ ମଠ । ସେହି ମଠ ପରେ ୧୮୯୧ ମସିହାରେ ବେଲୁଡ଼କୁ ସ୍ଥାନାନ୍ତରିତ ହୋଇଥିଲା । ଶ୍ରୀ ରାମକୃଷ୍ଣଙ୍କର ଅଦର୍ଶନର ୭ ବର୍ଷ ପରେ ୧୮୯୩ ଖ୍ରୀଃ ଅଃ ରେ ନରେନ୍ଦ୍ରନାଥ ସ୍ୱାମୀ ବିବେକାନନ୍ଦ ନାମ ଧାରଣ କରି ତାଙ୍କ ଗୁରୁଦେବଙ୍କ ମହତ ବାଣୀ ସୁଦୂର ଆମେରିକାର ସିକାଗୋ ଧର୍ମ ମହାସଭାରେ ପାଶ୍ଚାତ୍ୟ ସୁଧୀ ସମାଜ ସମ୍ମୁଖରେ ପ୍ରଚାର କରିଥିଲେ । ସୁଶିକ୍ଷିତ ଆମେରିକାବାସୀ ସେହି ବାଣୀର ସାର୍ବଭୌମିକତାରେ ମୁଗ୍ଧ ହୋଇ ତାଙ୍କୁ ସାଦରେ ଆଚାର୍ଯ୍ୟ ପଦରେ ବରଣ କରିନେଲେ । ସ୍ୱାମୀ ବିବେକାନନ୍ଦଙ୍କ ପ୍ରଚାରିତ ସେହି ବେଦାନ୍ତ ଧର୍ମର ପ୍ରଭାବ ଅଦ୍ୟାବଧି ସେଠାରେ ଅକ୍ଷୁଣ୍ଣ ରହିଛି । ବେଲୁଡ଼ ମଠର ନବ ନିର୍ମିତ ଶ୍ରୀ ରାମକୃଷ୍ଣଙ୍କ ମନ୍ଦିର ଆମେରିକାବାସୀଙ୍କର ଭାରତୀୟ ସଂସ୍କୃତି ଓ ଭାବଧାରା ପ୍ରତି ଶ୍ରଦ୍ଧାର ଗୋଟିଏ ପ୍ରଧାନ ଅର୍ଘ୍ୟ ।

ଶ୍ରୀ ରାମକୃଷ୍ଣ ଆଜୀବନ ଶିଶୁପରି ପବିତ୍ର, ସରଳ ଓ ନିରଭିମାନୀ ଥିଲେ । କାମିନୀ-କାଞ୍ଚନ ତ୍ୟାଗର ସେ ମୂର୍ତ୍ତି ବିଗ୍ରହ ଥିଲେ । ମା ଛଡ଼ା ସେ ଆଉ କିଛି ଜାଣୁ ନ ଥିଲେ । ସେଥିଯୋଗୁଁ ତାଙ୍କର ହୃଦୟମନ୍ଦିରରେ ଜଗନ୍ମାତା ନିଜ ଆସନ ରଚନା କରିଥିଲେ । ତାର ଫଳ ସ୍ୱରୂପ ଭାରତରେ ଓ ଭାରତେତର ନାନା ଦେଶରେ ତାଙ୍କର ନାମ ଆଗ୍ରହ ସହକାରେ ପୂଜିତ ହେଉଅଛି । ଲକ୍ଷ ଲକ୍ଷ ନରନାରୀ ତାଙ୍କର ଉପଦେଶାମୃତ ପାନକରି ତୃପ୍ତ ହେଉଅଛନ୍ତି ଏବଂ ତାଙ୍କର ଅପୂର୍ବ ଜୀବନ ଅନୁଧ୍ୟାନ କରି ଇହ ଜଗତରେ ଅମରତ୍ୱର ସନ୍ଧାନ ପାଉଅଛନ୍ତି । ତାଙ୍କ ଶିକ୍ଷାର ମୂଳସୂତ୍ର—ଈଶ୍ୱର ହିଁ ମୁଖ୍ୟ, ଅପର ଯାହା କିଛି ସମସ୍ତ

ଗୌଣ ଓ ଅସାର । ପ୍ରଥମେ ତାଙ୍କୁ ଲାଭକର, ପରେ ଆଉ ଯାହା କିଛି ଲାଭ କର । ସେ ସବୁଠାରେ ବିରାଜମାନ । କେଉଁଠାରେ ତାଙ୍କର ଅଧିକ ପ୍ରକାଶ, କେଉଁଠାରେ ବା ଊଣା—ଏତିକ ମାତ୍ର ପ୍ରଭେଦ । ପ୍ରତ୍ୟେକ ଧର୍ମ୍ମ ଈଶ୍ୱରଲାଭର ଗୋଟିଏ ଗୋଟିଏ ମାର୍ଗ । ଯେତେ ମତ, ତେତେ ପଥ; ଈଶ୍ୱର ସଗୁଣ ଓ ନିର୍ଗୁଣ, ସାକାର ଓ ନିରାକାର । ଯେପରି ବରଫ ଓ ପାଣି ଅଥବା ଯେପରି ବହୁରୂପୀ—କେତେବେଳେ ନାଲି କେତେବେଳେ ବା ନେଳି, ହଳଦିଆ ଆଉ କେତେବେଳେ ବା ବର୍ଣ୍ଣହୀନ । ଧର୍ମ୍ମ ସମ୍ବନ୍ଧରେ ବିବାଦ ବିସମ୍ବାଦ ମାନବର ଅଜ୍ଞତା ପ୍ରସୂତ । ତାଙ୍କୁ ଆନ୍ତରିକ ଭାବରେ ଡାକିଲେ ସେ ନିଶ୍ଚୟ ଦେଖାଦେବେ, କିନ୍ତୁ ମନ ଓ ମୁଖ ଏକ ହେବା ଆବଶ୍ୟକ । କାମିନୀ କାଞ୍ଚନରେ ଆସକ୍ତ ଓ ଅଭିମାନ ମନୁଷ୍ୟର ମହାଶତ୍ରୁ । ଏମାନଙ୍କ ପାଖରୁ ସାବଧାନରେ ରହିବା କର୍ତ୍ତବ୍ୟ ।

ଶ୍ରୀରାମକୃଷ୍ଣଙ୍କର ସମନ୍ୱୟ ବାଦ ଜୀବନର ସବ କ୍ଷେତ୍ରରେ ପ୍ରଯୋଜ୍ୟ । ଜାତି ବର୍ଣ୍ଣ, ଦେଶ ଭାଷା, ଆଚାର ବ୍ୟବହାର, ମତ ମତାନ୍ତର, ସାମାଜିକ ମର୍ଯ୍ୟାଦା ଇତ୍ୟାଦି ଯେଉଁ ସଂସାରରେ ଯେତେ ପ୍ରକାର ଭେଦ ରହିଅଛି ସେ ସବୁକୁ ଏହି ସମନ୍ୱୟର ସ୍ୱର୍ଣ୍ଣ ସୂତ୍ରରେ ଗୁନ୍ଥା ଯାଇପାରେ ଏବଂ ଏହାହିଁ ପ୍ରକୃତ ମୁକ୍ତିର ପଥ । ଅଜ୍ଞାନବଶରେ ନିଜକୁ ଶ୍ରେଷ୍ଠ ମନେ ନ କରି, ପରସ୍ପରର ଉଚ୍ଛେଦ ସାଧନରେ ଶକ୍ତି ବୃଥା କ୍ଷୟ ନ କରି, ପବିତ୍ରତା, ଧୈର୍ଯ୍ୟ ଓ ଅଧ୍ୟବସାୟ ସହକାରେ ଏକତ୍ରରେ ନିଜ ନିଜ ମାର୍ଗ ଅବଲମ୍ବନ କରି ଗନ୍ତବ୍ୟ ସ୍ଥାନକୁ ଅଗ୍ରସର ହେବା ମନୁଷ୍ୟୋଚିତ କାର୍ଯ୍ୟ । କାରଣ ବ୍ୟଷ୍ଟିର କଲ୍ୟାଣ ହିଁ ସମଷ୍ଟିର କଲ୍ୟାଣ ।

ଭଗବାନ ଶ୍ରୀ ରାମକୃଷ୍ଣଦେବଙ୍କର ଜୀବନୀ ଓ ବାଣୀ ଜଗତର ବିଭିନ୍ନ ଦେଶରେ ବିଭିନ୍ନ ଭାଷାରେ ପ୍ରଚାରିତ ଓ ଆଲୋଚିତ ହେଉଅଛି । ବର୍ତ୍ତମାନ ଏହି ପୁସ୍ତକ ଉତ୍କଳବାସୀମାନଙ୍କ ସକାଶେ ଲେଖା ହୋଇଅଛି । ଗ୍ରନ୍ଥକାର ଶ୍ରୀଯୁକ୍ତ କୈଳାସଚନ୍ଦ୍ର ସେନ ମହାଶୟ ବିଗତ ତିନିବର୍ଷ ଧରି ଅକ୍ଳାନ୍ତ ପରିଶ୍ରମ କରି ଓ ପ୍ରାମାଣିକ ଗ୍ରନ୍ଥ ସମୂହ ଆଲୋଚନା କରି ଏହାକୁ ରଚନା କରି ଅଛନ୍ତି । ସାର୍ଦ୍ଧ ଚାରିଶତ ବର୍ଷ ପୂର୍ବେ ଭଗବାନ ଶ୍ରୀ ଚୈତନ୍ୟ ଦେବଙ୍କର ଉଚ୍ଛ୍ୱସିତ ପ୍ରେମ ଓ ଭକ୍ତି ପ୍ରବାହରେ ଉତ୍କଳ ଦେଶ ପ୍ଲାବିତ ହୋଇଥିଲା । ତାଙ୍କର ନବକ୍ଷୁର ପ୍ରକାଶ ଶ୍ରୀ ରାମକୃଷ୍ଣ ଦେବଙ୍କର ଜ୍ଞାନ, ଭକ୍ତି, ଯୋଗ ଓ କର୍ମସମନ୍ୱିତ ଅଲୌକିକ ଜୀବନ କଥା ଉତ୍କଳର ପ୍ରତି ଗୃହରେ ବିରାଜମାନ କରୁ ଏବଂ ଉତ୍କଳବାସୀଙ୍କ ଐହିକ ପାରତ୍ରିକ କଲ୍ୟାଣ ବିଧାନ କରୁ ।

ସ୍ୱାମୀ ମାଧବାନନ୍ଦ



# ପ୍ରଥମ ସଂସ୍କରଣ

## ପ୍ରକାଶକର ନିବେଦନ

ଅଦ୍ୟ ଏହି ଶୁଭ ଜନ୍ମାଷ୍ଟମୀ ଦିବସରେ ଶ୍ରୀ ଶ୍ରୀ ରାମକୃଷ୍ଣ-ଲୀଳାମୃତ ପ୍ରକାଶିତ ହେଲା । ଭଗବାନ ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କର ଅଲୌକିକ ଜୀବନର ସଂକ୍ଷିପ୍ତ ଘଟଣାବଳୀ ଓ ତାଙ୍କର ଅଦ୍ଭୁତ ତପସ୍ୟାର କଥା ଏବଂ ତତ୍ ସହ ଅମୃତମୟ ଉପଦେଶମାନ ପ୍ରାମାଣିକ ଗ୍ରନ୍ଥ ସମୂହରୁ ସଂଗ୍ରହ କରାଯାଇ ଏହି ପୁସ୍ତକରେ ସନ୍ନିବେଶିତ ହୋଇଅଛି ।

ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କର ଦିବ୍ୟଲୀଳା ଏବଂ ତାଙ୍କର ଅଶ୍ରୁତପୂର୍ବ ଧର୍ମସମନ୍ୱୟର ଉଦାର ବାଣୀ ବର୍ତ୍ତମାନ ଜଗତକୁ ଚମତ୍କୃତ କରି ଯୁଗାନ୍ତର ଆନୟନ କରିଅଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ସର୍ବଶ୍ରେଷ୍ଠ ମନୀଷିଗଣ ଉଚ୍ଚୈଃସ୍ୱରରେ ଘୋଷଣା କରୁଅଛନ୍ତି ଯେ ତାଙ୍କର ଦ୍ୱାଦଶ ବର୍ଷବ୍ୟାପୀ କଠୋର ସାଧନା, ଅପୂର୍ବ ତ୍ୟାଗ ଏବଂ ସମାଧିପୂତ ଆଧ୍ୟାତ୍ମିକ ଜୀବନ ଓ ଶ୍ରୀମୁଖ-ନିଃସୃତ ଅମୃତମୟୀ ବାଣୀ ବର୍ତ୍ତମାନ ଯୁଗର ଇହକାଳସର୍ବସ୍ୱ ଘୋର ଜଡ଼ବାଦର ଅବଶ୍ୟମ୍ଭାବୀ ଫଳସ୍ୱରୂପ ହିଂସା, ଦ୍ୱେଷ, ମିଥ୍ୟା, ପ୍ରବଞ୍ଚନା, ଅନାଚାର, ଅତ୍ୟାଚାର, ଦମ୍ଭ, କୋଳାହଳର ପାଶବିକ ବୃତ୍ତିନିଚୟର ଧ୍ୱଂସଲୀଳାରୁ ସମଗ୍ର ମାନବ ଜାତିକୁ ଯେ ନିଶ୍ଚୟ ରକ୍ଷା କରିବ ଏଥିରେ କୌଣସି ସନ୍ଦେହ ନାହିଁ । ସେଥିପାଇଁ ଏହି ଲୋକୋତ୍ତର ମହାପୁରୁଷଙ୍କର ଜୀବନୀ ଓ ବାଣୀ "ବହୁଜନ ସୁଖାୟ" "ବହୁଜନ ହିତାୟ" ଜଗତର ବିଭିନ୍ନ ପ୍ରଦେଶ ଓ ଭାଷାରେ ପ୍ରକାଶିତ ହୋଇ ସର୍ବସାଧାରଣରେ ପ୍ରଚାରିତ ହୋଇଅଛି ଓ ହେଉଅଛି । ଉତ୍କଳ ଭାଷାରେ ଏହି ମହାପୁରୁଷଙ୍କ ଜୀବନୀ ଓ ବାଣୀ ଅନୂଦିତ ହୋଇ ସର୍ବସାଧାରଣରେ ପ୍ରଚାରିତ ହେଉ—ବହୁ ଦିନରୁ ଏପରି ସଂକଳ୍ପ ମନ ମଧ୍ୟରେ ପୋଷଣ କରି ଆସୁଥିଲୁ, କିନ୍ତୁ ଏହି ଭାଷା ସମ୍ବନ୍ଧରେ ଅନଭିଜ୍ଞତା ହେତୁ ଏତେକାଳ ତାହା କାର୍ଯ୍ୟରେ ପରିଣତ କରିପାରି ନ ଥିଲୁ । ଶ୍ରୀ ଶ୍ରୀ ପ୍ରଭୁଙ୍କ କୃପାରେ ଆଜି ଆମ୍ଭମାନଙ୍କର ସେହି ସଂକଳ୍ପ ପୂର୍ଣ୍ଣ ହୋଇଅଛି । ୰ ପୁରୁଷୋତ୍ତମ କ୍ଷେତ୍ରବାସୀ ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ସେନ ମହାଶୟ ଅବିଶ୍ରାନ୍ତ ରାଜକୀୟ କର୍ମ ଜୀବନରେ ଆବଦ୍ଧ ରହି ତିନି ବର୍ଷ ଯାବତ୍ ଅକ୍ଳାନ୍ତ ପରିଶ୍ରମ କରି ତାଙ୍କର ସରଳ ଓ ବୋଧଗମ୍ୟ ଭାଷାରେ ଏହି ଗ୍ରନ୍ଥକୁ ଯେଉଁ ନବ-ସୌଷ୍ଠବସମ୍ପନ୍ନ କରିଅଛନ୍ତି, ତାହା ଭାଷାରେ ବ୍ୟକ୍ତ କରିବା ଆମ୍ଭମାନଙ୍କ ପକ୍ଷରେ ସମ୍ଭବପର ନୁହେଁ । ଅଧିକନ୍ତୁ ଏହି ଗ୍ରନ୍ଥର ମୁଦ୍ରଣ କାର୍ଯ୍ୟରେ ଶ୍ରୀଯୁକ୍ତ ଅକ୍ଷୟକୁମାର ଚକ୍ରବର୍ତ୍ତୀ ମହାଶୟଙ୍କର ଆନ୍ତରିକ ସାହାଯ୍ୟ ନ ପାଇଥିଲେ ଏତେ ଅଳ୍ପ ସମୟ ମଧ୍ୟରେ ଏଡ଼େ ବଡ଼ ଗ୍ରନ୍ଥ ପ୍ରକାଶ କରିବା ଆମ୍ଭମାନଙ୍କ ପକ୍ଷରେ ସହଜ-ସାଧ୍ୟ ହୋଇ ନ ଥାନ୍ତା । ସେ ମହାଶୟ ଗତ କେତେକ ମାସ ଯାବତ୍ ବହୁ ଶ୍ରମ ସ୍ୱୀକାର କରି ଏହି ଗ୍ରନ୍ଥର ଯାବତୀୟ ପ୍ରୁଫ୍ ସଂଶୋଧନ ଏବଂ ସମ୍ପାଦକୀୟ କାର୍ଯ୍ୟ ସୁସମ୍ପନ୍ନ କରିଅଛନ୍ତି । ପୁନଶ୍ଚ କଟକ ଟ୍ରେଡ଼ିଂ କୋମ୍ପାନୀର ମ୍ୟାନେଜର ପଣ୍ଡିତ ଆନ୍ତୁଳ ମିଶ୍ର କାବ୍ୟତୀର୍ଥ ମହାଶୟ ଏହାର ମୁଦ୍ରଣ କାର୍ଯ୍ୟରେ ନାନା ଭାବରେ ସାହାଯ୍ୟ କରିଅଛନ୍ତି । ଏହି ଭଦ୍ର-ମହୋଦୟଙ୍କର ଏ ଦିଗରେ ତ୍ୟାଗ ଓ ନିଷ୍କାମ କର୍ମ ଅତୀବ ପ୍ରଶଂସନୀୟ ଅଟେ । ଏହିପରି କାର୍ଯ୍ୟର ଫଳସ୍ୱରୂପ ଶ୍ରୀ ଶ୍ରୀ ପ୍ରଭୁ ତାଙ୍କର କରୁଣାବାରି ସିଞ୍ଚନ ଦ୍ୱାରା ଏମାନଙ୍କୁ ଆନନ୍ଦରେ ରଖନ୍ତୁ—ଏହା ଏକାନ୍ତ ପ୍ରାର୍ଥନା ।

ଏହି ଗ୍ରନ୍ଥ ସର୍ବସାଧାରଣଙ୍କ ସୁବିଧା ସକାଶେ ଚତୁର୍ଦ୍ଦଶ-ଅକ୍ଷର କବିତା ଛନ୍ଦରେ ଏବଂ ସୁଲଳିତ ଭାଷାରେ ରଚିତ ହୋଇଅଛି । ତାହାର ସୁବୃହତ୍ ଆକାର ଦୃଷ୍ଟିରେ ସମସ୍ତଙ୍କର ସୁବିଧା ପାଇଁ ମୂଲ୍ୟ ଯଥାସମ୍ଭବ ସ୍ୱଳ୍ପ କରାଯାଇଅଛି । ବର୍ତ୍ତମାନ ଗ୍ରନ୍ଥ ଧାର୍ମିକ ପାଠକ ପାଠିକାମାନଙ୍କଦ୍ୱାରା ସମାଦୃତ ହେଲେ ଏବଂ ଏହା ପାଠ କରି ଯାହାର ଯାହାର ଆଧ୍ୟାତ୍ମିକ ଜୀବନରେ କିଞ୍ଚିତ ଉପକାର ସାଧିତ ହେଲେ ଆମ୍ଭମାନଙ୍କର ଶ୍ରମ ସଫଳ ହୋଇଅଛି ବୋଲି ମନେ କରିବୁଁ ।..........

ଜନ୍ମାଷ୍ଟମୀ ଦିବସ<br>ସନ ୧୩୪୭ ସାଲ } ନିର୍ବାଣାନନ୍ଦ



# ଦ୍ୱିତୀୟ ସଂସ୍କରଣ

## ପ୍ରକାଶକର ନିବେଦନ

ପ୍ରାୟ ଊନବିଂଶ ବର୍ଷ ପୂର୍ବେ "ଶ୍ରୀ ଶ୍ରୀ ରାମକୃଷ୍ଣ ଲୀଳାମୃତ"ର ପ୍ରଥମ ସଂସ୍କରଣ ପ୍ରକାଶିତ ହୋଇଥିଲା । ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ଅନ୍ତରଙ୍ଗ ପାର୍ଷଦ ଓ ଭକ୍ତଗଣଙ୍କ ଲିଖିତ ପ୍ରାମାଣିକ ଗ୍ରନ୍ଥ ସମୂହରୁ ଏହି ପୁସ୍ତକର ସମୁଦାୟ ତଥ୍ୟ ସଂଗୃହୀତ ହୋଇଅଛି । ଏହାର ଚାହିଦା ଖୁବ ଥିଲେ ମଧ୍ୟ ଦ୍ୱିତୀୟ ମହାଯୁଦ୍ଧର ପରଠାରୁ ନାନା ବିପର୍ଯ୍ୟୟ ହେତୁ ଦେଶର ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଏତେଦିନ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବା ସମ୍ଭବପର ହୋଇ ପାରି ନ ଥିଲା । ବର୍ତ୍ତମାନ ପରିସ୍ଥିତି ଖୁବ ଅନୁକୂଳ ନ ହେଲେ ମଧ୍ୟ ଶ୍ରୀ ଶ୍ରୀ ଭଗବାନଙ୍କ ଅସୀମ କରୁଣାବଶତଃ ବହି ଖଣ୍ଡିକର ଦ୍ୱିତୀୟ ସଂସ୍କରଣ ମୁଦ୍ରିତ ହେଲା ।

ପ୍ରଥମ ସଂସ୍କରଣରେ ଯେଉଁ ସବୁ ଭୁଲ ତ୍ରୁଟି ଓ ମୁଦ୍ରଣ ଦୋଷ ଥିଲା ଗ୍ରନ୍ଥକାର ମାନନୀୟ ଶ୍ରୀଯୁକ୍ତ କୈଳାସ ଚନ୍ଦ୍ର ସେନଗୁପ୍ତ ମହାଶୟ ଏହି ବୃଦ୍ଧ ବୟସରେ ମଧ୍ୟ ଖୁବ୍ କଷ୍ଟ ଓ ତ୍ୟାଗ ସ୍ୱୀକାର କରି ଆଦ୍ୟୋପାନ୍ତ ଏହାର ଯଥାସମ୍ଭବ ସଂଶୋଧନ ଓ ସ୍ଥାନେ ସ୍ଥାନେ ବିଷୟ-ବସ୍ତୁର କିଛିକ ପରିବର୍ତ୍ତନ ଓ ପରିବର୍ଦ୍ଧନ କରି ଗ୍ରନ୍ଥ ଖଣ୍ଡିକୁ ସର୍ବାଙ୍ଗସୁନ୍ଦର କରିବା ପାଇଁ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । କହିବା ବାହୁଲ୍ୟ, ଏହି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ସୁଷ୍ଠୁଭାବରେ ସମ୍ପାଦନ କରିଥିବାରୁ ଆମ୍ଭେମାନେ ତାଙ୍କ ନିକଟରେ ଚିରକୃତଜ୍ଞ ରହିଲୁ ।

ପୁରୀ ସଂସ୍କୃତ କଲେଜର ପ୍ରଖ୍ୟାତ ପଣ୍ଡିତ ଶ୍ରୀ ବୀର ହନୁମାନ ଶାସ୍ତ୍ରୀ, ଏମ୍.ଏ., ସାହିତ୍ୟାଚାର୍ଯ୍ୟ, ଜ୍ୟୋତିଷାଚାର୍ଯ୍ୟ ମହାଶୟ ଏହି କାର୍ଯ୍ୟ ସମ୍ପାଦନରେ ଯଥେଷ୍ଟ ସାହାଯ୍ୟ କରି ଆମମାନଙ୍କର କୃତଜ୍ଞତାଭାଜନ ହୋଇଛନ୍ତି ।

କଟକର ରାୟସାହେବ ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ, ଏମ୍.ଏ, ବି.ଟି., ମହାଶୟ ଅତି ଯତ୍ନ ସହକାରେ ଏହି ପୁସ୍ତକର ପ୍ରୁଫ୍ ସଂଶୋଧନ କରି ଆମ୍ଭମାନଙ୍କୁ ଯଥେଷ୍ଟ ସହାୟତା କରିଛନ୍ତି । ଏଥି ନିମିତ୍ତ ତାଙ୍କୁ ମଧ୍ୟ ଆମର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ ।

ବର୍ତ୍ତମାନ ମୁଦ୍ରଣ ଖର୍ଚ୍ଚ ଏବଂ କାଗଜର ମୂଲ୍ୟ ଅତ୍ୟଧିକ ବୃଦ୍ଧି ପାଇଛି । ଅନ୍ୟାନ୍ୟ କେତେକ ଅସୁବିଧା ଦୃଷ୍ଟିରୁ ମୂଳଗ୍ରନ୍ଥଟିକୁ ଏଥର ଦୁଇଭାଗ କରି ଦୁଇ ଖଣ୍ଡରେ ପ୍ରକାଶ କରାଗଲା । ଏହିସବୁ କାରଣରୁ ଦ୍ୱିତୀୟ ସଂସ୍କରଣର ମୂଲ୍ୟ ବୃଦ୍ଧି କରିବାକୁ ବାଧ୍ୟ ହେଲୁ ।

ଶ୍ରୀ ରାମକୃଷ୍ଣ ମଠ
ଭୁବନେଶ୍ୱର
ତା ୧୫।୯।୧୯୫୯

ପ୍ରକାଶକ
**ସ୍ୱାମୀ ଅସଙ୍ଗାନନ୍ଦ**

# ସୂଚୀପତ୍ର

## ତୃତୀୟ ଖଣ୍ଡ—ଗୁରୁଭାବେ ଦିବ୍ୟଲୀଳା







ଶ୍ରୀଶ୍ରୀରାମକୃଷ୍ଣ ଦେବ

# ବନ୍ଦନା

ମୂକଂ କରୋତି ବାଚାଳଂ
ପଙ୍ଗୁଂ ଲଙ୍ଘୟତେ ଗିରିଂ
ଯତ୍କୃପା ତମହଂ ବନ୍ଦେ
ପରମାନନ୍ଦ ମାଧବମ୍ ।

ଜୟ ଜୟ ଜନାର୍ଦ୍ଦନ ମୁକୁନ୍ଦ ମୁରାରି
ଜୟ ଜୟ ଶଙ୍ଖଚକ୍ରଗଦାପଦ୍ମଧାରୀ ।
ମତ୍ସ୍ୟରୂପେ କଲ ପ୍ରଭୋ ! ବେଦକୁ ଉଦ୍ଧାର
କୂର୍ମ ଦେହେ ବହିଲ ଯେ ପୃଥିବୀର ଭାର ।
ଧରିଲ ବରାହ ରୂପେ ଦଶନେ ଧରଣୀ
ଦଳିଲ ନୃସିଂହ ରୂପେ ଦାନବ ଯେ ପୁଣି ।
ବାମନ ରୂପେ ଚାପିଲ ବଳିକୁ ପାତାଳେ
ପରଶୁ ଧରି ନାଶିଲ କ୍ଷତ୍ରିୟ ସକଳେ ।
ନମୋ ନମୋ ଧନୁର୍ଦ୍ଧାରି ଦର୍ପହାରି ରାମ !
ନମୋ ଅନନ୍ତ ଶକତି ହଳୀ ବଳରାମ !
ନମୋ ନବଘନଶ୍ୟାମ ଗୋପୀ-ବିମୋହନ !
କଲ୍କିରୂପୀ ନମୋ ନମୋ ମ୍ଳେଚ୍ଛ ବିନାଶନ ।
ନମୋ ନମୋ ଈଶା ମୂଷା ବୁଦ୍ଧ ମହମ୍ମଦ !
ନମୋ ନମୋ ଶ୍ରୀଚୈତନ୍ୟ ପ୍ରଭୁ-ନିତ୍ୟାନନ୍ଦ ।

ନମୋ ନମୋ ଶ୍ରୀଶଙ୍କର ପ୍ରଭୁ ଶୂଳପାଣି !
ନମୋ ସାରଦେ ବରଦେ ଜଗତ-ତାରିଣି !
ନମୋ ନୀଳାଦ୍ରିବିହାରି ପ୍ରଭୁ ଜଗନ୍ନାଥ !
ହୃଦାସନେ ବସି ମୋର ଦେଖାଅ ସତ୍ପଥ ।
ନମୋ ନମୋ ଗଜାନନ ପ୍ରଭୁ ଗଣପତି !
ଦୟାବନ୍ତ ଲେଖନୀରେ ଦିଅନ୍ତୁ ଶକତି ।
ନମୋ ଦେବୀ ସରସ୍ୱତୀ କମଳ-ବାସିନି !
କୃପା କରି କହନ୍ତୁ ଯେ ଲୀଳାର କାହାଣୀ ।
ସେ ଲୀଳା ଗାଇରି ଭକ୍ତଭାବେ ନିରନ୍ତର
ଯାପିବି ଯେସନ ମୁହିଁ ଏ ଜୀବନ ମୋର ।
ଧନ ମାନ ଜନେ ମୋର ନ ଜନମୁ ଆଶ
ଗୋବିନ୍ଦ ପଦାରବିନ୍ଦେ ଥାଏ ଚିର ଦାସ ।
ସଂସାରର ମାୟାମୋହେ ନ ଭୁଲଇଁ ଆଉ
ଜୀବନେ ମରଣେ ତବ ପାଦେ ମତି ଥାଉ ।

ଶ୍ରୀପଦେ ଏତିକି ମାତ୍ର ମାଗୁଣି ମୋହର
କାତରେ କରୁଣା କର ପ୍ରଭୁ ଚକ୍ରଧର !

---

## ଶ୍ରୀ ଶ୍ରୀ ରାମକୃଷ୍ଣାଷ୍ଟକ ସ୍ତୋତ୍ରଂ

## ଶ୍ରୀମଦଭେଦାନନ୍ଦ ସ୍ୱାମିନା ବିରଚିତଂ

ଶ୍ରୀମଦ୍ ରାମକୃଷ୍ଣ-ପଦାବ୍ଜ-ସୁଧାପାନୋନ୍ମତ୍ତା
ରସିକା ଭାବୁକାଃ-ପିବନ୍ତୁ ସର୍ବକଲ୍ୟାଣକରଂ
ତନ୍ନାମାମୃତଂ ମୁଦା ।

ବିଶ୍ୱସ୍ୟ ଧାତଃ ପୁରୁଷସ୍ତ୍ୱମାଦ୍ୟୋ —
ହ୍ୟବ୍ୟକ୍ତେନ ରୂପେଣ ତତଂ ତ୍ୱୟେଦମ୍ ।
ହେ ରାମକୃଷ୍ଣ ! ତ୍ୱୟି ଭକ୍ତିହୀନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୧ ।

ତ୍ୱଂ ପାସି ବିଶ୍ୱଂ ସୃଜସି ତ୍ୱମେବ
ତ୍ୱମାଦିଦେବୋ ବିନିହଂସି ସର୍ବମ୍ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିହୀନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୨ ।

ମାୟାଂ ସମାଶ୍ରିତ୍ୟ କରୋଷି ଲୀଳାମ୍
ଭକ୍ତାନ୍ ସମୁଦ୍ଧର୍ତ୍ତୁମନନ୍ତମୂର୍ତ୍ତିଃ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିଭାଜନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୩ ।

ବିଧୃତ୍ୟ ରୂପଂ ନରବତ୍ତ୍ୱୟା ବୈ
ବିଜ୍ଞାପିତୋ ଧର୍ମ୍ମ ଇହାତିଗୂହ୍ୟଃ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିଭାଜନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୪ ।

ତପୋଽଥ ତେ ତ୍ୟାଗମଦୃଷ୍ଟପୂର୍ବଂ
ଦୃଷ୍ଟ୍ୱା ନମସ୍ୟନ୍ତି କଥଂ ନ ବିଜ୍ଞାଃ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିଭାଜନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୫ ।

ଶ୍ରୁତ୍ୱାପି ତେ ନାମ ଭବନ୍ତି ଭକ୍ତାଃ
ଦୃଷ୍ଟ୍ୱା ବପୁଂ ତ୍ୱାଂ ନ ତୁ ଭକ୍ତିଯୁକ୍ତାଃ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିଭାଜନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୬ ।

ସତ୍ୟଂ ବିଭୁଂ ଶାନ୍ତମନାଦିରୂପଂ
ପ୍ରସାଦୟେ ତ୍ୱାମଜମନ୍ତଶୂନ୍ୟମ୍ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିଭାଜନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୭ ।

ଜାନାମି ତତ୍ତ୍ୱଂ ନ ହି ଦୈଶିକେନ୍ଦ୍ର
କଥ୍ୟେ ସ୍ୱରୂପଂ କିମୁ ଭାବଜାତମ୍ ।
ହେ ରାମକୃଷ୍ଣ ତ୍ୱୟି ଭକ୍ତିଭାଜନେ
କୃପାକଟାକ୍ଷଂ କୁରୁ ଦେବ ନିତ୍ୟମ୍ ॥ ୮ ।

---

## ଶ୍ରୀ ଶ୍ରୀ ରାମକୃଷ୍ଣ ବନ୍ଦନା

ଜୟ ଜୟ ରାମକୃଷ୍ଣ ବ୍ରହ୍ମ ସନାତନ
ଅବ୍ୟକ୍ତ ଅଜ୍ଞେୟ ପ୍ରଭୁ ଅନାଦି କାରଣ
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ପତି
କରଣ କାରଣ କର୍ତ୍ତା ସୃଷ୍ଟି ଲୟ ସ୍ଥିତି ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ବିଶ୍ୱଧାତା ବିଶ୍ୱପିତା ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ଦେବ କୃପାସିନ୍ଧୁ
ଅଧମତାରଣ ପ୍ରଭୁ ଦୀନଜନବନ୍ଧୁ ।
ଜୟ ଜୟ ରାମକୃଷ୍ଣ ଅଗତିର ଗତି
ଅନାଥ ଜନର ନାଥ ପ୍ରଭୁ ଜଗପତି ।
ଜୟ ଜୟ ଆର୍ତ୍ତତ୍ରାଣ ପ୍ରଭୁ ଦୟାମୟ
ପ୍ରଭୁ ଶ୍ରୀ ସଚ୍ଚିଦାନନ୍ଦ ଗୋଲୋକବିହାରୀ ।
ଭୁବନମୋହନ ହରି ଭକ୍ତମନୋହାରୀ
ଜଗଜ୍ଜନତ୍ରାତା ପ୍ରଭୁ ଭବଭାର-ହରି ।
ଜୟ ବିଘ୍ନ ବିନାଶନ ପ୍ରଭୁ ଭଗବାନ
ଭବ-ଭୟ ବିମୋଚନ ଶାନ୍ତି-ନିକେତନ ।
ଜୟ ଜୟ ସନାତନ ପୂର୍ଣ୍ଣବ୍ରହ୍ମ ହରି
ବ୍ରହ୍ମାଣ୍ଡଠାକୁର ରାମକୃଷ୍ଣ ରୂପଧାରୀ ।
ନିରାକାର ସାକାରାଦି ରୂପ ଅଗଣିତ
ମନ ବୁଦ୍ଧି ଅଗୋଚର ବେଦର ଅତୀତ ।
ତୁମ୍ଭେ ଶିବ, ତୁମ୍ଭେ ବ୍ରହ୍ମା, ତୁମ୍ଭେ ନାରାୟଣ
ତୁମ୍ଭେ ରାମ, ତୁମ୍ଭେ କୃଷ୍ଣ, ମୁରଲୀମୋହନ ।
ତୁମ୍ଭର ଅନନ୍ତ ଶକ୍ତି ଲୋକବୋଧାତୀତ
କୃପା କରି ଜଣାଇଲେ ତେବେ ଲୋକେ ଜ୍ଞାତ ।
ଜୟ ଜୟ ରାମକୃଷ୍ଣ ଜଗତପାବନ
ଜଗତନିୟନ୍ତା ପ୍ରଭୁ ଜଗଜ୍ଜନ ପ୍ରାଣ ।
ଜୟ ପ୍ରେମ ଭକ୍ତିଦାତା ଅଜ୍ଞାନନାଶନ
ଜୟ ଜୟ ରାମକୃଷ୍ଣ ତ୍ରିତାପ-ଖଣ୍ଡନ ।
ଜୟ ପ୍ରଭୁ ଶୁଦ୍ଧଭକ୍ତି ଶୁଦ୍ଧଜ୍ଞାନ ଦାତା
ସେବାନନ୍ଦ-ପ୍ରସ୍ରବଣ ବିଶ୍ୱର ବିଧାତା !
ଆର୍ତ୍ତଜନ ତ୍ରାତା ପ୍ରଭୁ କରୁଣା-ନିଧାନ
ଅଭୟଚରଣେ ଦିଅ ଅଧମକୁ ସ୍ଥାନ ।
ଦୀନପ୍ରତି ତବ ଦୟା ବିଶେଷ ପ୍ରକାଶ
ଜଗତେ ଦୟାଳୁ କିଏ ତୁମ୍ଭର ସଦୃଶ ।
ସ୍ୱାର୍ଥଶୂନ୍ୟ ଜନେ ସଦା କୃପା ବିତରଣ
ତୁମ୍ଭର ତୁଳନା ପ୍ରଭୁ ତୁମ୍ଭେ ନାରାୟଣ ।
ଶୁଣ ରେ ଅବୋଧ ମନ ! କରଇ ମିନତି
ଜପ ରାମକୃଷ୍ଣ ନାମ ତୁହି ଦିନରାତି ।
ଭଜ ମନ ! ସଦା ତାଙ୍କ ଅଭୟଚରଣ
ତରିଯିବୁ ଭବସିନ୍ଧୁ ଛେଦି ଏ ବନ୍ଧନ ।

# ଶ୍ରୀ ଶ୍ରୀ ରାମକୃଷ୍ଣ ବନ୍ଦନା

ରାମକୃଷ୍ଣ ସୁଧା ନାମ ଜପ ନିରନ୍ତର
ଆପଣେ ଉଦ୍ଧାର ମୋତେ କର ରୁ ଉଦ୍ଧାର ।
ଭଜ ପୂଜ ଚିନ୍ତ ସଦା ରାମକୃଷ୍ଣ ନାମ
ଏକମାତ୍ର ଅଟନ୍ତି ସେ ତୋର ପ୍ରାଣାରାମ ।
ରଟ ମୁଖେ ରାମକୃଷ୍ଣ ତେଜ କପଟତା
ବ୍ରତ କର ଜୀବ ହିତ ପୂଜି ବିଶ୍ୱଧାତା ।
ତ୍ୟାଗ କର ମୂଢ଼ମନା କାମିନୀ କାଞ୍ଚନ
ଅକାର୍ଯ୍ୟେ ନ କର ରୁ ଆଶ କଦାଚନ ।
ପାଦପଦ୍ମେ ସୁରକ୍ଷିତ ଅମୃତ ଭଣ୍ଡାର
ପାନ କରି ବାସ୍ନାମନ ! ହୁଅ ରୁ ଅମର ।
ବୃଥାରେ ଭ୍ରମୁଛୁ କପିଁ । ସଂସାର କାନନେ
ରୁଦ୍ଧ ହୋଇ ମରିବୁ ସେ ବିଷୟ ପ୍ରସୂନେ ।
ଏତେ ସରି ହେଲୁ ଶିକ୍ଷା ନୋହିଲା ତୋହର
ଅସାର କୁସୁମ ଗନ୍ଧ ଚିହ୍ନେ କଲୁ ସାର ।
ବିଷପୂର୍ଣ୍ଣି ପୁଷ୍ପରାଗେ ବୋଲାଲୁ ତୋ ଦେହ
ଶ୍ୱାସରୁଦ୍ଧ ହୋଇ ସୁଦ୍ଧା ନ ଭାଙ୍ଗିଲା ମୋହ ।
ରାମକୃଷ୍ଣ ନାମ ଥରେ କର ଉଚ୍ଚାରଣ
ଶମନର ଭୟ ଦୂରେ କରୁ ପଳାୟନ ।
ପତିତପାବନ ନାମ ଯାଇଛନ୍ତି ରଖି
ବାସନା ସଫଳ ହେବ ଥରେ ଦେଖ ଡାକି ।
ଅମୃତରୁ ବଳି ନାମ ଅଟେ ସୁମଧୁର
ନାମ ରସ ପାନେ ସର୍ବ ଶୋକ ହୁଏ ଦୂର ।
ଏ ମର୍ତ୍ତ୍ୟରେ ନାହିଁ ସେହି ନାମର ଉପମା
ଭଜିଲେ ଜାଣିବୁ ଜିନା ତାହାର ମହିମା ।
ଜପିଲେ ସେ ସୁଧା ନାମ କାୟମନୋବାକ୍ୟେ
କୋଟି ଜନ୍ମାର୍ଜ୍ଜିତ ପାପ ଖଣ୍ଡଇ ଦଣ୍ଡକେ ।
ପ୍ରକୃତ ଅଟନ୍ତି ପ୍ରଭୁ କରୁଣାସାଗର
ସୁଦୃଢ଼ ବିଶ୍ୱାସ ଥିବ ତାଙ୍କଠି ଯାହାର ।
ତ୍ରିତାପ ଜ୍ୱାଳାରୁ ତାକୁ ମୁକ୍ତ ଦେବା ପାଇଁ
ଆପଣେ ଦାୟିତ୍ୱ ନେବେ ପ୍ରଭୁ ବିଶ୍ୱସାଇଁ ।

ନାମେ ଲବ୍ଧ ହୁଏ ସେହି ଦୁର୍ଲ୍ଲଭ ରତନ
ଜପ ତପ ଆଦି ତାର ନ ପାନ୍ତି ସନ୍ଧାନ ।
ବୃଥା ବିଭ୍ରରେ ମନ ! ନାହିଁ କିଛି ଫଳ
ରାମକୃଷ୍ଣ ସୁଧା ନାମ ମୁଖେ ସଦା ବୋଲ ।
ସରଳ ହୃଦୟେ ଗାଅ ରାମକୃଷ୍ଣ ନାମ
ତେଜ ମନ ! ଲୋକ ଲାଜ ସରମ ଭରମ ।
ହୃଦୟରେ ସାର କରି ତାଙ୍କ ପଦ୍ମପାଦ
ଅର୍ଘ୍ୟ ଦିଅ ତହିଁ ଯେତେ ବିଭବ ସମ୍ପଦ ।
ନିତ୍ୟଧନ ପରିତ୍ୟଜି କିମ୍ପା ମନ ! ରହୁ
ଅନିତ୍ୟ ଯେଜନ ଭ୍ରମୁ ଜଗତେ ଏ ମହୀ ।
ଭାଇବନ୍ଧୁ ଦାରା ସୁତ ଆତ୍ମୀୟ ସ୍ୱଜନ
ଯାହାଙ୍କୁ କରିଛୁ ଆରେ ହୃଦୟ-ରତନ ।
ଉପସ୍ଥିତ ହେଲେ ତୋର ଅନ୍ତିମ ସମୟ
କଟିବସ୍ତ୍ର କାଢ଼ି ନେଇ ଦେବେ ସେ ବିଦାୟ ।
ଖଟ ବା ପଲଙ୍କେ ଯଦି ଶୋଇଥିବୁ ରହି
ଭୂଇଁରେ ଶୁଆଇ ଦେବେ ଟେକିଆଣି ସେହି ।
ଯାଙ୍କ ଶୁଭ ପାଇଁ ଚିନ୍ତା କରୁ ଅନୁକ୍ଷଣ
ଅଶୁଭ ଭାଳିବେ ମଡ଼ାଥିବୁ ଯେତେ କ୍ଷଣ ।
ଛ ଖଣ୍ଡି ବାଉଁଶ ଆଣି ଯୋଡ଼ିଯିବେ ତୋତେ
ସିଞ୍ଚିବେ ଗୋମୟ ଜଳ ତୋହର ପଶ୍ଚାତେ ।
ଏମନ୍ତ ଅଟଇ ଯେଉଁ ସଂସାରର ରୀତି
ତହିଁ କିମ୍ପା ମାତିଅଛୁ ରହି ଦିନରାତି ।
ନିଜ ନିଜ ସ୍ୱାର୍ଥ ପାଇଁ ଧାବନ୍ତି ସଚନେ
ସ୍ୱାର୍ଥ ମେଣ୍ଟିଗଲେ ଆଉ ନ ରହନ୍ତି କେବେ ।
ଏକମାତ୍ର ବିଶ୍ୱଧାତା ପ୍ରଭୁ ଜଗନ୍ନାଥ
ତୋ ମଙ୍ଗଳ ପାଇଁ ଚିନ୍ତା କରନ୍ତି ନିରତ ।
ନେଲ ଥାଉଁ ଥାଉଁ ଯେନ ତାଙ୍କର ଶରଣ
ହରେ ରାମକୃଷ୍ଣ ରଟ ମୁଖେ ଅନୁକ୍ଷଣ ।
ସଂସାର ଯାତନାଯାକ ହେଲେ ହେବ ଦୂର
ହସି ହସି ଚାଲିଯିବୁ ସୁଖେ ସ୍ୱର୍ଗପୁର ।



## ଭକ୍ତ-ବନ୍ଦନା

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଜୟ ଜୟ ବିଶ୍ୱପତି ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ଇଷ୍ଟଗୋଷ୍ଠୀଗଣ
ପଦରେଣୁ ଦାନେ ଧନ୍ୟ କର ଏ ଜୀବନ ।
ତାଙ୍କ ଯେତେ ଭକ୍ତ ଛନ୍ତି ଏ ମହୀମଣ୍ଡଳେ
ଜାଣିବୁ ରେ ମନ ! ତାଙ୍କୁ ନିଜ ଜ୍ଞାତି କୁଳେ ।
ତାଙ୍କ ପାଦେ ନିରନ୍ତର ରଖିଥିଲେ ମତି
ତବେ ହେବୁ ଜାଣ ପ୍ରଭୁଚରଣେ ଭକତି ।
ଭକ୍ତ ମଧ୍ୟେ ନ କରିବୁ ବଡ଼ ସାନ ଜ୍ଞାନ
ତୋହର ଆରାଧ୍ୟ ସର୍ବେ ହୃଦେ ଦୃଢ଼େ ଜାଣ ।
ବଡ଼ସାନ ବିଚାରରେ ନାହିଁ ଅଧିକାର
ସରବେ ଅଟନ୍ତି ରାମକୃଷ୍ଣ ପରିବାର ।
ପ୍ରାଣାଧିକ ପ୍ରିୟ ରାମକୃଷ୍ଣ ଭକ୍ତଗଣ
ଦିବା ନିଶି ଭଜ ମନ ! ତାଙ୍କର ଚରଣ ।
ଭକ୍ତ-ହୃଦେ ପ୍ରଭୁ ସଦା କରନ୍ତି ବିହାର
ଭକତେ ଅଟନ୍ତି ଭବେ ସର୍ବ ବସ୍ତୁ ସାର ।
ଜାଣି ନ ପାରିବୁ ଯାହା ଶାସ୍ତ୍ର ଅଧ୍ୟୟନେ
ଅନାୟାସେ ପାଇବୁ ତା ଭକତ ଦର୍ଶନେ ।
ଭକ୍ତଙ୍କ ଅସାଧ୍ୟ କିଛି ନାହିଁ ଏ ମହୀରେ
କୃପା ହେଲେ ପଙ୍ଗୁ ମଧ୍ୟ ଗିରି ଲଙ୍ଘିପାରେ ।
ତାଙ୍କ କରୁଣାରେ ଅନ୍ଧ ଦିବ୍ୟ ନେତ୍ର ପାଇ
ଲୀଳା ଦରଶନେ ସ୍ୱର୍ଗ-ସମ୍ପଦ ଲଭଇ ।
ଶୁଷ୍କ କାଷ୍ଠେ କୃପାକଣା ହେଲେ ନିପତିତ
ପତ୍ରପୁଷ୍ପ ପଲ୍ଲବରେ ହୁଏ ସୁଶୋଭିତ ।
କୃପା ଦୃଷ୍ଟି ପଡ଼ିଲେକ କଠିନ ପ୍ରସ୍ତରେ
ଦ୍ରବ ହୋଇ ବହିଯାଏ ସରିତ ଆକାରେ ।
ଅଜ୍ଞାନ ପାମର ପତି ହୋଇଲେ କରୁଣା
ବେଦର ନିଗୂଢ଼ ମର୍ମ୍ମ କ୍ଷଣେ ତାକୁ ଜଣା ।
ଭକତ ଆଖ୍ୟାନ ଯାହା ଶାସ୍ତ୍ର ବଖାଣଇ
ଶାସ୍ତ୍ର ଅଧ୍ୟୟନେ ତାହା କିଛି ନ ମିଳଇ ।
କେତେ ଜଳ ବରଷିବ ପଞ୍ଜିକାରେ ଲେଖା
ପଞ୍ଜିକା ଚିପୁଡ଼ି ଦେଲେ ବିନ୍ଦୁ ନାହିଁ ଦେଖା ।
ଶାସ୍ତ୍ରେ ଲିପିବଦ୍ଧ ଅଛି ଭକ୍ତି ବିବରଣ
ଭକ୍ତି ନ ମିଳଇ ଶାସ୍ତ୍ର କଲେ ଅନ୍ୱେଷଣ ।
ସାଧନ ଭଜନ ଆଉ ଭକ୍ତ ସହବାସେ
ଭକତି ରତନ ଲବ୍ଧ ହୁଏ ଅନାୟାସେ ।
ଇଷ୍ଟପଦ ପ୍ରାପ୍ତି ଯଦି ଅନ୍ତରେ ବାସନା
କାୟ ମନ ବାକ୍ୟେ କର ଭକ୍ତ ଆରାଧନା ।
ମୂଢ଼ାପେକ୍ଷା ଅତି ମୂଢ଼ ନରାଧମ ମୁହିଁ
ଭକ୍ତବୃନ୍ଦ ମହିମା କୀର୍ତ୍ତନ ଶକ୍ତି କାହିଁ ?
ଭକ୍ତପୂଜା ସମ ଭବେ କିଛି ନାହିଁ ଆନ
ପ୍ରଭୁ-ଭକ୍ତ-ପଦରଜ ଭିଖାରି ଏ ଦୀନ ।
ସର୍ବେ ମିଳି ଅଧମକୁ କୃପାକର ଥରେ
ମନ ସଦା ମଗ୍ନ ଥାଉ ଯେହ୍ନେ ଶ୍ରୀପଦରେ ।
ପଦରେଣୁ ଏକମାତ୍ର ଭରସା ମୋହର
ଶିରେ ଦେଇ କର ମୋତେ ଏ ଭବୁଁ ଉଦ୍ଧାର ।
ସମସ୍ତଙ୍କ ପାଦେ ମୋର ଏତିକି ମାଗୁଣି
ମୋହର ସଦ୍‌ଗତି ହେଉ ପ୍ରଭୁ-ନାମ ଗୁଣି ।



# ଶ୍ରୀଶ୍ରୀ ରାମକୃଷ୍ଣ ଲୀଳାମୃତ

## ପ୍ରଥମ ଖଣ୍ଡ

### ପ୍ରଥମ ଅଧ୍ୟାୟ
### ପିତାମାତାଙ୍କ ପରିଚୟ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ଶବ୍ଦ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ହୁଗୁଳି ଜିଲ୍ଲାରେ ଗ୍ରାମ କାମାରପୁକୁର
ମହା ପୁଣ୍ୟଭୂମି ଏହା ବ୍ରହ୍ମାଣ୍ଡ ମଧ୍ୟର ।
ଉତ୍ତରେ ଭୂତର ଖାଲ, ଶ୍ରୀପୁର ଦକ୍ଷିଣେ
ପୂର୍ବେ ରାଜଦାଣ୍ଡ, ପୁର-ମୁକୁନ୍ଦ ପଶ୍ଚିମେ ।
ତ୍ୟାଗୀ ସନ୍ନ୍ୟାସୀ ଆବର ନିଃସମ୍ବଳ ଯେହୁ
ଶ୍ରୀକ୍ଷେତ୍ରେ ଏ ପଥେ ନିତ୍ୟ ଆତଯାତ ସେହୁ ।
ସରଳ ସ୍ୱଭାବାପନ୍ନ ଗ୍ରାମସ୍ଥିତ ଲୋକେ
ଯେ ଯାହାର କାର୍ଯ୍ୟେ କାଳ କାଟନ୍ତି ସେ ସୁଖେ ।
ପଶୁପକ୍ଷୀ, ତରୁଲତା, ବିଲ ବନ ପଥ
ସବୁ ହିଁ ପବିତ୍ର ଭାବେ ପୂର୍ଣ୍ଣ ଅବିରତ ।
ନିଷ୍ଠାଗରିଷ୍ଠ ସଦ୍‌ବ୍ରାହ୍ମଣ ଥିଲେ ଏକ ତହିଁ
ଯାଙ୍କ ସଦ୍‌ଗୁଣାବଳୀର ପଟାନ୍ତର ନାହିଁ ।
ଚଟ୍ଟର୍ଯ୍ୟା ଶ୍ରୀ କ୍ଷୁଦିରାମ ନାମଟି ତାଙ୍କର
ସିଦ୍ଧବାକ୍ୟ ଦ୍ୱିଜବର ଖ୍ୟାତ ଚରାଚର ।
ଦୀର୍ଘକାୟ ଗୌରବର୍ଣ୍ଣ ବଳିଷ୍ଠ ଗଠନ
ଅନ୍ତର ତେଜରେ ସାରା ଅଙ୍ଗ ଦୀପ୍ତିମାନ ।
ହେଲେ ହେଁ ତୀର୍ଥାଦି ପୁଣ୍ୟଧାମ ବହୁଦୂର
ପଦବ୍ରଜେ ଯିବାପାଇଁ ନୁହନ୍ତି କାତର ।
ଜପ ତପ ଆଦି ବିପ୍ରୋଚିତ କାର୍ଯ୍ୟମାନ
ସାଧନ୍ତି ଅତୀବ ନିଷ୍ଠା ସହ ପ୍ରତିଦିନ ।

ଦରିଦ୍ର ହେଲେହେଁ ତାଙ୍କ ସ୍ୱଭାବ ପ୍ରଖର
ସମ୍ମୁଖେ ଗମନ ପାଇଁ ସର୍ବେ ଥରହର ।
ଯେଉଁ ପୋଖରୀରେ ନିତ୍ୟ କରୁଥିଲେ ସ୍ନାନ
ନୋହିବା ପର୍ଯ୍ୟନ୍ତ ତାଙ୍କ ସନ୍ଧ୍ୟା ସମାପନ,
ଛିଡ଼ା ହୋଇଥାନ୍ତି ତଟେ ଯେତେ ନରନାରୀ
ଯେମନ୍ତ କି ତାହାଙ୍କର କିଙ୍କର-କିଙ୍କରୀ ।
ଶୁଦ୍ଧାଚାର-ପ୍ରତିମୂର୍ତ୍ତି ତେଜସ୍ୱୀ ବ୍ରାହ୍ମଣ
ସ୍ପର୍ଶ ନ କରନ୍ତି କେବେ ଶୂଦ୍ର-ଦତ୍ତ ଧନ ।
କୌଳିକ ବସନ ଅଙ୍ଗେ ଗମ୍ଭୀର ଆକାର
ନ ହୁଅନ୍ତି କଦାଚନ ଦ୍ୱାରସ୍ଥ କାହାର ।
ସତ୍ୟରେ ସୁଦୃଢ଼ ନିଷ୍ଠା ତାଙ୍କର ଏପରି
ମହୀରେ ବିରଳ ଦୃଷ୍ଟ ଆରେକ ସେପରି ।
ଦେରେପୁର ଗ୍ରାମେ ଥିଲା ତାଙ୍କ ପୂର୍ବାବାସ
କାମାରପୁକୁରୁ ଯାହା ଦୂର ଦେଢ଼ କୋଶ ।
ପ୍ରଚୁର ସମ୍ପତ୍ତି ତହିଁ ଥିଲା ତାହାଙ୍କର
ଉତ୍ତରାଧିକାରୀ ସୂତ୍ରେ ମାଲିକ ଯାହାର ।
ଭୂ-ସମ୍ପତ୍ତି ଥିଲା ତହିଁ ଦୁଇବାଟୀ ତକ
ଦେବାଳୟ ପୁଷ୍କରଣୀ ବଗିଚା ଅନେକ ।
କୁଳୀନ ବଂଶଜ ବୋଲି ଚତୁର୍ଦ୍ଦିଗେ ଖ୍ୟାତ
ଆବର ଯେ ଦେବ ଗୁଣୀ ସ୍ୱଭାବ ପ୍ରକୃତ ।
ଗ୍ରାମର ଯେ ଜମିଦାର ରାମାନନ୍ଦ ରାୟ
ପ୍ରଜାପୀଡ଼କେ ତାଙ୍କର ଦୋଷ ଅତିଶୟ ।
ଦୈବ ଦୁର୍ବିପାକେ ଦ୍ୱିଜବର ଏକ କାଳେ ।
ପଡ଼ିଲେ ଦୁରାତ୍ମାର ଭୀମ କୋପାନଳେ ।

କଉଣସି ପ୍ରଜାପ୍ରତି ରୁଷ୍ଟ ହୋଇ ଥରେ
ଅଦାଲତେ ମକଦ୍ଦମା ରଚିଲେ ମିଥ୍ୟାରେ ।
ଜୟଲାଭ ପାଇଁ ଯେଣୁ କ୍ଷୀଣ ଆଶା ଅତି
ମାନସେ ପାଞ୍ଚିଲା ତହୁଁ ସେହି ଦୁଷ୍ଟମତି ।
କ୍ଷୁଦିରାମ ସତ୍ୟବାଦୀ ଖ୍ୟାତି ଦେଶେ ଦେଶେ
ତାହାଙ୍କୁ କହିଲେ ସାକ୍ଷ୍ୟ ପ୍ରଦାନ ସକାଶେ ।
ମକଦ୍ଦମାରେ ତାଙ୍କର ଜୟ ସୁନିଶ୍ଚୟ
ଏଥିରେ ନାହିଁତ ବିନ୍ଦୁ ମାତ୍ରକ ସଂଶୟ ।
ଏମନ୍ତ ବିଚାରି ତାଙ୍କୁ କଲେ ଅନୁରୋଧ
ରାଜି ନୋହିଲରୁ ହେତୁ ଜାତ ହେଲା କ୍ରୋଧ ।
ମିଥ୍ୟା ମକଦ୍ଦମା ଏକ ଆଣି ତାଙ୍କ ନାମେ
ଜୟୀ ହେଲେ ତହିଁ ମିଥ୍ୟା ସାକ୍ଷୀଙ୍କ ପ୍ରମାଣେ ।
ବିଷୟ ସମ୍ପତ୍ତି ଘରବାଡ଼ି ସହିତରେ
କ୍ରୟ କରି ନେଲେ ସବୁ କୋର୍ଟ ନିଲାମରେ ।
ଏ ସଂବାଦ ପାଇ ଜଣେ ବନ୍ଧୁ ତାହାଙ୍କର
କାମାରପୁକୁରେ ଥିଲା ଆବାସ ଯାଙ୍କର,
ସୁଖଲାଲ ଗୋସ୍ୱାମୀ ଯେ ଅଟେ ତାଙ୍କ ନାମ
ଯଥା ସେ ଦୟାଳୁ ତଥା ନ୍ୟାୟପରାୟଣ ।
ବନ୍ଧୁଙ୍କ ବିପଦ କାଳେ ଆଶ୍ୱାସନା ଦେଇ
ବାରତା ପ୍ରେରିଲେ ଚିନ୍ତା ନ କରିବା ପାଇଁ ।
ଏଠାକୁ ଆଇଲେ ଦେବି ରହିବାକୁ ଘର
ଧାନ ଜମି କିଛି ମଧ୍ୟ ତାହା ସହିତର ।
ଚଳାଚଳ ହେବ ତହିଁ କୌଣସି ପ୍ରକାରେ
ବେଗେ ଆସ ଦ୍ୱିଧା କିଛି ନ କରି ଅନ୍ତରେ ।
ଆଶ୍ୱାସନା ପାଇ ଦ୍ୱିଜବର କ୍ଷୁଦିରାମ
ମଣିଲେ ବିଭୁଙ୍କ ଏହା କରୁଣା ଅସୀମ ।
ବିଳମ୍ବ ନ କରି ଆଉ କଷ୍ଟିତ ମାତର
ଜ୍ୟେଷ୍ଠପୁତ୍ର କନ୍ୟାଟିଏ ଧରି ସଙ୍ଗତର ।
ପତ୍ନୀ ଚନ୍ଦ୍ରାଦେବୀ ଆଉ ପତି କ୍ଷୁଦିରାମ
ଦେହେ ଦେହେଁ ବାହାରିଲେ ତେଜି ନିଜ ଗ୍ରାମ ।
ଅକୂଳ ସାଗରେ ଏବେ କୂଳଟିଏ ପାଇ
ଶାନ୍ତିରେ ରହିଲେ ବିପ୍ର ବିଭୁପଦ ଧ୍ୟାୟି ।
ବଂଶଗତ ଶ୍ରୀରାମଙ୍କ ପାଦେ ଅନୁରକ୍ତି
ଏଠାରେ ହୋଇଲା ତାର ପୂର୍ଣ୍ଣ ଅଭିବ୍ୟକ୍ତି ।
ଏକଦା କୌଣସି କାର୍ଯ୍ୟ ଉପଲକ୍ଷେ ତାଙ୍କୁ
ପଡ଼ିଥିଲା ଅନ୍ୟ ଏକ ଗ୍ରାମେ ଗମିବାକୁ ।

ବାହୁଡ଼ିଲାବେଳେ ପଥଶ୍ରମେ କ୍ଳାନ୍ତ ହୋଇ
ବିଶ୍ରାମ ଘେନିଲେ ଏକ ତରୁତଳେ ଯାଇ ।
ସ୍ନିଗ୍ଧ ସୁଶୀତଳ ମୃଦୁ ପବନ ହିଲ୍ଲୋଳେ
ନିଦ୍ରା-ଅଭିଭୂତ ହେଲେ ଦ୍ୱିଜ କ୍ଷଣ କାଳେ ।
ଏ କାଳେ ତାଙ୍କର ଇଷ୍ଟ ରାମ ରଘୁସାଇଁ
ଏକ ଦିବ୍ୟ ଶିଶୁ ବେଶେ ପାଶେ ଉଭା ହୋଇ
ସମ୍ବୋଧି କହିଲେ ତାଙ୍କୁ "ଶୁଣ ଦ୍ୱିଜୋତ୍ତମ !
ଧାନ୍ୟକ୍ଷେତେ ରହିଛି ମୁଁ ଅର୍ଚ୍ଚନ ବିହୀନ ।
ମୋ ସେବା କରିବ ତୁମ୍ଭେ ଅଭିଳାଷ ମୋର
ଘେନି ଚାଲ ମୋତେ ଏବେ ସଦନେ ତୁମ୍ଭର ।"
ଅତୀବ ବିହ୍ୱଳ ଚିତ୍ତେ ଦ୍ୱିଜ କ୍ଷୁଦିରାମ
କର ଯୋଡ଼ି ବାରମ୍ବାର କରିଣ ପ୍ରଣାମ,
ଉଚ୍ଚରିଲେ ଆପଣାର ହୃଦୟ-ଆବେଗେ
"କ୍ଷମାକର ମୋତେ ଆହେ ପ୍ରଭୁ ମହାତ୍ମଗେ !
ଭକ୍ତିହୀନ ଅର୍ଥହୀନ ମୂଢ଼ମତି ମୁହିଁ
ବିହିତ ଅର୍ଚ୍ଚନ ମୋର ଯୋଗ୍ୟତା ବା କାହିଁ !
ଅବଶେଷେ ହୋଇଣ ମୁଁ ସେବା ଅପରାଧୀ
ନରକେ ଗମିବି ସିନା ପ୍ରଭୋ କୃପାନିଧି !"
ରଘୁପତି ରାମ ତହୁଁ ହୋଇଣ ପ୍ରସନ୍ନ
ଦ୍ୱିଜଙ୍କୁ ବୋଇଲେ "ଭୟ କର ସମ୍ବରଣ ।
ଦୋଷାଦୋଷ ତ୍ରୁଟି ପାଇଁ ନ କର ଭାବନା
ଭକ୍ତିବଳେ ତୁମ୍ଭଙ୍କୁ ସେ ସକଳ ମାର୍ଜ୍ଜନା ।"
ଏ ପ୍ରକାର ଅଯାଚିତ କୃପାରେ ତାଙ୍କର
ଥୟ ରହି ନ ପାରିଲେ ଆଉ ଦ୍ୱିଜବର ।
ପ୍ରାଣର ଆବେଗେ ତହୁଁ କରିଲେ ରୋଦନ
ଏକାଳେ ସହସା ନିଦ୍ରା ହୋଇଲା ଭଗନ ।
ଜାଗରିତ ହୋଇ ବିପ୍ର ଭାଳିଲେ ମନରେ
ଏ କି ଅଦଭୁତ ସ୍ୱପ୍ନ ଦେଖିଲି ଏଠାରେ ।
ସୌଭାଗ୍ୟ ରବି କି ମୋର ହୋଇବ ଉଦୟ
ସତ୍ୟେ ପରିଣତ ହେବ ସ୍ୱପ୍ନର ବିଷୟ ।
ଭାଳୁ ଭାଳୁ ଏ ପ୍ରକାର ସହସା ତାଙ୍କର
ଦୃଷ୍ଟି ନିପତିତ ହେଲା ଧାନ୍ୟ କ୍ଷେତ୍ରୋପର ।
ଏହି ତ ଅଟଇ ସେହି ସ୍ୱପ୍ନ-ଦୃଷ୍ଟ-ସ୍ଥାନ
କୌତୂହଳ ପରବଶେ କଲେ ଗାତ୍ରୋତ୍ଥାନ ।
ଅନ୍ୱେଷଣ କରୁ କରୁ କିଛି କ୍ଷଣ ପରେ
ପ୍ରବେଶିଲେ ଝଙ୍କା ଧାନବୁଦା ସମୀପରେ ।

ଶାଳଗ୍ରାମ ଶିଳା ଏକ ଦେଖିଲେକ ତହିଁ
ଯା ଉପରେ କୃଷ୍ଣନାଗ ଫଣା ଟେକିଛଇ ।
ଭୁଜଙ୍ଗ ଦଂଶନ ଭୟ ଭୂଲି ଏକାବେଳେ
ମନର ଆବେଗେ ଯେବେ ତା ପାଶେ ଧାଇଁଲେ
କ୍ଷଣ ମଧ୍ୟେ ବିଷଧର ହୋଇଲା ଅନ୍ତର
ବିବର ସମ୍ମୁଖେ ଦେଖି ଶିଳା ମନୋହର ।
ସ୍ୱପ୍ନ ନୁହେ, ଏହା ଦେବାଦିଷ୍ଟ ତାଙ୍କ ପ୍ରତି
ଦୃଢ଼ଜ୍ଞାନେ ହର୍ଷୋତ୍ଫୁଲ୍ଲ ହୋଇଲେ ସେ ଅତି ।
ଉଚ୍ଚସ୍ୱରେ ଉଚ୍ଚାରିଣ 'ଜୟ ରଘୁବୀର'
ଶିଳାଟିକୁ ଉଠାଇଲେ ଭକ୍ତି ସହକାର ।
ଧୀର ଚିତ୍ତେ ନିରେଖିଣ ତାହାର ଲକ୍ଷଣ
'ରଘୁବୀର' ଶିଳା ବୋଲି କଲେ ନିର୍ଦ୍ଧାରଣ ।
ଚିତ୍ତେ ଉଚ୍ଛୁଳିଲା ତାଙ୍କ ଆନନ୍ଦ ଲହରୀ
ସଦନେ ଫେରିଲେ ଦ୍ୱିଜ ଶିଳାଟିକୁ ଧରି ।
ସଂସ୍କାରାଦି କରି ତାକୁ ଶାସ୍ତ୍ର ଅନୁସାରେ
ପ୍ରତିଷ୍ଠା କରିଲେ ଗୃହ-ଦେବତା ରୂପରେ ।
ଏହି ସେହି ରଘୁବୀର ପ୍ରାଣର ମୂରତି
ଯାଙ୍କ ଆରାଧନା ହୁଏ ଗୃହେ ନିତି ନିତି ।
ବିପ୍ରଙ୍କର ଅତି ଅଳ୍ପ ବିଷୟ ସମ୍ବଳ
ଭୂ-ସମ୍ପତ୍ତି ମଧ୍ୟେ ଭୂଇଁ ସାତ ପା କେବଳ ।
ଏହା ପୁଣି ତାହାଙ୍କର ନୁହଇ ଅର୍ଜିତ
ବନ୍ଧୁବର ସୁଖଲାଲ ଗୋସ୍ୱାମୀ ପ୍ରଦତ୍ତ ।
ପ୍ରତିବର୍ଷ କ୍ଷୁଦିରାମ ବର୍ଷା ପ୍ରାରମ୍ଭରେ
ଧନବତ୍ତା ମାଦ ଧାନ ଧରି ସ୍ୱହସ୍ତରେ ।
ଭକ୍ତି ସହ 'ଜୟ ରଘୁବୀର' ଉଚ୍ଚାରଣ
କ୍ଷେତର ଈଶାନ କୋଣେ କରନ୍ତି ରୋପଣ ।
ତଦନ୍ତେ ଆସିଣ କୃଷି ମଜୁରିଆ ଦଳ
ସମ୍ପାଦନ୍ତି ରୋପଣାଦି କରମ ସକଳ ।
ଏ କ୍ଷୁଦ୍ର ଭୂମିରୁ ଯାହା ହୁଅଇ ଉତ୍ପନ୍ନ
ବର୍ଷକର ଖର୍ଚ୍ଚ ପରେ ବଳଇ ସାମାନ୍ୟ ।
ବ୍ୟୟ ନ କରିଣ ଏହା ଅନ୍ୟାନ୍ୟ ଦିଗରେ
ଖରଚ କରନ୍ତି ସବୁ ଅତିଥି ସେବାରେ ।
ଆଉ ଏକ ଦେବୀ ଗୃହେ ନାମ ଶୀତଳାଈ
କେମନ୍ତ କରନ୍ତି କ୍ରୀଡ଼ା ଶୁଣ ମନ ଦେଇ ।
ପ୍ରାତଃକାଳୁଁ କ୍ଷୁଦିରାମ ଉଠି ପ୍ରତିଦିନ
କୁସୁମ ଚୟନେ ଯା'ନ୍ତି ଗୃହଭୃତ୍ତି ଧରିଣ ।

ସେକାଳେ ଦେଖନ୍ତି ଦିବ୍ୟ ବାଳିକା ଗୋଟିଏ
ହସି ହସି ତାଙ୍କ ପଛେ ଧାଇଁ ଆସୁଥାଏ ।
ମନୋରମ ମୂର୍ତ୍ତି ରକ୍ତବସ୍ତ୍ରେ ଆଚ୍ଛାଦିତା
ନାନାବିଧ ଅଳଙ୍କାରେ ଅଙ୍ଗ ବିଭୂଷିତା ।
ଯେଉଁ ଶାଖା ହୋଇଥାଏ ଅଧିକ ପୁଷ୍ପିତ
ବାଳିକା କରଇ ତାକୁ ଆଗୁଁ ଅବନତ ।
ଏମନ୍ତେ ଶ୍ରୀଜଗନ୍ମାତା ଦେବୀ ଶୀତଳାଈ
କୁସୁମ ଚୟନେ ସାହା ହେଲେ ପାଶେ ଆଇ ।
ନାନା ଦିବ୍ୟ ଦରଶନ ଲଭିଣ ଏମନ୍ତ
ଦେବଭାବେ ପୂର୍ଣ୍ଣ ଏବେ ବିପ୍ରଙ୍କର ଚିତ୍ତ ।
ଅନ୍ତରର ଦୃଢ଼ଭକ୍ତି ଆବର ବିଶ୍ୱାସେ
ମୁଖଶ୍ରୀ ଆବୃତ ଅପୂରୁବ ଦିବ୍ୟାବେଶେ ।
ଧୀର ଶାନ୍ତ ସୌମ୍ୟ ମୂର୍ତ୍ତି ଯେହ୍ନେ ଋଷିଟିଏ
ଯା ଦର୍ଶନେ ଶ୍ରଦ୍ଧା ଭକ୍ତି ଉପୁଜଇ ସ୍ୱୟେଁ ।
ତାଙ୍କୁ ଆସିବା ଦେଖିଲେ ଗ୍ରାମବାସୀଗଣ
ସସମ୍ଭ୍ରମେ ଉଠନ୍ତି ସେ ଆସନ ତେଜିଣ ।
ଆବର ବିପଦ କାଳେ ଆଶୀର୍ବାଣୀ ଆଶେ
ଥୋକେ ଥୋକେ ଧାବମାନ ତାହାଙ୍କର ପାଶେ ।
ଗୃହ ସନ୍ନିକଟେ ଥିଲା ଯେଉଁ ରାଜପଥ
ଜଗନ୍ନାଥ ଯାତ୍ରୀ ତହିଁ ନିତ୍ୟ ଯାତାୟାତ ।
କ୍ଷୁଧାର୍ତ୍ତ ତୃଷାର୍ତ୍ତ ଗୃହେ ଯେ କେହି ଆସନ୍ତି
ଅନ୍ନ ଜଳ ନ ପାଇଣ କେହି ନ ଫେରନ୍ତି ।
ଯେଉଁ ଅନ୍ନ ଭୋଗ ଦ୍ୟନ୍ତି ରଘୁବୀରଠାରେ
ସେ ସମସ୍ତ ବିତରନ୍ତି ଅତିଥି ସେବାରେ ।
ନିରତ ନିରେଖି ଏହା ପ୍ରତିବେଶୀଗଣ
ଆଶ୍ଚର୍ଯ୍ୟ ମଣନ୍ତି ବିପ୍ର କାହୁଁ ପାଏ ଧନ ।
ଶୁଦ୍ଧଚିତ୍ତ ସତ୍ୟନିଷ୍ଠ ଯେହ୍ନ କର୍ମବୀର
ଅଭାବ ମୋଚନ୍ତି ତାର ପ୍ରଭୁ ପରାତ୍ପର ।
ଦରିଦ୍ର ହେଲେହେଁ ବିପ୍ର ସମ୍ବଳବିହୀନ
ସାମାନ୍ୟ ମୃତ୍ତିକା ଗୃହ ତୃଣେ ଆଚ୍ଛାଦନ ।
ତାହା ମଧ୍ୟ କ୍ଷୁଦ୍ର କ୍ଷୁଦ୍ର, ନୁହେ ପରିସର
ସଂଖ୍ୟାରେ ବହୁତ ନୁହେ ତିନୋଟି ମାତର ।
ଚତୁର୍ଦ୍ଦିଗେ ବୃକ୍ଷଲତା ଅତି ମନୋରମ
ସାକ୍ଷାତ ଯେମନ୍ତ ମୁନି ଋଷିଙ୍କ ଆଶ୍ରମ ।
ଶୁଦ୍ଧପୂତ ଭାବମୟ ଶାନ୍ତିପୂର୍ଣ୍ଣ ସ୍ଥାନ
କ୍ଷୁଧାତୃଷ୍ଣାନାଶୀ ଦେବୀ ଯହିଁ ବିଦ୍ୟମାନ ।

ଯଥା ପତି, ତଥା ପତ୍ନୀ, ଚନ୍ଦ୍ରା ଗୁଣବତୀ
ମଣି ସହିତ କାଞ୍ଚନ ସଂଯୋଗ ଯେମତି ।
ସରଳତା ଗୁଣର ତ ନାହିଁ ପଟାନ୍ତର
ରୂପବତୀ ଥିଲେ ମଧ୍ୟ ସେହି ପରକାର ।
ଦୟାରେ ହୃଦୟ ନିରନ୍ତର ବିଗଳିତ
ମୂର୍ତ୍ତିମତୀ ଦୟା ଯେହ୍ନେ ମର୍ତ୍ତ୍ୟେ ଆବିର୍ଭୂତ ।
ଭୋକାଶୋଷୀ ଯେତେବେଳେ ଯେ ଆସନ୍ତି ଦ୍ୱାରେ
ଆଦରେ ଦିଅନ୍ତି ତାଙ୍କୁ ଯାହା ଥାଏ ଘରେ ।
ଦିନକରେ ହେଲେ ଏତେ ଅତିଥି ଆଗତ
ତାଙ୍କର ଚର୍ଚ୍ଚାରେ ଗନ୍ଧ ବେଳ ହେଲା ଗତ ।
ଅନ୍ନଜଳ କିଛି ମାତ୍ର ନ କରି ଗ୍ରହଣ
ଅତିଥି ସେବାରେ ଭୋଳ ଚନ୍ଦ୍ରାଙ୍କର ମନ ।
ଆସନ୍ତି ଅତିଥି ଯେତେ କରନ୍ତି ଆହାର
ଏମନ୍ତେ ଅତୀତ ହେଲା ଦିବା ଦ୍ୱିପ୍ରହର ।
ସର୍ବଶେଷେ ସମାଗତ ଅଭ୍ୟାଗତ ଥୋକେ
ମାଗିଲେ ଭୋଜନ ଭିକ୍ଷା ପ୍ରପୀଡ଼ିତ ଭୋକେ ।
ଅନ୍ନବ୍ୟଞ୍ଜନ ସାମାନ୍ୟ ଯା ଥିଲା ପାତ୍ରରେ
ତା ନିରେଖି ଚନ୍ଦ୍ରାଦେବୀ ବ୍ୟଥିତା ଅନ୍ତରେ ।
ରହିଲା ନାହିଁ ତ ଗୃହେ ରାନ୍ଧିବାକୁ ପୁଣ
କ୍ରୟ କରିବାକୁ ମଧ୍ୟ ହସ୍ତେ ନାହିଁ ଧନ ।
ଗୃହରୁ ଫେରିବେ ଆଜ ଭୋକିଲା ଅତିଥି
ଉପାୟ ନ ଦେଖି ଚନ୍ଦ୍ରା ବିକଳ ଯେ ଅତି ।
ବାଳିକା ଗୋଟିଏ କାହୁଁ ଅକସ୍ମାତ ଆସି
ପାକପାତ୍ର ଘାଣ୍ଟି ଦେଲା ଶେଷ ଘରେ ପଶି ।
ଅନ୍ନବ୍ୟଞ୍ଜନେ ପୂରିଲା ପାକପାତ୍ର କ୍ଷଣେ
ପୁଲକିତା ଚନ୍ଦ୍ରାଦେବୀ ଏସନ ଦର୍ଶନେ ।
କାହାର ଏ ପିଲା ଅବା କାହୁଁ ସେ ଆସିଲା
ଶେଷଘରେ ପଶି ପୁଣି ଅନ୍ତର୍ହିତ ହେଲା ।
ଅଇଲେ କି ଅନ୍ନପୂର୍ଣ୍ଣା ଦରିଦ୍ର ଭବନେ
ଏମନ୍ତ ଭାବିଣ ନାନା କଥା ମନେ ମନେ ।
ନିପୁଜିଲା ତାଙ୍କ ହୃଦେ ଅପାର ଉଲ୍ଲାସ
ଅତିଥିଙ୍କୁ ଭୋଜ ଦେଇ ଲଭିଲେ ସନ୍ତୋଷ ।
ସେହିଦିନୁ ଚନ୍ଦ୍ରାଦେବୀ ନ ଖାଇବାଯାଏ
ପାକପାତ୍ର ଅନ୍ନବ୍ୟଞ୍ଜନରେ ପୂରିଥାଏ ।
ସାଧୁ, ସନ୍ଥ, ଅଭ୍ୟାଗତ ପ୍ରବେଶନ୍ତି ଯେତେ
ପେଟପୂରି ଖାଇଯା'ନ୍ତି ଉଲ୍ଲସିତ ଚିତ୍ତେ ।

ଆପଣାର ଗୃହକର୍ମ ହୋଇଲେ ସପନ୍ନ
ପଡ଼ୋଶୀଙ୍କ ଗୃହେ ଚନ୍ଦ୍ରା କରନ୍ତି ଗମନ ।
ଖାଇଲେ କି ନାହିଁ କେହି ବୁଝି ଏ ଖବର
ନିଜ ଭୋଜନ ବ୍ୟବସ୍ଥା କରନ୍ତି ତା ପର ।
ଅଭାବବଶତଃ କେହି ଥିଲେ ଅନାହାରେ
ଦେଇ ଆସନ୍ତି ଆପଣା ଖାଦ୍ୟ ତାହା ଘରେ ।
ଆପଣେ ଜାଣନ୍ତି ସାରା ଦିନ ଉପବାସେ
କିମ୍ବା ଖାନ୍ତି ଚୂଡ଼ା ମୁଢ଼ି ବାହୁଡ଼ି ଆବାସେ ।
ସରଳତାରେ ହୃଦୟ ପୂର୍ଣ୍ଣ ଏ ପ୍ରକାର
ଉତ୍ତର ପୂରୁବ ଜ୍ଞାନ ନ ଥିଲା ତାଙ୍କର ।
ଅବିଦିତ ଏ ପ୍ରପଞ୍ଚ ପରହିତେ ରତ
ନିରୁପମ ଅଲୌକିକ ଗୁଣ ସମନ୍ୱିତ ।
ସାମାନ୍ୟା ନୁହନ୍ତି ନାରୀ ବିପ୍ରଙ୍କ ଆଗରେ
ବ୍ରହ୍ମାଣ୍ଡନାଥଙ୍କୁ ଯେହୁ ଧରିଲେ ଉଦରେ ।
ତାଙ୍କ ସୌଭାଗ୍ୟ କଥା ନ ହୁଏ ବଖାଣି
ତିନିଗୋଟି ପୁତ୍ର ଆଉ କନ୍ୟା ଥିଲେ ବେନି ।
ଶ୍ରୀରାମକୁମାର ଜ୍ୟେଷ୍ଠ, ମଧ୍ୟେ ରାମେଶ୍ୱର
ସର୍ବ କନିଷ୍ଠ ପ୍ରଭୁ ବ୍ରହ୍ମାଣ୍ଡଠାକୁର ।
କନ୍ୟାଦ୍ୱୟ ମଧ୍ୟେ ଦେବୀ କାତ୍ୟାୟନୀ ଜ୍ୟେଷ୍ଠା
ସର୍ବମଙ୍ଗଳା ଅଟନ୍ତି ତାଙ୍କର କନିଷ୍ଠା ।
ଜ୍ୟେଷ୍ଠଙ୍କର ଏକ ପୁତ୍ର ଅକ୍ଷୟ ନାମରେ
କୈଶୋର ବୟସେ ଯେହୁ ଗଲେ ଯମପୁରେ ।
ମଧ୍ୟମର ଦୁଇପୁତ୍ର ଗୋଟିଏ ନନ୍ଦିନୀ
ରାମଲାଲ, ଶିବରାମ, ଲକ୍ଷ୍ମୀଠାକୁରାଣୀ ।
ଇଷ୍ଟ ପରିବାର ମଧ୍ୟେ ଏତିକି ମାତର
ତାଙ୍କର ଚରଣେ ମୋର କୋଟି ନମସ୍କାର ।
ଜ୍ୟେଷ୍ଠ ଶ୍ରୀରାମ କୁମାର ଶାସ୍ତ୍ରଜ୍ଞ ପଣ୍ଡିତ
ଜ୍ୟୋତିଷେ ଦକ୍ଷତା ଯୋଗୁଁ ସର୍ବଶେଷେ ଖ୍ୟାତ ।
କଥିତ ହୁଅଇ ଦେବୀ-ଉପାସନା କରି
ପାଇଥିଲେ ବର ଅନୁଗ୍ରହରେ ତାଙ୍କରି ।
ଯାହା ବଲେ ଲୋକଙ୍କୁ ସେ ଦେଖିବା ମାତ୍ରକେ
ଭବିଷ୍ୟତ ଶୁଭାଶୁଭ ଜାଣନ୍ତି କ୍ଷଣକେ ।
ଯାହାର ସମ୍ବନ୍ଧେ ଯାହା କରନ୍ତି ବଖାଣ
ନିଶ୍ଚୟ ଫଳଇ ତାହା ଅଭ୍ରାନ୍ତ ବଚନ ।
ଭବିଷ୍ୟତ ବକ୍ତା ବୋଲି ଥିଲା ତାଙ୍କ ଖ୍ୟାତି
ଗ୍ରାମସ୍ଥିତ ଲୋକେ ତେଣୁ ଅନେକେ ଲୋଡ଼ନ୍ତି ।

ସ୍ମୃତିର ବିଧାନ, ଶାସ୍ତ୍ର ସ୍ୱସ୍ତ୍ୟୟନ କର୍ମ
ଆଚରି ସେ ରଞ୍ଜିଥିଲେ ସମସ୍ତଙ୍କ ମନ ।
ପଞ୍ଚଦଶ ଯେତେବେଳେ ବୟସ ତାଙ୍କର
ଆଦର ଥିଲେକ ବହୁ ଯଜମାନ ଘର ।
ଆଶ୍ୱିନ ମାସ କୁମାର ପୂର୍ଣ୍ଣିମୀ ଉତ୍ସବେ
ଲକ୍ଷ୍ମୀପୂଜା ହୁଏ ବହୁ ଧନୀ ଜନ ବାସେ ।
ସେହି ଉପଲକ୍ଷେ ଦେବୀ ପୂଜିବା କାରଣେ
ଯାଇଥିଲେ ପାର୍ଶ୍ୱବର୍ତ୍ତୀ ଭୂରସୁବା ଗ୍ରାମେ ।
ଅର୍ଦ୍ଧଗ୍ରହ ପ୍ରାପ୍ତ ଆସି ହେଲା ଉପସ୍ଥିତ
ଗୃହକୁ ନ ବାହୁଡ଼ିଲେ ଆପଣାର ସୁତ ।
ମାତା ଚନ୍ଦ୍ରାଦେବୀ ତହୁଁ ଉଦ୍‌ବିଗ୍ନା ହୋଇଣ
ସୁତ ଅପେକ୍ଷାରେ ଦାଣ୍ଡେ କଲେ ବିଚରଣ ।
କିଛିକାଳ ଏ ପ୍ରକାରେ ଗଲା ଅତିବାହି
ଦୂରରୁ ଦେଖିଲେ ଜଣେ ଆସୁଅଛି କେହି ।
ନିଜ ସୁତ ମଣି ତାଙ୍କୁ ବ୍ୟାକୁଳା ଜନନୀ
ଦ୍ରୁତପଦେ ଅଗ୍ରସର ହୋଇଲେ ସେକ୍ଷଣି ।
ଉପନୀତା ହେଲେ ଯେବେ ସମୀପେ ତାହାର
ଦେଖିଲେ ସେ ନୁହନ୍ତି ଯେ ତାଙ୍କର କୁମର ।
ପରମା ସୁନ୍ଦରୀ ବାମା ପୂର୍ଣ୍ଣ ଯଉବନା
ନାନା ଅଳଙ୍କାରେ ଅଙ୍ଗ ଦିଶେ ସୁଶୋଭନା ।
ବ୍ୟାକୁଳେ ପୁଚ୍ଛିଲେ ତାଙ୍କୁ ଦେବୀ ଚନ୍ଦ୍ରମଣି
"କେଉଁଠୁ ଆସୁଛୁ ଝିଅ ତୁହି ଏକାକିନୀ ।"
ଉତ୍ତରେ କହିଲେ ବାମା ସସ୍ନେହେ ବଚନ
"ଭୂରସୁବା ଗ୍ରାମୁଁ ମୁହିଁ କରେଁ ଆଗମନ ।"
ପୁନଶ୍ଚ ପୁଚ୍ଛିଲେ ଚନ୍ଦ୍ରା ବ୍ୟଗ୍ର-ସହକାରେ
"ମୋର ସୁତ ଗ୍ରାମକୁ କି ଦେଖିଛୁ ସେଠାରେ
କେତେବେଳେ ବାହୁଡ଼ିବ ଜାଣୁ କି ଖବର ?
ତା ପାଇଁ ଉଦ୍‌ବିଗ୍ନ ଅତି ଅନ୍ତର ମୋହର ।"
ବ୍ରାହ୍ମଣୀର ବ୍ୟାକୁଳତା ଦେଖିଣ ଏସନ
ଉତ୍ତରିଲେ ବାମା ତାଙ୍କୁ ସାନ୍ତ୍ୱନା ଦେଇଣ ।
"ସୁତ ପାଇଁ କିଛି ମାତ ନ ହୁଅ କାତର
ପଛେ ପଛେ ଆସୁଛନ୍ତି କୁମର ତୁମ୍ଭର ।
ଦେବୀ ପୂଜିବାକୁ ସେହି ଯାଇଥିଲେ ଯହିଁ
ସେହି ସ୍ଥାନୁ ଏବେକ୍ଷଣି ଆସୁଅଛି ମୁହିଁ ।"
ଆଶ୍ୱସ୍ତା ହୋଇଣ ତହୁଁ ଦେବୀ ଚନ୍ଦ୍ରମଣି
ଅତି ସ୍ନେହେ ପଚାରିଲେ ତାହାଙ୍କୁ ଯେ ପୁଣି ।

"ଅଳପ ବୟସ ଝିଅ ! ଅଟଇ ତୋହର
ଗୋଟା ଦେହେ ପିନ୍ଧିଅଛୁ ଗହଣା ଅଳଙ୍କାର ।
ଏ ଘୋର ନିଶୀଥେ ଏକା ଯାଉଛୁ ତୁ କାହିଁ
କର୍ଣ୍ଣେ ଯା ପିନ୍ଧିଛୁ ତାକୁ କିସ ଏବା କହି ?
ସହାସ୍ୟ ବଦନେ ବାମା କହିଲେ ଉତ୍ତର
"କର୍ଣ୍ଣେ ଯା ପିନ୍ଧିଛି ନାମ କୁଣ୍ଡଳ ତାହାର ।
କାର୍ଯ୍ୟୋଦ୍ଦେଶ୍ୟେ ଯାଉଅଛି ଯେଉଁ ସ୍ଥାନେ ମୁହିଁ
ବହୁଦୂର ଅଛି ପହଞ୍ଚିବା ପାଇଁ ତହିଁ ।"
ତା ଶୁଣି ବୋଇଲେ ଚନ୍ଦ୍ରା ସାଦରେ ବଚନ
"ଉଚିତ ନୁହେଁ ଏ କାଳେ ଏକାକୀ ଗମନ ।
ଆଜ ରାତି ରହିଯାଅ ମୋହର କୁଟୀରେ
ଗନ୍ତବ୍ୟ ସ୍ଥାନେ ଗମିବୁ କାଲି ପ୍ରଭାତରେ ।"
ବାମା କହିଲେକ ତହୁଁ ଅତ୍ୟନ୍ତ ବିନୀତେ
"କାର୍ଯ୍ୟ-ଅନୁବନ୍ଧେ ଆଜ ଯାଉଛି ତ୍ୱରିତେ ।
ସୁବିଧା ଦେଖିଣ ମାତଃ ! ଆରେକ ଦିବସ
ନିଶ୍ଚୟ ଆସିବି ମୁହିଁ ତୁମ୍ଭର ଆବାସ ।"
ଏସନ କହିଣ ସେହୁ ଖରତରେ ଯାଇ
ଲାହାଙ୍କ ଧାନ ଅମାରେ ଗଲେ ଯେ ଉଭେଇ ।
ଘଟଣା ଦର୍ଶନେ ଚନ୍ଦ୍ରା ଅତୀବ ବିସ୍ମୟେ
ଧାଇଁଲେ ପତିଙ୍କ ପାଶେ ବ୍ୟାକୁଳ ହୃଦୟେ ।
ନିବେଦିଲେ ତାଙ୍କଠି ସବୁ ବିବରଣ
ଆଶ୍ୱାସି କହିଲେ ଦ୍ୱିଜ ମଧୁର ବଚନ ।
"ଲକ୍ଷ୍ମୀଠାକୁରାଣୀ ସେହୁ ନାହିଁ ତ ସଂଶୟ
ଅନ୍ତରେ ନ କର ତୁମ୍ଭେ କାହିଣସି ଭୟ ।
କୃପା କରି ଦେଇଛନ୍ତି ତୁମ୍ଭଙ୍କୁ ଦର୍ଶନ
ଯା ଭାଗ୍ୟେ ଘଟଇ ମର୍ତ୍ତ୍ୟେ ଧନ୍ୟ ସେହି ଜନ ।
ଏମନ୍ତ ଦର୍ଶନ ଲଭ ବିରଳ ଭୂତଳେ
ବିଶେଷ କୃପା ବିହୁନେ ନ ମିଳଇ ହେଲେ ।"
ଅତଃପର ବାହୁଡ଼ିଲେ ଚନ୍ଦ୍ରାଙ୍କ ତନୟ
ସମସ୍ତ ବ୍ୟାପାର ଶୁଣି ପ୍ରଫୁଲ୍ଲ ହୃଦୟ ।
ଇଦୃଶ ଅଟଇ ଯେଉଁ ଧର୍ମର ସଂସାର
କି ଆଶ୍ଚର୍ଯ୍ୟ ଜନ୍ମ ହେଲେ ତହିଁ ହରିଙ୍କର ।
ରାମକୃଷ୍ଣ-ଲୀଳାମୃତ ଶ୍ରବଣ ମଙ୍ଗଳ
ଗାନ କର ଏକ ମନେ ଆଉ ଆଉ ବେଳ ।
ନ ରହିବ ଶୋକ ଦୁଃଖ ସଂସାର କଷଣ
ଦୁଃଖ ନାଶିବାକୁ ଇଚ୍ଛା ପ୍ରଭୁ ଭଗବାନ ।

# ଦ୍ୱିତୀୟ ଅଧ୍ୟାୟ

## ଜନ୍ମ ବିବରଣ

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଦ୍‌ଗୁରୁ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମ ସନାତନ
ଅନାଦି କାରଣ ହରି ବିଭୁ ନାରାୟଣ ।
"ଯେତେବେଳେ ଧର୍ମଗ୍ଲାନି ହୁଅଇ ମହୀରେ
ଅଧର୍ମ ନିଜ ପ୍ରଭାବ ସଦମ୍ଭେ ବିସ୍ତାରେ,
ଦୁଷ୍କୃତି ବିନାଶି ସାଧୁ ଉଦ୍ଧାର କାରଣେ
ପୁଣି ଧର୍ମ ସ୍ଥାପିବାକୁ ଆମ୍ଭେ ଏ ଭୁବନେ
ମାୟାକୁ ସ୍ୱବଶେ ରଖି ତାର ସହଯୋଗେ
ନିଜ ରୂପ ନିଜେ ଗଢ଼ି ଜନ୍ମୁଁ ଯୁଗେ ଯୁଗେ ।"
ଏହା ଶ୍ରୀମୁଖ ନିଃସୃତ ବାଣୀ ହରିଙ୍କର
କୁରୁକ୍ଷେତ୍ରେ କହିଥିଲେ ଯାହା ସେ ପ୍ରଚୁର ।
ଊନବିଂଶ ଶତାବ୍ଦୀର ପ୍ରାରମ୍ଭ କାଳକୁ
ଗ୍ରାସିଲା ଏସନ ଗ୍ଲାନି ଏ ଧରା ଧାମକୁ ।
ଯେଉଁମାନେ ଧରିଥିଲେ ଧରମର ଧ୍ୱଜା
ସେମାନେ ନ କଲେ ଆଉ ଧରମର ପୂଜା ।
ନିଜ ମତ ଶ୍ରେଷ୍ଠ ମଣି ନିନ୍ଦିଲେ ଅପରେ
ବାଦବିବାଦେ ଏମନ୍ତ ମତି ପରସ୍ପରେ ।
ଧର୍ମର ଦୋହାଇ ଦେଇ ବ୍ୟଭିଚାରେ ରତ
ବାହ୍ୟ ଆଡ଼ମ୍ବର ହେଲା ଧର୍ମେ ପରିଣତ ।
ସାଧନ ଭଜନ ଧ୍ୟାନ ଧର୍ମର ସୋପାନ
ଜଗତରୁ ଏକାବେଳେ ହେଲା ଅନ୍ତର୍ଦ୍ଧାନ ।
ନାନାବିଧ କୁସଂସ୍କାରେ ପୂରିଲା ମାନସ
ଧରାଧାମୁଁ ଅବଶେଷେ ଧର୍ମ ହେଲା ନାଶ ।
ବିବେକ ବୈରାଗ୍ୟ ଭକ୍ତି ଧର୍ମର ସମ୍ବଳ
କ୍ରମେ କ୍ରମେ ସେ ସକଳ ହେଲା ହୀନବଳ ।
ଦୟା, କ୍ଷମା, ଦାକ୍ଷିଣ୍ୟାଦି ସଦ୍‌ଗୁଣ ନିକର
ମାନବ ଚିତ୍ତରୁ ହେଲା କ୍ରମଶଃ ଅନ୍ତର ।
କାମ କ୍ରୋଧ ଲୋଭ ଆଦି ଷଡ଼ ରିପୁଗଣ
ପ୍ରଭାବ ବିସ୍ତାର କଲେ ନିର୍ଭୟ ହୋଇଣ ।
ବାଦବିବାଦ କଳହ ଆଉ ପ୍ରତାରଣା
କେତେ ଯେ ଉଠିଲା ଭବେ ନ ହୁଏ କଳନା ।
ଏକାଳେ ପୁଣି ପାଶ୍ଚାତ୍ୟନିବାସୀନିକର
ଏ ଭାରତେ କଲେ ତାଙ୍କ ସାମ୍ରାଜ୍ୟ ବିସ୍ତାର ।
ବିଜ୍ଞାନକୁ ସାର କରି ଏମାନେ ସକଳେ
ଐଶୀ ଶକ୍ତି ପରାଜୟ ସଦମ୍ଭେ ଘୋଷିଲେ ।
ବିଦ୍ୟୁତ ବୋହିଲା ବାର୍ତ୍ତା ଯେମନ୍ତ କିଙ୍କର
ବାଷ୍ପଯାନେ ବିହରିଲେ ଆକାଶ ସାଗର ।
ଜୟ କରି କ୍ଷିତି, ଅପ, ତେଜ, ବାୟୁ, ବ୍ୟୋମ
ଚେଷ୍ଟାକଲେ ଭେଦିବାକୁ ଗୂଢ଼ ତଥ୍ୟମାନ ।
ଯନ୍ତ୍ରବଳେ ଉପାର୍ଜ୍ଜନ କରି ବହୁ ବିତ୍ତ
ବିବିଧ ଭୋଗ ବିଳାସେ ନିରନ୍ତର ମତ୍ତ ।
ସ୍ୱାର୍ଥପୂର୍ଣ୍ଣ ଚକ୍ରେ ପରରାଜ୍ୟ ଅଧିକାର
ଏହାକୁ କଲେକି ମୁଖ୍ୟମନ୍ତ୍ର ଜୀବନର ।
ବଳିଷ୍ଠଙ୍କ ଅତ୍ୟାଚାରେ, ଦୁର୍ବଳ-ପୀଡ଼ନେ
ଘୋର ହାହାକାର ଭେଦି ଉଠିଲା ଗଗନେ ।
ପରରାଜ୍ୟ ଅପହରି ପ୍ରେରିଲେ ପାଦରୀ
ପ୍ରଚାରିବା ପାଇଁ ଖ୍ରୀଷ୍ଟ ଧରମ ତାଙ୍କରି ।
ସ୍ଥାନେ ସ୍ଥାନେ ସ୍ଥାପି ସ୍କୁଲ୍ କଲେଜାଦିମାନ
ଇଂରେଜୀ ଶିକ୍ଷାର ତହିଁ କଲେ ପ୍ରଚଳନ ।
ସୁଚତୁର-ରୂପେ ଚଳାଇ ଶାସନ ତାଙ୍କର
ଏକମାତ୍ର ଉଦ୍ଦେଶ୍ୟ ଯେ ନିହିତ ତହିଁର ।
ବଡ଼ସାନ ଆଦି କରି ଚାକିରି ବହୁତ
ଉନ୍ମୁକ୍ତ କରିଲେ ଦେଶବାସୀଙ୍କ ନିମିତ୍ତ ।
ପ୍ରଲୋଭନ ଦେଖାଇଣ ତାହାଙ୍କୁ ଏସନ
ହରିନେଲେ ବିଶେଷରେ ଯୁବକଙ୍କ ମନ ।
ବିଦ୍ୟାଦାନ ସଙ୍ଗେ ସଙ୍ଗେ କଲେକି ପ୍ରଚାର
କୁସଂସ୍କାରେ ପରିପୂର୍ଣ୍ଣ ଧରମ ତୁମ୍ଭର ।
କି ଲାଭ ପୂଜିଣ ଦେବଗୁରୁ ବା ବ୍ରାହ୍ମଣ
ମାନସର ଭ୍ରମ ବିନୁ ନୁହଇ ଯେ ଆନ ।
ଏଥିରେ ନୋହିବ ତବ ଗତି ବା ମୁକତି
ସମୂଳେ ନାଶିଲେ ଏହା ନାହିଁ କିଛି କ୍ଷତି ।
ଯୀଶୁ ହିଁ ଅଟନ୍ତି ଏକା ଉଦ୍ଧାର କରତା
ତାଙ୍କର ଅର୍ଚ୍ଚନେ ହେବ ମଙ୍ଗଳ ସର୍ବଥା ।

ତା ସଙ୍ଗେ ଦେଖାଇ ନାନାବିଧ ପ୍ରଲୋଭନ
ସମ୍ପୂର୍ଣ୍ଣ ଭୁଲାଇ ଦେଲେ ଲୋକଙ୍କର ମନ ।
ସେମାନେ ଫିଙ୍ଗିଣ ଶେଷେ ଦେଶ କୁଳାଚାର
ଖ୍ରୀଷ୍ଟ ଧରମକୁ କଲେ ଜୀବନର ସାର ।
ଦଳେ ଦଳେ ଧାଇଁ ତହିଁ କଲେ ଝମ୍ପ ଦାନ
ଭାବିଲେ ଏଥିରେ ହେବ ପରମ କଲ୍ୟାଣ ।
ଆଶା ହେଲା ଶେଷେ ଦୁରାଶାରେ ପରିଣତ
ପ୍ରକୃତ ସୁଖ ତହିଁରୁ ନୋହିଲା ପ୍ରାପତ ।
ଚତୁର୍ଦ୍ଦିଗେ ହାହାକାର ବଢ଼ିଣ ଏସନେ
ଉଠିଲେ ଆରେକ ଦଳ ଏହି ସନ୍ଧିକ୍ଷଣେ ।
ପ୍ରାଚ୍ୟ ପାଶ୍ଚାତ୍ୟ ଉଭୟ ଭାବକୁ ମିଳାଇ
ପ୍ରଚାରିଲେ ନବଧର୍ମ 'ବ୍ରାହ୍ମ' ନାମ ଦେଇ ।
ଗଢ଼ିଲେ ସଭା ସମିତି ପାଶ୍ଚାତ୍ୟ ଢଙ୍ଗର
ତା ସଙ୍ଗେ ବାଢ଼ିଲେ ନବଜାତ ସମାଜର ।
ଏଥିରେ ହେବ ଦେଶର ପରମ ମଙ୍ଗଳ
କରଗତ ହେବ ହେଲେ ଚତୁର୍ବର୍ଗ ଫଳ ।
ଏ ଆଶାରେ ଯୋଗ ଦେଲେ ତହିଁ ଦଳେ ଦଳେ
ପ୍ରକୃତରେ ସୁଖ ଶାନ୍ତି ଯଦି ଏଥେ ମିଳେ ।
ରୋକିଲେ ହେଁ ଏହି ଖୀରଷ୍ଟାନ ହେବ ସ୍ରୋତ
ନ ମେଣ୍ଟିଲା ପ୍ରାଣ ଆଶା ଏଥିରେ କିଞ୍ଚିତ ।
ପ୍ରକୃତ ଧରମ ଆଶେ ପଶିଥିଲେ ଯେହୁ
ହାହାକାରେ ଇତସ୍ତତଃ ଭ୍ରମିଲେକ ସେହୁ ।
କିଏ ଆଣି ଦେବ ତାଙ୍କୁ ପ୍ରକୃତ ସନ୍ଦେଶ
ଅନ୍ୱେଷିଲେ ବହୁ ସାଧୁ ପଣ୍ଡିତଙ୍କ ପାଶ ।
ସରବେ ଗାଇଲେ ସେହି ଶାସ୍ତ୍ରର ବଚନ
ଅନୁଭବୀ ନୁହନ୍ତି ତ ତାର ତଥ୍ୟମାନ ।
ପାଶ୍ଚାତ୍ୟ ପଣ୍ଡିତେ ଦେବେ କାହୁଁ ସେ ଔଷଧି
ନିଜେ ହେଉଛନ୍ତି ସେହୁ ଯାହା ପାଇଁ ଧନ୍ଦ ।
ଏ ସମୟେ ଲୋଡ଼ା ଏକ ଏମନ୍ତ ପୁରୁଷ
ଯେ କରି ପାରିବ ଶାନ୍ତି-ସୁଧା ପରିବେଶ ।
ନିଜେ ସାଧି ଦେଖାଇବେ ନିଜ ଜୀବନରେ
ପ୍ରକୃତ ଶାନ୍ତି ମିଳିବ କେସନେ ସଂସାରେ ।
ଏତେ ଧର୍ମ ବା ମତର ଲୋଡ଼ା କି ନିମିତ୍ତ
ବିଧାତାର କି ଉଦ୍ଦେଶ୍ୟ ଏଥିରେ ନିହିତ ।
କିଏ ଶୁଣାଇବ ଆଣି ନବୀନ ବାରତା
ପ୍ରାଚ୍ୟ ପାଶ୍ଚାତ୍ୟର ଯହିଁ ଘଟିବ ଏକତା ।

ପ୍ରାଣର ଏ ହାହାକାର ଭେଦିଣ ଆକାଶ
ପ୍ରବେଶିଲା ବୈକୁଣ୍ଠରେ ବିଭୁଙ୍କର ପାଶ ।
ଅସ୍ଥ ରହି ନ ପାରିଣ ବ୍ରହ୍ମାଣ୍ଡ ଠାକୁର
ସ୍ଥିର କଲେ ମର୍ତ୍ତ୍ୟଧାମେ ଘେନିବେ ଶରୀର ।
ଯେ ଯୁଗେ ଉଠିଛି ଶୀର୍ଷେ ବିଜ୍ଞାନର ଶିକ୍ଷା
କି ଲାଭ ସେ ଯୁଗେ ଗାଇ ଶାସ୍ତ୍ରାଦିର ଦୀକ୍ଷା ।
ପାଞ୍ଚିଲେକ ନବ ପନ୍ଥା ଜଗତ ଗୋସାଇଁ
ଜନମିବେ ଏଥର ସେ ନିରକ୍ଷର ହୋଇ ।
ନିଜେ ସାଧି ଦେଖାଇବେ ବିଶ୍ୱବାସୀଠାରେ
ଏକ ହିଁ ସତ୍ୟ ନିହିତ ସକଳ ଧର୍ମରେ ।
ବିରୋଧ ନାହିଁ କାହାରି ସହିତ କାହାର
ଯେତେ ମତ ତେତେ ପଥ ବିଭୁ ଭଜିବାର ।
ନିଷ୍ଠା ସହକାରେ ଯେହୁ ଯେ ମାର୍ଗେ ଗମିବ
ଏକ ଲକ୍ଷ୍ୟସ୍ଥଳେ ଯାଇ ଉପନୀତ ହେବ ।
ଦେଶକାଳ ପାତ୍ର ଭେଦେ ଏହାର ସର୍ଜ୍ଜନ
ଯାହାର ଯହିଁରେ ରୁଚି କରୁ ତା ଗ୍ରହଣ ।
ଖ୍ରୀଷ୍ଟାନ ଯବନ ହିନ୍ଦୁ ବୌଦ୍ଧାଦି ସହିତେ
ସବେ ଭାଇ ଭାଇ ଦ୍ୱିଧା ନାହିଁ ତ କାହିଁତେ ।
ଅସାଧ୍ୟ ସାଧନମାନ ଯେତେ ସେ ସାଧିବେ
ବିଶ୍ୱବାସୀ ଦେଖିଣ ତା ଚମତ୍କୃତ ହେବେ ।
ଏକା ନ ଆସି ଏଥର ପ୍ରଭୁ ପରାତ୍ପର
ସଙ୍ଗତେ ଆଣିବେ ଏକ ମୁକ୍ତ ଯୋଗୀବର ।
ବହୁ କଠିନ ସାଧନ କରି ପୂର୍ବକାଳେ
ଯେଉଁ ସପ୍ତ ଋଷି ବ୍ରହ୍ମେ ଲୀନ ହୋଇଥିଲେ ।
ତାଙ୍କ ମଧ୍ୟରୁ ହିଁ ଜଣେ ଏ ମହା ପୁରୁଷ
ପୁଣି କାୟ ଧରିବେ ସେ ତାଙ୍କର ଆଦେଶ ।
ତାଙ୍କ ସାମ୍ୟବାର୍ତ୍ତା ବୋହି ଏହି ମହାଜନ
ଘଟାଇବେ ପ୍ରାଚ୍ୟ ପାଶ୍ଚାତ୍ୟର ସମ୍ମିଳନ ।
ଆଉ ସେ ଆଣିବେ ସଙ୍ଗେ ସାଙ୍ଗପାଙ୍ଗ ବହୁ
ନିତ୍ୟ ମୁକ୍ତ ବା ଈଶ୍ୱର କୋଟି ଶ୍ରେଣୀ ଯେହୁ ।
ଅବତରିଲେ କେସନ ବ୍ରହ୍ମାଣ୍ଡ କରତା
ସାଧୁଜନେ ଶୁଣ ସେହି ଅପୂର୍ବ ବାରତା ।
ବାରଣ ଏକବ୍ରାହ୍ମଣ ସନେ କ୍ଷୁଦ୍ରଗ୍ରାମ
ତୀର୍ଥ ପର୍ଯ୍ୟଟନ ପାଇଁ କଲେ ଯେ ଉଦ୍ୟମ ।
ଷାଠିଏ ବର୍ଷ ହେଲେ ହେଁ ବୟସ ତାଙ୍କର
ପଦବ୍ରଜେ ଯିବା ପାଇଁ ନୋହିଲେ କାତର ।

କାଶୀରେ ଦର୍ଶନ କରି କାଶୀ-ବିଶ୍ୱନାଥ
ଚୈତ୍ର ମାସେ ଗୟାଧାମେ ହେଲେ ଉପନୀତ ।
ଏ ମଧୁ ମାସରେ ପିଣ୍ଡ କଲେକ ପ୍ରଦାନ
ପିତୃପୁରୁଷେ ଲଭନ୍ତି ତୃପତି ଅସୀମ ।
ସର୍ବସ୍ଥାନେ ପିଣ୍ଡ ଦେଇ ଯଥା ନିୟମରେ
ଶେଷେ ଦେଲେ ଗଦାଧର ଜୀଉଙ୍କ ପାଦରେ ।
ପିତୃ ଋଣ ପରିଶୋଧ କରିଣ ଏମନ୍ତ
ହୃଦ ମଧ୍ୟେ ଭୁଞ୍ଜିଲେ ଯେ ଆନନ୍ଦ ଅତ୍ୟନ୍ତ ।
ନିର୍ବିଘ୍ନେ ଏ ଶୁଭ କର୍ମ ହେଲାରୁ ନିଷନ୍ନ
ବିଭୁପାଦେ କୃତଜ୍ଞତା କଲେକ ଜ୍ଞାପନ ।
ଏଥିଅନ୍ତେ ଗୃହେ ଫେରି ବିପ୍ର କ୍ଷୁଦିରାମ
ମହାସୁଖେ ସୁନିଦ୍ରାରେ ଘେନିଲେ ବିଶ୍ରାମ ।
କ୍ଷଣ ପରେ ଦେଖିଲେକ ଏକ ଦିବ୍ୟ ସ୍ୱପ୍ନ
ପୁଣି ଦେଉଛନ୍ତି ପିଣ୍ଡ ମନ୍ଦିରେ ଯେସନ ।
ପିତୃପୁରୁଷ ସରବେ ଜ୍ୟୋତିର୍ମୟ କାୟେ
କରୁଛନ୍ତି ତା ଗ୍ରହଣ ପ୍ରଫୁଲ୍ଲ ହୃଦୟେ ।
ବହୁକାଳ ପରେ ତାଙ୍କ ଦରଶନ ପାଇ
ରହି ନ ପାରିଲେ ବିପ୍ର ଆଉ ଅସ୍ଥ ହୋଇ ।
ଭକ୍ତି ଗଦଗଦ ଚିତ୍ତେ ଧାଇଁ ତାଙ୍କ ପାଶେ
ପାଦସ୍ପର୍ଶି ପ୍ରଣମିଲେ ଅତୀବ ଉଲ୍ଲାସେ ।
ଦେଖୁ ଦେଖୁ ଏକ ଦିବ୍ୟ ଜ୍ୟୋତିର୍ମୟାଲୋକେ
ଶ୍ରୀମନ୍ଦିର ଆଲୋକିତ ହୋଇଲା କ୍ଷଣକେ ।
ଦିବ୍ୟସିଂହାସନେ ଏକ ଜ୍ୟୋତିର୍ମୟ ଦେହୀ
ବସିଛନ୍ତି ସୁଖାସନେ ସୁପ୍ରସନ୍ନ ହୋଇ ।
ସେ ପିତୃପୁରୁଷେ ବେନି ପାର୍ଶ୍ୱରେ ତାଙ୍କର
ଉପାସନା କରୁଛନ୍ତି ଯୋଡ଼ି ବେନି କର ।
ନବ ଦୂର୍ବାଦଳ ତୁଲେ ଶ୍ୟାମବର୍ଣ୍ଣ ତନୁ
ତହିଁରୁ ବାହାରେ ଜ୍ୟୋତିଃ ଜିଣି ଶତଭାନୁ ।
ପ୍ରସନ୍ନ ବଦନେ ଦେବ ଇଙ୍ଗିତ ଦେଖାଇ
ବିପ୍ରଙ୍କୁ ଡାକିଲେ ତାଙ୍କ ପାଶେ ଯିବାପାଇଁ ।
ସେ ଅପୂର୍ବ ମନୋରମ ମୂରତି ଦର୍ଶନେ
ଜ୍ଞାନ ନ ରହିଲା ଚିତ୍ତେ କିଞ୍ଚିତ ପ୍ରମାଣେ ।
ଯନ୍ତ୍ରରେ ଚାଳିତ ଏକ ପୁତ୍ତଳିକା ସମ
ଦେବ ପାଶେ ପ୍ରବେଶିଲେ ଦ୍ୱିଜ କ୍ଷୁଦିରାମ ।
ପଦ୍ମପାଦେ ପ୍ରଣମିଣ ଭକ୍ତି ସହକାରେ
ସ୍ତବ ସ୍ତୁତି ଗାନ କଲେ ଅନେକ ପ୍ରକାରେ ।

ସେ ଦେବପୁରୁଷ ତହୁଁ ସହାସ୍ୟ ବଦନେ
ବିପ୍ରଙ୍କୁ ବୋଇଲେ ମିଠା ବିନନ୍ଦିତ ସ୍ୱନେ ।
ଶୁଣ ଆହେ କ୍ଷୁଦିରାମ ! ବଚନ ମୋହର
ଅତୀବ ସନ୍ତୁଷ୍ଟ ମୁହିଁ ଭକ୍ତିରେ ତୁମ୍ଭର ।
ପୁତ୍ରରୂପେ ତବ ଗୃହେ ହୋଇ ଅବତୀର୍ଣ୍ଣ
ବାସନା, ତୁମ୍ଭର ସେବା କରିବି ଗ୍ରହଣ ।
ଶ୍ରୀମୁଖ ବଚନ ଶୁଣି ବିପ୍ରବରଙ୍କର
ହୃଦୟେ ଖେଳିଲା ମହାନନ୍ଦ ପାରାବାର ।
ଗୋଲୋକ-ବିହାରୀ ହରି ଜନ୍ମିବେ ସଦନେ
ଯାଙ୍କୁ ବଳିଣ ସୌଭାଗ୍ୟ ଅଛି କି ଭୁବନେ ?
ବିଷାଦର ଛାୟା ଏକ ପର ମୁହୂର୍ତ୍ତିରେ
ଉଦିତ ହୋଇଲା ପୁଣି ହୃଦ-ଆକାଶରେ ।—
ମୁହିଁ ତ ଦରିଦ୍ର ଅତି ସମ୍ବଳବିହୀନ
କାହିଁ ରଖିବି, ପୂଜିବି କି ଅବା ଦେଇଣ ।
ଏମନ୍ତ ଭାଳିଣ ବିପ୍ର ବିଷାଦ ବଦନେ
କାନ୍ଦି କାନ୍ଦି ଜଣାଇଲେ ଦେବଙ୍କ ଚରଣେ ।
ହେ ପ୍ରଭୁ ଅନନ୍ତଦେବ ବ୍ରହ୍ମାଣ୍ଡର ନାଥ !
ତବ ପୁଣ୍ୟ ଦରଶନେ ହୋଇଛୁ କୃତାର୍ଥ ।
ତା ସଙ୍ଗେ ପ୍ରକାଶ କଲେ ଯେଉଁ ଅଭିପ୍ରାୟ
ଏ ଦୀନ ପକ୍ଷେ ଯଥେଷ୍ଟ ତାହା ଦୟାମୟ !
ସତ୍ୟ ସତ୍ୟ ଜନମିବେ ଯଦି ପୁତ୍ର ହୋଇ
ହସ୍ତରେ ନାହିଁ ତ ଧନ ତବ ସେବା ପାଇଁ ।
ଏସନ କରୁଣ ବାଣୀ ଶୁଣି ବିପ୍ରଙ୍କର
ଆଶ୍ୱାସି କହିଲେ ଦେବ କରୁଣା-ସାଗର ।
'ଭୟ ନ କର କିଞ୍ଚିତ ହେ ବିପ୍ର-ନନ୍ଦନ
ଶ୍ରଦ୍ଧା ସହ ତୁମ୍ଭେ ଯାହା କରିବ ଅର୍ପଣ ।
ଗ୍ରହଣ କରିବି ତାହା ସନ୍ତୋଷ ସହିତ
ଭାବନା ନ କର ତୁମ୍ଭେ ତା ପାଇଁ କିଞ୍ଚିତ ।
ପରିପୂର୍ଣ୍ଣ କରିବାକୁ ମୋର ଅଭିଳାଷ
ଓଜର ଆପତ୍ତି ଆଉ ନ କର ବିଶେଷ ।'
ଏସନ ଆଦେଶ ଶୁଣି ଦେବରାୟଙ୍କର
ବଚନ ସ୍ଫୁରିଲା ନାହିଁ ବିପ୍ରବରଙ୍କର ।
ବିଷାଦ ଆନନ୍ଦ ବିପରୀତ ଭାବଦ୍ୱୟ
ଯୁଗପତ ହୃଦୟରେ ହେଲା ଅଭ୍ୟୁଦୟ ।
ନିଦ୍ରା ଭାଙ୍ଗି ଦ୍ୱିଜବର ଉଠିଲେ ଚମକି
ଭାଳିଲେ ଏ ଭଳି ସ୍ୱପ୍ନ ଦେଖିଲି କାହିଁକି ।

ସତ୍ୟ ବା ଅଲୀକ ଏହା ବୁଝି ନ ପାରଇ
ଦେବସ୍ୱପ୍ନ କେତେବେଳେ ମିଥ୍ୟା ନ ହୁଅଇ ।
କୌଣସି ମହାପୁରୁଷ ଜନ୍ମିବେ ନିଶ୍ଚୟ
ଏଥିରେ ନାହିଁ ତ ଅଣୁ-ପ୍ରମାଣ ସଂଶୟ ।
ଦ୍ୱିଜ କ୍ଷୁଦିରାମ ସ୍ଥିର କରିଣ ଏସନ
ଫଳାଫଳ ପ୍ରତୀକ୍ଷାରେ ରହିଲେ ମଉନ ।
ଅତିବାହି କିଛୁ ଦିନ ସେହି ପୁଣ୍ୟସ୍ଥଳେ
ଆପଣା ସଦନେ ବୈଶାଖରେ ବାହୁଡ଼ିଲେ ।
ଏଣେ ଗ୍ରାମେ ତାହାଙ୍କର ନ ଥିବା ସମୟେ
ଅଦ୍ଭୁତ ଘଟଣାମାନ ଘଟିଲା ଆଲୟେ ।
ଦିନକରେ ଚନ୍ଦ୍ରାଦେବୀ ଦ୍ୱାର ରୁଦ୍ଧ କରି
ସୁଖେ ନିଦ୍ରା ଯାଇଥିଲେ ସଦନେ ତାଙ୍କର ।
ସ୍ୱପ୍ନରେ ଦେଖିଲେ ଏକ ଅଦ୍ଭୁତ ପୁରୁଷ—
ଯାହାଙ୍କ ଅଙ୍ଗରୁ ଦିବ୍ୟ ଜ୍ୟୋତି ପରକାଶ—
କରିଛନ୍ତି ତାହାଙ୍କର ଶଯ୍ୟା ଅଧିକାର
ନିଦ୍ରା ତେଜି ଚନ୍ଦ୍ରାଦେବୀ ଭୟରେ କାତର ।
"ଶୋଇଥିଲି ଗୃହେ ମୁହିଁ ଦ୍ୱାର କିଳି ଦେଇ
କିପରି ପଶିଲା ଏହୁ ବୁଝି ନ ପାରଇ ।"
ପ୍ରଦୀପ ଜାଳିଲେ ଉଠି ହୋଇ ବିସ୍ମିତ
ନ ପାଇଲେ କାହାରିକୁ ଖୋଜିଣ ବହୁତ ।
ଭୟ ହେତୁ ନିଦ୍ରା ଆଉ ନୋହିଲା ତାଙ୍କର
ପ୍ରଭାତ ହେଲାରୁ ଗଲେ ପଡ଼ୋଶୀଙ୍କ ଘର ।
ତାଙ୍କ ପାଶେ କହିଲାରୁ ସ୍ୱପ୍ନର ବୃତ୍ତାନ୍ତ
ସେ ସର୍ବେ ପ୍ରବୋଧ ଦେଇ କଲେକ ଆଶ୍ୱସ୍ତ ।
ସ୍ୱପ୍ନ ବିନୁ ଏ ଘଟଣା ନୁହଇ ତ ଆନ
କିପାଇଁ ହେଉଛ ତୁମ୍ଭେ ଭୀତ ଅକାରଣ ।
ଗୃହ ପାଶେ ଥିଲା ଏକ ଶିବଙ୍କ ମନ୍ଦିର
ତହିଁ ଘଟିଲା ଆରେକ ଅଦ୍ଭୁତ ବ୍ୟାପାର ।
ଚନ୍ଦ୍ରାଦେବୀ ଠିଆ ହୋଇ ମନ୍ଦିର ଆଗରେ
ଧନୀ କମାରୁଣୀ ସଙ୍ଗେ କଥା କହୁଥିଲେ ।
ଶିବଲିଙ୍ଗରୁ ବାହାରି ଦିବ୍ୟ ଜ୍ୟୋତିରାଶି
ପୂର୍ଣ୍ଣ କଲା ଶ୍ରୀମନ୍ଦିର ଶୋଭା ପରକାଶି ।
ଘୂର୍ଣ୍ଣି ଘୂର୍ଣ୍ଣି ଧରିଣ ତା ତରଙ୍ଗ ଆକାର
ବାୟୁବେଗେ ପ୍ରଧାବିତ ସମୀପେ ତାଙ୍କର ।
ଚଉଦିଗେ ବେଢ଼ିଯାଇ ନିମିଷେ ମଧ୍ୟରେ
ପ୍ରବେଶିଲା ଦେହ ମଧ୍ୟେ ପ୍ରବଳ ବେଗରେ ।

ଭୟରେ ମୂର୍ଚ୍ଛିତା ଚନ୍ଦ୍ରା ପଡ଼ିଲେ ଭୂତଳେ
ଶୁଶ୍ରୂଷା କରିଣ ଧନୀ ଚେତନା ଆଣିଲେ ।
ତା ଅଗ୍ରତେ କହିଲାରୁ ମୂର୍ଚ୍ଛାର କାରଣ
ସେ କହିଲା "ବାୟୁ ବ୍ୟାଧି ବିନୁ ନୁହେ ଆନ ।"
ସେ ଦିବସୁ ଅନୁଭୂତ ହୋଇଲା ତାଙ୍କର
ସେହି ଜ୍ୟୋତିଃ ଅଛୁ ଯେହ୍ନେ ଉଦର ଭିତର ।
ପ୍ରସନ୍ନା ନାମରେ ତାଙ୍କ ଆରେକ ସଙ୍ଗିନୀ
ତାହା ପାଶେ ଫେଡ଼ିଲାରୁ ସେହି କଥା ପୁଣି,
ହସି ହସି ଉତ୍ତର କଲା ସେ ଅନେକ
ବୋଇଲା "ନ କହ ଏହା ଆଉ କାହା ପାଖ ।
ମନର ବିଭ୍ରମ ଅବା ବାୟୁ ପ୍ରକୋପରେ
ଅନୁମାନ ମୋର ଏହା ମଧ ଘଟିପାରେ ।
ଲୋକେ ନ ବୁଝି ପ୍ରକୃତ ମରମ ଏହାର
ନାନା କଥା ରଚିବେ ଯେ ନାମରେ ତୁମ୍ଭର ।"
ସଙ୍ଗିନୀ ପାଶୁ ଏମନ୍ତ ହିତ କଥା ଶୁଣି
ନିରସ୍ତ ରହିଲେ ଏବେ ଦେବୀ ଚନ୍ଦ୍ରମଣି ।
ତୀର୍ଥ ପରିଭ୍ରମି ସ୍ୱାମୀ ଫେରିଲେ ଯେ କାଳେ
ସମସ୍ତ ବିଷୟ ତାଙ୍କ ପାଶେ ନିବେଦିଲେ ।
ଯାହା ଯାହା ଘଟିଥିଲା ଯେଉଁ ଯେଉଁ ଦିନ
ବିଶେଷ ବିବୃତ ତାର କଲେକ ପ୍ରଦାନ ।
"ଆବର ପୁଛିଲେ ଏଥେ ତୁମ୍ଭର କି ମତ
ବାୟୁ ପ୍ରକୋପେ କି ଏହି ବ୍ୟାଧି ଉପସ୍ଥିତ ?
କିମ୍ବା କୌଣସି ଦେବଙ୍କ ବିଶେଷ କୃପାରେ
ଦେଖିଲି ସେ ଦୃଶ୍ୟମାନ ଏ ନେତ୍ର ପଟରେ ।
ଯାହାହେଉ କିନ୍ତୁ ଶୁଣ ପ୍ରାଣେଶ ! ମୋହର
ଅନୁଭବ କରେଁ ଯେହ୍ନେ ଗର୍ଭର ସଞ୍ଚାର ।"
ପତ୍ନୀ ମୁଖୁ ଶୁଣିଣ ଏ ଅଦ୍ଭୁତ ବାରତା
ଦ୍ୱିଜ ମନେ ସମୁଦିତ ନିଜ ସ୍ୱପ୍ନ କଥା ।
"ନିଶ୍ଚୟ କୌଣସି ଦେବ ଘେନିବେ ଜନମ
ଏଥିରେ ସନ୍ଦେହ ନାହିଁ କିଞ୍ଚିତ ପ୍ରମାଣ ।
ଏ ସକଳ ଅଟଇ ଯେ ଏହାର ସୂଚନା
ଚିତ୍ତରୁ ବରଜ ତୁମ୍ଭେ ଅଯଥା ଭାବନା ।
ମୁଁ ମଧ ଦେଖିଛି ଏକ ସ୍ୱପ୍ନ ଗୟାଧାମେ
ଜନ୍ମିବେ ଶ୍ରୀ ଗଦାଧର ଆମ୍ଭର ଭବନେ ।
ଏ ବୟସେ ସୁତ ମୁଖ ଦେଖିବୁଁ ଯେ ପୁନଃ
ଇଷ୍ଟଦେବେ ଶ୍ରଦ୍ଧା ଭକ୍ତି ରଖ ଅନୁକ୍ଷଣ ।

ଅଦ୍ଭୁତ ଘଟନା କେତେ ଘଟିବ ଆବର
ବର୍ଣ୍ଣିତ ହେବ ନାହିଁ ତହିଁ ଯେ ପ୍ରକାର ।
ମୋ ବିନୁ କେବେ ହେଁ ଅନ୍ୟ କାହାର ଅଗ୍ରତେ
ପ୍ରକାଶିବ ନାହିଁ ଏହା କଉଣସି ମତେ ।
କୃପା କରି ଦେଖାଇବେ ଯାହା ରଘୁବୀର
ସେଥିରେ ନିଶ୍ଚୟ ହେବ କଲ୍ୟାଣ ଆମ୍ଭର ।"
ପତିଙ୍କଠୁଁ ପାଇଣ ଏ ଆଶ୍ୱାସ ବଚନ
ରଘୁବୀରଙ୍କ ଚରଣେ ଢାଳିଦେଲେ ମନ ।
କ୍ରମେ କ୍ରମେ ଦିନ ଯେତେ ହୋଇଲା ଅତୀତ
ଗର୍ଭର ଲକ୍ଷଣମାନ ଅଙ୍ଗେ ପ୍ରକଟିତ ।
ରୂପର ଲାବଣ୍ୟ ଛଟା ବୃଦ୍ଧିପାଇ ଧୀରେ
କାନ୍ତି ଦେଖି ଭ୍ରାନ୍ତ ପ୍ରତିବେଶୀଙ୍କ ଅନ୍ତରେ ।
ପଞ୍ଚାଳିଶ ବରଷରେ ବୃଦ୍ଧା ଗର୍ଭବତୀ
ପ୍ରାଣରେ ସଂଶୟ ଭାବି ସର୍ବେ ଭୀତ ଅତି ।
ଗର୍ଭକାଳର ବିବୃତ୍ତି ଅପୂର୍ବ କଥନ
ଆଶ୍ଚର୍ଯ୍ୟ ହୋଇବେ ଶୁଣି ବିଶ୍ୱବାସୀ ଜନ ।
କେତେ କେତେ ଦେବ ଆସି ଏବେ ଦେଖାଦେଲେ
ଛବିରେ ବି ଦେଖାନାହିଁ ତାହା କେତେବେଳେ ।
ନବ ନବ ରୂପ ଆଉ ନବ ଆଭରଣ
ଯାଦେଖି ଝଲସିଯାଏ ଚନ୍ଦ୍ରାଙ୍କ ଲୋଚନ ।
ଗୃହ ମଧ୍ୟେ ହେଉଥାନ୍ତି ସର୍ବେ ଆତଯାତ
ପରକ୍ଷଣେ ଉଭେଯାଇ ବାୟୁରେ ମିଶ୍ରିତ ।
କେବେ କେବେ କାହୁଁ ଆସି ଦିବ୍ୟଜ୍ୟୋତିରାଶି
ଆଲୋକିତ କରେ ଗୃହ କିରଣେ ବିକାଶି ।
କେବେ ବା ଚନ୍ଦନ ଗନ୍ଧେ ଗୃହ ସୁବାସିତ
ଚନ୍ଦନ କାଷ୍ଠରେ ଯେସନେ ହୋଇଛି ନିର୍ମିତ ।
କେତେବେଳେ ଅପୂରୁବ ପୁଷ୍ପ ସୌରଭରେ
ଆମୋଦିତ ଗୃହମାନ ମୁହୂର୍ତ୍ତ ମଧ୍ୟରେ ।
ଶୋଇଥିଲେ ଚନ୍ଦ୍ରା ଦିନେ ଆପଣା ଭବନେ
ମଧୁର ନୂପୁର ଧ୍ୱନି ଶୁଣିଲେ ସେ ଶୂନ୍ୟେ ।
କୌତୂହଳୀ ହୋଇ କର୍ଣ୍ଣ ଡେରିଲେ ସେ ଯେତେ
ଶୁଣିଲେ ନୂପୁର ଧ୍ୱନି ଘନ ଘନ ତେତେ ।
କାରଣ ନ ଜାଣି ଚନ୍ଦ୍ରା ଭାଳିଲେ ମାନସେ
ଗୃହରେ ନୂପୁର ଧ୍ୱନି କେଉଁଠାରୁ ଆସେ ।
ଦ୍ୱାର ରୁଦ୍ଧ କରି ମୁଁ ଯେ ଶୋଇଥିଲି ଘରେ
କେହି କି ପଶିଲା ଆସି ମୋର ଅଗୋଚରେ ।
ଅନ୍ୱେଷିଲେ ଚତୁର୍ଦ୍ଦିଗ କବାଟ ଖୋଲିଣ
ଜନପ୍ରାଣୀ କାହାକୁ ସେ ନ କଲେ ଦର୍ଶନ ।
ନିଦ୍ରାବଶେ ଆଉ ଦିନେ ଦେଖିଲେ ସ୍ୱପନ
କ୍ଷୁଦ୍ର ଶିଶୁଟିଏ ବକ୍ଷେ କଲା ଆରୋହଣ ।
ଧୀରେ ଧୀରେ ଉଠି ବେକ ଛନ୍ଦିଲା ତା କରେ
ଜିଣି ଶଶୀ-ରୂପରାଶି ସହାସ୍ୟ ଅଧରେ ।
କେତେ କଥା କହିଣ ସେ ଅସ୍ପଷ୍ଟ ବଚନେ
ନିମିଷେ ବକ୍ଷରୁ ଖସି ମିଶିଗଲା ଶୂନ୍ୟେ ।
ଚମକି ପଡ଼ିଣ ଚନ୍ଦ୍ରା ଶଯ୍ୟାରୁ ଉଠିଲେ
'କାହିଁଗଲୁ ଧନ' କହି ବହୁତ କାନ୍ଦିଲେ ।
ସତ୍ୟ ନୁହେଁ, ସ୍ୱପ୍ନ ଏହା ଭାଳି ଅତଃପର
ଅଶ୍ରୁନୀର ସମ୍ବରଣ କଲେ ଆପଣାର ।
ହଂସାରୂଢ଼ ହୋଇ ଏକ ଦେବ ଦିନକରେ
ଉପସ୍ଥିତ ହେଲେ ପାଶେ ଦିବା ଦ୍ୱିପ୍ରହରେ ।
ପ୍ରଚଣ୍ଡ ମାର୍ତ୍ତଣ୍ଡ ତାପେ ବଦନ ମଣ୍ଡଳ
ଆରକ୍ତ ଦେଖିଣ ଚନ୍ଦ୍ରା ଅତ୍ୟନ୍ତ ବ୍ୟାକୁଳ ।
ସମ୍ବୋଧି କହିଲେ ତାଙ୍କୁ "ଆରେ ବାଇଧନ !
ପ୍ରଖର କିରଣ କାଳେ ଶୁଷ୍କ ତୋ ବଦନ ।
ଦରିଦ୍ର ଅଟଇ ମୁହିଁ ନାହିଁ ତ ସମ୍ବଳ
ଗୃହରେ ପଖାଳ ଭାତ ଅଛଇ କେବଳ ।
ଗଣ୍ଡିଏ ସେଥିରୁ ଦଇଁ ଖାଇ ଯା'ରେ ଧନ !
ସୁଶୀତଳ ହେଉ ତୋର ତାପିତ ପରାଣ ।"
ଏସନ ଶୁଣିଣ ଦେବ ସହାସ୍ୟ ବଦନେ
ଗୃହୁଁ ଗୃହୁଁ ବାୟୁ ସଙ୍ଗେ ମିଶିଗଲେ କ୍ଷଣେ ।
ଏପରି ବହୁତ ଦେବ ଦେଲେ ଦରଶନ
ପ୍ରତ୍ୟକ୍ଷ ଘଟନା ସବୁ ନୁହଇ ସ୍ୱପନ ।
ଏସନେ ଆସିଣ ବହୁ ଦେବ ସଂସ୍ପର୍ଶରେ
ତାର ପ୍ରଭାବ ପଡ଼ିଲା ତାଙ୍କ ସ୍ୱଭାବରେ ।
ଅପତ୍ୟ ସ୍ନେହର ଯେସନେ ବହିଗଲା ସ୍ରୋତ
ନ ରହିଲା ଭଲମନ୍ଦ ବିଚାର କିଞ୍ଚିତ ।
ପଡ଼ାପଡ଼ୋଶୀ ଅତିଥି କିମ୍ବା ଅଭ୍ୟାଗତ
ଯେ କେହି ଆଇଲା ତହୁଁ ନୋହିଲେ ବଞ୍ଚିତ ।
କ୍ରମେ କ୍ରମେ ବୃଦ୍ଧି ପାଇ ପରପର ତାର
ଦେବଦେବୀଙ୍କୁ ମଣିଲେ ଅତି ଆପଣାର ।
ନ ପୂଜିଲେ ତାଙ୍କୁ ଆଉ ଶ୍ରଦ୍ଧା ଭକ୍ତି ଭୟେ
ମାତୃସ୍ନେହେ ସେବିଲେ ସେ ସକଳ ହୃଦୟେ ।

ଏ ପ୍ରକାରେ ଦଶମାସ କ୍ରମଶଃ ଅତୀତ
ପ୍ରସବ ସମୟ ଆସି ହେଲା ଉପସ୍ଥିତ ।
ପତିଙ୍କୁ କହିଲେ ବିପ୍ରା "ଦେହ ଅବସନ୍ନ
ପ୍ରସବ ସୂଚନା ଏହା ମୋର ଅନୁମାନ ।
ରନ୍ଧନ କାର୍ଯ୍ୟ ତ ମୋର ହୋଇ ନାହିଁ ଶେଷ
କି ଉପାୟ ଉଠିଲେକ ବେଦନା ବିଶେଷ ।
ଭୋଗ ପାଇଁ କିଏ ଅନ୍ନ କରିବ ରନ୍ଧନ
ଏଥିକୁ ଯା ପ୍ରତିକାର କର ଉଦ୍ଭାବନ ।"
ଆଶ୍ୱାସନା ଦେଇ ପତି କହିଲେ ଉତ୍ତରେ
"ଚିନ୍ତିତ ନ ହୁଅ ତୁମ୍ଭେ କୌଣସି ପ୍ରକାରେ ।
ତୁମ୍ଭର ଗର୍ଭରେ ଯାଙ୍କ ଶୁଭ ଆଗମନ
ପୂଜାରେ ସେ ନ କରିବେ ବିଘ୍ନ ଉତ୍ପାଦନ ।
ନିର୍ଭୟେ ରନ୍ଧନ କାର୍ଯ୍ୟ ଆଜି ତୁମ୍ଭେ କର
କାଲିକି କରିବି ଅନ୍ୟ ବ୍ୟବସ୍ଥା ତାହାର ।"
ସତ୍ୟ ସତ୍ୟ ଋଷିଙ୍କର ମହିମା ଏସନ
ସେ ଦିନର ସେବା କାର୍ଯ୍ୟ ନିର୍ବିଘ୍ନେ ସମ୍ପନ୍ନ ।
ରାତ୍ରି ଅବସାନେ ହେଲା ପ୍ରସବ ବେଦନା
ଅନ୍ୟ ଘର ନ ଥିବାରୁ ଢେଙ୍କିଶାଳ ବିନା ।
ସୂତିକାଗାରରେ ତାହା ହେଲା ପରିଣତ
ଧାନଉଷା ପାଇଁ ଯହିଁ ଚୁଲ୍ଲୀ ଅବସ୍ଥିତ ।
ଶରତ ହେମନ୍ତ ଶୀତ ଏବେ ଅବସାନ
ଋତୁରାଜ ବସନ୍ତର ସଦ୍ୟ ଆଗମନ ।
ପଶୁପକ୍ଷୀ ତରୁଲତା ଗୁଳ୍ମାଦି ସକଳ
ପାଇଲେ ନବ ଜୀବନ ଆଉ ନବ ବଳ ।
ହାସ୍ୟମୟୀ ବସୁନ୍ଧରା ନବ ବଧୂ ବେଶେ
ବିଶ୍ୱପତିଙ୍କ ସ୍ୱରୂପ ଦର୍ଶନାଭିଳାଷେ ।
ବିବିଧ ସୁଗନ୍ଧ ପୁଷ୍ପ ଅର୍ଘ୍ୟ ଡାଲା ନେଇ
ସତୃଷ୍ଣେ ରହିଲା ଚାହିଁ ସୁମୁହୂର୍ତ୍ତ ପାଇଁ ।
ବାରଶତ ବୟାଳିଶ ଷଷ୍ଠ ଫାଲଗୁନ
ଶୁକ୍ଳପକ୍ଷର ଦ୍ୱିତୀୟା ବୁଧବାର ଦିନ ।
ପୂର୍ବ ଭାଦ୍ର ନକ୍ଷତ୍ରେ ଶୁଭ ଚନ୍ଦ୍ର ଥାଇ
ଶୁକ୍ର, ଶନି, ମଙ୍ଗଳ ଯେ ତୁଙ୍ଗ ସ୍ଥାନେ ରହି ।
ବକ୍ରୀ ହୋଇ ବୃହସ୍ପତି ବସି କର୍କଟରେ
ରାହୁକେତୁ ରହିଛନ୍ତି ବୃଷ ବୃଶ୍ଚିକରେ ।
ରବି, ବୁଧ, ଚନ୍ଦ୍ର, କୁମ୍ଭ ଲଗ୍ନେ ସମାବେଶ
ବ୍ରାହ୍ମ ମୁହୂର୍ତ୍ତେ ଜନ୍ମିଲେ ପ୍ରଭୁ ପରମେଶ ।

ଜନ୍ମ ମାତ୍ରେ ଦେବଙ୍କର ଲୀଳାର ସୂଚନା
ଶୁଣ ଆରେ ମନ ସେହି ଆଶ୍ଚର୍ଯ୍ୟ ଘଟଣା ।
ଧାତ୍ରୀ କାର୍ଯ୍ୟରେ ନିଯୁକ୍ତା ଧନୀ କମାରୁଣୀ
ପ୍ରସୂତ ସାନ୍ତ୍ୱନ କରି ରଖିଣ ତକ୍ଷଣି ।
ଜାତକକୁ ଅତଃପର ପରିଷ୍କାର ପାଇଁ
ଖୋଜି ନ ପାଇଲା ଆଉ ରଖିଥିଲା ଯହିଁ ।
ଭୟେ ତ୍ରସ୍ତ ହୋଇ ତହୁଁ ପ୍ରଦୀପ ଘେନିଣ
ଚଉଦିଗେ ଶିଶୁକୁ ସେ କଲା ଅନ୍ୱେଷଣ ।
ଅବଶେଷେ ଧାନଉଷା ଚୁଲ୍ଲୀର ଭିତରେ
ଶିଶୁକୁ ଦେଖିଲା ଶୋଇଅଛି ନିର୍ବିକାରେ ।
ଭସ୍ମେ ଆଚ୍ଛାଦିତ ତନୁ ମୁଖେ ନାହିଁ ରାବ
ସୂଚିଏ ଯା' ଭବିଷ୍ୟତେ ମହାତ୍ୟାଗ ଭାବ ।
ଅତି ପ୍ରିୟ ଦରଶନ ବଦନ ମଣ୍ଡଳ
ସୁସୌଷ୍ଠବ ଯୁକ୍ତ ଅଙ୍ଗପ୍ରତ୍ୟଙ୍ଗ ସକଳ ।
ଷଷ୍ଠମାସ ଶିଶୁ ସମ ସୁଦୀର୍ଘ ଆକାର
ସମୁଜ୍ଜ୍ୱଳ ଗାତ୍ରବର୍ଣ୍ଣ ଜିଣି ଶଶଧର ।
ଧନୀ ଡାକିଲାକ ତହୁଁ ଦ୍ୱିଜ ଖୁଦିରାମେ
"କି ସୁନ୍ଦର ଶିଶୁ ଆସି ଦେଖନ୍ତୁ ଆପଣେ ।"
ତ୍ୱରିତ ଆସିଣ ବିପ୍ର କଲେ ନିରୀକ୍ଷଣ
ଦିବ୍ୟ ଅଙ୍ଗେ ସୁଶୋଭିତ ସୁଲକ୍ଷଣମାନ ।
ପୁଲକେ ପୂରିଲା ଚିତ୍ତ ଗଦଗଦ ସ୍ୱର
ହୃଦୟେ ଜାତ ଅପୂର୍ବ ସୁଖ ପାରାବାର ।
ଜନମ ବାରତା ପାଇ ପ୍ରତିବେଶୀଗଣ
ଦରଶନ ଆଶେ ଦଳେ ଦଳେ ଧାବମାନ ।
ହୁଳହୁଳି ଶଙ୍ଖନାଦ ଉଠିଣ ଗଗନେ
ପ୍ରଚାରିଲା ଜନ୍ମବାର୍ତ୍ତା ସାରା ବିଶ୍ୱ ଜନେ ।
ଶୁଣିଣ ଏ ଅପୂରୁବ ଜନ୍ମ ବିବରଣ
ଆରେ ମନ ! କିପାଁ ତୁହି ହେଉ ସନ୍ଦିହାନ ।
ଏ ସମ୍ବନ୍ଧେ ଶାସ୍ତ୍ରାଦିର ପ୍ରମାଣ ଅଛଇ
ସଂକ୍ଷେପେ କହୁଛି ତୋର ଅବଗତି ପାଇଁ ।
ଭକ୍ତରେ ଭୁଞ୍ଜିଣ ଯଜ୍ଞ-ଅବଶିଷ୍ଟ ଚରୁ
ରାମଚନ୍ଦ୍ର ଜନମିଲେ କୌଶଲ୍ୟା ଉଦରୁ ।
ଦେବକୀ ଉଦରେ କୃଷ୍ଣ ପ୍ରବେଶିବା ବେଳେ
ଷଡ଼ୈଶ୍ୱର୍ଯ୍ୟ ମୂର୍ତ୍ତି ମାତା ଅନୁଭବ କଲେ ।
ଜନନୀ ଜଠରେ ବୁଦ୍ଧ ପଶିଲେ ଯେ କାଳେ
ଜ୍ୟୋତିର୍ମୟ ଶ୍ୱେତହସ୍ତୀ ରୂପ ଧରିଥିଲେ ।

ଶଙ୍କର ଜନନୀ ଯେବେ ହେଲେ ଗର୍ଭବତୀ
ଦିବ୍ୟରୂପେ ଦେଖାଦେଲେ ଦେବ ପଶୁପତି ।
ଶ୍ରୀଚୈତନ୍ୟ ଯେତେବେଳେ ଅବତୀର୍ଣ୍ଣ ହେଲେ
ଆଶ୍ଚର୍ଯ୍ୟ ଘଟଣା କେତେ ଜନନୀ ଦେଖିଲେ ।
ପାଶ୍ଚାତ୍ୟ ଦେଶର ଇଷ୍ଟ ଯୀଶୁ ମହାମନା
ତାଙ୍କ ଜନ୍ମକଥା ଏକ ଅଦ୍ଭୁତ ଘଟଣା ।
ବିବାହ ପୂର୍ବରୁ ମେରୀ ଯୀଶୁଙ୍କ ଜନନୀ
ଦିବ୍ୟଭାବାବେଶେ ହେଲେ ଗରଭଧାରଣୀ ।

ମର୍ତ୍ତ୍ୟେ ଅବତୀର୍ଣ୍ଣ ହୋନ୍ତି ବିଭୁ ଯେତେବେଳେ
ଅଲୌକିକ ଭାବେ ତାଙ୍କ ଜନ୍ମ କାଳେ କାଳେ ।
ବିଶ୍ୱାସ କର ନ କର ଆରେ ବାୟା ମନ
ପ୍ରଭୁଙ୍କର ଜନ୍ମକଥା ଶ୍ରୀମୁଖ ବଚନ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ନ ରହିବ ଶୋକ ଦୁଃଖ ସଂସାର କଷଣ
ପରମ ଆଶ୍ରୟ ଏବେ ପ୍ରଭୁ ଭଗବାନ ।

---

# ତୃତୀୟ ଅଧ୍ୟାୟ

## ଅନ୍ନପ୍ରାଶନ ଓ ନାମକରଣ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ନରଦେହ ଧରି ଯେବେ ପ୍ରଭୁ ଭଗବାନ
ମର୍ତ୍ତ୍ୟକୁ ଆସନ୍ତି ପ୍ରାଣୀ କଲ୍ୟାଣ କାରଣ ।
ଜାଣି ଜାଣି ନ ପାରନ୍ତି ଜନକ ଜନନୀ
ମାୟାମୋହେ ମୁଗ୍ଧ ଯେଣୁ ଦିବସ ରଜନୀ ।
ଶଶିକଳା ବୃଦ୍ଧି ପାଏ ଯେହ୍ନେ ଦିନେ ଦିନେ
ଶିଶୁ ଗଦାଧର ଗୃହେ ବଢ଼ିଲେ ତେସନେ ।
ରୂପର ଲାବଣ୍ୟ ଦେଖି ପ୍ରତିବେଶୀଗଣ
ଭୁଲିଯାନ୍ତି ଆପଣାର ସନ୍ତତିସନ୍ତାନ ।
ନିଜ ଗୃହ କର୍ମ ତରବରେ ସାରିଦେଇ
ବିପ୍ରଙ୍କ ସଦନେ ସର୍ବେ ଆସନ୍ତି ଯେ ଧାଇଁ ।
ଶିଶୁକୁ ଘେନିଣ କୋଳେ ଆନନ୍ଦେ ଅପାର
ଛାଡ଼ିବାକୁ ମନ ଆଉ ନ ବଳେ କାହାର ।
ମୋହିନୀ ମାୟାରେ ସର୍ବେ ହୋଇ ଆକର୍ଷିତ
ନିତି ନିତି ବହୁ ଲୋକ ଗୃହେ ସମବେତ ।
ଶିଶୁକୁ ଧରିଣ ଗେଲ କରି ନାନାମତେ
ଯେ ଯା ଘରେ ବାହୁଡ଼ନ୍ତି ସନ୍ଧ୍ୟା ସମାଗତେ ।
ନନ୍ଦଙ୍କ ଆବାସ ଭୁଲେ ବିପ୍ରଙ୍କ ସଦନେ
ବହିଲା ଆନନ୍ଦସ୍ରୋତ ନିରତ ଏସନେ ।

ରଙ୍ଗପ୍ରିୟ ମହାପ୍ରଭୁ କରୁଣା ସାଗର
ତାଙ୍କ ରଙ୍ଗ ଗୁଣଗାଥା ଭୁବନେ ଅପାର ।
କେତେ ରଙ୍ଗ କଲେ ପ୍ରଭୁ ଜନନୀ ସହିତେ
ଶୁଣ ଏବେ ସେ କାହାଣୀ ଅବହିତ ଚିତ୍ତେ ।
ଶିଶୁକୁ ଶୁଆଇ କୋଳେ ମାତା ଦିନକରେ
ଖଇ ପୋହୁଁ ଥିଲେ ସୁଖେ ବସି ଅଗଣାରେ ।
ଶିଶୁଟି ସହସା ହେଲା ଏତେ ବଡ଼ ଭାରି
କୋଳରେ ତାହାକୁ ଆଉ ନ ପାରିଲେ ଧରି ।
ପାର୍ଶ୍ୱସ୍ଥ କୁଲାରେ ଦେଲେ ବହୁ କଷ୍ଟେ ଥୋଇ
କୁଲାଖଣ୍ଡ ଭାଙ୍ଗିଗଲା ମଡ଼ ମଡ଼ ହୋଇ ।
ନିଶ୍ଚଳ ସୁସ୍ଥିର ଶିଶୁ ସ୍ପନ୍ଦନବିହୀନ
ବ୍ୟଥିତା ହୋଇଲେ ମାତା ଏହା ନିରେଖିଣ ।
କୋଳେ ନେବାପାଇଁ ଚେଷ୍ଟା କଲେ ବାରମ୍ବାର
ବିଫଳ ହୋଇଲା ସର୍ବ ପ୍ରୟାସ ତାଙ୍କର ।
କିମ୍ପାଇ ଶିଶୁଟି ମୋର ହୋଇଲା ଏସନ
ବିକଳେ କାନ୍ଦିଲେ ମାତା ନ ପାଇ କାରଣ ।
ପ୍ରତିବେଶୀ ମଧ୍ୟେ ଯେହୁ ଥିଲେ ସନ୍ନିଧାନେ
ଧାଇଁଲେ ରୋଦନ ଶୁଣି ବିପ୍ରଙ୍କ ସଦନେ ।
ଶିଶୁଟିକୁ ତନ୍ନ ତନ୍ନ କରି ନିରୀକ୍ଷଣ
ବ୍ରହ୍ମ ଦୈତ୍ୟାବେଶ ବୋଲି କଲେ ଅନୁମାନ ।
ଗୁଣିଆ ଆଣିଣ ତନ୍ତ୍ର କଲେ ଝଡ଼ା ଫୁଙ୍କା
ତେବେ ଶିଶୁ ଚେତା ପାଇ ହୋଇଲା ହାଲୁକା ।

ଶିଶୁକୁ ଶୁଆଇ ଘରେ ମାତା ଆଉ ଦନେ
ସ୍ଥାନାନ୍ତରେ ଯାଇଥିଲେ କାର୍ଯ୍ୟ ନିବନ୍ଧନେ ।
କାର୍ଯ୍ୟ ଶେଷେ ଗୃହେ ଯେବେ ହେଲେ ପ୍ରତ୍ୟାଗତ
ଦେଖିଲେ ଯୁବକ ଏକ ଶଯ୍ୟାରେ ଶାୟିତ ।
ସଭୟେ ଡାକଲେ ତହୁଁ ସ୍ୱାମୀଙ୍କୁ ସମ୍ଭାଷି
"ଗୃହେ କି ଆପଦ ଏଣେ ଦେଖ ଥରେ ଆସି ।
ଶିଶୁ ନାହିଁ ସେଠେ ଏକ ପୁରୁଷ ଶାୟିତ
କି କରିବି କିଏ କଲା ସୁତ ଅପହୃତ ।"
ଦ୍ୱିଜ କ୍ଷୁଦିରାମ ଶୁଣି ପତ୍ନୀଙ୍କ ରୋଦନ
ସସମ୍ଭ୍ରମେ ଉପସ୍ଥିତ ତାଙ୍କ ସନ୍ନିଧାନ ।
ବ୍ରାହ୍ମଣ ବ୍ରାହ୍ମଣୀ ଦୁହେଁ ପ୍ରବେଶିଣ ଘରେ
ଦେଖିଲେ ଆପଣା ଶିଶୁ ଖେଳଇ ଶଯ୍ୟାରେ ।
ପତିଙ୍କୁ କହିଲେ ଚନ୍ଦ୍ରା ଆଚମ୍ବିତ ହୋଇ
ଏଥିର ମରମ କିଛି ବୁଝି ନ ପାରଇ ।
ସୁଦୀର୍ଘ ପୁରୁଷ ଏକ ଦେଖିଥିଲି ତହିଁ
ମୋହର ଦର୍ଶନ କେବେଁ ଭ୍ରାନ୍ତ ତ ନୁହଇ ।
ନିଶ୍ଚୟ କୌଣସି ଚଣ୍ଡୀଗୁମଣ୍ଡୀ ଆସିଣ
ଆମ୍ଭର ସଦନେ କରିଲେଣି ଅବସ୍ଥାନ ।
ଯାହାଙ୍କ ମାୟାରେ ହୁଏ ଏ କାର୍ଯ୍ୟ ସକଳ
ପ୍ରତିକାର ନ କରିଲେ ହେବ ଅମଙ୍ଗଳ ।
ସୁଦକ୍ଷ ଗୁଣିଆ ଜଣେ ଡକାଇ ବହନ
ସୁତର ମଙ୍ଗଳ ପାଇଁ କରନ୍ତୁ ବିଧାନ ।"
ଦ୍ୱିଜବର ବନିତାଙ୍କୁ ବ୍ୟାକୁଳା ଦେଖିଣ
ତାହାଙ୍କୁ କହିଲେ ଧୀରେ ଆଶ୍ୱାସ ବଚନ ।
"ତନୟ ନୁହଇ ତବ ସାମାନ୍ୟ ମାନବ
ଅଦ୍ଭୁତ ବ୍ୟାପାର କେତେ ଏମନ୍ତ ଘଟିବ ।
ଏ ଧରାଧାମେ ଭୂମିଷ୍ଠ ପୂର୍ବୁ ଯେଉଁ ସୁତ
ନାନା ଦିବ୍ୟ ଦରଶନେ କଲେ ଆପ୍ୟାୟିତ ।
ତାଙ୍କ ଜନ୍ମେ ହେବ କେତେ ଆଶ୍ଚର୍ଯ୍ୟ ଘଟଣା
ସେଥିପାଇଁ କିଛି ମାତ୍ର ଭାବିତ ହୁଅନା ।
ଆମ୍ଭ ଘରେ ରଘୁବୀର ଦିଅଁ ବିଦ୍ୟମାନ
ସୁତକୁ କରିବେ ସେହୁ ରକ୍ଷଣାବେକ୍ଷଣ ।
ତାଙ୍କଠି ନିର୍ଭର ରଖି ଶଙ୍କା ଦୂର କର
ନ କହିବ ଏହା ଆଉ କାହାରି ଆଗର ।"
ପତିଙ୍କଠୁଁ ଏ ପ୍ରକାର ଆଶ୍ୱାସନା ପାଇ
ଚନ୍ଦ୍ରାଦେବୀ ଉପନୀତା ଦିଅଁ ପାଶେ ଯାଇ ।

ବାରମ୍ବାର ଜଣାଇଲେ ପୟରେ ତାଙ୍କର
"ମୋ ସୁତକୁ ରକ୍ଷାକର ପ୍ରଭୁ ରଘୁବୀର !"
ପାଞ୍ଚମାସ ଏ ପ୍ରକାରେ ହୋଇଲା ଅତୀତ
ଅନ୍ନପ୍ରାଶନ ସମୟ ଏବେ ଉପସ୍ଥିତ ।
ଚିନ୍ତାକୁଳ ବିପ୍ରବର ହସ୍ତେ ନାହିଁ ଧନ
କେସନେ ଏ ଶୁଭ କାର୍ଯ୍ୟ ହୋଇବ ସମ୍ପନ୍ନ ।
ଆତ୍ମୀୟଙ୍କ ମଧ୍ୟୁ ଡାକି ଜଣ ଦୁଇ ଚାରି
ସ୍ଥିର କଲେ ଶାସ୍ତ୍ରମତେ କାର୍ଯ୍ୟ ଦେବେ ସାରି ।
ଶ୍ରୀପ୍ରଭୁଙ୍କ ଇଚ୍ଛା କିନ୍ତୁ ଅନ୍ୟ ପରକାର
ସୁସମ୍ପନ୍ନ ହେଲା ସମାରୋହ ସହକାର ।
କେମନ୍ତ କୌଶଳେ ତାହା ହୋଇଲା ସାଧନ
ସାଧୁଜନେ ଶୁଣ ସେହି ମଧୁର ଆଖ୍ୟାନ ।
ଧର୍ମଦାସ ଲାହା ନାମେ ଗ୍ରାମେ ଜମିଦାର
ସେ ଥିଲେକ ପ୍ରିୟ ବନ୍ଧୁ କ୍ଷୁଦିରାମଙ୍କର ।
ଆଗହୁଁ ସେ ଏ ସମ୍ବାଦ ହୋଇଣ ପ୍ରାପତ
ପ୍ରବଳ ବାସନା ତାଙ୍କ ହୃଦେ ହେଲା ଜାତ ।
ଶିଶୁଟି ଯେହେତୁ ସର୍ବ ନୟନାଭିରାମ
ଭଲ ଭାବେ ଅନୁଷ୍ଠିତ ହେଉ ଏ କରମ ।
କେତେକ ଗ୍ରାମବାସୀଙ୍କୁ ଦେଲେ ସେ ଶିଖାଇ
"ବିପ୍ର କ୍ଷୁଦିରାମଙ୍କର ଭବନକୁ ଯାଇ,
କନିଷ୍ଠ ସୁତର ଅନ୍ନପ୍ରାଶନୋପଲକ୍ଷେ
ଭୂରି ଭୋଜନ ଯାଚଞ୍ଚା କର ତାଙ୍କ ପାଖେ ।"
ତାଙ୍କ କଥା ମତେ ସର୍ବେ ଆସିଣ ତୁରନ୍ତେ
ରହସ୍ୟେ କରିଲେ ଅଳି ଭୋଜନ ନିମନ୍ତେ ।
ଏଡ଼ି ନ ପାରିଣ ତାଙ୍କ କଥା ଦ୍ୱିଜବର
ପରାମର୍ଶ କଲେ ଲାହା ବାବୁ ସହିତର ।
"ସୁତର ଅନ୍ନପ୍ରାଶନ ଦିନ ଉପସ୍ଥିତ
ମୋର ଅବସ୍ଥା କଥା ତ ତୁମ୍ଭଙ୍କୁ ବିଦିତ ।
ପାରୁଥିଲି ସାମାନ୍ୟରେ କରି ଆୟୋଜନ
ମାଙ୍ଗଳିକ କାର୍ଯ୍ୟଟିକୁ କରିବି ନିଷ୍ପନ୍ନ ।
ଗ୍ରାମବାସୀମାନେ କିନ୍ତୁ କରନ୍ତି ନିଗର
ଭୂରିଭୋଜନ ଦେବାକୁ ଏହି ଉଦ୍ଦେଶ୍ୟର ।
କି କରିବି ଭାଇ ! କିଛି ନ ଦେଖି ଉପାୟ
ପରାମର୍ଶ ମାଗେଁ କିସ କରିବା ବିଧେୟ ।
କାହାକୁ ଛାଡ଼ି କାହାକୁ ଦେବି ନିମନ୍ତ୍ରଣ
ସମସ୍ତଙ୍କ ଶ୍ରଦ୍ଧା ଭକ୍ତି ମୋ ପ୍ରତି ସମାନ ।

ବାଛୁ ବାଛୁ କେତେକଙ୍କୁ ଡାକଲେକ ମୁହିଁ
ଅତୀବ ଅଶୋଭନୀୟ ହେବ ତାହା ଭାଇ ।"
ଧର୍ମଦାସ ଲାହା କିଛୁ ନ ଜାଣିଲା ପରି
କହିଲେ "ମୁଁ ସାହା ହେବ ଏ କାର୍ଯ୍ୟେ ତୁମ୍ଭର ।
ନିମନ୍ତ୍ରଣ ଦିଅ ତୁମ୍ଭେ ଦ୍ୱିଧା ନ କରିଣ
ପ୍ରଭୁଙ୍କ ଇଚ୍ଛାରେ ସବୁ ହୋଇବ ପୂରଣ ।"
ଷଷ୍ଠମାସେ ଶୁଭଚନ୍ଦ୍ର ଦେଖି ଜାତକର
ଉତ୍ସବ ନିର୍ଦ୍ଧାର୍ଯ୍ୟ ହେଲା ଅନ୍ନପ୍ରାଶନର ।
ବିଦ୍ୟାଳୟେ ବହିଲା ଯେ ଆନନ୍ଦର ସ୍ରୋତ
ଦଳେ ଦଳେ ନରନାରୀ ହେଲେ ସମବେତ ।
ଶିଶୁଟିକୁ ସଜ କଲେ ନାନା ଆଭରଣେ
ଆଉର କୁସୁମ ମାଲ୍ୟ ସୁଗନ୍ଧ ଚନ୍ଦନେ ।
ଶ୍ରୀଅଙ୍ଗେ ଶୋଭିଲା ଦିବ୍ୟ ନୂତନ ବସନ
ତା ସହିତେ ପୁଣି ଚନ୍ଦନର ରେଖାମାନ ।
ଲଲାଟେ ଚନ୍ଦନ ବିନ୍ଦୁ ଅତି ମନୋହର
ପରାଭୂତ ଦୀପ୍ତି ଯହିଁ ମଣିକାଞ୍ଚନର ।
ବିରଞ୍ଚି ବାଞ୍ଛିତ ଦୃଶ୍ୟ ବଦନ ମଣ୍ଡଳେ
ଶୋଭା ଦେଖି ପ୍ରତିବେଶୀ ବିମୁଗ୍ଧ ସକଳେ ।
ନାମକରଣର ବେଳ ହେଲା ଉପସ୍ଥିତ
ଜନକ ଜନନୀ ଦୁହେଁ ପରାମର୍ଶେ ରତ ।
ଗୟାଧାମେ ଗଦାଧର କରିଣ ଦର୍ଶନ
ପ୍ରାପ୍ତ ହୋଇଅଛୁଁ ଏହି ଅମୂଲ୍ୟ ରତନ ।
କୁମାରର ନାମ ତେଣୁ ଦେଲେ 'ଗଦାଧର'
ସ୍ନେହର 'ଗଦାଇ' ନାମ ପିତାମାତାଙ୍କର ।
ଯେଉଁ ପ୍ରଭୁ ରାମଚନ୍ଦ୍ର ତ୍ରେତୟା ଯୁଗରେ
ଦ୍ୱାପରେ ସେ ଅବତୀର୍ଣ୍ଣ ଶ୍ରୀକୃଷ୍ଣ ରୂପରେ ।
ରାମକୃଷ୍ଣଙ୍କର ଏଠି ଏକତ୍ର ମିଳନ
ଗୁରୁ ଦେଇଥିଲେ ତେଣୁ 'ରାମକୃଷ୍ଣ' ନାମ ।
ଖ୍ୟାତ ହେଲେ ପ୍ରଭୁ ଦେବ ଏହି ଧରାଧାମେ
'ଶ୍ରୀରାମକୃଷ୍ଣ ପରମହଂସ ଦେବ' ନାମେ ।
ଲାହାବାବୁ ଏଣେ ସର୍ବ ଭୋଜ୍ୟୋପକରଣ
ରାଶି ରାଶି ଆଣି କଲେ ଗୃହ ପରିପୂର୍ଣ୍ଣ ।
ବିବିଧ ଅନ୍ନବ୍ୟଞ୍ଜନ ହୋଇଣ ପ୍ରସ୍ତୁତ
ଇଷ୍ଟଦେବ ରଘୁବୀରେ ହେଲା ନିବେଦିତ ।
ପ୍ରସାଦ ସେବିଲେ ସର୍ବେ ଜାତି ନିର୍ବିଶେଷେ
ଆନନ୍ଦ ହାଟ ଖୋଲିଲା ବିପ୍ରଙ୍କ ଆବାସେ ।
ସ୍ୱଜାତି ସ୍ୱଜ୍ଞାତି ପ୍ରତିବେଶୀ ପରିଜନ
ପ୍ରଫୁଲ୍ଲ ହୃଦୟେ ସର୍ବେ କଲେକ ଭୋଜନ ।
ଦରିଦ୍ର ଭିକ୍ଷୁକ ଆଦି ଆସିଲେ ଯେ ଯେତେ
ଆକଣ୍ଠ ଭୋଜନ କଲେ ତୃପତି ସହିତେ ।
ପରମ ସନ୍ତୋଷ ଲଭି ଏସନେ ସକଳେ
ଶିଶୁକୁ କଲ୍ୟାଣ କରି ଗୃହେ ବାହୁଡ଼ିଲେ ।
ଅପୂର୍ବ ଏ କୋଳାହଳ ଦରିଦ୍ର କୁଟୀରେ
ଶ୍ରୀକୃଷ୍ଣଙ୍କ ଜନ୍ମୋତ୍ସବ ଯଥା ନନ୍ଦଘରେ ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ-ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
ମର୍ତ୍ତ୍ୟଧାମେ ଅବତୀର୍ଣ୍ଣ ପ୍ରଭୁ ଭଗବାନ ।

---

# ଚତୁର୍ଥ ଅଧ୍ୟାୟ

## ଶିବଙ୍କ ଆବେଶ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଶୁଣ ମନ ! ପ୍ରଭୁଙ୍କର ବାଲ୍ୟଲୀଳା ଗୀତ
ଗୁହ୍ୟଠାରୁ ଗୁହ୍ୟତର ଅଟେ ସେ ଭାରତୀ ।
ସୁଧା ରସେ ପୂର୍ଣ୍ଣ ଗାଥା ଶ୍ରବଣ ମଧୁର
ଶ୍ରବଣେ କୀର୍ତ୍ତନେ ସର୍ବ ଦୁଃଖ ହୁଏ ଦୂର ।
ଖେଳୁ ଖେଳୁ ମଧ୍ୟେ ମଧ୍ୟେ ପ୍ରଭୁ ବିଶ୍ୱସାଇଁ
ଭାବେ ଆବିଷ୍ଟ ହୁଅନ୍ତି ଚେତନା ହରାଇ ।
ଏଥିର ମରମ ମାତା ଜାଣି ନ ପାରିଣ
ଭୟରେ କାତର ହୋଇ କରନ୍ତି କ୍ରନ୍ଦନ ।

ଶିବ ନେତ୍ର ସମ ବେନି ଲୋଚନ ତାଙ୍କର
ଆରକ୍ତ ହୋଇଣ କ୍ଷଣେ ନିଷ୍ପନ୍ଦ ମୂର୍ଚ୍ଛିତ ।
ସେ ଦୃଶ୍ୟ ନିରେଖି ତାଙ୍କ ସ୍ନେହମୟୀ ମାତା
ଭୂତ ପ୍ରେତ ଦୃଷ୍ଟି ଭାବି ହୁଅନ୍ତି ସେ ଭୀତା ।
ଝଡ଼ା ଫୁଙ୍କା ଆଦି କରି ବିବିଧ ଉପାୟ
କେତେ ଯେ କରନ୍ତି ତାର ନ ଥାଏକ ଅୟ ।
ପୂଜା ମାନସିକ ପୁଣି ବିବିଧ ପ୍ରକାର
ଯାଚନ୍ତି ଦେବ ଦେବୀଙ୍କୁ ହୋଇଣ କାତର ।
ବ୍ୟର୍ଥ ହେଲାରୁ ଏସନେ ସକଳ ପ୍ରୟାସ
ଆଶ୍ରୟ ନେଲେ ଶେଷେ ଶିବଙ୍କର ପାଶ ।
ସେ ନାମ ପ୍ରବେଶ ମାତ୍ରେ ଶ୍ରବଣ ବିବରେ
ଚେତନା ଲଭଇ ଶିଶୁ ମୁହୂର୍ତ୍ତ ମଧ୍ୟରେ ।
ଅଧରେ ମଧୁର ହାସ୍ୟ, ମୁଖେ ଧରି ସ୍ତନ
ଜନନୀଙ୍କୁ ଭୁଲାନ୍ତି ସେ ଶ୍ରୀଦେବ ଏସନ ।
ଦୁଇ ତିନି ବର୍ଷ ହେଲା ଏମନ୍ତେ ଅତୀତ
ଅତଃ ପର କ୍ରୀଡ଼ାରମ୍ଭ ବୟସ୍ୟ ସହିତ ।
ମୁଢ଼ିରେ ଗୋଳିଣ ଗୁଡ଼ ମାତା ଦିନ କରେ
ଖାଇବାକୁ ଦେଲେ ତାଙ୍କ ସନ୍ତାନ ହସ୍ତରେ ।
ପଲ୍ଲୀଗ୍ରାମେ ଶିଶୁଙ୍କର ଯେ ପ୍ରକାର ରୀତି
ନାଚି ନାଚି ଖାଇବାକୁ ଚାହେଁ ଅତି ପ୍ରୀତି ।
ହସ୍ତେ ମାଣ ଧରି ମୁଢ଼ି ଖାଉଁ ଖାଉଁ ଥରେ
ଦିବ୍ୟ ଭାବ ଉପୁଜିଲା ତାଙ୍କ ହୃଦୟରେ ।
ବାମ ହସ୍ତେ ମୁଢ଼ି ମାଣ ଦେହ ସଂଜ୍ଞାହୀନ
ରହିଲେ ଦଣ୍ଡାୟମାନ ପିତୁଳା ଯେସନ ।
ଅନିମେଷ ବେନି ନେତ୍ର ମୁଖେ ନାହିଁ କଥା
ଏକାଳେ ଜନନୀ ଆସି ତହିଁ ଉପସ୍ଥିତା ।
କୋଳେ ଟେକି ନେଇ ତାଙ୍କୁ କାନ୍ଦିଲେ ବହୁତ
ଚେତନାବିହୀନ କିମ୍ପା ହୋଇଲୁ ମୋ ସୁତ ।
ବ୍ରହ୍ମଦୈତ୍ୟ ସନ୍ତାନଙ୍କୁ କଲା କି ନଜର
ଉଚ୍ଚାରିଲେ ଦୁର୍ଗାନାମ କଣ୍ଠେ ବାରମ୍ବାର ।
କିଞ୍ଚିତ ସମୟ ପରେ ବାଳକ ଗଦାଇ
ହସିଲେ ମାତାଙ୍କୁ ଚାହିଁ ପ୍ରକୃତିସ୍ଥ ହୋଇ ।
ଆଉ ଦିନେ ମୁଢ଼ି ପୂର୍ଣ୍ଣ ମାଣ ଧରି ହାତେ
ଖେଳିବାକୁ ଗଲେ ପ୍ରଭୁ ବୟସ୍ୟ ସହିତେ ।
ନିମ୍ନରେ ବିଶାଳ କ୍ଷେତ୍ର ଊର୍ଦ୍ଧ୍ୱେ ନୀଳାମ୍ବର
ନବୀନ ନୀରଦ ତହିଁ ଶୋଭେ ମନୋହର ।
ଧଳା ଧଳା ହଂସମାନ ହୋଇ ଧାଡ଼ି ଧାଡ଼ି
ଆକାଶ ମାର୍ଗରେ ଗଲେ ଯେ ପ୍ରକାର ଉଡ଼ି ।
ସେ ଦୃଶ୍ୟ ଦର୍ଶନେ ତହୁଁ କ୍ଷଣେ ଭାବୋଦୟ
ଅନିମେଷ ବେନି ନେତ୍ର ସଂଜ୍ଞାହୀନ କାୟ ।
ହସ୍ତ ବଙ୍କା ହୋଇ ମାଣ ପଡ଼ିଲା ଲେଉଟି
ମୁଢ଼ିଯାକ ବୁଣି ଯାଇ ହୋଇଗଲା ମାଟି ।
ଅଚେତନ ହୋଇ ପ୍ରଭୁ ପଡ଼ିଲେ ଭୂତଳେ
ସଙ୍ଗିଗଣ ଧାଇଁ ଆସି ମାତାଙ୍କୁ ଡାକିଲେ ।
ସସମ୍ଭ୍ରମେ ଯାଇ ମାତା ସୁତେ ଟେକି ନେଇ
ବିକଳେ କାନ୍ଦିଲେ ଯେତେ କହି ନ ହୁଅଇ ।
ଏଥୁଅନ୍ତେ ପ୍ରଭୁ ଯେବେ ପାଇଲେ ଚେତନା
ହାସ୍ୟ ମୁଖ ଦେଖି ମାତା ଲଭିଲେ ସାନ୍ତ୍ୱନା ।
ଧର୍ମଦାସ ଲାହା ନାମେ ଧନାଢ୍ୟ ବ୍ୟକତି
କାମାରପୁକୁର ଗ୍ରାମେ ଯାହାଙ୍କ ବସତି ।
ତାଙ୍କ ଗୃହେ ପ୍ରଭୁଙ୍କର ସଦା ଯାତାୟାତ
ଦରଶନ ମାତ୍ରେ ଲାହା ଅତି ଆନନ୍ଦିତ ।
ନିତ୍ୟ ଅର୍ଥ କାରବାର ହୁଏ ପ୍ରତିଦିନ
ସ୍ୱହସ୍ତେ ଲେଖନ୍ତି ଲାହା ଖାତା ଯଥସ୍ଥାନ ।
ବିଷୟେ ବିଷୟୀ ଲୋକ ମଗ୍ନ ସଦାବେଳେ
ବିଶେଷତଃ ଦିଆନିଆ ଅର୍ଥ ଯେତେବେଳେ ।
ଦେବଗସ୍ତ ତାଙ୍କ ଗୃହେ କଲେ ଆଗମନ
ହିସାବ ପତ୍ରେ ନ ଲାଗେ ଲାହାଙ୍କର ମନ ।
କେଜାଣି କି ଭାବ ହୁଏ ହୃଦୟେ ସଞ୍ଚାର
ସବୁ କାର୍ଯ୍ୟ ଛାଡ଼ି ତାଙ୍କୁ କରନ୍ତି ଆଦର ।
ଯଥା ପତି ତଥା ପତ୍ନୀ ଉଭୟେ ସମାନ
ତାଙ୍କ ସ୍ନେହ କଥା ଭବେ ବର୍ଣ୍ଣିବ କେ ପୁଣ ।
ଦୁହିଁଲିଆ ଗୋରୁ ତାଙ୍କ ଗୃହରେ ବହୁତ
ବିବିଧ ମିଷ୍ଟାନ୍ନ ଦ୍ରବ୍ୟ ତହିଁରୁ ପ୍ରସ୍ତୁତ ।
ଗୃହେ ପ୍ରବେଶିବା ମାତ୍ରେ ପ୍ରଭୁ ଗଦାଧର
ଲାହାପତ୍ନୀ କାର୍ଯ୍ୟକର୍ମ ତେଜିଣ ସତ୍ୱର ।
ଅତି ସ୍ନେହ ସହ ତାଙ୍କୁ ଗୃହମଧ୍ୟେ ନେଇ
ଖାଇବାକୁ ଦିଅନ୍ତି କ୍ଷୀର ସନ୍ଦେଶ ମିଠାଇ ।
ଗଦାଇ ଖାଆନ୍ତି ବସି ଅତି ହରଷରେ
ତା ଦେଖି ଭାସନ୍ତି ସେହୁ ଆନନ୍ଦ ସାଗରେ ।
ଗୟା ବିଷ୍ଣୁ ନାମେ ଥିଲା ତାଙ୍କର ନନ୍ଦନ
ସ୍ନେହ ଡୋରେ ପ୍ରଭୁଙ୍କଠି ହୋଇଲେ ବନ୍ଧନ ।

କର୍ତ୍ତୃପକ୍ଷ ବନ୍ଧୁତ୍ୱ ଦେଖି ଦୁହିଁଙ୍କର
ସଙ୍ଗାତ ବସାଇ ଦେଲେ ତାଙ୍କ ପରସ୍ପର ।
ଧନ୍ୟ ଧନ୍ୟ ରାମକୃଷ୍ଣ ଧନ୍ୟ ତବ ପ୍ରେମ
ସ୍ନେହାବଦ୍ଧ ତବ ପାଶେ ବିଭୁ ଆତ୍ମାରାମ ।
ପ୍ରଭୁଙ୍କ ଶୈଶବଲୀଳା ଅପୂର୍ବ କାହାଣୀ
ଗାଇବାକୁ ପରାଭୂତ ବ୍ୟାସଙ୍କ ଲେଖନୀ ।
ନରାଧମ ହୀନବୁଦ୍ଧି ମୁହିଁ ଅତିଶୟ
କାମିନୀ-କାଞ୍ଚନାସକ୍ତ କଲୁଷିତ ହୃଦୟ ।
ଲୀଳାଗାନ କରିବାକୁ ଶକ୍ତି ମୋର କାହିଁ
ବୁଝୁଛି ଯଦ୍ୟପି ପ୍ରାଣେ ମନ ବଳୁ ନାହିଁ ।
ମୋ ପରି ବାତୁଳ କିଏ ପ୍ରାଣେ ଯାର ଆଶ
ବାଳୁକା ଧରି ମନ୍ଦର ନିର୍ମାଣେ ପ୍ରୟାସ ।
ଦୟାକର ଦୀନବନ୍ଧୋ ! ଅଗତିର ଗତି
ଲୀଳାମୃତ ଗାଇବାକୁ ଦିଅନ୍ତୁ ଶକତି ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।

ଦୂର ହେବ ଶୋକଦୁଃଖ ସଂସାର ବନ୍ଧନ
ପରମ ଆଶ୍ରୟ ଏବେ ପ୍ରଭୁ ଭଗବାନ ।

---

## ପଞ୍ଚମ ଅଧ୍ୟାୟ

## ରଘୁବୀରଙ୍କ ମାଲ୍ୟଗ୍ରହଣ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣା ସିନ୍ଧୁ ଜଗଜ୍ଜନ ଗୁରୁ ।
ଗଦାଇଙ୍କ ବାଲ୍ୟଲୀଳା ଅତି ସୁଲଳିତ
ଶ୍ରବଣେ କୀର୍ତ୍ତନେ ଚିତ୍ତ ହୁଏ ପୁଲକିତ ।
ଦିନକରେ କ୍ଷୁଦିରାମ ପ୍ରତ୍ୟୁଷୁଁ ଉଠିଣ
କୁସୁମ ଚୟନେ ଗଲେ ଗୁଙ୍ଗୁଡ଼ି ଧରିଣ ।
ସୁଗନ୍ଧ କୁସୁମହାରେ ଇଷ୍ଟଙ୍କୁ ସଜାଇ
ପୂଜିବେ ଭକତିଭରେ ମନେ ପାଞ୍ଚିଲଇ ।
ନାନାସ୍ଥାନୁ ତୋଳି ଆଣି ସୁଗନ୍ଧ କୁସୁମ
ମାଳାଟିଏ ଗୁନ୍ଥିଲେକ ଅତି ମନୋରମ ।
ସେହି ମାଳା ପିନ୍ଧିବାକୁ ଗଦାଧରଙ୍କର
ପ୍ରବଳ ବାସନା ହେଲା ହୃଦୟ ମଧ୍ୟର ।
କେମନ୍ତ କୌଶଳ କରି ସେ ମାଳା ପିନ୍ଧିଲେ
ଏକ ଚିତ୍ତେ ସେ ବୃତ୍ତାନ୍ତ ଶୁଣ କୁତୂହଳେ ।
ଚକ୍ରୀର ବିଷମ ଚକ୍ର କେ ପାରିବ ବୁଝି
ଯା'ର ଅନ୍ତ ନ ପାଇଲେ ବ୍ରହ୍ମାବିଷ୍ଣୁ ଭଜି ।
ପୂଜୋପକରଣମାନ ସମ୍ମୁଖେ ଥୋଇଣ
କ୍ଷୁଦିରାମ ଭକ୍ତିଭରେ ପୂଜାରେ ଆସୀନ ।
ଏଣେ ପ୍ରଭୁ ଗଦାଧର ଆସି ଧୀରେ ଧୀରେ
ମହୋଲ୍ଲାସେ ବସିଲେଣି ପିତାଙ୍କ ଆଗରେ ।
ଦିଅଁଙ୍କର ଅବକାଶ ସ୍ନାନ ସମାପନେ
ଧ୍ୟାନେ ମଗ୍ନ କ୍ଷୁଦିରାମ ମୁଦ୍ରିତ ନୟନେ ।
ଇଷ୍ଟ ସ୍ମରଣ କେବଳ ଥିଲେହେଁ ମାନସେ
ଗାଢ଼ ଧ୍ୟାନେ ପରିଣତ ତାହା ଅବଶେଷେ ।
ଏ ସୁଯୋଗେ ଦେବରାୟେ ପୁଷ୍ପମାଳା ନେଇ
ପିନ୍ଧିଲେ ଆପଣା ଗଳେ ଉଲ୍ଲସିତ ହୋଇ ।
ଚନ୍ଦନେ ଚର୍ଚ୍ଚିତ କଲେ ପୁଣି ନିଜ ଅଙ୍ଗ
ତଥାପି ନୋହିଲା ପିତାଙ୍କର ଧ୍ୟାନ ଭଙ୍ଗ ।
ତଦନ୍ତେ ବୋଇଲେ ତାଙ୍କୁ ସମ୍ବୋଧନ କରି
"ଦେଖନ୍ତୁ ମୁଁ ରଘୁବୀର ସାଜିଛି କପରି ।
ମୁହିଁ ହେଲି ରଘୁବୀର ଦେଖନ୍ତୁ ଚାହିଁଣ
କେସନ ସୁନ୍ଦର ବେଶ ହୋଇଅଛି ପୁଣ ।"
ଏ ଭାବେ କଲେକ କ୍ରୀଡ଼ା କେତେ ଗଦାଧର
ଦଶରଥ ଗୃହେ ଯେହ୍ନେ ରାମ ରଘୁବୀର ।
ନାହିଁ ଆଡ଼ମ୍ବର ଅବା ସେ ରାଜପ୍ରାସାଦ
ରାଜ୍ୟ, ରାଜ-ପରିଷଦ ବିଶାଳ ସମ୍ପଦ ।
ନାହିଁ କୁମ୍ଭକର୍ଣ୍ଣ ଅବା ଦୁଷ୍ଟ ଦଶାନନ
ଅସ୍ତ୍ରଶସ୍ତ୍ର ଧାରଣର ନାହିଁ ପ୍ରୟୋଜନ ।

ଆମୂଳକ କାର୍ଯ୍ୟ ଆଉ ଚରିତ ଯା'ଙ୍କର
ତାଙ୍କର ଉଦ୍ଧାର ହେତୁ ଜନମ ଏଥର ।
ସାଜସଜ୍ଜା ଆଡ଼ମ୍ବରେ କିବା ପ୍ରୟୋଜନ
ସାଧନ ଭଜନ ବିନେ ଉଦ୍ଦେଶ୍ୟ ସାଧନ ।
ଉଦ୍ଦେଶ୍ୟାନୁସାରେ କାର୍ଯ୍ୟ ଅବତାରଙ୍କର
ଲୀଳାସ୍ଥଳ ହେଲା ତେଣୁ ଦରିଦ୍ର କୁଟୀର ।
କାମାରପୁକୁର ଗ୍ରାମ ଅଯୋଧ୍ୟା ସଦୃଶ
ପ୍ରଭୁଙ୍କର ବାଲ୍ୟଲୀଳା ଯହିଁ ପରକାଶ ।
ଜୀବଜନ୍ତୁ ତହିଁ ଯେତେ ନରନାରୀଗଣ
ପଶୁପକ୍ଷୀ ତରୁଲତା କୀଟ ଗୁଳ୍ମ ତୃଣ ।
ବେନିକର ଯୋଡ଼ି ମୁହିଁ ଚରଣେ ବନ୍ଦଇ
କୃପାକର ଅଧମକୁ ପଦରଜ ଦେଇ ।

ସେ ଗ୍ରାମରେ ଥିଲେ ଯେତେ ପଲ୍ଲୀବାସୀଗଣ
ଗଦାଇଙ୍କୁ ମଣିଥିଲେ ତାଙ୍କର ଜୀବନ ।
ବାଟେଘାଟେ ଯେଉଁଠି ସେ ତାହାଙ୍କୁ ଦେଖନ୍ତି
ସ୍ନେହଭରେ କୋଳେ ଧରି ଗୃହେ ଘେନିଯାନ୍ତି ।
ବିବିଧ ମିଷ୍ଟାନ୍ନ ଦ୍ରବ୍ୟ ଖୁଆଇ ଆଦରେ
ଭୁଞ୍ଜନ୍ତି ପରମାନନ୍ଦ ଆପଣା ଅନ୍ତରେ ।
ନ ଖାଇଲେ ଦେବରାୟେ କୌଣସି ସମୟେ
ଅତିଶୟ ନିରାନନ୍ଦ ଜନମେ ହୃଦୟେ ।
ମୋହିନୀ ମାୟା ବିସ୍ତାରି ଶ୍ରୀପ୍ରଭୁ ଏସନ
ରଞ୍ଜିଲେ ସର୍ବତୋଭାବେ ପଡ଼ୋଶୀଙ୍କ ମନ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ-ପାରାବାର ।

ଦୂର ହେବ ଶୋକଦୁଃଖ ସଂସାର ବନ୍ଧନ
କର୍ଣ୍ଣଧାର ରୂପେ ହୁଅ ପ୍ରଭୁ ଭଗବାନ ।

---

## ଷଷ୍ଠ ଅଧ୍ୟାୟ

## ମାତୁଳାଳୟକୁ ଗମନ ଓ ସତ୍ୟପୀରଙ୍କ ଆବେଶ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଗଦାଇଙ୍କ ବାଲ୍ୟଲୀଳା ଶ୍ରବଣ ମଧୁର
ଶୁଣ ମନ ! ସେ ଆଖ୍ୟାନ ଭକ୍ତ ସୁଖକାର ।
ବିଶ୍ୱପତି ଶିଶୁମତି ଶିଶୁର ଆକୃତି
ତାଙ୍କ ଲୀଳା ବୁଝିବେ ବା ପ୍ରାଣୀଏ କେମତି ।
ଅନୁପମ କାର୍ଯ୍ୟମାନ ନରେ ନ ସମ୍ଭବେ
ଯେତେ ଦେଖିଲେ ହେଁ ମନ ନ ମାନଇ ତେବେ ।
ଐଶ୍ୱର୍ଯ୍ୟ ଦେଖିଲେ ଯେତେ ଗ୍ରାମବାସିଗଣ
ତଥାପି ନୋହିଲା ଐଶୀଭାବ-ଉଦ୍ଦୀପନ ।
ପ୍ରଭୁଙ୍କ ମାତୁଳାଳୟ ଗ୍ରାମ ମାୟାପୁର
କାମାରପୁକୁର ପାର୍ଶ୍ୱେ ଅବସ୍ଥାନ ତାର ।
ଜନନୀ ସହିତେ ଦିନେ ଯାଉଁ ଯାଉଁ ତହିଁ
ମାତାଙ୍କୁ କହିଲେ ବ୍ୟଗ୍ରେ ଅଧବାଟ ଆଇଁ ।

'ବସ୍ତ୍ରେ ମୋତେ ଭଲକରି ଆଚ୍ଛାଦନ କର
କେହି ଯେସନେ ନ କରିବେ ମୋ ପ୍ରତି ନଜର ।'
ସନ୍ତାନଙ୍କ କଥାମତେ ଦେବୀ ଚନ୍ଦ୍ରମଣି
ବସ୍ତ୍ରେ ଆବରିଲେ ତାଙ୍କୁ କୋଳେ ଥିବା ଘେନି ।
ପଥ ମଧ୍ୟେ ଥିଲା ଏକ ପୀରଙ୍କ ଆସ୍ଥାନ
ସୁଶୀତଳ ତରୁତଳ ମନୋରମ ସ୍ଥାନ ।
ସେଥିର ସନ୍ଧାନ ପାଇ ପ୍ରଭୁ ଗଦାଧର
ମାତାଙ୍କୁ କହିଲେ ମୋତେ ଓହ୍ଲାଅ ସତ୍ୱର ।
ବୃକ୍ଷ ମୂଳେ ସତ୍ୟପୀର ଯହିଁ ଅଧିଷ୍ଠିତ
ଓହ୍ଲାଇ ଜନନୀ କୋଳୁଁ ଧାଇଁଲେ ତ୍ୱରିତ ।
ମହା ଦିବ୍ୟଭାବ ହେଲା ଅନ୍ତରେ ସଞ୍ଚାର
ବାକ୍ୟଶୂନ୍ୟ ସଂଜ୍ଞାହୀନ ବସିଣ ସେଠାର ।
ଚନ୍ଦ୍ରାଦେବୀ ଯେତେ ତାଙ୍କୁ କଲେକ ଆହ୍ୱାନ
ଶ୍ରବଣେ ନ ପ୍ରବେଶିଲା ଜନନୀ ବଚନ ।
ତା ଦର୍ଶନେ ଚନ୍ଦ୍ରାଙ୍କର ହୃଦୟ ବ୍ୟାକୁଳ
ପ୍ରବୋଧ ବଚନମାନ କହିଲେ ବହୁଳ ।

କେତେକ୍ଷଣ ପରେ ଜ୍ଞାନ ପୁନଃ ସମାଗତ
ହରଷେ ଚଳିଲେ ପ୍ରଭୁ ମାତାଙ୍କ ସହିତ ।
ଅତୀବ ମଧୁର ଅଟେ ଲୀଳାର ପ୍ରସଙ୍ଗ
ଏଥିଅନ୍ତେ ପଥ ମଧ୍ୟେ ପୁଣି ଏକ ରଙ୍ଗ ।
ପୂର୍ବପର ଯାଉଁ ଯାଉଁ ମାତାଙ୍କର କୋଳେ
ପଥପ୍ରାନ୍ତେ ଉପନୀତ ଏକ ବୃକ୍ଷ ମୂଳେ ।
ଲଙ୍କାପୋଡ଼ା ହନୁ ତହିଁ ବହୁ ସମବେତ
ଯା ଦର୍ଶନେ ନବଭାବେ ଚିତ୍ତ ଉଦ୍‌ବେଳିତ ।
କୋଳରୁ ଓହ୍ଲାଇ ପଡ଼ି ଶ୍ରୀଦେବ ତକ୍ଷଣ
ତୀର ବେଗେ ଧାଇଁଲେକ ହନୁ ସନ୍ନିଧାନ ।
ବାନର ହିଂସ୍ରକ ଜନ୍ତୁ ନୁହନ୍ତି ତ ପୋଷା
ତଥାପି ଗଦାଇ ପ୍ରତି ନ କଲେ ସେ ହିଂସା ।
ଓହ୍ଲାଇ ଆସିଲେ ଯେତୁ ବସିଥିଲେ ଡ଼ାଳେ
ସର୍ବେ ମିଳି ପ୍ରଭୁ ସଙ୍ଗେ ରଙ୍ଗେ କ୍ରୀଡ଼ା କଲେ ।
ଜନନୀ ଆକୁଳ ପ୍ରାଣ ବ୍ୟାପାର ଦେଖିଣ
ଅତି ବିକଳେ ଡାକନ୍ତି ପୁତେ ଘନ ଘନ ।
ବହୁକ୍ଷଣ ପରେ ପ୍ରଭୁ ଲୀଳା ସାଙ୍ଗ କରି
ଜନନୀ ସମୀପେ ପୁଣି ଆସିଲେକ ଫେରି ।
ଘଟଣା ସାମାନ୍ୟ ଅତି ନୁହେ ଗୁରୁତର
ଲକ୍ଷ୍ୟକର ଅମାନୁଷୀ କାର୍ଯ୍ୟ ବାଳକର ।

ଦେଖିଛୁ କି କାହିଁ କୁତ୍ର ଆରେ ବାୟୁମନ !
ନୃତ୍ୟ କରିବାର ଶିଶୁ ସଙ୍ଗେ ହନୁମାନ ?
ଦେଖିବାକୁ ପଡ଼ିଲେ କେହି ସେମାନଙ୍କ ପାଲେ
ଦନ୍ତ କଡ଼ମଡ଼େ ଖେଦି ଆସନ୍ତି ସକଳେ ।
ଗଦାଇଙ୍କ ସହ କିନ୍ତୁ ବିପରୀତ ରୀତି
କି ରଙ୍ଗେ ଖେଳଇ କିଏ ବୋଧଗମ୍ୟ ଅତି ।
ତରୁଲତା ଗୁଳ୍ମ ଆଦି ପଶୁପକ୍ଷୀଗଣ
ସ୍ଥାବର ଜଙ୍ଗମ କିମ୍ବା ଜଡ଼ ସଚେତନ ।
କେଉଁ ଭକ୍ତ କେଉଁ ରୂପେ ଏହି ଅବତାରେ
ବିହରନ୍ତି ପ୍ରଭୁ ସଙ୍ଗେ ଏ ଭବ ସଂସାରେ ।
ହୀନମାନ ତୁଚ୍ଛଜ୍ଞାନ କାହାକୁ ନ କର
ଆରେ ମନ ! ସର୍ବେ ଯେ ପୂଜନୀୟ ତୋର ।
ଜୟ ଜୟ ଜ୍ଞାନଦାତା ପ୍ରଭୁ ବିଶ୍ୱ ସାଇଁ
ଧରାଧାମେ ଶିଶୁରୂପୀ ଶ୍ରୀଦେବ ଗଦାଇ ।
ସୁବୁଦ୍ଧି ଦିଅନ୍ତୁ ମୋତେ ପ୍ରଭୋ ! ଦୟାକରି
ନରୁବା ଭକ୍ତଙ୍କୁ ତବ ଚିହ୍ନିବି କିପରି ।
ମୋହଜାଲେ ସମାଚ୍ଛନ୍ନ ସଦା ବେନି ନେତ୍ର
ସେ ଜାଲ ଛେଦି ଦେଖାନ୍ତୁ ଦିବ୍ୟ ଲୀଳା ଚିତ୍ର ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।

ଦୂର ହେବ ଶୋକଦୁଃଖ ସଂସାର ବନ୍ଧନ
କର୍ଣ୍ଣଧାର ରୂପେ ହେବେ ପ୍ରଭୁ ଭଗବାନ ।

---

## ସପ୍ତମ ଅଧ୍ୟାୟ

## ବିଦ୍ୟାରମ୍ଭ ଓ ପାଠଶାଳାରେ ଅଧ୍ୟୟନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଗଦାଇଙ୍କ ବାଲ୍ୟଲୀଳା ଶ୍ରବଣ ମଙ୍ଗଳ
କୀର୍ତ୍ତନେ ସନ୍ତପ୍ତ ଚିତ୍ତ ହୁଅଇ ଶୀତଳ ।
ସ୍ୱଭାବ ଚରିତ୍ର ସଦା ହୁଏ ଅନ୍ତର୍ମୁଖୀ
ଶୁଣିବାକୁ ଭଗବତ କଥା ଅତି ସୁଖୀ ।

ଯେକାଳେ କରନ୍ତି ପିତା ପୁରାଣାଦି ପାଠ
ଶ୍ରବଣ କରନ୍ତି ପ୍ରଭୁ ବସି ସନ୍ନିକଟ ।
ଥରେ ମାତ୍ର ଶୁଣନ୍ତି ସେ ଯେଉଁ ଉପାଖ୍ୟାନ
ମାନସୁଁ ନ ହୁଏ ତାହା କେବେ ବିସ୍ମରଣ ।
ପ୍ରଶ୍ନ କଲେ ସେ ବିଷୟେ ବହୁଦିନ ପରେ
ଆବୃତ୍ତି କରନ୍ତେ ଯଥା ଲିଖିତ ଶାସ୍ତ୍ରରେ ।
କୀର୍ତ୍ତନ ବା ଯାତ୍ରା ଯାହା ଦେଖନ୍ତି ଯେଉଁଠି
ଅନୁକରଣ କରନ୍ତି ତଦ୍ରୂପ ସେଇଠି ।

ପୁତ୍ରର ଅଦ୍ଭୁତ ମେଧା ଦେଖିଣ ଏମନ୍ତ
ଅଧ୍ୟୟନ ପାଇଁ ତାତ ହେଲେ ଯତ୍ନବନ୍ତ ।
ପଞ୍ଚମ ବରଷେ ପ୍ରଭୁ କଲେ ପଦାର୍ପଣ
ଶାସ୍ତ୍ରମତେ ବିଦ୍ୟାରମ୍ଭ କାର୍ଯ୍ୟ ସମ୍ପାଦନ ।
ଗ୍ରାମେ ଥିଲା ଲାହାଙ୍କର ଯେଉଁ ପାନ୍ଥଶାଳା
ତହିଁ ବସିଥିଲା ଏକ ଗ୍ରାମ୍ୟ ପାଠଶାଳା ।
କ୍ଷୁଦିରାମ ଗୃହପାଶେ ଅବସ୍ଥିତ ତାର
ଛାତ୍ରଭୁକ୍ତ ହେଲେ ଯହିଁ ପ୍ରଭୁ ଗଦାଧର ।
ଜଗତର ଗୁରୁ ଯେହୁ ସର୍ବଜ୍ଞାନଦାତା
ଚରାଚର ବ୍ରହ୍ମାଣ୍ଡର ପାଳନ କରତା ।
ସେହି ବିଭୁ ସଂସାରିକ ପ୍ରଥା ଅନୁସରି
ପାଠ ପଢ଼ିବାକୁ ଗଲେ ବହିପତ୍ର ଧରି ।
ପ୍ରଭୁ ତାଙ୍କ ଅମାନୁଷ ଚରିତ୍ର ବଳରେ
ମୋହିଲେ ଛାତ୍ରଙ୍କ ମନ ଅଲ୍ପ ସମୟରେ ।
ଗୃହାଲୀରେ ପାଠପଢ଼ା ଯେମନ୍ତ ନିୟମ
ପ୍ରାତଃକାଳେ ଅପରାହ୍ନେ ଛାତ୍ର ସମାଗମ ।
ପାଠପଢ଼ା ଶେଷ ହେଲେ ପ୍ରଭୁ ଗଦାଧର
ସମସ୍ତ ଛାତ୍ରଙ୍କୁ ତହିଁ କରି ଏକତ୍ର ,
ନାନା କ୍ରୀଡ଼ା କଉତୁକେ ହୁଅନ୍ତି ଯେ ରତ
ଗୃହେ ବାହୁଡ଼ିବା କଥା ସରବେ ବିସ୍ମୃତ ।
କୃଷ୍ଣଲୀଳା ରାମଲୀଳା କ୍ରୀଡ଼ା ମଧ୍ୟେ ସାର
ଅଭିନୟ ସେ ସବୁର ଅତୀବ ସୁନ୍ଦର ।
ନିଜେ ସଜ ହୋଇ ପ୍ରଭୁ ସଙ୍ଗୀଙ୍କୁ ସଜାନ୍ତି
ବିବିଧ ବାଜଣା ନିଜ ଶ୍ରୀମୁଖେ ବଜାନ୍ତି ।
ଝାଞ୍ଜ, ମୃଦଙ୍ଗ, ଶିଙ୍ଗା, ଶଙ୍ଖର ନିନାଦ
ବଦନେ କରନ୍ତି ତାର ଅନୁରୂପ ଶବ୍ଦ ।
ହାସ୍ୟ ପ୍ରହସନ ଯାହା ଯହିଁ ପ୍ରୟୋଜନ
ଗଦାଇ ଏକାକୀ ତାହା କରନ୍ତି ପୂରଣ ।
ତାଙ୍କ ସଙ୍ଗେ ମତ୍ତ ହୋଇ ବାଳକ ସକଳେ
ଗୃହେ ଫେରିଯିବା କଥା ନ ଭାଳନ୍ତି ଛଳେ ।
ଏଥିର ସଂବାଦ ପାଇ ଶିକ୍ଷକ ଆପଣେ
ଯାତ୍ରା ଶୁଣିବାକୁ ଇଚ୍ଛା ପ୍ରକାଶିଲେ ଦିନେ ।
ତାଙ୍କର ବିଶେଷ ସ୍ନେହ ଗଦାଇଙ୍କ ଠାରେ
ତାଡ଼ନା କରନ୍ତି ନାହିଁ କୌଣସି ପ୍ରକାରେ ।
ସୁତ ନିର୍ବିଶେଷେ ତାଙ୍କ ପ୍ରତି ବ୍ୟବହାର
ଅତି ସରାଗେ କରନ୍ତି ସର୍ବଦା ଆଦର ।

ବିଦ୍ୟାଳୟେ ଦିନକରେ ଗୁରୁ ମହାଶୟ
ଗଦାଇଙ୍କୁ ପାଶେ ଡାକି ସ୍ନେହେ ଅତିଶୟ ।
କହିଲେ ଶୁଣିଛୁ ତୁମ୍ଭେ ଗୀତବାଦ୍ୟ କର
ଶୁଣାଇ ସଙ୍ଗୀତ ଥରେ ତୋଷ ମନ ମୋର ।
ଗୁରୁ ବାକ୍ୟ ଶୁଣି ପ୍ରଭୁ ଏକାକୀ ଉଠିଲେ
ସର୍ବ ସମ୍ମୁଖେ ତତକ୍ଷଣେ ଯାତ୍ରା ଆରମ୍ଭିଲେ ।
ଆନନ୍ଦେ ଗାଇଲେ ଗୀତ ବାଦ୍ୟ ମଧ୍ୟେ ମଧ୍ୟେ
ଦୁଇ ହସ୍ତେ ତାଳ ଦେଇ ନୃତ୍ୟ ଦୁଇପାଦେ ।
ହସି ହସି ଲୋଟିଗଲେ ଛାତ୍ର ଅଧ୍ୟାପକ
କେ ପାରିବ ବର୍ଣ୍ଣି କେତେ ଭୁଞ୍ଜିଲେ ଯେ ସୁଖ ।
ସନ୍ନିକଟେ କରୁଥିଲେ କାର୍ଯ୍ୟ ଯେଉଁମାନେ
ହାସ୍ୟରୋଳ ଶୁଣି ଧାବମାନ ସନ୍ନିଧାନେ ।
ଗୁରୁଶିଷ୍ୟ ଏକମେଳେ କ୍ରୀଡ଼ାରେ ଉନ୍ମତ୍ତ
ରଙ୍ଗ ମଞ୍ଚରେ ଗୃହାଲୀ ହେଲା ପରିଣତ ।
ପ୍ରଭୁ ପ୍ରତି ସମାକୃଷ୍ଟ ସରବେ ଏସନ
ସେ ନ ଆସିଲା ପର୍ଯ୍ୟନ୍ତ ମନ ଛନଛନ ।
ଗୁରୁ ଶିଷ୍ୟ କା'ର ମୁଖେ ନାହିଁ ଅନ୍ୟ କଥା
ଗଦାଇଙ୍କ ଆଗମନ ପ୍ରତୀକ୍ଷା ସର୍ବଥା ।
ଏଭଳି ଶିକ୍ଷକ ଆଉ ଛାତ୍ରଙ୍କ ଚରଣ
ନତ ମସ୍ତକେ ଅଧମ କରଇ ବନ୍ଦନ ।
କଠୋର ତପସ୍ୟା କରି ନ ମିଳଇ ଯାହା
କାମାରପୁକୁରବାସୀ ହେଲେ ପ୍ରାପ୍ତ ତାହା ।
ମାନବ ଜନମ ଲଭି ଧନ୍ୟ ଏ ସଂସାରେ
ନାରାୟଣ କ୍ରୀଡ଼ା କଲେ ଯାଙ୍କ ସହିତରେ ।
ଶିକ୍ଷକଙ୍କ ସବିଶେଷ ଶରଧା ଯତନ
ଗଦାଇ ଶିଖିବେ ଯେତେହେ ଲିଖନ ପଠନ ।
ଗ୍ରାମ୍ୟ ଗୃହାଲୀରେ ଯାହା ପାଠପଢ଼ାବିଧି
ଅଳପ ସମୟେ ଶିଖି ନେଲେ ଗୁଣନିଧି ।
ମହାପ୍ରଭୁ ଦେବବସ୍ତୁ ଥିଲେ ଶ୍ରୁତିଧର
ବାରେ ମାତ୍ର ଯା ଶୁଣନ୍ତି ନ ହୁଏ ପାସୋର ।
ପ୍ରଚଳିତ ଶିକ୍ଷାରୀତି ପ୍ରଥା ଅନୁସାରେ
ପ୍ରହ୍ଲାଦ ଚରିତ ପାଠ କଲେ ପ୍ରଥମରେ ।
ପ୍ରହ୍ଲାଦଙ୍କ ଅନୁରାଗ ଶ୍ରୀହରିଙ୍କ ପ୍ରତି
ବାରମ୍ବାର ପଢ଼ିବାକୁ ଅତିଶୟ ପ୍ରୀତି ।
ମହାଭାରତାଦି ଗ୍ରନ୍ଥ କିମ୍ବା ରାମାୟଣ
ଗ୍ରାମ ମଧ୍ୟେ ଯହିଁ ଯହିଁ ହୁଅଇ ପଠନ ।

ସେହି ସେହି ସ୍ଥାନେ ପ୍ରଭୁ ହୋଇ ଉପନୀତ
ଶ୍ରବଣ କରନ୍ତି ପାଠ ଆଗ୍ରହ ସହିତ ।
ଏ ଭାବେ ଶିଖିଲେ ବହୁ ଶାସ୍ତ୍ର ଉପାଖ୍ୟାନ
ଗୃହାଲୀରେ ଯେ ସମସ୍ତ ନ ହୁଏ ପଠନ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ହେବ ପ୍ରଭୁ ଭଗବାନ ।

---

# ଅଷ୍ଟମ ଅଧ୍ୟାୟ

## ସଙ୍ଗୀଗଣଙ୍କ ସହ କ୍ରୀଡ଼ା

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣା ସିନ୍ଧୁ ଜଗଜ୍ଜନ ଗୁରୁ ।
ପ୍ରଭୁଙ୍କର ବାଲ୍ୟଲୀଳା ଶ୍ରବଣ-କୀର୍ତ୍ତନେ
ଦିବ୍ୟ ନେତ୍ର ପାଇ ଅନ୍ଧ ଭାଗ୍ୟବାନ ମଣେ ।
ଦିବ୍ୟଲୀଳା ସଂକୀର୍ତ୍ତନେ ମାନସ ପ୍ରଫୁଲ୍ଲ
ତ୍ରିତାପ ସନ୍ତପ୍ତ ଚିତ୍ତ ହୁଅଇ ଶୀତଳ ।
କ୍ରୀଡ଼ା ଆରମ୍ଭିଲେ ପ୍ରଭୁ ଦିନୁଦିନୁ ଯେତେ
ସେ ସକଳ ବର୍ଣ୍ଣିବାକୁ ଶକ୍ତି କାହିଁ ଚିତ୍ତେ ।
ସମବୟସ୍କ ବାଳକ ଯେତେ ଥିଲେ ଗ୍ରାମେ
ସେ ସରବେ ତାଙ୍କ ପାଶେ ଜୁଟି କ୍ରମେ କ୍ରମେ ।
ସ୍ନେହ ଡୋରେ ବନ୍ଧା ଏବେ ସରବେ ଏପରି
ଦଣ୍ଡେ ନ ଦେଖିଲେ ଶାନ୍ତି ନ ଥାଏ କାହାରି ।
ଗଦାଇ ବିହୁନେ ଖେଳେ ନ ଲାଗଇ ମନ
ଅନ୍ତରେ ବାସନା ସଙ୍ଗେ ଥିବେ ଅନୁକ୍ଷଣ ।
ଯେତେକ୍ଷଣ ଖେଳୁଥାନ୍ତି ଗଦାଇ ସହିତ
ଆପଣା ଆପଣା ଗୃହ ହୁଅନ୍ତି ବିସ୍ମୃତ ।
ଚନ୍ଦ୍ରାଦେବୀ ବାଳକଙ୍କ ସନ୍ତୋଷ କାରଣ
ପ୍ରସ୍ତୁତ କରନ୍ତି ଅନ୍ନ ବିବିଧ ବ୍ୟଞ୍ଜନ ।
ଭୋଜନ କରନ୍ତି ପ୍ରଭୁ ସାଥୀଙ୍କ ସହିତେ
ତା ଦେଖିଣ ପିତାମାତା ହରଷିତ ଚିତ୍ତେ ।
ତେଲି ମାଲୀ ଆଦି କରି ବହୁତ ବାଳକେ
ଖେଳନ୍ତି ଗଦାଇ ସହ ଅତି କଉତୁକେ ।
ବାଳକଙ୍କ ସାଧାରଣ ଖେଳ ଯେ ପ୍ରକାର
ନ ବଳଇ ମନ ତହିଁ ଗଦାଧରଙ୍କର ।
ବ୍ରଜଭାବେ ପ୍ରଣୋଦିତ ହୋଇ ଦେବରାୟ
ତଦ୍ରୂପ କ୍ରୀଡ଼ାରେ ରତ ଅଧିକ ସମୟ ।
ସୁବଳ ସାଜଇ କେହି, କେହି ବା ଶ୍ରୀଦାମ
କେହି ବା ସୁଦାମ, ଆଉ କେହି ବସୁଦାମ ।
ଗଦାଧର ନିଜେ କାହ୍ନୁ-ଭାବ ଆରୋପଣେ
କ୍ରୀଡ଼ା କରନ୍ତି ଶ୍ରୀକୃଷ୍ଣ ଯେସନ୍ତେ ବୃନ୍ଦାବନେ ।
କେତେବେଳେ ସଙ୍ଗୀସହ ଗୋଚାରଣେ ରତ
କେବେ ବା ଦୋଳନ୍ତି ବୃକ୍ଷଡାଳେ ଆଦିନାଥ ।
ବୃକ୍ଷୋପରେ ରଖିଦେଇ ବସ୍ତ୍ର କେତେବେଳେ
ଆରମ୍ଭନ୍ତି ଜଳକ୍ରୀଡ଼ା ଅତି କୁତୁହଳେ ।
ପ୍ରଭୁଙ୍କର ଜଳକେଳି ମଧୁର ଆଖ୍ୟାନ
ସାଧୁଜନେ ସାବଧାନେ କର ତା ଶ୍ରବଣ ।
ଗୃହପାଶେ ଥିଲା ଏକ ବଡ଼ ପୁଷ୍କରିଣୀ
ହାଲ୍‌ଦାର ପୋଖରି ନାମେ ଚରାଚରେ ଜାଣି ।
ଅତି ସ୍ୱଚ୍ଛ ନିରମଳ ସଲିଳ ତାହାର
ଜଳାଭାବ ମେଣ୍ଟାନ୍ତା ଯା ପଲ୍ଲୀବାସୀଙ୍କର ।
ସ୍ନାନ ପାନ ରନ୍ଧନାଦି ସରବ କାର୍ଯ୍ୟରେ
ବ୍ୟବହୃତ ହେଉଥିଲା ତାହା ଅବାଧରେ ।
ନରନାରୀ ଉଭୟଙ୍କ ନିତ୍ୟସ୍ନାନ ପାଇଁ
ପୃଥକ ପୃଥକ ଦୁଇ ଘାଟ ବନ୍ଧା ଥାଇ ।
କ୍ଷୁଦ୍ର କ୍ଷୁଦ୍ର ଶିଶୁ ଯେହୁ ଗଦାଧର ତୁଲେ
ସ୍ତ୍ରୀଲୋକଙ୍କ ଘାଟେ ସେହୁ ସ୍ନାନ କରୁଥିଲେ ।
ଦିନକରେ ଗଦାଧର ବୟସ୍ୟ ସହିତ
ସ୍ନାନୋଦ୍ଦେଶ୍ୟେ ସେହି ଘାଟେ ହେଲେ ଉପନୀତ ।
ସେ ସମୟେ ସେ ପଲ୍ଲୀର ରମଣୀ ସକଳେ
ସେହି ଘାଟେ ଆସିଣ ଯେ ସ୍ନାନେ ରତ ଥିଲେ ।

ଛୋଟ ଛୋଟ ବାଳକଙ୍କ ସ୍ୱଭାବ ଯେସନ
ପାଣିରେ ପଶିଲେ ଆଉ ରହେ ନାହିଁ ଜ୍ଞାନ ।
ଗୋଡ଼ ଗୁଟି ପହଁରିଲେ କେହୁ କେହୁ ତହିଁ
ପାଣି ଫିଙ୍ଗାଫିଙ୍ଗି ହେଲେ ଆବର ଯେ କେହୁ ।
ସ୍ନାନେ ରତ ଥିଲେ ଯେଉଁ ବଧୂଏ ସେକାଳେ
ପାଣି ପଡ଼ିଲାରୁ ସେହୁ ଅତି କ୍ଷୁବ୍ଧ ହେଲେ ।
ଆହ୍ନିକାଦି କରୁଥିଲେ ଆଉ ଯେଉଁମାନେ
ପାଣି ଛିଟା ନିପତନେ ରୁଷ୍ଟ ବି ସେମାନେ ।
ଯେତେ ନିବାରିଲେ ତାହା ନ ଶୁଣିଲେ କେହୁ
ଅଧିକ ସେ କାର୍ଯ୍ୟେ ରତ ବିରକ୍ତି ଜନ୍ମାଇ ।
ଏକ ବୃଦ୍ଧା ନାରୀ ତହୁଁ ହୋଇ କ୍ରୋଧାନ୍ୱିତ
ବୋଇଲେ "ଏ ଘାଟେ ତୁମେ ଆସ କି ନିମିତ୍ତ ?
ଅନ୍ୟ ଘାଟ ଅଛଇ ତ ପୁରୁଷଙ୍କ ପାଇଁ
ଏଠାକୁ କିମ୍ପାଇ ଆସ ସେଠାକୁ ନ ଯାଇ ।
ଜାଣନା କି ନାରୀମାନେ ସ୍ନାନ କରି ସାରି
ଲୁଗାପଟା ପାଲଟାନ୍ତି ଏଠାରେ ତାଙ୍କରି ।
ସେ ସମୟେ ସେମାନଙ୍କୁ ଉଲଙ୍ଗ ଦର୍ଶନ
ବିହିତ ନୁହଇ ତୁମ୍ଭ ପକ୍ଷେ କଦାଚନ ।"
ପୁଚ୍ଛିଲେ ତାହାଙ୍କୁ ତହୁଁ ବାଳକ ଗଦାଇ
"କି ହେତୁ ତା ଦରଶନ ବିହିତ ନୁହଇ ?"
ବାଳକେ ବୁଝିଲା ଭଳି ତାର ପ୍ରତ୍ୟୁତ୍ତର
ଦେଇ ନ ପାରି ଅଧିକ କଲେ ତିରସ୍କାର ।
ଭୀତ ହୋଇ ବାଳବୃନ୍ଦ ପାଞ୍ଚିଲେ ମାନସେ
ଏ ସଂବାଦ ପ୍ରବେଶିଲେ ମାତାପିତା ପାଶେ,
ସେ ସରବେ ଆମ୍ଭୋପରେ ହୋଇ କ୍ରୋଧାନ୍ୱିତ
ଶାସିବେ କଟୁ ବଚନ କହିଣ ବହୁତ ।
ଏ ଶଙ୍କାରେ ଅନ୍ୟ ସର୍ବେ ହୋଇଲେ ନିରସ୍ତ
ଗଦାଧର କିନ୍ତୁ କେବେ ନୋହିଲେ ବିରତ ।
ତାଙ୍କର ସ୍ୱଭାବ ଯେଣୁ ଅନ୍ୟ ପରକାର
କାରଣ ଲୋଡ଼ନ୍ତି ସବୁ ବିଧି ନିଷେଧର ।
ଯଥାର୍ଥ ଉତ୍ତର ପ୍ରାପ୍ତ ନୋହିବା ପର୍ଯ୍ୟନ୍ତ
ସେ କାର୍ଯ୍ୟରୁ କେତେବେଳେ ନ ହୁଅନ୍ତି କ୍ଷାନ୍ତ ।
କ୍ରମାଗତ ଯାଇ ତେଣୁ ଆଉ କେତେ ଦିନ
ଉଢ଼ାଳେ ରହି ଦେଖିଲେ ରମଣୀଙ୍କ ସ୍ନାନ ।
ବୃଦ୍ଧା ନାରୀଙ୍କୁ ତଦନ୍ତେ ଭେଟି ଦିନକର
ତାଙ୍କ ପାଶେ ଫେଡ଼ିଲେ ସେ ସମସ୍ତ ବ୍ୟାପାର ।

"ଆଉ କେତେ ଦିନ ସ୍ନାନ ଦେଖିଲିଣି ମୁହିଁ
କୌଣସି ରୂପ ଅଶୁଭ ଘଟିଲା ତ ନାହିଁ ।"
ଉତ୍ତର ନ ଦେଇ କିଛି ସେ ବୃଦ୍ଧା ରମଣୀ
ମାତା ଚନ୍ଦ୍ରାଦେବୀ ପାଶେ ପ୍ରବେଶି ତକ୍ଷଣି,
ଯାହା ଯାହା ଘଟିଥିଲା ଯେଉଁ ଯେଉଁ ଦିନ
ନିବେଦିଲେ ହସି ହସି ତାର ବିବରଣ ।
ଆଶ୍ୱାସନା ଦେଇ ଚନ୍ଦ୍ରା କହିଲେ ତାହାଙ୍କୁ
"ମନେ ନ ଘେନ ଅବୋଧ ଶିଶୁର କାର୍ଯ୍ୟକୁ ।
ଆଉ କେବେ ଏ କରମ ନ କରିବା ପାଇଁ
ଅବସର ଦେଖି ତାକୁ ଦେବି ମୁଁ ବୁଝାଇ ।"
ନିରଜନେ ଗଦାଇଙ୍କୁ ପାଇ ଦିନକରେ
କାରଣ ବୁଝାଇ ଦେଲେ ସରଳ ସ୍ୱରରେ ।
"ରମଣୀଏ ଜଳାଶୟେ ସ୍ନାନ କରି ସାରି
ପାଲଟାନ୍ତି ଲୁଗାପଟା ଯେ କାଳେ ତାଙ୍କରି ।
ନିତି ନିତି ଯାଇ ତୁମ୍ଭେ କର ତା ଦର୍ଶନ
ନିବାରିଲେ ମଧ୍ୟ ତାହା ନ କର ଶ୍ରବଣ ।
ଆବର ବୋଲୁଛ କି ନା ତାହାଙ୍କୁ ଉତ୍ତରେ
ଦର୍ଶନ କଲେ ବା କ୍ଷତି କି ଅଛି ତହିଁରେ ।
ମଣିଲି ତୁମ୍ଭର କିଛି ହେଉ ନାହିଁ କ୍ଷତି
ଯା କହୁଛି ଏବେ ଶୁଣ ସ୍ଥିର କରି ମତି ।
ଲଜ୍ଜାଶୀଳା ଅଟନ୍ତି ଯେ ସ୍ୱଭାବେ ରମଣୀ
ତବ କର୍ମ୍ମ ଉପୁଜାଏ ତାଙ୍କ ମନେ ଗ୍ଲାନି ।
ତୁମ୍ଭର ମାତୃସ୍ଥାନୀୟା ଯେହେତୁ ସେମାନେ
ତାଙ୍କର ଅବମାନନା ଲାଗେ ମୋର ପ୍ରାଣେ ।
ମୁଁ ଆଉ ତାଙ୍କ ମଧ୍ୟରେ ନାହିଁ କିଛି ଭିନ୍ନ
ସରବେ ସେ ହେତୁ ତବ ଜନନୀ ସମାନ ।
ଅପମାନିତ ହେଲେ ସେ କୌଣସି ପ୍ରକାରେ
ମୋର ଅପମାନ ତାହା ଜାଣ ସମ୍ୟକରେ ।
ଜନନୀ ସଦୃଶା ନାରୀ ସମ୍ମାନେ ଆଘାତ
ତୁମ୍ଭ ପକ୍ଷେ ତେଣୁ ବତ୍ସ ! ନୁହଇ ବିହିତ ।
ଏପରି କରମ ଆଉ କେବେ ନ କରିବ
ମୋର ଅବା ତାଙ୍କ ମନେ ଯାହା ବ୍ୟଥା ଦେବ ।"
ଜନନୀଙ୍କ ପାଶୁ ପାଇ ଯଥାର୍ଥ ଉତ୍ତର
ସେହି ଦିନୁ ସେ କରମୁ କ୍ଷାନ୍ତ ଗଦାଧର ।
ଗୋଷ୍ଠରଣ କଥା ଅତି ଶ୍ରବଣ ମଧୁର
ସାଧୁଜନେ ଶୁଣ ଏବେ ଆଖ୍ୟାନ ତାହାର ।

ଗୋଚାରଣ ବାଳକଙ୍କ ସ୍ୱଭାବ ଏମନ୍ତ
ଅଣ୍ଟିରେ ଯେତେକ ମୁଢ଼ି ଗୋଧନ ଚରାନ୍ତ ।
ଗ୍ରାମରୁ ବାହାର ଗୋରୁ ଗଲେ ମଇଦାନେ
ଏକଥେ ଖାଆନ୍ତି ମୁଢ଼ି ରଖୁଆଳମାନେ ।
ଖାଉ ଖାଉ ହୁଏ କେତେ ନୃତ୍ୟ କ୍ରୀଡ଼ା ଗୀତ
ବର୍ଣ୍ଣିବାକୁ ସେ ସକଳ ଶକ୍ତି ପରାହତ ।
ରଖୁଆଳମାନେ ଦିନେ ତରୁତଳେ ବସି
ମୁଢ଼ି ଖାଉଥିଲେ ସର୍ବେ ହୋଇ ଅତି ଖୁସି ।
ଥିଲେ ହେଁ ପ୍ରଚୁର ମୁଢ଼ି ଆପଣା ଅଣ୍ଟିରେ
କଉତୁକେ ଛଡ଼ାଛଡ଼ି ମୁଢ଼ି ପରସ୍ପରେ ।
ଦର୍ଶନ କରଣ ଏହା ପ୍ରଭୁ ଗଦାଧର
ବ୍ରଜଭାବ ଉଦ୍ଦୀପନେ ହୋଇଲେ ବିଭୋର ।
ଝହୁଁ ଝହୁଁ ବାହ୍ୟଜ୍ଞାନ ଶୂନ୍ୟ ଏକାବେଳେ
ନିରେଖିଣ ତାହା ସର୍ବେ ପ୍ରମାଦ ଗଣିଲେ ।
ବେନି ନେତ୍ରୁ ବହିଗଲା ଅଶ୍ରୁ ଅବିରଳ
ଭୁଜ ହସ୍ତେ ମଧ୍ୟେ ମଧ୍ୟେ ସ୍ପନ୍ଦନ କେବଳ ।
ଭାବ ମହାଭାବ ଆଦି ପ୍ରେମର ବିକାଶ
ବାଳକେ ଜାଣିବେ କାହୁଁ ସେଥିର ସନ୍ଦେଶ ।
'ଗଦାଇ' 'ଗଦାଇ' ବୋଲି ଡାକିଲେ ସେ ଯେତେ
ଶ୍ରବଣେ ନ ପ୍ରବେଶିଲା ସେ ଡାକ କାହିଁତେ ।
ପିନ୍ଧାଲୁଗା କାନି ଧରି କେ କଲା ପବନ
କେ ଫୁଙ୍କିଲା ଆସି କର୍ଣ୍ଣମୂଳେ ଘନ ଘନ ।
କେ ଭାବିଲା ପ୍ରେତଦୃଷ୍ଟି ପଡ଼ିଛି ଶରୀରେ
ରାମ ନାମ କଲା ତହୁଁ ଭୟେ ଉଚ୍ଚସ୍ୱରେ ।
କିଛୁକ୍ଷଣ ପରେ ସଂଜ୍ଞା ଆସିଲା ଲେଉଟି
ପ୍ରଥମରେ ମିଟ୍ଟିଡ଼ିଲ ଲୋଚନ ଦୁଇଟି ।
ବାଳକେ ପାଇଲେ ଏବେ ପ୍ରାଣରେ ଆଶ୍ୱାସ
ନିରାନନ୍ଦ ଦୂର ହୋଇ ଜନ୍ମିଲା ହରଷ ।
ପ୍ରଭୁଙ୍କୁ କହିଲେ ସାଥୀ ରଖୁଆଳଗଣ
"ତୋତେ ଆଣି ଆମ୍ଭେମାନେ ହେଲୁ ହଇରାଣ ।
ଆଜଠାରୁ ତୋତେ ଆଉ ସଙ୍ଗେ ନ ଆଣିବୁ
ତୋହର ଗୃହରେ ତୁହି ଏକାକୀ ଖେଳିବୁ ।"
ପଡ଼ୋଶୀ କହନ୍ତି ତାଙ୍କ ଜନମ ଅବଧି
ଭାବ ମହାଭାବ ଦୃଷ୍ଟ ଅଙ୍ଗେ ନିରବଧି ।
ଗ୍ରାମର ପଶ୍ଚିମ ପ୍ରାନ୍ତେ ଥିଲା ଯେ ଉଦ୍ୟାନ
ତାହା ତାଙ୍କ କ୍ରୀଡ଼ାସ୍ଥଳ ଗୋଚାରଣ ସ୍ଥାନ ।

ଅତି ମନୋରମ ଜାଗା ପ୍ରାନ୍ତର ମଧ୍ୟରେ
'ଭୂତିଖାଲ' ସ୍ରୋତସ୍ୱତୀ ବହେ ତା ପାର୍ଶ୍ୱରେ ।
ଗ୍ରାମରୁ ଅନତିଦୂର ଅତ୍ୟନ୍ତ ନିର୍ଜନ
କ୍ଷୁଦ୍ର କ୍ଷୁଦ୍ର ଆମ୍ର ବୃକ୍ଷ ତହିଁ ସୁଶୋଭନ ।
ଶାଖାମାନ ଏତେ ନମ୍ରେ ପଡ଼ିଛି ଓହଳି
ବାଳକେ ଚଢ଼ନ୍ତି ତହିଁ ହୋଇ କୁତୂହଳୀ ।
ଯେମନ୍ତ ବାଳକେ, କ୍ଷୁଦ୍ର ବୃକ୍ଷ ସେହିପରି
ବିଧାତା ଆଗହୁଁ ଯେହ୍ନେ କରିଛି ତିଆରି ।
ମହା ଭାଗ୍ୟବାନ ସେହି ଉଦ୍ୟାନର ସ୍ୱାମୀ
ଯାହାଙ୍କ ଉଦ୍ୟାନ ହେଲା ଦେବ କ୍ରୀଡ଼ାଭୂମି ।
ମାଣିକ ବାଣୁର୍ଯ୍ୟା ନାମେ ସେହୁ ପରିଚିତ
ବିପ୍ରକୁଳୋଦ୍ଭବ ସତ୍ତ୍ୱଗୁଣ ସମନ୍ୱିତ ।
ଧନାଢ୍ୟ ତାଲୁକଦାର ଉଦାର ପ୍ରକୃତି
ଅତିଥି ସେବାରେ ତାଙ୍କ ଅତୀବ ପୀରତି ।
ଶ୍ରୀହରି ଚରଣେ ସଦା ସନ୍ନିବିଷ୍ଟ ମନ
ପ୍ରଶାନ୍ତ ଉଦାର ଅତି ମହାଦାନୀ ପୁଣ ।
ବିଷୟ ସମ୍ପତ୍ତ୍ୟାଦିରୁ ଯା ହୁଅଇ ଆୟ
ସାଧୁସନ୍ଥ ସେବାରେ କରନ୍ତି ତା ବ୍ୟୟ ।
ହରିପଦ ଲୁବ୍ଧ ଅତି ଭକ୍ତ ମହାଜନ
ବାଲ୍ୟ କ୍ରୀଡ଼ାଭୂମି ହେବ ତାଙ୍କର ଉଦ୍ୟାନ ।
ଆଗୁଁ ଯେହ୍ନେ ପ୍ରାପ୍ତ ହୋଇ ଏହି ସମାଚାର
ଉଦ୍ୟାନ ସ୍ଥାପିବା ପରେ ଗଲେ ସ୍ୱର୍ଗପୁର ।
ସହୋଦର ହେଲେ ତାଙ୍କ ଉତ୍ତରାଧିକାରୀ
ଧର୍ମ୍ମେ ତାଙ୍କ ଦୃଢ଼ ଅତି ଅଗ୍ରଜଙ୍କ ପରି ।
ପରିବାରବର୍ଗ ମଧ୍ୟ ସେ ଗୁଣେ ଗଠିତ
ସର୍ବେ ଭକ୍ତ, ତାରତମ୍ୟ ନ ହୁଏ ଲକ୍ଷିତ ।
ମାଣିକ ବଂଶରେ ସର୍ବେ ପୁଷ୍ଟ ତାଙ୍କ ଭାବେ
ଯାଙ୍କ ଗୃହେ ଆତଯାତ ସଦା ପ୍ରଭୁ ଦେବେ ।
ତାଙ୍କ ପରିବାରେ ଥିଲେ ଯେ ରମଣୀବୃନ୍ଦ
ପ୍ରଭୁଙ୍କୁ ଦେଖିଲେ ଚିତ୍ତେ ଅପାର ଆନନ୍ଦ ।
ଗଦାଇ ଆସିଲେ ଗୃହେ ସରବେ ମିଳିଣ
ନାନା ଅଳଙ୍କାରେ ତାଙ୍କୁ କରନ୍ତି ଭୂଷଣ ।
ଶ୍ରୀମୁଖ-ନିଃସୃତ ବାଣୀ ଶୁଣିଣ ତାଙ୍କର
ଚିତ୍ତେ ଭୁଞ୍ଜନ୍ତି ଅପାର ସୁଖ-ପାରାବାର ।
ସେ ମନ-ମୋହନ କଥା ଯେ ଶୁଣଇ ଥରେ
ପ୍ରାଣ ମନ ତାର ଆଉ ନ ଲାଗେ କାହିଁରେ ।

ମାଧୁର୍ଯ୍ୟର ପଟାନ୍ତର ନାହିଁ ଏ ଭୁବନେ
ପ୍ରତି ବାକ୍ୟରୁ କ୍ଷରଇ ଅମୃତ ଯେସନେ ।
ଦିନେ ମାତ୍ର ନ ଦେଖିଲେ ବ୍ୟାକୁଳ ଅନ୍ତର
ଆସିବା ନିମନ୍ତେ ପାଶେ ପେରନ୍ତି ଖବର ।
ଗଦାଧର ପ୍ରବେଶନ୍ତି ତହିଁ ଯେତେବେଳେ
ବେଢ଼ିଯାନ୍ତି ଚଉଦିଗେ ରମଣୀ ସକଳେ ।
ବିବିଧ ମିଷ୍ଟାନ୍ନ ଦ୍ରବ୍ୟ ଧରି ସର୍ବେ ହସ୍ତେ
ଖାଇବା ନିମିତ୍ତ ତାଙ୍କୁ ସସ୍ନେହେ ଯାଚନ୍ତେ ।
ଶିଶୁମତି ଗଦାଧର ହର୍ଷେ ଲମ୍ଫ ଦେଇ
ଭୁଞ୍ଜନ୍ତି ମିଷ୍ଟାନ୍ନଯାକ ହସ୍ତୁ କାଢ଼ିନେଇ ।

କିଏ ଏ ରମଣୀବୃନ୍ଦ ମାଣିକ ଭବନେ
ଦେବୀ ବା ମାନବୀ ତାହା କିଏ ଅବା ଜାଣେ ।
ଅନୁସନ୍ଧାନରେ ମନ ! କେଉଁ ପ୍ରୟୋଜନ
ସରବେ ଅଟନ୍ତି ତୋର ପ୍ରଣମ୍ୟ ଯେ ଜାଣ ।
ପ୍ରାପତ ହୁଅନ୍ତି ଯହିଁ ତାଙ୍କ ପଦଧୂଳି
ସାର୍ଥକ କରନ୍ତି ଜନ୍ମ ଶିରେ ତାହା ବୋଳି ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର-କଷଣ
ପରମ ଆଶ୍ରୟ ରୂପେ ହେବେ ଭଗବାନ ।

---

# ନବମ ଅଧ୍ୟାୟ

## ପିତୃ ବିୟୋଗ ଓ ସାଧୁସଙ୍ଗ ଚେଷ୍ଟା

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଜଗତ ଜନର ନାଥ ଜଗଜ୍ଜନ ଗୁରୁ ।
ସାଧୁସଙ୍ଗର କାହାଣୀ ଅତୀବ ମଧୁର
ସାଧୁଜନେ ଶୁଣ ଏବେ ଚିତ୍ତ କରି ସ୍ଥିର ।
ଅତିକ୍ରମ କରି ପ୍ରଭୁ ସପ୍ତମ ବରଷ
ଅଷ୍ଟମରେ କରିଛନ୍ତି ଏବେ ଯେ ପ୍ରବେଶ ।
ଇତିମଧ୍ୟେ କ୍ଷୁଦିରାମ ଜନକ ତାଙ୍କର
ମର କଳେବର ତେଜି ଗଲେ ସ୍ୱର୍ଗପୁର ।
ଅନିତ୍ୟ ଅସାର ଏହି ଦୃଶ୍ୟମାନ ମହୀ
ପୁରାଣରେ ଶୁଣିଥିଲେ ପ୍ରଭୁ ଭାବଗ୍ରାହୀ ।
ପିତୃ ବିୟୋଗରେ କଲେ ତାର ଅନୁଭୂତି
ମାନସ ଆକୃଷ୍ଟ ଏବେ ସାଧୁସଙ୍ଗ ପ୍ରତି ।
ଶ୍ରୀକ୍ଷେତ୍ରେ ଗମନ ମାର୍ଗ ଗୃହ ସନ୍ନିକଟେ
ଯାତ୍ରିମାନେ ଆତଯାତ ନିତ୍ୟ ସେହିବାଟେ ।
ପଥଶ୍ରାନ୍ତ ପଥିକଙ୍କ ବିଶ୍ରାମ କାରଣ
ଗ୍ରାମେ ଥିଲା ଲାହାଙ୍କର ପାନ୍ଥ ନିକେତନ ।
ସାଧୁ ସନ୍ନ୍ୟାସୀଏ ତହିଁ ଆସି ନିରନ୍ତର
ପଥଚଲା ଶ୍ରମ ତାଙ୍କ କରନ୍ତି ଯେ ଦୂର ।

ସନ୍ନ୍ୟାସୀଏ କି ସୁନ୍ଦର ଯାପନ୍ତି ଜୀବନ
ସ୍ପର୍ଶ ନ କରଇ ତାଙ୍କୁ ସଂସାର ବନ୍ଧନ ।
ଯେ ଯାହା ଦିଅଇ ନିବେଦନ ଇଷ୍ଟଦେବେ
ପ୍ରସାଦ ପାଇଣ ସୁଖେ ବିହରନ୍ତି ଭବେ ।
ଭସ୍ମେ ଆଚ୍ଛାଦିତ ତନୁ କଟିବସ୍ତ୍ର ସାର
ସଂସାର ଆସକ୍ତି ନାହିଁ କିଞ୍ଚିତ ମାତର ।
ସ୍ଥାନେ ସ୍ଥାନେ ଘୃତ ଧୂନି କରି ପ୍ରଜ୍ୱଳିତ
ଈଶ୍ୱରଙ୍କ ନାମ ଶୁଣି କାଳ ଅତିପାତ ।
ସନ୍ନ୍ୟାସୀ ଦର୍ଶନେ ଚିତ୍ତେ ଜନ୍ମେ ମହୋଲ୍ଲାସ
ଗଦାଇ ଆସନ୍ତି ଧାଇଁ ତେଣୁ ତାଙ୍କ ପାଶ ।
କେବେ ଏକା, କେବେ ତାଙ୍କ ସଙ୍ଗିଗଣ ସହ
ଭଜନ ପୂଜନ ଆଦି ଦେଖନ୍ତି ପ୍ରତ୍ୟହ ।
ବିଭୁଧ୍ୟାନେ ରତ ଯେଉଁ ସାଧୁ ପ୍ରକୃତିରେ
ଗଦାଇଙ୍କ ପ୍ରୀତି ଅତି ସେମାନଙ୍କଠାରେ ।
ନିତି ନିତି ତାଙ୍କ ପାଶେ ଆସି ଦେବରାୟେ
ସାହାଯ୍ୟ କରନ୍ତି ତାଙ୍କୁ ବିବିଧ ବିଷୟେ ।
ପାନୀୟ ଜଳ ଆଣନ୍ତି କେବେ ଶିରେ ବହି
କେବେ କେବେ ପୁଣି କାଷ୍ଠ ଅନ୍ନ ପାକ ପାଇଁ ।
ଗଦାଇଙ୍କ ଆଚରଣେ ତୁଷ୍ଟ ସାଧୁଗଣ
ପାଶେ ବସାଇ ଦିଅନ୍ତି ଉପଦେଶମାନ ।

ଠାକୁରଙ୍କ ସେବା ପୂଜା ସମାପନ ପରେ
ପ୍ରସାଦ ଦଅନ୍ତି ଆଣି ତାଙ୍କୁ ସମାଦରେ ।
ଗଦାଧର ମହାପ୍ରେମେ ସେବନ୍ତି ପ୍ରସାଦ
ସଙ୍ଗିଗଣେ ବିତରଣ ହୃଦୟେ ଆହ୍ଲାଦ ।
ନବ ବସ୍ତ୍ର ଖଣ୍ଡେ ଦିନେ ପିନ୍ଧି ଗଦାଧର
ଉପନୀତ ହେଲେ ସନ୍ନ୍ୟାସୀଙ୍କ ସମୀପର ।
ସାଧୁ ସନ୍ନ୍ୟାସୀଙ୍କ ଡୋର କୌପୀନ ଦେଖିଣ
ସେ ବେଶ ପିନ୍ଧିବା ପାଇଁ ହେଲା ତାଙ୍କ ମନ ।
ନୂତନ ବସ୍ତ୍ରକୁ ତହୁଁ ଖଣ୍ଡ ଖଣ୍ଡ କରି
ପ୍ରଭୁ ଗଦାଧର ହେଲେ କଉପୀନଧାରୀ ।
ଧୂନିରୁ ଆଣିଣ ଭସ୍ମ ମଣ୍ଡିଲେ ଶ୍ରୀଅଙ୍ଗେ
ନୃତ୍ୟ କରୁ କରୁ ଉପସ୍ଥିତ ମାତା ଆଗେ ।
ହସି ହସି କହିଲେକ ତାହାଙ୍କୁ ଗଦାଇ
"ସାଧୁ ସାଜିଛି କେସନ ଦେଖନ୍ତୁ ଅନାଇ ।"
"ଆରେ ବାପୁ ଧନ ! ଇହି କି ବୁଦ୍ଧି କରିଲୁ
ନୂଆ ଲୁଗାଟି ଚିରାଇ କୌପୀନ ପିନ୍ଧିଲୁ
କାହାଠୁ ଶିଖିଲୁ ଆରେ ଏ ବୁଦ୍ଧି ଗଦାଇ !
କିଏ ଶିଖାଇଲା ତୋତେ ଏ ବେଶ ପିନ୍ଧାଇ ।"
ସୁତ ଭବିଷ୍ୟ ଜୀବନ ମାତା ଚିନ୍ତା କରି
ଅଶ୍ରୁଧାର ବହିଗଲା ନେତ୍ରରୁ ତାଙ୍କରି ।
ମାତାଙ୍କ ବେଦନ ଦେଖି ପ୍ରଭୁ ଗଦାଧର
ପ୍ରବୋଧିଲେ କହି କଥା ନାନା ପରକାର ।
ଆଶ୍ୱାସନା ଦେଲେ ପ୍ରଭୁ ଜନନୀଙ୍କୁ ଯେତେ
ମାତା ତହିଁ ନ ଭୁଲିଲେ କଉଣସିମତେ ।
ଉପାୟ ନ ଦେଖି ଶେଷେ କହିଲେ ବଚନେ
"ସାଧୁ ସମୀପେ ନ ଯିବି ଆଉ କେତେବେଳେ ।"
ସୁତର ଆଶ୍ୱାସ ବାଣୀ କରିଣ ଶ୍ରବଣ
କୋଳେ ଘେନି ମାତା ଦେଲେ ସସ୍ନେହେ ଚୁମ୍ବନ ।

ପ୍ରତିଜ୍ଞା ଆବଦ୍ଧ ହୋଇ ପ୍ରଭୁ ଗଦାଧର
କାର୍ଯ୍ୟେ ପରିଣତ ପାଇଁ ହୋଇଲେ ତତ୍ପର ।
ଉପସ୍ଥିତ ହୋଇ ତହୁଁ ସାଧୁଙ୍କ ସ୍ତୁମୁରେ
ଫେଡ଼ିଲେ ମାନସ କଥା ଦୁଃଖେ ଯୋଡ଼କରେ ।
ଶିଶୁ ବାକ୍ୟେ ମର୍ମାହତ ହୋଇ ସାଧୁଗଣ
ପୁଚ୍ଛିଲେ ସରବେ ତାଙ୍କୁ ଏଥିର କାରଣ ।
ଶିଶୁମତି ଗଦାଧର କହିଲେ ଉତ୍ତରେ
"ସାଧୁସଙ୍ଗ ଯୋଗୁଁ ମାତା ଶଙ୍କିତା ଅନ୍ତରେ ।
କେ ଜାଣେ କୌଣସି ଦିନ ସାଧୁ ସନ୍ଥ ଜନ
ଘେନିଯିବେ ତାଙ୍କ ସଙ୍ଗେ ମୋତେ ଭୁଲାଇଣ ।"
ଧରମଶାଳାରେ ଥିଲେ ଯେତେକ ସନ୍ନ୍ୟାସୀ
ମାତା ସନ୍ନିଧାନେ ସର୍ବେ ଉପସ୍ଥିତ ଆସି ।
ଚନ୍ଦ୍ରାଙ୍କୁ କହିଲେ "ଶୁଣ ଶୁଣ ଆରେ ମାଇ !
ନେବୁ ନାହିଁ କେତେବେଳେ ତୋ ସୁତ ଭୁଲାଇ ।
ପିତାମାତା ଦୁହିଁଙ୍କର ଅନୁମତି ବିନା
ସନ୍ନ୍ୟାସ ଭେକ ଘେନିବା ଶାସ୍ତ୍ରେ ଅଛି ମନା ।
ଏମନ୍ତ ଗର୍ହିତ କାର୍ଯ୍ୟ ଆମେ କି ପ୍ରକାରେ
ସନ୍ନ୍ୟାସୀ ହୋଇଣ ଆଚରିବୁ ଏ ସଂସାରେ ।"
ଯାହା କିଛି ଶଙ୍କା ଥିଲା ଚନ୍ଦ୍ରାଙ୍କର ମନେ
ଦୂରୀଭୂତ ହେଇଗଲା ସାଧୁଙ୍କ ବଚନେ ।
ସାଧୁଙ୍କର ସାଧୁ ବାଞ୍ଛା ପୂରଣ ନିମିତ୍ତେ
ସାଧୁସଙ୍ଗ ଅନୁମତି ଚନ୍ଦ୍ରା ଦେଲେ ସୁତେ ।
କେ କରିବ ପ୍ରଭୋ ! ତବ ମହିମା କଳନା
ମୋହ ଆବରଣେ କେତେ କୌଶଳ ସୃଜନା ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ଉଭା ପ୍ରଭୁ ଭଗବାନ ।

---

## ଦଶମ ଅଧ୍ୟାୟ
## ବିଶାଳାକ୍ଷୀ ଦେବୀଙ୍କର ଆବେଶ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣା ସିନ୍ଧୁ ଜଗଜ୍ଜନ ଗୁରୁ ।

ବାଲ୍ୟକାଳେ ଯେତେ କ୍ରୀଡ଼ା କଲେ ଗଦାଧର
ଶ୍ରବଣେ କୀର୍ତ୍ତନେ ଜନ୍ମେ ଆନନ୍ଦ ଅପାର ।
ଅତ୍ୟନ୍ତ ମଧୁର କଥା ସୁଧାରସେ ପୂର୍ଣ୍ଣ
ସାଧୁଜନେ ସାବଧାନେ କର ତା ଶ୍ରବଣ ।

ଯେଉଁ ବ୍ରହ୍ମ ସନାତନ ବୋଧଗମ୍ୟାତୀତ
ବେଦବିଧି ତନ୍ତ୍ରମନ୍ତ୍ର ଯାରେ ଅବସ୍ଥିତ ।
ଜପତପ ଯାଗଯଜ୍ଞ କ୍ରିୟାଦିର ପାର
ମାନସ ବୁଦ୍ଧିର କେଭେ ନୁହନ୍ତି ଗୋଚର ।
ସର୍ବଶକ୍ତିମାନ ବିଭୁ ଅଖିଳର ପତି
ଯାଙ୍କ କଟାକ୍ଷେ ପ୍ରଳୟ, କଟାକ୍ଷରେ ସ୍ଥିତି ।
ଏ ବିଶ୍ୱବ୍ରହ୍ମାଣ୍ଡ ଯାଙ୍କ ଇଙ୍ଗିତେ ପାଳନ
ସେ ପୁଣି ସାଧନ୍ତି କେତେ ଦୁଃସାଧ୍ୟ ସାଧନ ।
ଦୟାମୟ ଦୀନବନ୍ଧୁ କରୁଣାସାଗର
ମର୍ତ୍ତ୍ୟେ ଯେବେ ଅବତୀର୍ଣ୍ଣ ଧରି କଳେବର ।
ମନୁଷ୍ୟ ସଦୃଶ ତାଙ୍କ ଆକାର ଗଠନ
କ୍ରିୟାକର୍ମମାନ ମଧ୍ୟ ଅଟଇ ତେସନ ।
ମାନବ ସଙ୍ଗରେ କ୍ରୀଡ଼ା କଉତୁକ ନିତି
ଚିହ୍ନିବାକୁ ତେଣୁ କାର ନ ଥାଏ ଶକତି ।
ପୁରୁଷ ରମଣୀ ଗ୍ରାମେ ନିବସନ୍ତି ଯେତେ
ଗଦାଇଙ୍କଠାରେ ତାଙ୍କ ସ୍ନେହ ଅପ୍ରମିତେ ।
ଆଦରେ ଡାକଣ ତାଙ୍କୁ ସେ ଯାହା ଭବନେ
ଦିଅନ୍ତି ବିବିଧ ଖାଦ୍ୟ ଅତୀବ ଗୋପନେ ।
ଦୈବାତ୍ ଦେଖିଲେ କେହି ତାହାଙ୍କୁ ଦାଣ୍ଡରେ
ଗୃହେ ଡାକ ଲଡ଼ୁ କରି ଖୁଆନ୍ତି ସ୍ନେହରେ ।
ସତ୍ୟ ଗୁଣ ସମନ୍ୱିତା ନାରୀ ଯେ ଅଟନ୍ତି
ସୁଗନ୍ଧ କୁସୁମ ମାଳ ସପ୍ରେମେ ପିନ୍ଧାନ୍ତି ।
ସମସ୍ତଙ୍କ ସ୍ନେହପାତ୍ର ପ୍ରଭୁ ଗଦାଧର
ତାଙ୍କ ସଙ୍ଗେ କ୍ରୀଡ଼ା ଯାର ଇଚ୍ଛା ଯେ ପ୍ରକାର ।
ଥରେ ମାତ୍ର ଲଭିଛି ଯେ ତାଙ୍କର ଦର୍ଶନ
ଭୁଲି ନ ପାରଇ ସେହୁ ଚନ୍ଦ୍ରମା ବଦନ ।
ହୃଦୟେ ଉପୁଜେ ସଦା ଆନନ୍ଦ ଉଚ୍ଛ୍ୱାସ
ପୁନଃ ପୁନଃ ଦରଶନେ ତେଣୁ ଅଭିଳାଷ ।
ମନ ମୋହନୀୟା କଥା ନାନାରସେ ପୂର୍ଣ୍ଣ
ଅମୃତଧାରା ଯେସନେ କରଇ ବର୍ଷଣ ।
ଶୈଶବକାଳରୁ ପ୍ରଭୁ ଗଦାଧରଙ୍କର
ଈଶ୍ୱର ପ୍ରସଙ୍ଗେ ଭାବ ସମାଧି ଗୋଚର ।
ଦର୍ଶନେ ଶ୍ରବଣେ ଚିତ୍ତ ଭାବେ ବିଗଳିତ
ଭାବମୟ ମନ ଭାବ-ସିନ୍ଧୁରେ ମଜ୍ଜିତ ।
ଅଚୈତନ୍ୟ ଜ୍ଞାନଶୂନ୍ୟ ଆଙ୍ଗିକ ବିକାର
କେବେ ହାସ୍ୟ କେବେ ନେତ୍ରୁ ବହେ ଅଶ୍ରୁଧାର ।
ପ୍ରଥମ ପ୍ରଥମ ଏହି ଅବସ୍ଥା ଦର୍ଶନେ
ପ୍ରେତ ଦୃଷ୍ଟି ବୋଲି ଲୋକେ ଭାବିଥିଲେ ମନେ ।
ପରବର ଭାବ ଏବେ ହୋଇ ଦୃଷ୍ଟିଭୂତ
ସରବେ ମଣିଲେ ଏହା ମହାଭାବରୁଁ ଜାତ ।
ଯେତେବେଳେ ଯେଉଁ ଦେବଦେବୀଙ୍କ ମୂରତି
ମାନସେ ଉଇଁଣ କରେ ପ୍ରଭୁ ବିସ୍ମୃତ ।
ସେହି ଦେବଦେବୀ ଭାବେ ହୋଇ ପ୍ରଣୋଦିତ
ହୃଦୟରେ ମହାଭାବ ହୁଏ ସମୁତ୍‌ଥିତ ।
ଦୃଷ୍ଟାନ୍ତସ୍ୱରୂପ ଶୁଣ ଏକ ବିବରଣ
ଶ୍ରୀପ୍ରଭୁଙ୍କ ଲୀଳା କଥା ଅପୂର୍ବ କଥନ ।
କାମାର ପୁକୁର ଗ୍ରାମୁଁ ନୁହେଁ ବହୁଦୂର
କ୍ଷୁଦ୍ର ପଲ୍ଲୀ ଥିଲା ଏକ ଅନୁଡ଼ା ନାମର ।
ସେଠାରେ ଅଛନ୍ତି ବିଶାଳାକ୍ଷୀ ଠାକୁରାଣୀ
ଜାଗ୍ରତ ଦେବତା ବୋଲି ଚତୁର୍ଦ୍ଦିଗେ ଜାଣି ।
ନିର୍ଜ୍ଜନ ପ୍ରାନ୍ତର ମଧ୍ୟେ ତାଙ୍କର ଆସ୍ଥାନ
ସାମାନ୍ୟ କୁଟୀର ମାତ୍ର ପତ୍ରେ ଆଚ୍ଛାଦନ ।
ଗୋପାଳ ବାଳକେ ତାଙ୍କ ନିତ୍ୟ ସହଚର
ପ୍ରାତଃକାଳୁଁ ଜୁଣ୍ଡ ସର୍ବେ ତହିଁ ନିରନ୍ତର ।
ଦିନମଧ୍ୟେ ଥରେ ମାତ୍ର ପୂଜକ ଆସିଣ
ଦେବୀ ପୂଜା ସାରି ଗୃହେ କରଇ ଗମନ ।
ପୂଜକ ନ ଥିବା ବେଳେ ଯେ ଯାହା ଆଣନ୍ତି
ଦେବୀଙ୍କଠି ଥୋଇ ଦେଇ ଗୃହେ ଫେରିଯାନ୍ତି ।
ସେ ନୈବେଦ୍ୟ ଖାଇପିଇ ଗୋ-ରକ୍ଷକ ବାଳ
ଆନନ୍ଦେ କରନ୍ତି ନୃତ୍ୟ ଗୀତ କୋଳାହଳ ।
କାନନୁଁ ବିବିଧ ପୁଷ୍ପ କରି ଆହରଣ
ଦେବୀଙ୍କୁ କରାଇ ବେଶ ଆନନ୍ଦେ ମଗନ ।
ଦେବୀଙ୍କ କରୁଣା ଅତି ସେମାନଙ୍କ ପ୍ରତି
ସେ ଆଖ୍ୟାନ ଶୁଣ ସର୍ବେ ସ୍ଥିର କରି ମତି ।
ନିକଟସ୍ଥ ଗ୍ରାମେ ଏକ ଧନୀ ମହାଜନ
ଦେବୀଙ୍କ କୃପାରୁ ଯାଙ୍କ ଅଭୀଷ୍ଟ ପୂରଣ ।
ଭକ୍ତିଭାବେ ସେହୁ ବହୁ ଅର୍ଥ ବ୍ୟୟ କରି
ଦେବୀଙ୍କ ନିମନ୍ତେ କଲେ ମନ୍ଦିର ତିଆରି ।
ତହିଁରେ ଦେବୀଙ୍କୁ ଆଣି ପ୍ରତିଷ୍ଠା କରିଣ
ଖରା ବରଷାରୁ ତାଙ୍କୁ କଲେ ସଂରକ୍ଷଣ ।
ଲଗାଇଲେ ଜାଲି କବାଟ ମନ୍ଦିର ଦୁଆରେ
ଅସୁବିଧା ନ ହୁଅଇ ଯେସନ୍ତେ ଦର୍ଶନରେ ।

ଲଡ୍ଡୁ ମିଷ୍ଟାନ୍ନାଦି ଧରି ଏବେ ଯେ ଆସନ୍ତି
ଜାଲିବାଟେ ଫିଙ୍ଗିଦେଇ ଗୃହେ ଫେରଯାନ୍ତି ।
ଦେବୀ ପୂଜିବାକୁ ଯେବେ ଆସଇ ପୂଜକ
ଦ୍ୱାରଖୋଲି ଦେଖଯାଏ ଗୃହେ ଭୋଗଯାକ ।
ବାଳକେ ନ ପାନ୍ତି ଆଉ ମିଠେଇ ସନ୍ଦେଶ
ତାଙ୍କ ମନେ ଜାତ ତେଣୁ ଅତି ଅସନ୍ତୋଷ ।
ବାଳକ ସକଳେ ରୁଣ୍ଡ ହୋଇ ରୋଦନକରେ
ଜଣାଇଲେ ତାଙ୍କ ଦୁଃଖ ଦେବୀଙ୍କ ପସ୍ଥରେ ।
"ଆଲୋ ମାତଃ ! ମନ୍ଦିରରେ ପ୍ରବେଶିଲୁ ବୃଦ୍ଧ
ଭୋଗ ନ ପାଇଲୁ ଏବେ ଆମ୍ଭେମାନେ କେହି ।"
ତୋହର କୃପାରୁ ଆମ୍ଭେ ଖାଉଥିଲୁ କେତେ
ସେ ସବୁ ନ ପାଉ ଆଉ ଏବେ ଯେ କଷ୍ଟତେ ।
ଏ ସରଳ ବାଳକଙ୍କ କରୁଣ ପ୍ରାର୍ଥନା
ଅବଲମ୍ବେ ଦେବୀଙ୍କର କର୍ଣ୍ଣେ ଗଲା ଶୁଣା ।
ରାତି ମଧ୍ୟେ ମନ୍ଦିରଟି ଫାଟି ଖଣ୍ଡ ଖଣ୍ଡ
ଆଶ୍ଚର୍ଯ୍ୟ ମଣିଲେ ସର୍ବେ ଦେଖିଣ ଏ କାଣ୍ଡ ।
ବିପଦ ଆଶଙ୍କା କରି ପୂଜକ ବ୍ରାହ୍ମଣ
ବାହାରେ ଥୋଇଲେ ଦେବୀ ପୂରବେ ଯେସନ ।
ପୁନଃ ଚେଷ୍ଟା କଲେ ଯେହ୍ନେ ମନ୍ଦିର ନିର୍ମାଣେ
ଦେବୀଙ୍କର ମନା ହେଲା ତାହାଙ୍କୁ ସ୍ୱପନେ ।
ଗୋ-ରକ୍ଷକ ବାଳକଙ୍କ ସଙ୍ଗତରେ ମୁହିଁ
ମହାସୁଖ ଭୁଞ୍ଜୁଛି ଯେ ଖୋଲାସ୍ଥାନେ ରହି ।
ମନ୍ଦିରେ ଅବଦ୍ଧ ଆଉ କର ନାହିଁ ମୋତେ
ଯେ କରିବ ତାର ବଂଶ ନାଶିବ ନିଶ୍ଚିତେ ।
ଏହି ବିଶାଳାକ୍ଷୀଙ୍କର ଦର୍ଶନ ପ୍ରକାଶ
ଗ୍ରାମସ୍ଥ ନାରୀଏ ମନେ କଲେ ଅଭିଳାଷ ।
ଏ ସମ୍ବାଦ ପ୍ରାପ୍ତ ହୋଇ ପ୍ରଭୁ ଗଦାଧର
ତାଙ୍କ ସଙ୍ଗେ ଯିବାପାଇଁ କଲେକ ଜିଗର ।
ଯେତେ ପରକାରେ ସର୍ବେ ବୁଝାଇଲେ ତାଙ୍କୁ
ନ ଶୁଣିଲେ ଟଳେ ମାତ୍ର କାହାର କଥାକୁ ।
ରମଣୀ ସରବେ ତହୁଁ ହୋଇ ଏକମତ
ସଙ୍ଗେ ନେଲେ ଗଦାଇଙ୍କୁ ଅନିଚ୍ଛା ସହିତ ।
ନାରୀଙ୍କର ସବୁଠାରେ ଯେମନ୍ତ ସ୍ୱଭାବ
ଯାଉଁ ଯାଉଁ ପଥ ମଧ୍ୟେ ନାନା କଳରବ ।
ଉତ୍ତମ ସ୍ୱଭାବାପନ୍ନା ଯେ ତାଙ୍କ ମଧ୍ୟରେ
ଦେବୀଙ୍କ ମହିମା ଗାନ କଲେ ସମସ୍ୱରେ ।

ଗଦାଇ ଶୁଣିଣ ଦେବୀ-ଗୁଣାନୁକୀର୍ତ୍ତନ
ନିଜେ ଆରମ୍ଭିଲେ ଦେବୀ ବିଷୟକ ଗାନ ।
ପ୍ରାନ୍ତର ମଧ୍ୟରେ ଯେବେ ହେଲେ ଉପନୀତ
ମହାଭାବେ ଗଦାଧର ତହିଁ ନିମଜ୍ଜିତ ।
ଜଡ଼ ହେଲା ଅଙ୍ଗମାନ କଣ୍ଠେ ନାହିଁ ସ୍ୱର
ଅବିରାମ ବହିଗଲା ନେତ୍ରୁ ଅଶ୍ରୁଧାର ।
ସହସା ବାଳକ କିମ୍ପା ହୋଇଲା ଅଜ୍ଞାନ
କାରଣ ନ ପାଇ ସର୍ବେ ବ୍ୟାକୁଳ ପରାଣ ।
କୋମଳ ସ୍ୱଭାବାପନ୍ନ ବାଳକ ଗଦାଇ
ଖରା ସହି ନ ପାରିଣ ଏମନ୍ତ ହୁଅଇ ।
ଏସନ ଭାଳିଣ କେହି ତ୍ୱରିତେ ଧାଇଁଲା
ପୋଖରୀରୁ ପାଣି ଆଣି ମସ୍ତକେ ସିଞ୍ଚିଲା ।
ପରହିତ ବସ୍ତ୍ରେ କେହି ବହିଲା ପବନ
ପାଣିଗୁଣ୍ଡ ଦେଲା କେହି ଶ୍ରୀମୁଖରେ ପୁଣ ।
ଯେତେ ଚେଷ୍ଟା କଲେ ସଂଜ୍ଞା ନୋହିଲା ତାଙ୍କର
ଏହା ଦେଖି ରମଣୀଏ ଅତୀବ କାତର ।
ଚୌଦିଗେ ବସିଣ ସର୍ବେ କଲେକ କ୍ରନ୍ଦନ
"କିମ୍ପା ଏ ଶିଶୁକୁ ସଙ୍ଗେ କଲୁ ଆନୟନ ।
କି କହିବୁ ମାତା ପାଶେ ଫେରିଯାଇ ଘରେ
ବୁଦ୍ଧି ଦିଶୁନାହିଁ କିଛି ଆମ୍ଭଙ୍କୁ ଏଥିରେ ।"
ତାଙ୍କ ମଧ୍ୟେ ଲାହାଙ୍କର ଦୁହିତା ପ୍ରସନ୍ନା
ଗଦାଇଙ୍କ ସ୍ୱଭାବଟି ତାଙ୍କୁ ଭଲ ଜଣା ।
ଆଶ୍ୱାସି କହିଲେ ସେହି "ହୁଅ ନାହିଁ ଭୀତ
ବିଶାଳାକ୍ଷୀ ଦେବୀଙ୍କର ଆବେଶ ନିଶ୍ଚିତ ।
ଦେବୀଙ୍କର ନାମ କର ସର୍ବେ ସମସ୍ୱରେ
ନିଶ୍ଚୟ ଫେରିବ ସଂଜ୍ଞା ମୁହୂର୍ତ୍ତ ମଧ୍ୟରେ ।
ତାଙ୍କ କଥା ଅନୁସରି ରମଣୀ ସକଳେ
ଉଚ୍ଚସ୍ୱରେ ଦେବୀ ନାମ କଲେ କର୍ଣ୍ଣମୂଳେ ।
ପ୍ରବେଶ ମାତ୍ରକେ କର୍ଣ୍ଣେ ବିଶାଳାକ୍ଷୀ ନାମ
ଚେତନା ପାଇଲେ କ୍ଷଣେ ପ୍ରଭୁ ଗୁଣଧାମ ।
ସାନ୍ତ୍ୱନା ଲଭିଣ ତହୁଁ ରମଣୀମଣ୍ଡଳୀ
ଦେବୀଙ୍କ ଦର୍ଶନେ ଗଲେ ହୋଇ କୁତୂହଳୀ ।
ଦେବୀଙ୍କର ଆରାଧନା କରି ଭକ୍ତିଭରେ
ଗଦାଇଙ୍କୁ ସଙ୍ଗେ ନେଇ ବାହୁଡ଼ିଲେ ଘରେ ।
ଏ ସମ୍ବନ୍ଧେ କହୁଛନ୍ତି କେହି କେହି ପୁଣ
ଦେବୀଙ୍କ ଦର୍ଶନେ ନ ଯାଇ ସେ ନାରୀଗଣ,

ଭୋଗ ନୈବେଦ୍ୟାଦି ଯାହା ସଙ୍ଗେ ଆଣିଥିଲେ
ଗଦାଇଙ୍କୁ ପୂଜା କରି ଘରେ ବାହୁଡ଼ିଲେ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ଉଭା ପ୍ରଭୁ ଭଗବାନ ।

---

# ଏକାଦଶ ଅଧ୍ୟାୟ
## ଉପନୟନ ବୃତ୍ତାନ୍ତ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ପ୍ରଭୁ ନରହରି ! କର ଦାସରେ କରୁଣା
ସଂସାର ଆବର୍ତ୍ତେ ପଡ଼ି ବୁଡ଼ିଛି ମୋର ବଣା ।
ଦିଅନ୍ତୁ ଶକତି ମୋତେ ଜପିବାକୁ ନାମ
ଦୁର୍ଲଭ ମାନବ ଜନ୍ମ ପୂରୁ ମନସ୍କାମ ।
ପ୍ରଭୁଙ୍କର ବାଲ୍ୟଲୀଳା ମଧୁର ଆଖ୍ୟାନ
ଉପନୟନ ବୃତ୍ତାନ୍ତ ଶୁଣ ଏବେ ମନ !
ଅଷ୍ଟମ ବରଷ କ୍ରମେ ହୋଇଲା ଅତୀତ
ଉପନୟନ ନିମନ୍ତେ ଭ୍ରାତାଏ ଚିନ୍ତିତ ।
ପିତୃ ବିୟୋଗ ଅବଧି ସଂସାରର ଭାର
ସମ୍ପୂର୍ଣ୍ଣ ଭାବରେ ନ୍ୟସ୍ତ ଜ୍ୟେଷ୍ଠଭ୍ରାତାଠାର ।
ଶୁଭଦିନ ଶୁଭକ୍ଷଣ କରି ନିର୍ଦ୍ଧାରଣ
ବ୍ରତ ପାଇଁ ସହୋଦରେ କଲେ ଆୟୋଜନ ।
ବ୍ରାହ୍ମଣେତର ଜାତିଠୁଁ ଭିକ୍ଷା ନେବା ପ୍ରଥା
ପୂର୍ବରୁ ବାରଣ ଥିଲା ଏ କୁଳେ ସର୍ବଥା ।
ସେ କାରଣେ ବିପ୍ରନାରୀ ଥିଲେ ଗ୍ରାମେ ଯେତେ
ଭିକ୍ଷାମାତା ହେବା ପାଇଁ ଇଚ୍ଛାକଲେ ଚିତ୍ତେ ।
ଶ୍ରବଣ କରିଣ ଏହା ପ୍ରଭୁ ଗଦାଧର
ନିଜ ଇଚ୍ଛା ପ୍ରକାଶିଲେ ଭ୍ରାତାଙ୍କ ପାଶର ।
ଧନୀ କମାରୁଣୀଠାରୁ ନେବି ମୁହିଁ ଭିକ୍ଷା
ହୃଦୟେ ହେଉଛି ମୋର ପ୍ରବଳ ଆକାଂକ୍ଷା ।
ଭିକ୍ଷା ଦେବାକୁ ଆସିବେ ଯେବେ ଅନ୍ୟ କେହି
ତାଙ୍କଠୁଁ କେବେ ହେଁ ଭିକ୍ଷା ନେବି ନାହିଁ ମୁହିଁ ।
ଏ ହେତୁ ଘଟିଲେ ବିଘ୍ନ ଉପନୟନରେ
ନ ଡରିବ ସେଥିପାଇଁ କୌଣସି ପ୍ରକାରେ ।
ଏପରି ଜିଗର ଦେଖି ଗଦାଧରଙ୍କର
ଚିନ୍ତାରେ ମଗନ ଜ୍ୟେଷ୍ଠ ଶ୍ରୀରାମକୁମାର ।
ନାନା ରୂପେ ସେହୁ ତାଙ୍କୁ ବୁଝାଇ କହିଲେ
"ଶୂଦ୍ରଠୁ ଭିକ୍ଷା ଘେନିବା ନାହିଁ ଆମ୍ଭ କୁଳେ ।
ଏ ପ୍ରଥା ଲଙ୍ଘନ କଲେ କୁଳ ମର୍ଯ୍ୟାଦାରେ
କାଳି ବୋଳିଦେବ ସିନା ଭାବ ମନେ ଥରେ ।"
ଉତ୍ତରେ କହିଲେ ତହୁଁ ପ୍ରଭୁ ଗଦାଧର
"ପୂର୍ବରୁ କରିଛି ମୁହିଁ ଏହା ଅଙ୍ଗୀକାର ।
ସତ୍ୟ ଭଙ୍ଗ କଲେ ମୁହିଁ ହେବି ଅପରାଧୀ
ଏହା ନୁହେଁ କେତେବେଳେ ଦ୍ୱିଜୋଚିତ ବିଧି ।
ମିଥ୍ୟାବାଦୀ ଅଟଇ ଯେ ବ୍ରାହ୍ମଣ ସନ୍ତାନ
ଯଜ୍ଞୋପବୀତ ଧାରଣ ତାର ଅକାରଣ ।"
ତଥାପି ନୋହିଲେ ରାଜି ତାଙ୍କ ଜ୍ୟେଷ୍ଠ ଭ୍ରାତା
ଗଦାଧର କ୍ଷୁବ୍ଧ ମନ ପାଇ ଏ ବାରତା ।
ଅବଶେଷେ ଆପଣାର କାର୍ଯ୍ୟସିଦ୍ଧି ପାଇଁ
ଦ୍ୱାର କିଳି ଗୃହ ମଧ୍ୟେ ପଶିଲେ ଗଦାଇ ।
ଆହାର ସମସ୍ତ ଗତ, ନ ଖୋଲିଲେ ଦ୍ୱାର
ଚହଳ ପଡ଼ିଲା ଗ୍ରାମେ ଶୁଣି ସମାଚାର ।
ଯତନେ ଖୁଆଇ ଯାଙ୍କୁ ବିବିଧ ମିଷ୍ଟାନ୍ନ
ମହାସୁଖ ଭୁଞ୍ଜିଥିଲେ ପ୍ରତିବେଶିଗଣ ।
ଗୃହରେ ଆବଦ୍ଧ ସେହୁ ଆଜି ଅନାହାରେ
ନରନାରୀ ବୃନ୍ଦ ସର୍ବେ ବ୍ୟଥିତ ଅନ୍ତରେ ।
କୌଣସି ଉତ୍ତର ନାହିଁ ବୁଝାନ୍ତି ଯେ ଯେତେ
ପ୍ରବେଶ ନ କରେ ତାହା ଯେହ୍ନେ କର୍ଣ୍ଣପଥେ ।

ଧର୍ମଦାସ ଲାହା ନାମେ ଗ୍ରାମେ ଜମିଦାର
କ୍ଷୁଦିଙ୍କ ବଶିଷ୍ଟ ବନ୍ଧୁ ପରମ ଉଦାର ।
ଉପନୟନ ବୃତ୍ତାନ୍ତ ସମାଗ୍ରୀର ପାଇ
ଶ୍ରୀରାମକୁମାରେ ଲାହା ଆଣିଲେ ଡକାଇ ।
ତାଙ୍କଠୁ ସବୁ ବୃତ୍ତାନ୍ତ କରିଣ ଶ୍ରବଣ
ତାହାଙ୍କୁ କହିଲେ ଶୁଣ ମୋହର ବଚନ ।
"ତୁମ୍ଭ କୁଳେ ନ ଥିଲେହେଁ ଏ ପ୍ରକାର ପ୍ରଥା
ଅନ୍ୟକୁଳେ ଅଛି ତାର ବ୍ୟବସ୍ଥା ସର୍ବଥା ।
ଭିକ୍ଷାମାତା ହୋଇ ଧନୀ ଅଗ୍ରେ ଭିକ୍ଷା ଦେଲେ
ନୋହିବ ଆଚାରଭ୍ରଷ୍ଟ ତୁମ୍ଭେ କେତେବେଳେ ।"
ତାଙ୍କ ହିତ ଉପଦେଶ ଶିରୋଧାର୍ଯ୍ୟ କରି
ଶ୍ରୀରାମକୁମାର ଗୃହେ ଅଇଲେକ ଫେରି ।
କନିଷ୍ଠେ କହିଲେ ଡାକି "ଶୁଣରେ ଗଦାଇ
ଧନୀ ହେବ ଭିକ୍ଷାମାତା ଦ୍ୱାର ଖୋଲ ଭାଇ ।"
ପ୍ରାପ୍ତ ହୋଇଣ ଏସନ ଆଶ୍ୱାସ ବଚନ
ପ୍ରଭୁ ଗଦାଧର କଲେ ଦ୍ୱାର ଉଦ୍‌ଘାଟନ ।
ଶୁଭଲଗ୍ନେ ଶୁଭ କାର୍ଯ୍ୟ ନିର୍ବିଘ୍ନରେ ଶେଷ
ଆନନ୍ଦେ ପଡ଼ୋଶୀ ସର୍ବେ କରିଲେ ଆଶିଷ ।
ନିଜକୁ ମଣିଲେ ଧନ୍ୟା ଭିକ୍ଷା ଦେଇ ଧନୀ
ମହୋଲ୍ଲାସେ ନୃତ୍ୟ କଲେ ପ୍ରଭୁ ଗୁଣମଣି ।

କିଏ ଏହି ଧନୀ ଆହା କେଡ଼େ ଭାଗ୍ୟବତୀ
ଇଦୃଶୀ କରୁଣା କଲେ ପ୍ରଭୁ ଯାଙ୍କ ପ୍ରତି ।
ମୁନି ଋଷି ଜପ ତପ ଆଚରି ନିରତ
ଯାଙ୍କ କରୁଣା କଣାରୁ ହୁଅନ୍ତି ବଞ୍ଚିତ ।
ଧନୀଙ୍କୁ ସେ ମାତା ବୋଲି ସମ୍ବୋଧନ କରି
ତାଙ୍କଠୁଁ ମାଗିଲେ ଭିକ୍ଷା ଯେମନ୍ତ ଭିଖାରୀ ।
ପୂର୍ବଜନ୍ମେ କି ସମ୍ବନ୍ଧ ତାହାର ସହିତ
ତୁମ୍ଭ ଲୀଳା ବିଶ୍ୱପତି ତୁମ୍ଭକୁ ହିଁ ଜ୍ଞାତ ।
ଗଦାଇ ବୋଲନ୍ତି ସଦା ଧନୀ କମାରୁଣୀ ।
ବସ୍ତ୍ରହରା ଗୋପୀ ପ୍ରାପ୍ୟ ଚିନ୍ମୟୀ ଅବନୀ ।
ଏସନ ବାତ୍ସଲ୍ୟ ଭାବ ଯା ଚିତ୍ତେ ଉପୁଜେ
ତରି ଆଣି ଅଧମର ତାର ପଦରଜେ ।
ଭକତବତ୍ସଳ ପ୍ରଭୁ ଭକ୍ତ ପ୍ରାଣଧନ
ଭକ୍ତି ଡୋରେ ଭକ୍ତ ପାଶେ ଆବଦ୍ଧ ଆପଣ ।
ଅପାର କରୁଣା ତାଙ୍କ ଭକତଙ୍କଠାରେ
ଭକ୍ତିର ଅସାଧ୍ୟ କିଛି ନାହିଁ ଏ ମଧ୍ୟରେ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ଉଭା ପ୍ରଭୁ ଭଗବାନ ।

---

# ଦ୍ୱାଦଶ ଅଧ୍ୟାୟ
## ପଣ୍ଡିତମାନଙ୍କ ପରାଭବ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଗଦାଇଙ୍କ ବାଲ୍ୟଲୀଳା ଐଶ୍ୱର୍ଯ୍ୟପୂରିତ
ଶକ୍ତି କାହିଁ ଗାଇବାକୁ ସେ ମଧୁ ଚରିତ ।
ଶ୍ରବଣେ ବାସନା ଯେବେ ଥାଏ ଆରେ ମନ !
ସ୍ମରଣ କରିବା ଆସ ଅଭୟଚରଣ ।
ବାଞ୍ଛା କଳ୍ପତରୁ ସେହି କହନ୍ତି ସକଳେ
ବାସନା ପୂରିବ ତାଙ୍କୁ ଭକ୍ତିରେ ଭଜିଲେ ।

ଜୟ ଜୟ ଦୀନବନ୍ଧୁ କରୁଣା ସାଗର
ଜୟ ଜୟ ଶିଶୁରୂପୀ ପ୍ରଭୁ ଗଦାଧର ।
ଜୟ ଜୟ ଜଗପତି ଅନ୍ଧର ଶରଣ
କୃପାକରି ଖୋଲନ୍ତୁ ମୋ ନେତ୍ର ଆବରଣ ।
ସାମାନ୍ୟରେ ବିଦ୍ୟାର୍ଜ୍ଜନ କରି ପରମେଶ
ଲୀଳାରେ ଅଦ୍ଭୁତ ତତ୍ତ୍ୱ କଲେକ ପ୍ରକାଶ ।
ଅପାର ମହିମା କଥା ଶୁଣ ଅତଃପର
ଲେଖିବାକୁ ଶକ୍ତି ଦିଅନ୍ତୁ ପ୍ରଭୁ ପରାତ୍ପର ।
ଜୟ ଜୟ ସିଦ୍ଧକାମ ସର୍ବସିଦ୍ଧିଦାତା
ଜୟ ସର୍ବ ଶକ୍ତିମନ୍ତ ଅନନ୍ତ ବିଧାତା ।

ଗ୍ରାମେ ମହାଧନୀ ଧର୍ମ୍ମଦାସ ନାମେ ଖ୍ୟାତ
ସାଧୁ କାର୍ଯ୍ୟେ ଅର୍ଥବ୍ୟୟ କରନ୍ତି ବହୁତ ।
ଶ୍ରାଦ୍ଧ କିମ୍ବା ଉପଲକ୍ଷେ ସଦନେ ତାଙ୍କର
ନିମନ୍ତ୍ରି ଆଣିଲେ ଅନେ ପଣ୍ଡିତ ନିକର ।
ଟୋଲ ଥିଲା ଦେଶମଧ୍ୟେ ଯେତେ ଯେଉଁସ୍ଥାନେ
ଆହ୍ୱାନ କରିଲେ ତାଙ୍କୁ ପତ୍ରିକା ପ୍ରେରଣେ ।
ଶିଷ୍ୟ ସହ ଦଳେ ଦଳେ ପଣ୍ଡିତ ବ୍ରାହ୍ମଣ
ଲକ୍ଷ୍ୟ ଗୃହ ଅଭିମୁଖେ କଲେ ଅଭିଯାନ ।
ନିର୍ଦ୍ଦିଷ୍ଟ ସମୟେ ସର୍ବେ ଆସି ସମ୍ମିଳିଲେ
ବହୁ ତତ୍ତ୍ୱ ବିଷୟରେ ଆଲୋଚନା କଲେ ।
ପଣ୍ଡିତଙ୍କ ସାଧାରଣ ଯେ ପ୍ରକାର ଶଢ
କଥାରେ କଥାରେ ହେଲା ଗଣ୍ଡଗୋଳ ଅଢ ।
ହେଉନ୍ତୁ ବା ନ ହେଉନ୍ତୁ ବିଷୟରେ ନିପୁଣ
ତର୍କ ଯୁକ୍ତ୍ୟାଦି କରନ୍ତି ହସ୍ତ ପ୍ରସାରଣ ।
ଚତୁର୍ଦ୍ଦିଗେ ରାଷ୍ଟ୍ରହୋଇ ସଭାର ବାରତା
କ୍ରମେ କ୍ରମେ ଠୁଳହେଲା ବିଶାଳ ଜନତା ।
ବାଟ ଘାଟେ କାର୍ଯ୍ୟେ ରତ ଥିଲେ ଯେ ଯେଉଁଠି
ଗଣ୍ଡଗୋଳ ଶୁଣି ଜୁଟି ସରବେ ଏକାଠି ।
ସଙ୍ଗୀ ସଙ୍ଗେ ରଙ୍ଗେ ଆସି ପ୍ରଭୁ ଗଦାଧର
ଉପନୀତ ହେଲେ ସଭା ମଣ୍ଡପ ମଧ୍ୟର ।
ପଣ୍ଡିତଙ୍କ ତର୍କ ଯୁକ୍ତି କରିଣ ଶ୍ରବଣ
ସୁନ୍ଦର ମୀମାଂସା କଲେ ବିବାଦ ଖଣ୍ଡନ ।

କିଏ ଏ ବାଳକ ରୂପୀ ସୁଧୀ ଶିରୋମଣି
ଶାସ୍ତ୍ରର ନିଗୂଢ଼ ତତ୍ତ୍ୱ କହିଲା ବଖାଣି ।
ଅତ୍ୟାଶ୍ଚର୍ଯ୍ୟ ହୋଇଣ ସେ ପଣ୍ଡିତମଣ୍ଡଳୀ
ଘେରିଗଲେ ଗଦାଇଙ୍କୁ ହୋଇ କୌତୂହଳୀ ।
ଯେ କଲେକ ପ୍ରଶ୍ନ ତାଙ୍କୁ ଯେତେ ପରକାର
ପ୍ରସନ୍ନ ବଦନେ ପ୍ରଭୁ ଦେଲେ ତା ଉତ୍ତର ।
ବଖାଣିଲେ କେତେ କଥା ବୋଧଗମ୍ୟାତୀତ
ଯା ଶୁଣି ପଣ୍ଡିତଗଣ ହେଲେ ଚମତ୍କୃତ ।
ଦଶବର୍ଷ ମାତ୍ର ହେବ ଏହାର ଉମର
କେମନ୍ତେ ଜାଣିଲା ଗୂଢ଼ ମରମ ଶାସ୍ତ୍ରର ।
ଅଦ୍ଭୁତ ଶକତି ଦେଖି କ୍ଷୁଦ୍ର ଶିଶୁଠାରେ
ନାନା ମତ ବ୍ୟକ୍ତ କଲେ ପଣ୍ଡିତ ନିକରେ ।
କିଏ ସେହୁ ଭାଗ୍ୟବାନ ଏ ଶିଶୁ ଯାହାର
ଏ ବୟସେ କରୁଅଛି ଶାସ୍ତ୍ରାଦି ବିଚାର ।
ନିଶ୍ଚୟ ଏ ଶିଶୁ ଦୈବୀ-ଶକ୍ତି-ସମନ୍ୱିତ
ଏମନ୍ତ ସିଦ୍ଧାନ୍ତେ ଶେଷେ ହେଲେ ଉପନୀତ ।
ଶିଶୁର ବିଷୟରେ ସର୍ବେ ହୋଇଣ ବିମୁଗ୍ଧ
ପ୍ରତ୍ୟେକ ଆସିଣ ତାଙ୍କୁ କଲେ ଆଶୀର୍ବାଦ ।
ଯଥା ଏ ଅଦ୍ଭୁତ ଶିଶୁ, ତଥା କାର୍ଯ୍ୟାବଳୀ
ଗାଅ ରାମକୃଷ୍ଣ ନାମ ଦେଇ କରତାଳି ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ-ପାରାବାର ।

ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ଉଭା ପ୍ରଭୁ ଭଗବାନ ।

---

## ତ୍ରୟୋଦଶ ଅଧ୍ୟାୟ

## ଶ୍ରୀନିବାସ ଶଙ୍ଖାରୀଠାରୁ ପୂଜାଗ୍ରହଣ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ବେଦ ବେଦାନ୍ତ ପୁରାଣ ଗୀତାଦି ପଠନ
ଜପ ତପ ଯାଗ ଯଜ୍ଞ ତୀର୍ଥ ପର୍ଯ୍ୟଟନ ।

ଏ ସକଳେ କିମ୍ପା ମନ ! କରୁ ଭ୍ରାନ୍ତ ଆଶ
ଭଜ ସଦା ରାମକୃଷ୍ଣ ପ୍ରଭୁ ପରମେଶ ।
ରାମକୃଷ୍ଣ-କଥା ଭବେ ଶ୍ରବଣେ ମଙ୍ଗଳ
ଗାଅ ତାଙ୍କ ନାମ ଚିତ୍ତ କରି ସୁବିମଳ ।
କିଏ ରାମକୃଷ୍ଣ କି ବା ତାଙ୍କର ମହିମା
ମାନବ ବୁଦ୍ଧିରେ କରି ନ ହୁଅଇ ସୀମା ।

ବ୍ୟକ୍ତ କରିବାକୁ ତାଙ୍କ ମହିମା ଆଭାସେ
ପରୀକ୍ଷିତ ଶୁକଦେବ, ମୁନି ବେଦବ୍ୟାସେ ।
ମୂଢ ମୁହିଁ ମୋତେ କିବା ତାଙ୍କ କଥା ଜଣା
କୋଟୀ ବ୍ରହ୍ମାଣ୍ଡ ଯାହାଙ୍କ ଇଙ୍ଗିତେ ସୃଜନା ।
ଅବ୍ୟକ୍ତ ଅଚିନ୍ତ୍ୟ ସଦା ଯେ ମହାପୁରୁଷ
ଗଦାଧର ରୂପେ ଭବେ ତାଙ୍କର ବିକାଶ ।
ବୋଧଗମ୍ୟ ନୁହେ, ଯାହା ଇନ୍ଦ୍ରିୟର ପାରେ
ନିଜେ ସାଧି ଦେଖାଇଲେ ତାହା ଏ ଧରାରେ ।
ସକଳ ସନ୍ଦେହ ଦୂର କରିଣ ଏସନ
ମହୀରେ ସାଧିଲେ ପ୍ରଭୁ ମହତ କଲ୍ୟାଣ ।
ବିଷମ ମାମଲାର ବେଢ଼ା ଦଣ୍ଡେ ଗଲା ଫିଟି
ପ୍ରଭୁଙ୍କ ସମୀପେ ଯେତେ ଆସିଲେ ଝଟପଟି ।
ଶ୍ରୀନିବାସ ନାମେ ଜଣେ ଜାତିରେ ଶଙ୍ଖାରୀ
କାମାର ପୁକୁରେ ବାସ ବୟୋବୃଦ୍ଧ ଭାରି ।
କ୍ଷୁଦ୍ର ବ୍ୟବସାୟେ ତାର ଯା କିଛି ଅର୍ଜନ
କୌଣସି ପ୍ରକାରେ ଚଳି ଯାପଇ ଜୀବନ ।
ଅତିଶୟ ସ୍ନେହ ତାର ଗଦାଧର ପ୍ରତି
ଗଦାଇ ଆସନ୍ତି ତେଣୁ ତାର ଗୃହେ ନିତି ।
ପ୍ରଭୁଙ୍କୁ ସେ ସମାଦରେ ଆସନେ ବସାଇ
ବିବିଧ ମିଷ୍ଟାନ୍ନ ଆଣି ହସ୍ତରେ ଦିଅଇ ।
ପ୍ରଭୁଙ୍କ ଭୋଜନ ଦେଖି ଶ୍ରୀନିବାସ ତୃପ୍ତି
ଭ୍ରୂକ୍ଷେପ ନ ଥାଏ ଚେତା ଯେତେ ଡାକେ ଆସି ।
ପ୍ରେମେ ଗଦ ଗଦ ଚିତ୍ତ ଶୂନ୍ୟ ବାହ୍ୟଜ୍ଞାନ
ଭକ୍ତଶ୍ରେଷ୍ଠ ଶ୍ରୀନିବାସ ବିହ୍ୱଳ ଏସନ ।
କହଇ କରଇ କିସ ନ ଥାଏ ତା ଚେତା
ଅନିମେଷ ନେତ୍ରେ ରହି ପ୍ରାଣେ ପ୍ରାଣେ କଥା ।
କି ଭାବ ଉଠିଲା ଦିନେ ଶ୍ରୀନିବାସ ମନେ
ପ୍ରାତଃକାଳୁ ଉଠିଗଲେ କୁସୁମ ଚୟନେ ।
ସୁଗନ୍ଧ କୁସୁମ ତୋଳି ଭକ୍ତ ସହକାରେ
ମନୋରମ ପୁଷ୍ପମାଳ ଗୁନ୍ଥିଲେ ତହିଁରେ ।
ଏ କାଳେ ପ୍ରବେଶ ହେଲେ ପ୍ରଭୁ ଦୟାମୟ
ଦରଶନେ ଶ୍ରୀନିବାସ ତୁଷ୍ଟ ଅତିଶୟ ।
ମାଳଗୁନ୍ଥା ଶେଷକରି ଗଲେ ଖରତର
ଆଣିଲେ ମିଷ୍ଟାନ୍ନ କିଣି ବିବିଧ ପ୍ରକାର ।
ସେ ମାଳ ମିଷ୍ଟାନ୍ନ ନେଇ ଭକ୍ତ ଶ୍ରୀନିବାସ
ବ୍ୟକ୍ତ କଲେ ପ୍ରଭୁପାଶେ ସ୍ୱୀୟ ଅଭିଲାଷ ।

ଭକ୍ତ ବାଞ୍ଛା ପୂରଣାର୍ଥେ ପ୍ରଭୁ ଗଦାଧର
ଶ୍ରୀନିବାସ ସଙ୍ଗେ ତହୁଁ ହୋଇଲେ ବାହାର ।
ସନ୍ନିକଟେ ଥିଲା ଏକ ଦୀର୍ଘ ମଇଦାନ
ଧୀରେ ଧୀରେ ଉପନୀତ ତହିଁ ବେନି ଜନ ।
ଜନଶୂନ୍ୟ ମଇଦାନ ନୀରବ ନିସ୍ତବ୍ଧ
ତାହା ଦେଖି ଉଭୟଙ୍କ ହୃଦୟ ବିମୁଗ୍ଧ ।
ତରୁ ତଳେ ପ୍ରଭୁ ଦେବ ଘେନିଲେ ଆସନ
ଯୋଡ଼କରେ ଶ୍ରୀନିବାସ ସମ୍ମୁଖେ ଆସୀନ ।
ଅନୁରାଗେ ଗୁନ୍ଥାମାଳ କରିଣ ବାହାର
ଭକ୍ତିଭରେ ପ୍ରଭୁ କଣ୍ଠେ ଦେଲେ ଉପହାର ।
ଶ୍ରୀକରେ ଅର୍ପଣ କରି ମିଷ୍ଟାନ୍ନ ସକଳ
ନେତ୍ରୁ ବହିଗଲା ଅଶ୍ରୁଧାରା ଅବିରଳ ।
ହସ୍ତ ବୁଲାଇଲେ ସ୍ନେହେ ଶ୍ରୀଅଙ୍ଗେ ତାଙ୍କର
କର୍ଣ୍ଣ ନେତ୍ର ନାସିକାଦି ପ୍ରତ୍ୟଙ୍ଗ ଆବର ।
ଶ୍ରୀନିବାସ କରେ ପ୍ରଭୁ ଶ୍ରୀକର ସ୍ଥାପିଣ
ଆନନ୍ଦେ ମିଷ୍ଟାନ୍ନଯାକ କଲେକ ଭୋଜନ ।
ଗଦ ଗଦ କଣ୍ଠସ୍ୱରେ ଭକ୍ତ ଶ୍ରୀନିବାସ
ପ୍ରକାଶିଲେ ଆପଣାର ହୃଦ ଅଭିଲାଷ ।
"ମହୀରେ ହୋଇବ ପ୍ରଭୋ! ତବ ଲୀଳା କେତେ
ତରିଯିବେ ପାପୀ ତାପୀ ଧରାଧାମେ ଯେତେ ।
ଆସନ୍ନ ସମୟ ମୋର ଜରାଯୁକ୍ତ ତନୁ
ବଞ୍ଚିତ ହୋଇଲି ମୁହିଁ ସେ ସବୁ ଦର୍ଶନୁ ।
ଚିରଦିନ ପାଇଁ ଖେଦ ରହିଲା ମାନସେ
କରୁଣା କଟାକ୍ଷେ ଦେବ ! ରଖିନ୍ତୁ ଏ ଦାସେ ।"
ଧନ୍ୟ ଶ୍ରୀନିବାସ, ଧନ୍ୟ ଭକତି ତୁମ୍ଭର
ଯା ବଳେ ଚିହ୍ନିଲ ତୁମ୍ଭେ ବ୍ରହ୍ମାଣ୍ଡ ଠାକୁର ।
କୋଟି ନମସ୍କାର ମୋର ତୁମ୍ଭର ଚରଣେ
କୃପାକର ଥରେ ମୋତେ ପଦରେଣୁ ଦାନେ ।
ଶ୍ରୀନିବାସ ଅତି ବୃଦ୍ଧ ଶରୀର ପୃଥୁଳ
ରୋଗଶୋକଶୂନ୍ୟକାୟ ବଳିଷ୍ଠ ସବଳ ।
ପ୍ରଭୁଙ୍କୁ ଦେଖିଲେ ହୋନ୍ତି ଉନମତ୍ତ ଏତେ
କାନ୍ଧରେ ବସାଇ ନୃତ୍ୟ କରୁଥିଲେ କେତେ ।
ଭାଇ ବୋଲି ସମ୍ବୋଧନ୍ତି ତାଙ୍କୁ ଦେବରାୟେ
ତା ଶୁଣି ସେ ନୃତ୍ୟ କରେ ପ୍ରଫୁଲ୍ଲ ହୃଦୟେ ।
ଅଚଳା ଭକତି ତାର ଚିତ୍ତେ ପ୍ରବାହିତ
ଭାଗବତେ ଥିଲେ ସେହୁ ମହାନ୍ ପଣ୍ଡିତ ।

ପ୍ରଭୁଙ୍କ ସହିତେ କେତେ ହୁଏ ତର୍କ ବାଦ
କେତେବେଳେ କ୍ରୋଧ କେବେ ଅତୀବ ଆହ୍ଲାଦ ।
ବେଳେ ବେଳେ ଶାସ୍ତ୍ରତର୍କେ ମତ୍ତ ଏ ପ୍ରକାର
ଶ୍ରୀନିବାସ କ୍ରୋଧାନ୍ୱିତ ସପ୍ତମ ଉପର ।
"ଉନ୍ମତ୍ତ ମୋହର ଆଉ ନୋହିବ ସାକ୍ଷାତ"
ଏହା କହି ଚାଲିଯାଏ କୋପେ ଜର୍ଜ୍ଜରିତ ।
ପ୍ରଭୁ ଗଦାଧର ତାଙ୍କୁ କହନ୍ତି ଉତ୍ତରେ
ନ ଚାହିଁବି ତବ ମୁଖ କସ୍ମିନ କାଳରେ ।
କିଛୁକ୍ଷଣ ପରେ ପୁଣି ଦୁହିଙ୍କ ମିଳନ
ପୂରୁବ ବିବାଦ ଆଉ ନ ଥାଏ ସ୍ମରଣ ।

କଥୋପକଥନ ଯେହ୍ନେ ପରମ ଆତ୍ମୀୟ
ରସମାଳ ମହାନନ୍ଦେ ପ୍ରନଷ୍ଟ ଉଭୟ ।
ଶ୍ରୀନିବାସ ସହ ଲୀଳା ଏମନ୍ତ ସବଂଶ
ବୟସରେ ଦୁହେଁ ଯେହ୍ନେ ପିତାମହ ପୌତ୍ର ।
ନର ରୂପ ଧରି ହରି ମର୍ତ୍ତ୍ୟେ ଆଗମନ
ଚିହ୍ନିଥିଲେ ଶ୍ରୀନିବାସ ଭକ୍ତ ପ୍ରଧାନ ।
ପ୍ରଭୁଙ୍କଠି ଥିଲା ତେଣୁ ପ୍ରାଣାଧିକ ସ୍ନେହ
ଆଶୀର୍ବାଦ ସମନ୍ୱିତ ଚିତ୍ତ ଅହରହ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରନ୍ତି ପ୍ରାଣୀ ଭବପାରାବାର ।

ଦୂର ହେବ ଶୋକ ଦୁଃଖ ସଂସାର ବନ୍ଧନ
କର୍ଣ୍ଣଧାର ରୂପେ ହେବେ ପ୍ରଭୁ ଭଗବାନ ।

---

## ଚତୁର୍ଦ୍ଦଶ ଅଧ୍ୟାୟ

## ମହେଶ ବେଶ ଧାରଣେ ଭାବସମାଧି

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣା ସିନ୍ଧୁ ଜଗଜ୍ଜନ ଗୁରୁ ।
ଶ୍ରୀରାମକୃଷ୍ଣ ଚରିତ ଅପୂର୍ବ ଭାରତୀ
ଶୁଣ ଚିତ୍ତେ ଶୁଣ ମନ ! ରାମକୃଷ୍ଣ ଗୀତି
ପ୍ରଭୁଙ୍କର ବାଲ୍ୟଲୀଳା ଅତୀବ ମଧୁର
ଶ୍ରବଣେ ପୂତ ହୁଅଇ କାୟ ପ୍ରାଣୀଙ୍କର ।
ସାଧନ ଭଜନ ଅବା ପୁଣ୍ୟ କର୍ମ୍ମ ଫଳେ
ଏ ମର୍ତ୍ତ୍ୟମଣ୍ଡଳେ ସେହି ଭକତି ନ ମିଳେ ।
ଶ୍ରବଣ କୀର୍ତ୍ତନେ ପ୍ରଭୁ ରାମକୃଷ୍ଣ ନାମ
ଅନାୟାସେ ଲବ୍ଧ ହୁଏ ସେହି ଭକ୍ତି ଧନ ।
ଧାରଣ କରିଣ ପ୍ରଭୁ ଯଜ୍ଞ-ଉପବୀତ
ସେବା ପୂଜା ଆଦି ବିପ୍ରୋଚିତ କାର୍ଯ୍ୟେ ରତ ।
ପ୍ରତ୍ୟକ୍ଷ ଦେବତା ଗୃହେ ନାମ ରଘୁବୀର
ତାଙ୍କୁ ପୂଜିବାକୁ ଏବେ ପ୍ରାପ୍ତ ଅଧିକାର ।
ନବ ଅନୁରାଗେ ପୂର୍ଣ୍ଣ ପ୍ରଭୁଙ୍କର ଚିତ୍ତ
ସନ୍ଧ୍ୟା ଗାୟତ୍ର୍ୟାଦି ଯଥାବିଧି ଆଚରିତ ।

କ୍ରମେ କ୍ରମେ କାଳ ଯେତେ ହେଲା ଅଗ୍ରସର
ସେବା ପୂଜା ଧ୍ୟାନେ ମଗ୍ନ ଚିତ୍ତ ଗାଢ଼ତର ।
ଚିତ୍ତ ପ୍ରଫୁଲ୍ଲିତ ନାନା ଦିବ୍ୟ ଦରଶନେ
ବାହ୍ୟଜ୍ଞାନଶୂନ୍ୟ ଭାବରାଜ୍ୟେ ବିଚରଣେ ।
ଶିବରାତ୍ରି ଉପଲକ୍ଷେ ଥରେ ଗଦାଧର
ଶିବଙ୍କୁ ପୂଜିବା ପାଇଁ ମନେ କଲେ ସ୍ଥିର ।
ନିଷ୍ଠା ସହ ସେବା ପୂଜା ବ୍ରତ ଅନଶନ
ପ୍ରଥମ ପ୍ରହର ପୂଜା ନିର୍ବିଘ୍ନେ ସମ୍ପନ୍ନ ।
ଅତଃପର ଶିବଭାବେ ଏମନ୍ତ ବିଭୋର
ଶିବ ହେଲା ଜ୍ଞାନ ଧ୍ୟାନ ଜୀବନ ସମ୍ବଳ ।
ଶିବରାତ୍ରି ଉପଲକ୍ଷେ ସେ ଗ୍ରାମ ମଧ୍ୟରେ
ଯାତ୍ରା ଏକ ଆରମ୍ଭିଲେ ଯୁବକ ନିକରେ ।
ପାଇନ ଶ୍ରୀ ସୀତାନାଥ ଧାର୍ମ୍ମିକପ୍ରବର
ତାହାଙ୍କର ଥିଲା ଏକ ଶିବଙ୍କ ମନ୍ଦିର ।
ମନ୍ଦିର ସମ୍ମୁଖେ ହେଲା ଯାତ୍ରା ଆୟୋଜନ
ଯାତ୍ରାଦଳ ଭୁକ୍ତ ଯେତେ ସରଞ୍ଜାମମାନ ।
ଶିବରାତ୍ରିରେ ହୋଇବ ଶିବଙ୍କର ପାଲା
ଶ୍ରବଣ ନିମିତ୍ତ ହେଲା ସୁବୃହତ ମେଳା ।

ଦର୍ଶକମାନଙ୍କ ରୀତ ସର୍ବତ ଯେମନ୍ତ
ସାମାନ୍ୟ ବିଳମ୍ବ ହେଲେ ଅସ୍ଥିର ଅତ୍ୟନ୍ତ ।
ବିଳମ୍ବର ହେତୁ ଶିବ ସାଜିଥାନ୍ତା ଯେହୁ
ସହସା ହୋଇଲା ଗୁରୁ ପୀଡ଼ାକ୍ରାନ୍ତ ସେହୁ ।
ଚତୁର୍ଦ୍ଦିଗେ ପଡ଼ିଗଲା ଅତ୍ୟନ୍ତ ଚହଳ
ଉପାୟ ବିହୁନେ ନିରୁତ୍ସାହ ଯୁବାଦଳ ।
ଗୟା ବିଷ୍ଣୁ ନାମଧାରୀ ଲାହାଙ୍କ ତନୟ
ପ୍ରଭୁଙ୍କ ସଙ୍ଗାତ ଯେହୁ ପ୍ରିୟ ଅତିଶୟ ।
ଯୁବକଙ୍କ ପାଶେ ଯାଇ ବାଢିଲେ ପ୍ରସ୍ତାବ
"ଆସ ଗଦାଇଙ୍କୁ ଡାକି ସଜାଇବା ଶିବ ।
ହେଲେହେଁ ତାହାର ଅତି ଅଳ୍ପ ବୟଃକ୍ରମ
ଶିବ ପାଲି କରିବାକୁ ହେବ ପାରଙ୍ଗମ ।
ଯଥା ସୁଠାମ ଗଠନ ଆବର ଆକୃତି
ମହେଶ ସାଜିଲେ ହେବ ମନୋରମ ଅତି ।"
ଗୟା ବିଷ୍ଣୁ ସଙ୍ଗେ ସର୍ବେ ହୋଇ ଏକମତ
ଗଦାଧର ପାଶେ ଶୀଘ୍ର ହେଲେ ଉପସ୍ଥିତ ।
କହିଲେ ବୟସ୍ୟଗଣ "ଶୁଣ ଶୁଣ ଭାଇ !
ତୁମ୍ଭ ପାଶେ ଯହିଁପାଇଁ ଆମ୍ଭେ ଆସିଲଇଁ ।
ଶିବ ହେବ ବୋଲି ଯାକୁ କରିଥିଲୁ ସ୍ଥିର
ସହସା ଆକ୍ରାନ୍ତ ସେହି ରୋଗେ ଭୟଙ୍କର ।
ଶିବଙ୍କ ଭୂମିକା ତୁମ୍ଭେ ନ କଲେ ଗ୍ରହଣ
ପଣ୍ଡ ହେବ ଆମ୍ଭର ଏ ସବୁ ଆୟୋଜନ ।"
ଏହା ଶୁଣି ଗଦାଧର କହିଲେ ଉତ୍ତରେ
"ବ୍ୟାଘାତ ହୋଇବ ମୋର ଶିବଙ୍କ ପୂଜାରେ ।"
ବାଳକେ କହିଲେ ତହୁଁ ଶୁଣ ହେ ଗଦାଇ ।
ଶିବ ପାଲି କଲେ ସେହି ବେଶେ ସଜ ହୋଇ,
ତା ସଙ୍ଗେ ଶୁଣିଲେ ତାଙ୍କ ନାମ ଅନୁକ୍ଷଣ
ପୂଜାରୁ କୌଣସି ଗୁଣେ ନୋହିବ ତା ନ୍ୟୂନ ।"
ଅଧିକନ୍ତୁ ଯଦି ଭାଇ ! ଯାତ୍ରା ନୋହି ପାରେ
ନିରାନନ୍ଦ ହେବ କେତେ ଲୋକଙ୍କ ମନରେ ।
ଶିବ-ବ୍ରତ ଧରି ଆସିଛନ୍ତି ଶ୍ରୋତାଗଣ
ରଜନୀ ଯାପିବେ ଶୁଣି ଶିବ-ଉପାଖ୍ୟାନ ।
ଏମନ୍ତେ ପାଳିବେ ବ୍ରତ ଚିତ୍ତେ ଅଭିଳାଷ
କେସନେ କରିବା ଭାଇ ! ତାହାଙ୍କୁ ନିରାଶ ।"
ଏହା ଶୁଣି ଦେବରାୟେ ଉଠିଣ ତ୍ୱରିତ
ସଙ୍ଗୀ ସହ ସଭାସ୍ଥଳେ ହେଲେ ଉପନୀତ ।

ଗଦାଇ ସାଜିବେ ଶିବ ଶୁଣି ଏ ବାରତା
ଶ୍ରୋତାଙ୍କର ନ ରହିଲା ଆନନ୍ଦ ଇୟତ୍ତା ।
ନାନା ଲୋକେ ବାହାରିଲେ ଧରି ନାନା ବେଶ
ରାତ୍ରି ଗତ ପ୍ରାୟ ଯାହା ଅଧେ ହେଲା ଶେଷ ।
ମହେଶଙ୍କ ଆଗମନ ହେବ କେତେବେଳେ
ଶ୍ରୋତାଏ ପ୍ରତୀକ୍ଷା କରି ଅତି ବ୍ୟଗ୍ର ହେଲେ ।
ଏ ସମୟେ ବିଜେ କଲେ ଶୂଳପାଣି ଶିବ
ଦରଶନ ପ୍ରାପ୍ତି ମାତ୍ରେ ଶ୍ରୋତାଏ ନୀରବ ।
ମହେଶଙ୍କ ଆଭରଣେ ଅଙ୍ଗ ସୁଶୋଭନ
ହରିନେଲା ଯାହା ଦର୍ଶକଙ୍କ ପ୍ରାଣ ମନ ।
ବିଭୂତି ଭୂଷିତ ଅଙ୍ଗ ଅତି ସମୁଜ୍ଜ୍ୱଳ
ପରାଭୂତ ଶରତର ଚନ୍ଦ୍ରମା ବିମଳ ।
ଶିରେ ସୁଶୋଭିତ କୃଷ୍ଣବର୍ଣ୍ଣ ଜଟାଭାର
କଣ୍ଠରେ ରୁଦ୍ରାକ୍ଷମାଳା ଦିଶେ ମନୋହର ।
ଏକ ହସ୍ତେ ଶୋଭେ ଶିଙ୍ଗା, ତ୍ରିଶୂଳ ଅପରେ
ବିଚିତ୍ର ବ୍ୟାଘ୍ର ଅମ୍ବର ଶୋଭିତ କଟୀରେ ।
ସର୍ବୋପରି ଚିତ୍ତଲୋଭା ଶ୍ରୀଅଙ୍ଗେ ଆବେଶ
ଧୀରେ ଧୀରେ ଢୁଳି ଢୁଳି ସଭାରେ ପ୍ରବେଶ ।
ଦର୍ଶକେ ଭାଳିଲେ ଏ ତ ନୁହେଁ ଗଦାଧର
କୈଳାସ ତେଜିଣ ଉଭା ସ୍ୱୟଂ ମହେଶ୍ୱର ।
ଶିବଙ୍କ ଆବେଶେ ବାହ୍ୟଜ୍ଞାନ ଲୋପପାଇ
ଅବିରଳ ବାରିଧାର ନୟନୁ ଝରଇ ।
କେଜାଣେ ଆସିଲା କାହୁଁ କେତେ ଏତେ ବାରି
ସିକ୍ତ କଲା ପଦତଳ ମୃତ୍ତିକା ଆବରି ।
ଜାହ୍ନବୀ ବସନ୍ତି ସଦା ଗଙ୍ଗାଧର-ଶିରେ
ସତେ ବା ଜାହ୍ନବୀ ଆସି ଉଭିଲେ ନେତ୍ରରେ ।
ଦର୍ଶକେ ବିହ୍ୱଳ ହେଲେ ଦେଖି ସେ ମୂରତି
ଶିଶୁ ଗଦାଧର ଅଙ୍ଗେ ମହେଶ ପ୍ରକୃତି ।
ଗରଗର ମହାଭାବ ସପ୍ତମେ ଉଠିଣ
ବ୍ରହ୍ମରନ୍ଧ୍ରେ ପରମାତ୍ମା ବିଲୀନ ଯେସନ ।
ଦର୍ଶକଙ୍କ ମଧ୍ୟେ ଯେହୁ ଥିଲେ ସୁପଣ୍ଡିତ
ମହେଶ ଦର୍ଶନେ ଚିତ୍ତେ ଭକତି ସଞ୍ଜାତ ।
ଖରତରେ ବିଲ୍ୱପତ୍ର ସଂଗ୍ରହ କରିଣ
ମହେଶ ଅର୍ଚ୍ଚନ ପାଇଁ କଲେ ଆୟୋଜନ ।
ପୁଷ୍ପସହ ବିଲ୍ୱପତ୍ର ନଇବେଦ୍ୟ ଆଣି
ଅନୁରାଗେ ଅର୍ଘ୍ୟ ଦେଲେ ମନ୍ତ୍ର ଗୁଣି ଗୁଣି ।

ଜୟ ହର ହର ଶିବ ବମ୍ ବମ୍ ବୋଲି
ଏମନ୍ତ ନିନାଦେ ସଭାସ୍ଥଳ ପୂର୍ଣ୍ଣ ହେଲା ।
ଯେତେ ଚେଷ୍ଟା ସତ୍ତ୍ୱେ ସଂଜ୍ଞା ନ ଆସିଲା ଫେରି
ସଙ୍ଗୀମାନେ ରହିଲେକ ପାରି ବିଶ୍ରିବଶି
କେତେ କେତେ କହନ୍ତି ସେ ଏହି ଅବସ୍ଥାରେ
ଉନାଦନ କଟାଇଲେ ଆସି ନିଜ ଘରେ ।
ଏସନେ ସେ ଉବସର ଯାତା ହେଲା ଶେଷ
ଶ୍ରୋତାଗଣ ଫେରିଗଲେ ଯେ ଯାହା ଆବାସ ।

ଅଦ୍ଭୁତ ବ୍ୟାପାରେ ପୂର୍ଣ୍ଣ ପ୍ରଭୁଙ୍କ ଚରିତ
ଶ୍ରବଣେ କୀର୍ତ୍ତିନେ ପୂତ ହୁଏ ପାପ ଚିତ୍ତ ।
ମୂଢ଼ମନ ! ଭଜ ରାମକୃଷ୍ଣ ଦିବାରାତି
ହୃଦୟ-ବାସନା ଯଦି ଶାନ୍ତି-ଅନୁଭୂତି ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
ପରମ ଆଶ୍ରୟ ଏବେ ପ୍ରଭୁ ଭଗବାନ ।

---

# ପଞ୍ଚଦଶ ଅଧ୍ୟାୟ

## ବିଦ୍ୟାଶିକ୍ଷା ଶେଷ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଯତ୍ସାମାନ୍ୟ ଗୃହାଳୀରେ ଲେଖାପଢ଼ା କରି
ବିଦ୍ୟାଶିକ୍ଷା ଶେଷ କଲେ ପ୍ରଭୁ ନରହରି ।
ହିସାବୀ ବୁଦ୍ଧି ତ କେଭେ ନ ଥିଲା ତାଙ୍କର
ଅଙ୍କଶାସ୍ତ୍ରରେ ଅଶ୍ରଦ୍ଧା ତେଣୁ ବରାବର ।
ହରଣ ଗୁଣନ ଯୋଗ ଶିଖି ସାମାନ୍ୟରେ
ଉନ୍ନତ ଆକାଂକ୍ଷା ଆଉ ନୋହିଲା ସେଥିରେ ।
ଏତକ ମାତ୍ର ତାଙ୍କର ବିଦ୍ୟା ଅରଜନ
ଦେଖାନାହିଁ ନ୍ୟାୟ, ଶ୍ରୁତି, ସ୍ମୃତି, ବ୍ୟାକରଣ ।
ବଡ଼ ବଡ଼ ଶାସ୍ତ୍ର ଜ୍ଞାନୀ ପଣ୍ଡିତ ସକଳ
ମୁହେଁ ବୋଲୁଯା'ନ୍ତି ଶାସ୍ତ୍ରୁଁ ଶ୍ଳୋକ ଅନର୍ଗଳ ।
କଦାପି କରନ୍ତି ନାହିଁ ସାଧନା ଜୀବନେ
ବିଷୟ ପଙ୍କରେ ମଗ୍ନ ଚିତ୍ତ ଅନୁକ୍ଷଣେ ।
ଯେ ଶିକ୍ଷା ପ୍ରଭାବେ ପ୍ରାଣୀ ହୁଅନ୍ତି ଉଦ୍ଧର
ତହିଁ ପ୍ରତି ନ ବଳିଲା ତାଙ୍କର ମାନସ ।
ପାଠଶାଳା ଛାଡ଼ି ତହୁଁ ପ୍ରଭୁ ଗଦାଧର
ପୋଥି ଲେଖିବାକୁ ଆରମ୍ଭିଲେ ଅତଃପର ।
ଏକାଗ୍ର ଚିତ୍ତରେ ବସି ପ୍ରଭୁ ରାତିଦିନ
ଲେଖିଥିଲେ ପୋଥି ଏକ ରାମକୃଷ୍ଣାୟଣ ।

ହସ୍ତଲିପି ଶ୍ରୀହସ୍ତର ଅତି ଚମତ୍କାର
ଗୋଟା ଗୋଟା ବର୍ଣ୍ଣମାନ ଲେଖା ଦୀର୍ଘାକାର ।
ସୁପବିତ୍ର ହସ୍ତଲିପି ଅତି ସଯତନେ
ସୁରକ୍ଷିତ ହୋଇଅଛି ତାଙ୍କ ଜନ୍ମସ୍ଥାନେ ।
ଗଦାଇଙ୍କ ଚିତ୍ତ ଏବେ ସଦା ଅନ୍ତର୍ମୁଖୀ
ସେବା ପୂଜା ସାଧନାରେ ଥାନ୍ତି ସଦା ସୁଖୀ ।
ନାନା ଦେବଦେବୀ ପ୍ରତି ହୃଦୟ ଆକୃଷ୍ଟ
ମୂର୍ତ୍ତି ଗଢ଼ିବାକୁ ନିଜେ ସତତ ସଚେଷ୍ଟ ।
ଗ୍ରାମେ ଯେଉଁ କୁମ୍ଭକାର ଗଢ଼ଇ କଣ୍ଢେଇ
ସେ ବିଦ୍ୟା ଶିଖିଲେ ପୁଣି ତାହା ପାଶେ ଯାଇ
ନାନା ଦେବଦେବୀ ମୂର୍ତ୍ତି କରଣ ନିର୍ମାଣ
କ୍ରୀଡ଼ା କଲେ ସଙ୍ଗୀ ସହ କରୁଣା ନିଧାନ ।
ଚିତ୍ରକାର ଗୃହେ ପୁଣି ଯାଇ ବେଳେ ବେଳେ
ତା ସମୀପେ ଚିତ୍ରାଙ୍କନ କାର୍ଯ୍ୟ ଶିକ୍ଷା କଲେ ।
ଶ୍ରୀକରେ ଆଙ୍କିଲେ ଦେବଦେବୀ ମୂର୍ତ୍ତି ଯେତେ
ଦେଖିଲେ ହିଁ ମନେ ହୁଏ ସଜୀବ କି ସତେ ।
ଚକ୍ଷୁକର୍ଣ୍ଣ ନାସିକାଦି ଅତି ମନୋହର
ନିର୍ଦ୍ଦୋଷ ଅଟଇ ଯେହ୍ନେ ପଟୁ କାରିଗର ।
ବିଶ୍ୱଧାତା ପ୍ରଭୁ ଯେହ୍ନ ବିଶ୍ୱକୁ ସୃଜିଲେ
ଅବନୀରେ ଅବତରି ଏସନେ ଖେଳିଲେ ।
ଅରୁଣୋଦୟ ପୂର୍ବୁ ଯେହ୍ନେ ପୂର୍ବାକାଶେ
ଲୋହିତ ବରଣ ଛବି ଆଗମ ନିର୍ଦ୍ଦେଶେ ।

ଜଗତପାବନ ରବ ପ୍ରଭୁ ଗଦାଧର
ଆଗମନ କଥା ହେଲା ତେମନ୍ତ ବିସ୍ତାର ।
ଶୂନ୍ୟେ ଶୂନ୍ୟେ ଗଲା ବାର୍ତ୍ତା ଲୋକେ ଅଗୋଚର
ନାନା ସ୍ଥାନୁ ଲୋକ ଆସି ଭେଟିଲେ ଏଥର ।

କୀର୍ତ୍ତନ ବା ଯାତ୍ରା ଯାହା ହୁଏ ଯେଉଁଠାରେ
ଶ୍ରବଣେ ଗମନ୍ତି ପ୍ରଭୁ ସଙ୍ଗୀ ସହିତରେ ।

କେତେବେଳେ ଅବା ନିଜେ ସଙ୍ଗୀ ସହ ମାତି
ହରିନାମ ସଂକୀର୍ତ୍ତନେ ମତ୍ତ ଦିନ ରାତି ।
କେତେବେଳେ ଅବା ପୁଣି ପ୍ରଭୁ ଦୟାମୟ
ସଙ୍ଗୀଙ୍କୁ ଘେନି କରନ୍ତି ଯାତ୍ରା ଅଭିନୟ ।

କେବେ ରଘୁବୀରଙ୍କର ଭଜନ ପୂଜନେ
ବିଭୋଳ ରହନ୍ତି ଏକାବେଳେ ତନମନେ ।
ଧ୍ୟାନେ ବସି କେବେ ପୁଣି ଲୁପ୍ତ ବାହ୍ୟ ଜ୍ଞାନ
କିଛି ନ ଶୁଣନ୍ତି ଯେତେ କଲେକ ଆହ୍ୱାନ ।

କେବେ ବିଚରନ୍ତି ଏକା ନିର୍ଜ୍ଜନ ପ୍ରାନ୍ତରେ
ଅପାର ଆନନ୍ଦ ଭୋଗ ଈଶ୍ୱର ଚିନ୍ତାରେ ।
ସରଳ ସ୍ୱଭାବାପନ୍ନ ଚନ୍ଦ୍ରାଙ୍କ ନନ୍ଦନ
ଗ୍ରାମବାସୀଙ୍କର ହେଲେ ଅତି ସ୍ନେହ ଧନ ।

ପୁରାଣାଦି ପାଠ ଗ୍ରାମେ ହୁଏ ଯେଉଁ ସ୍ଥାନେ
ପ୍ରଭୁଙ୍କୁ ଡାକନ୍ତି ସର୍ବେ ପଠନ କାରଣେ ।

ଯଥା ସ୍ୱରୂପ ସୁନ୍ଦର ତଥା କଣ୍ଠ ସ୍ୱର
ରୂପ ଲାବଣ୍ୟର ଭବେ ନାହିଁ ପଟାନ୍ତର ।

ଜନମନ ଲୋଭି ବେନି ବଙ୍କିମ ନୟନ
ଯେ ପ୍ରକାର ଆକର୍ଷିତ ଗୁଣେ ଶରାସନ ।
ପ୍ରଶସ୍ତ ଲଲାଟ ନାସା ଅତି କମନୀୟ
ସୁଶୋଭିତ ହୁଏ ତହିଁ ରଙ୍ଗାଧରଦ୍ୱୟ ।

ଶିରରୁ ଦୋଳାୟମାନ ସୁଦୀର୍ଘ କୁନ୍ତଳ
ଆବରଇ ଅର୍ଦ୍ଧ ଭାଗ ଶ୍ରୀମୁଖ ମଣ୍ଡଳ ।

ଶରତ ଚନ୍ଦ୍ରମା ଯେସନ୍ତେ ଜଳଦ ବେଷ୍ଟନେ
କୁନ୍ତଳ ବଢ଼ାଏ ମୁଖ-ଶୋଭାଟି ତେସନେ ।

ସୁବିଶାଳ ବକ୍ଷସ୍ଥଳ ଅତି ମନୋହର
ଆଜାନୁଲମ୍ବିତ ବେନି ପାର୍ଶ୍ୱେ ବେନି କର ।

ଯଥା ସୁଶ୍ରୀ କଳେବର ତଥା ପାଦଦ୍ୱୟ
ପାପୀ ତାପୀ ଭକ୍ତଜନ ଅଭୟ ଆଶ୍ରୟ ।

ସୌନ୍ଦର୍ଯ୍ୟ ଆକର ପ୍ରଭୁ ସର୍ବ ଗୁଣାଧାର
ଉପମା ବିହୀନ ତାଙ୍କ ମଧୁ କଣ୍ଠସ୍ୱର ।
ଶ୍ୟାମା ଶ୍ୟାମ ବିଷୟକ ଗୀତ ସଦା ମୁଖେ
ଏକମନେ ଶୁଣନ୍ତି ଯା ନରନାରୀ ସୁଖେ ।

ଥରେ ଯେ କରଇ ତାଙ୍କ ସଙ୍ଗୀତ ଶ୍ରବଣ
ମନୁ ତା ହୁଅଇ ନାହିଁ କେବେ ବିସ୍ମରଣ ।

ପଢ଼ୁଥିଲେ ପୋଥି ଦିନେ ଅତି ଅନୁରାଗେ
ବେଷ୍ଟିତ ହୋଇଣ ନରନାରୀ ଚଉଦିଗେ ।
ନିକଟସ୍ଥ ବୃକ୍ଷ ଡାଳେ ବସି ଏକ ହନୁ
ସେ ପଠନ ଶୁଣି ଯେସନ୍ତେ ଭାବମୟ ତନୁ ।

ବୃକ୍ଷରୁ ଓହ୍ଲାଇ ଆସି ଅଶଙ୍କିତ ମନେ
ବସିଲା ଚରଣ ଧରି ପ୍ରଭୁ ସନ୍ନିଧାନେ ।
ପୋଥି ପାଠ ଯେତେକ୍ଷଣ ନୋହିଲା ସମାପ୍ତ
ସେହି ଭାବେ ରହିଲା ସେ ଭକ୍ତ ହନୁମନ୍ତ ।

ମହାପ୍ରଭୁ ଗଦାଧର ପଠନ ଶେଷରେ
ପୋଥି ଧରି ସ୍ପର୍ଶିଲେ ହନୁମନ୍ତ ଶିରେ ।
ପାଦେ ପ୍ରଣମିଣ ତହୁଁ ସେ ହନୁ ଭକତ
ଲମ୍ଫ ଦେଇ ବୃକ୍ଷୋପରେ ଉଠିଲା ତ୍ୱରିତ ।

କିଏ ଏହି ଭକ୍ତରୂପୀ ପଶୁ ହନୁମାନ
ପାଦେ ପ୍ରଣମିଲା ଅବା ସେହୁ କି କାରଣ ।

ତୁମ୍ଭର ହିଁ ଲୀଳା ପ୍ରଭୋ ! ତୁମ୍ଭଙ୍କୁ ହିଁ ଜଣା
କିବା ସାଧ୍ୟ ବଦ୍ଧ ଜୀବେ କରିବେ କଳନା ।

ତୁମ୍ଭେ ହିଁ ସର୍ବଜ୍ଞ ପ୍ରଭୁ ସର୍ବ ତତ୍ତ୍ୱାଧାର
ତୁମ୍ଭଠାରୁ ଜାତ ଏହି ବିଶ୍ୱ ଚରାଚର ।
ମାନବ ଆକାର ସତ୍ୟ, କାର୍ଯ୍ୟ ଅନ୍ୟ ରୂପ,
କ୍ରୀଡ଼ା ମାନ ଅଲୌକିକ ଆଉ ଅପରୂପ ।

ମନୋବୁଦ୍ଧି ଅଗୋଚର ତୁମ୍ଭେ ସଦାବେଳେ
ଜାଣିବୁ କାହୁଁ ସେ ତତ୍ତ୍ୱ କ୍ଷୁଦ୍ର ବୁଦ୍ଧିବଳେ ।

ଦେଇଛନ୍ତି ସତ୍ୟ ପ୍ରଭୋ ! ଉଜ୍ଜ୍ୱଳ ଲୋଚନ
ବିଷମ ପରଦା ତାର ଅଗ୍ରେ ବିଦ୍ୟମାନ ।

କଠିନ ପ୍ରସ୍ତରେ ତାହା ଯେହେତୁ ନିର୍ମିତ
ଦୃଷ୍ଟି ଶକ୍ତି ଅସମର୍ଥ ଭେଦିବା ନିମିତ୍ତ ।

ଶିବ ବ୍ରହ୍ମା ନ ପାନ୍ତି ଯେ ମହିମାର ଅନ୍ତ
ମୁଁ ଛାର ନର ଧାରଣା କରିବ କେମନ୍ତ ?

ଚତୁର୍ଦ୍ଦଶ ବର୍ଷ କ୍ରମେ ଏମନ୍ତେ ଅତୀତ
ଗାଅ ରାମକୃଷ୍ଣ ନାମ ହୋଇ ଏକ ଚିତ୍ତ
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବ ପାରାବାର ।

ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ହେବେ ପ୍ରଭୁ ଭଗବାନ ।

---

# ଷୋଡ଼ଶ ଅଧ୍ୟାୟ

## ବୟସ୍ୟଙ୍କ ସହିତ କ୍ରୀଡ଼ା ଓ ପୋଥିପାଠ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ପ୍ରଭୁଙ୍କର ବାଲ୍ୟଲୀଳା ଅପୂର୍ବ କଥନ
ସାଧୁଜନେ ଶୁଣ ସେହି ପବିତ୍ର ଆଖ୍ୟାନ ।
ପୁରୁଷ ରମଣୀ ଥିଲେ ଗ୍ରାମ ମଧ୍ୟେ ଯେତେ
ଇଚ୍ଛାମତେ କ୍ରୀଡ଼ା କଲେ ପ୍ରଭୁଙ୍କ ସହିତେ ।
ନଡ଼ ସାନ ଆଦି ଯେତେ ଥିଲେ ସହଚର
ସରବେ ମଣିଲେ ତାଙ୍କୁ ଦଳର ସର୍ଦ୍ଦାର ।
ଯାହା ପ୍ରଭୁ ଯେ ଆଦେଶ ଦିଏ ଯେତେବେଳେ
ତଦଣ୍ଡେ ପାଳନ୍ତି ତାହା ସସ୍ନେହେ ସକଳେ ।
ଯେତେ କ୍ରୀଡ଼ା କଲେ ସେହୁ ସଙ୍ଗୀଙ୍କ ସହିତ
ଅଲୌକିକ କାର୍ଯ୍ୟାବଳୀ ନର ବୁଦ୍ଧ୍ୟାତୀତ ।
ଉପନୀତ ହୋଇ ଦିନେ ମାଣିକ-ଉଦ୍ୟାନେ
ମାଥୁର ପ୍ରସଙ୍ଗ ଉପୁଜିଲା ତାଙ୍କ ମନେ ।
ସଙ୍ଗୀଙ୍କୁ କହିଲେ ଡାକି ପ୍ରଭୁ ଗଦାଧର
କରିବା ମାଥୁର ପାଲା ଆଜ ଏହିଠାର ।
ଆଜ୍ଞାମାତ୍ରେ ସଙ୍ଗିଗଣ ରୁଣ୍ଡ ହୋଇ ତହିଁ
ଆରମ୍ଭିଲେ ଲୀଳା ଯାହା କେବେ ଦେଖା ନାହିଁ ।
ବୃନ୍ଦା ଆଦି ସଖୀ ବେଶେ ସର୍ବେ ସଜ ହେଲେ
ଦରଶନେ ଦେବରାୟେ ଆନନ୍ଦେ ଭାସିଲେ ।
ଆପଣେ ସାଜିଣ ତହିଁ ରାଇ କମଳିନୀ
ବିରହ ବିଧୁର ଗୀତ ଆରମ୍ଭିଲେ ଟାଣି ।
ରାଧିକାଙ୍କ ଭାବେ କ୍ରମେ ତନମୟ ଚିତ୍ତ
'ମୋ ପରାଣ ବନ୍ଧୁ' କହୁଁ କହୁଁ ଅଶ୍ରୁପାତ ।

'କାହାନ୍ତି ମୁରଲୀଧାରୀ ମୋ ହୃଦ ରତନ
'ହା କୃଷ୍ଣ' 'ହା କୃଷ୍ଣ' ବୋଲି କାନ୍ଦିଲେ ସଘନ ।
ଝରଝର ଅନିବାର ନେତ୍ରୁ ବହି ନୀର
ସିକ୍ତ କଲା କଟୀବସ୍ତ୍ର ଦେବରାୟଙ୍କର ।
କୃଷ୍ଣ ଅଦର୍ଶନେ ପ୍ରାଣ ବ୍ୟାକୁଳ ହୋଇଣ
ଭୂତଳେ ପଡ଼ିଲେ ଶେଷେ ସଂଜ୍ଞା ହରାଇଣ ।
ତାହା ଦେଖି ସଙ୍ଗିଗଣ ଅତୀବ ବ୍ୟାକୁଳେ
କି ହେଲା କି ହେଲା କହି ବହୁତ କାନ୍ଦିଲେ ।
ପାଣି ଆଣି କେ ସିଞ୍ଚିଲା ବଦନେ ତାଙ୍କର
'ଗଦାଇ ଗଦାଇ' କେ ବା ଡାକେ ବାରମ୍ବାର ।
ପ୍ରେତ ଦୃଷ୍ଟି ପଡ଼ିଲା କି ଭାଳିଣ ଏସନ
କେହି କେହି ରାମନାମ କଲା ଉଚ୍ଚାରଣ ।
ତେବେ ମୂର୍ଚ୍ଛା ସଂଜ୍ଞାଲାଭ ନୋହିଲା ତାଙ୍କର
ଏସନ ଦେଖିଣ ସର୍ବେ ବ୍ୟଥିତ ଅନ୍ତର ।
ସଙ୍ଗୀଙ୍କ ମଧ୍ୟରୁ ପୁଣି ଆଉ କେତେ ଜଣ
ପୁନଃ ପୁନଃ କୃଷ୍ଣନାମ କଲେ ଉଚ୍ଚାରଣ ।
ପ୍ରାଣସ୍ପର୍ଶୀ କୃଷ୍ଣନାମ ଶ୍ରବଣ ମାତ୍ରକେ
ସଂଜ୍ଞା ପାଇ ଦେବରାୟେ ଚେଇଁଲେ କ୍ଷଣକେ ।
ବିକଳେ କହିଲେ ତହୁଁ ସଙ୍ଗିଗଣେ ଚାହିଁ
'କାହିଁ କାହିଁ ଆରେ ମୋର କୃଷ୍ଣଧନ କାହିଁ ।
ହେଉଛି ଦଣ୍ଡାୟମାନ ପ୍ରାଣନାଥ ମୋର"
ଏହା କହି ଧରିବାକୁ ପ୍ରସାରିଲେ କର ।
କୃଷ୍ଣ ନାମେ ଶ୍ରୀଠାକୁରେ ଚେତନା ଲଭିଲେ
'କୃଷ୍ଣ' 'କୃଷ୍ଣ' କହି ସର୍ବେ ଚୌଦିଗେ ନାଚିଲେ ।
ସୁସ୍ଥ ଚିତ୍ତ ଦେଖି ତାଙ୍କୁ ବୟସ୍ୟମାନଙ୍କର
ହରଷରେ ବାହୁଡ଼ିଲେ ଯେ ଯାହାର ଘର ।

କେବେ କେବେ ଆସି ପୁଣି ପ୍ରଭୁ ସେହି ସ୍ଥାନେ
ସଙ୍ଗୀ ସହ ମତ୍ତ ହୋନ୍ତି ହରି ସଙ୍କୀର୍ତ୍ତନେ ।
ଏମନ୍ତେ ବହୁତ କ୍ରୀଡ଼ା କରି ଗଦାଧର
ହୃଦୟ ରଞ୍ଜନ କଲେ ସହଚରଙ୍କର ।
ପଲ୍ଲୀ ମଧ୍ୟେ ବୟୋବୃଦ୍ଧ ଲୋକ ଥିଲେ ଯେତେ
ଶ୍ରୀଦେବଙ୍କ ପ୍ରତି ଗାଢ଼ ସ୍ନେହ ତାଙ୍କ ଚିତ୍ତେ ।
ଦିନାନ୍ତେ କାର୍ଯ୍ୟରୁ ଯେବେ ପାନ୍ତି ଅବସର
ସର୍ବେ ଆସି ବୃନ୍ଦ ହୋନ୍ତି ସମୀପେ ତାଙ୍କର ।
ପୁରାଣାଦି ପାଠ ଅବା ଶାସ୍ତ୍ର ଆଲୋଚନା ।
ପ୍ରତ୍ୟହ ହୁଅଇ ଯେତେ ନ ହୁଏ କଳନା ।
ଦେବଙ୍କର କଣ୍ଠସ୍ୱର ଯେମନ୍ତ ମଧୁର
ତେମନ୍ତ ପ୍ରାଞ୍ଜଳ ବ୍ୟାଖ୍ୟା କରନ୍ତି ଶାସ୍ତ୍ରର ।
ତାଙ୍କର ପୁରାଣ ପାଠ ଯେ ଶୁଣିଛି ଥରେ
ଅନ୍ୟଠୁଁ ଶୁଣିବା ସ୍ପୃହା ନ ପୋଷେ ଅନ୍ତରେ ।
ସରବେ ପ୍ରତ୍ୟହ ତାଙ୍କୁ କରି ଆହ୍ୱାନ
ଶ୍ରୀମୁଖୁ ପୁରାଣ ପାଠ କରନ୍ତି ଶ୍ରବଣ ।
ଶ୍ରୋତାଙ୍କ ମଧ୍ୟରୁ ଶାସ୍ତ୍ର କଥା ଯାଙ୍କୁ ଜ୍ଞାତ
ଶାସ୍ତ୍ରର ଜଟିଳ ପ୍ରଶ୍ନ କଲେ ଉତ୍ଥାପିତ ।
ସୂକ୍ଷ୍ମରେ କରନ୍ତି ଦେବ ଏପରି ମୀମାଂସା
ଶ୍ରୋତାଏ କରନ୍ତି ତାର ଭୂୟସୀ ପ୍ରଶଂସା ।
ବୟୋବୃଦ୍ଧଙ୍କ ସହିତ ମିଶି ଏ ପ୍ରକାର
ମୋହିଲେ ଯେ ପ୍ରାଣ ମନ ସର୍ବତୋଭାବର ।
ଏଥୁଅନ୍ତେ ଶୁଣ ସର୍ବେ ଆରେକ ଆଖ୍ୟାନ
ନାରୀ ସଙ୍ଗେ କ୍ରୀଡ଼ା କଲେ ଶ୍ରୀପ୍ରଭୁ ଯେସନ ।
ତାଙ୍କର ଅଗ୍ରଜ ନାମ ଶ୍ରୀରାମକୁମାର
ଅକାଳେ ଗ୍ରାସିଲା ଯମ ପତ୍ନୀ ତାହାଙ୍କର ।
ଏକମାତ୍ର ସଦ୍ୟଜାତ ଶିଶୁ ରଖି କୋଳେ
ଇହଧାମ ତେଜିଣ ସେ ସ୍ୱର୍ଗପୁରେ ଗଲେ ।
ଶିଶୁଟିର ଦୁଗ୍ଧ ପାଇଁ ହସ୍ତେ ନାହିଁ ଧନ
ଅଗ୍ରଜ ସେ ହେତୁ ଅତି ଚିନ୍ତାକୁଳ ମନ ।
ଅର୍ଥ ଉପାର୍ଜ୍ଜନ ପନ୍ଥା ନ ଦେଖିଣ ଗ୍ରାମେ
ବିଦେଶେ ଯିବାକୁ ସ୍ଥିର କଲେ ଯେ ଅନ୍ତିମେ ।
ଆତ୍ମୀୟ ସ୍ୱଜନ ସଙ୍ଗେ କରି ପରାମର୍ଶ
କଲିକତା ନଗରରେ ହୋଇଲେ ପ୍ରବେଶ ।
ଷାଠିଏ ବର୍ଷର ବୃଦ୍ଧା ତାଙ୍କର ଜନନୀ
ଗୃହ କର୍ମ କରିବାକୁ ହେଲେ ଏକାକିନୀ ।

ଜନନୀଙ୍କୁ ଦେଖି ସଦା କାର୍ଯ୍ୟେ ହରବର
ତାଙ୍କ ସାହା ହେଲେ ଏବେ ପ୍ରଭୁ ଗଦାଧର ।
ନିଜେ କରି ଦିଅଁଙ୍କର ସେବାପୂଜା କର୍ମ
ଲାଘବ କରିଲେ ଜନନୀଙ୍କ ପରିଶ୍ରମ ।
କାର୍ଯ୍ୟରେ ନିଯୁକ୍ତ ରହି ପ୍ରଭୁ ଏ ପ୍ରକାରେ
ଯାଇ ନ ପାରିଲେ ଆଉ ପଡୋଶୀଙ୍କ ଘରେ ।
ଗଦାଇ ବିହୁନେ ପଲ୍ଲୀ ରମଣୀଙ୍କ ମନ
ନ ଲାଗଇ ଗୃହ କର୍ମେ, ସଦା ଛନ ଛନ ।
ଶୀଘ୍ର ଶୀଘ୍ର ନିଜ ଗୃହ କର୍ମ ସାରି ଦେଇ
ଚନ୍ଦ୍ରାଦେବୀଙ୍କ ସଦନେ ସେ ଆସନ୍ତି ଧାଇଁ ।
ସ୍ନେହର ଗଦାଇ ସଦା ଗୃହକର୍ମେ ରତ ।
ଏହା ଦେଖି ରମଣୀଏ ଅତ୍ୟନ୍ତ ବ୍ୟଥିତ ।
ଶ୍ରୀପ୍ରଭୁଙ୍କୁ ଦେବାପାଇଁ କର୍ମୁଁ ଅବ୍ୟାହତ
ଲାଗିଯା'ନ୍ତି ଗୃହକର୍ମେ ଏକମେଳେ ମାତ ।
କାର୍ଯ୍ୟ ସମାପନେ ସର୍ବେ ହୋଇ ସମବେତ
ନିବେଦନ୍ତି ହୃଦକଥା ପ୍ରଭୁ ସନ୍ନିହିତ ।
"ଶୁଣି ନ ପାରି ଗଦାଇ ! ତୋ ପୁରାଣ ପାଠ
ଧାଇଁ ଆସିଅଛୁଁ ଆମ୍ଭେ ଏତେଦୂର ବାଟ ।
ଶୁଣାଇ ଆମ୍ଭଙ୍କୁ ଥରେ ଭାଗବତାଖ୍ୟାନ
ତୋଷ କର ଅବଳାଙ୍କ ସନ୍ତପ୍ତ ପରାଣ ।"
ଏମନ୍ତ ଶୁଣିଣ ଦେବ ଅତି ହରଷରେ
କରନ୍ତି ପୁରାଣ ପାଠ ମଧୁ କଣ୍ଠ ସ୍ୱରେ ।
ଭାଗବତ ରାମାୟଣ ଭାରତାଦି ଆନ
ଏସନେ ଆବାସେ ପାଠ ହୁଏ ପ୍ରତିଦିନ ।
ମହାପ୍ରେମେ ମତ୍ତ କେବେ ହରି ସଙ୍କୀର୍ତ୍ତନେ
ଭାବ ପୁଲକାଦି ଦୃଷ୍ଟ ଅଙ୍ଗେ କ୍ଷଣେ କ୍ଷଣେ ।
ଆଶୈଶବୁଁ ଗଦାଧର ଥିଲେ ଶ୍ରୁତିଧର
ଗୋଟା ଗୋଟା ଯାତ୍ରା ପାଲା କଣ୍ଠସ୍ଥ ତାଙ୍କର ।
ତହିଁରୁ ଗାଇଣ ସେହି ବିବିଧ ବିଷୟ
ରଞ୍ଜିଲେ ସର୍ବଦା ପଲ୍ଲୀ ରମଣୀ ହୃଦୟ ।
ନାରୀ ବେଶେ କେତେବେଳେ ହୋଇ ବିଭୂଷିତ
ଶ୍ରୀମତୀ ବା ବୃନ୍ଦାସଖୀ ପାଲା ଅଭିନୀତ ।
କେବେ ପୁଣି ହାସ୍ୟରସ ଭୂମିକା ଧରିଣ
ନାନା ରଙ୍ଗେ ଆକର୍ଷନ୍ତି ଅବଳାଙ୍କ ମନ ।
ଏମନ୍ତେ ଆକୃଷ୍ଟ ହୋଇ ତାଙ୍କଠି ସକଳେ
ଗଦାଇ ବିହୁନେ ଆଉ କିଛି ନ ଜାଣିଲେ ।

ସତ୍ତ୍ୱଗୁଣ ସମନ୍ୱିତା ଯେତେକ ରମଣୀ
ଭକ୍ତିଭାବେ ସମାକୃଷ୍ଟା ସ୍ୱୀୟ ଇଷ୍ଟ ଜାଣି ।
କୃଷ୍ଣଠି ବାତ୍ସଲ୍ୟ ଭାବ ହୋଇ ଉଦ୍ଦୀପିତ
ବାଳ ଗୋପାଳ ଭାବରେ ହୃଦୟ ପୂରିତ ।
ଏମାନଙ୍କ ମଧ୍ୟେ ଶ୍ରେଷ୍ଠା ଲାହାଙ୍କ ଭଗିନୀ
ପ୍ରାତଃ ସ୍ମରଣୀୟା ନାରୀ ପ୍ରସନ୍ନା ନାମିନୀ ।
ପ୍ରଭୁଙ୍କଠି ଶ୍ରୀକୃଷ୍ଣଙ୍କ କଳା ନିରେଖିଣ
ସଖୀଭାବେ ତାଙ୍କ ତତ୍ତ୍ୱ ମଗ୍ନ ଅନୁକ୍ଷଣ ।
ରମଣୀଙ୍କ ସଙ୍ଗେ ପ୍ରଭୁ ଖେଳିଲେ ଏସନେ
ସେମାନେ ଖେଳିଲେ ତାଙ୍କ ସହ ନାରୀଜ୍ଞାନେ ।

ଗଦାଇଙ୍କ ବୟଃକ୍ରମ ଷୋହଳ ସତର
ତଥାପି ମିଳନେ ଦ୍ୱିଧା ନ ହୁଏ କାହାର ।
ଶିଶୁଭାବ ସଦା ତାଙ୍କ ଅନ୍ତରେ ଜାଗ୍ରତ
ପବିତ୍ର ମୂରତି ନାନାଗୁଣ ସମନ୍ୱିତ ।
ଶରତ ଆକାଶେ ଯଥା ଅକଳଙ୍କ ଶଶୀ
ତରଳ ଉଜ୍ଜ୍ୱଳ ତଥା ମୋହମାୟାନାଶୀ ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରନ୍ତି ପ୍ରାଣୀ ଭବ-ପାରାବାର ।
ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ଉଭା ପ୍ରଭୁ ଭଗବାନ ।

---

# ସପ୍ତଦଶ ଅଧ୍ୟାୟ

## ଗଦାଧରଙ୍କ ନାରୀବେଶରେ କ୍ରୀଡ଼ା

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣା ସିନ୍ଧୁ ଜଗଜ୍ଜନ ଗୁରୁ ।
ଶୁଣ ମନ ! ଏବେ ଦେବରାୟ କି ପ୍ରକାର
ନାରୀବେଶେ କ୍ରୀଡ଼ାକଲେ ନାରୀ ସହିତର ।
କାମାର-ପୁକୁରେ ଯେଉଁ ବଣିକଙ୍କ ବାସ
ବଣିକ-ପଲ୍ଲୀ ନାମରେ ଖ୍ୟାତ ସେହି ଅଂଶ ।
ତାଙ୍କ ମଧ୍ୟେ ଧନୀ ବ୍ୟକ୍ତି ସୀତାନାଥ ପାଇନ
ସୁପବିତ୍ର କ୍ରୀଡ଼ାସ୍ଥଳ ଯାଙ୍କର ସଦନ ;
ପ୍ରଭୁଙ୍କଠି ତାଙ୍କ ଶ୍ରଦ୍ଧା ଭକ୍ତି ଅତିଶୟ
ଦେଖିଲେ ହିଁ ମହୋଲ୍ଲାସେ ବିହ୍ୱଳ ହୃଦୟ ।
ସତୀପତ୍ନୀ ଅଷ୍ଟ ପୁତ୍ର ଆଉ ସପ୍ତ କନ୍ୟା
ଭକ୍ତିରେ ନୁହନ୍ତି କେହି କାହାଠାରୁ ଊଣା ।
କନ୍ୟାଙ୍କ ମଧ୍ୟରେ ଶ୍ରେଷ୍ଠା ଶ୍ରୀମତୀ ରୁକ୍ମିଣୀ
ଅତି ଭକ୍ତିମତୀ ଶୁଦ୍ଧ ତରୁଣୀ ରମଣୀ ।
ତାଙ୍କ ଗୃହେ ଗଦାଇଙ୍କ ସଦା ଆତଯାତ
ନ ଗଲେ ପ୍ରେରନ୍ତି ଲୋକ ଭକ୍ତ ସୀତାନାଥ ।
ପ୍ରବେଶ ମାତ୍ରକେ ଗୃହେ ପ୍ରଭୁ ଗଦାଧର
ବଣିକ-ପଲ୍ଲୀରେ ରଷ୍ଟ୍ର କ୍ଷଣେ ସମାଚାର ।

ବୃଦ୍ଧା ବା ତରୁଣୀ ନାରୀ ସେହି ଗ୍ରାମେ ଯେତେ
ଗୃହ କର୍ମ ତେଜି ପାଶେ ଧାବନ୍ତି ସମସ୍ତେ ।
ବଣିକ ପଲ୍ଲୀରେ ପର୍ଦ୍ଦା ବିଶେଷରେ ଥିଲା
ଅନ୍ୟତ୍ର ଗମନେ ଅଭିଭାବକଙ୍କ ମନା ।
ଦର୍ଶନୁ ନାରୀଏ ତେଣୁ ହୋଇଣ ବଞ୍ଚିତ
ସୀତାନାଥ ଗୃହେ ଆସି ହୁଅନ୍ତି ସମବେତ ।
ଗୃହ ମଧ୍ୟେ ନିବସିଲେ ପ୍ରଭୁ ଗଦାଧର
ନାରୀଗଣ ବେଢ଼ିଯାନ୍ତି ଚୌଦିଗେ ତାଙ୍କର ।
ଆବର ବୋଲନ୍ତି ତାଙ୍କୁ ଅନୁନୟ କରି
ପୁରାଣାଦି ପଢ଼ି ତୋଷ ହୃଦୟ ଆମ୍ଭରି ।
ସୁମଧୁର କଣ୍ଠେ ତହୁଁ ଚନ୍ଦ୍ରାଙ୍କ ନନ୍ଦନ
ଭାବେ ଗଦ ଗଦ ପଢ଼ି ଶ୍ରୀକୃଷ୍ଣ ଆଖ୍ୟାନ ।
ମଧ୍ୟେ ମଧ୍ୟେ ମହାଭାବ ପ୍ରକାଶେ ଅଙ୍ଗରେ
ତା ଦେଖି ନମନ୍ତି ସର୍ବେ ଭକ୍ତି ସହକାରେ ।
ଶ୍ରୀମତୀ ବା ବୃନ୍ଦା ପାଲା ପଠନ ସମୟେ
ନାରୀବେଶେ ସଜ ହୁଅନ୍ତି ପ୍ରଭୁ ଦେବରାୟେ ।
ରମଣୀଏ ଆଣି ନାନା ବସ୍ତ୍ର ଆଭରଣ
ଯତନେ ସଜାଇ ତାଙ୍କୁ-ପୁଲକିତ ମନ ।
ବିଶ୍ୱଜନ-ମନଲୋଭା ମୂରତି ତାଙ୍କର
ତହିଁ ଦିଶେ ନାରୀବେଶ ଅତି ମନୋହର ।

ସ୍ତ୍ରୀର ଚଳନ କଥନ ସବୁ ନାରୀ ପରି
ଚିହ୍ନିବା କଠିନ ଅଟେ ପୁରୁଷ ବା ନାରୀ ।
ଶ୍ରୀମତୀଙ୍କ କଥା ଯେବେ କରନ୍ତି ସେ ପାଠ
ମନେହୁଏ ରାଧାରାଣୀ ଆପଣେ ପ୍ରକଟ ।
ସଙ୍କୀର୍ତ୍ତନେ ମତ୍ତ ହୋନ୍ତି ପୁଣି ଯେତେବେଳେ ।
ପ୍ରେମେ ମାତି ଶ୍ରୋତାଗଣ ବିହ୍ୱଳ ସେ କାଳେ ।
ଏସନେ କୀର୍ତ୍ତନ ପ୍ରଭୁ ନାରୀଙ୍କ ହୃଦୟ
କରାଇଲେ ପ୍ରେମ ଭକ୍ତି ଦିବ୍ୟ ଭାବୋଦୟ ।
କେ ଭାବନ୍ତି କୃଷ୍ଣଚନ୍ଦ୍ର ପୁନଃ ଅବତୀର୍ଣ୍ଣ
ଚଢ଼ାଇ ସୁବର୍ଣ୍ଣ ବଂଶୀ ପୂଜନ୍ତି ଚରଣ ।
କେ ଭାବନ୍ତି ମର୍ତ୍ତ୍ୟେ ହେଲେ ପୁନଃ ରାଧାରାଣୀ
ଶ୍ରୀପାଦ ସେବନ୍ତି ନାନା ଅଳଙ୍କାର ଆଣି ।
ପୁଲକ କମ୍ପନ ଆଦି ଦେଖି ଘନ ଘନ
କେ ଭାବନ୍ତି ଶ୍ରୀଚୈତନ୍ୟ ଅବତୀର୍ଣ୍ଣ ପୁନଃ ।
ଏମନ୍ତେ ନାଥଙ୍କ ଗୃହେ ହେଲା ବହୁ ଲୀଳା
ଶେଷରେ ଭେଟିଲେ ଆସି ଜଟିଳା କୁଟିଳା ।
ଜଟିଳା କୁଟିଳା ନୁହେଁ ଆକାର ଗଠନେ
ସ୍ୱଭାବ ଚରିତ୍ର ଠିକ ତାଙ୍କର ସମାନେ ।
ଦୁର୍ଗାଦାସ ନାମେ ସୀତାନାଥଙ୍କ ଆତ୍ମୀୟ
ଅବରୋଧ ପ୍ରଥା ପକ୍ଷପାତୀ ଅତିଶୟ ।
ଗଦାଇ ଗମନ୍ତି ସୀତାନାଥଙ୍କ ଅନ୍ଦରେ
ଦୁର୍ଗାଦାସ କ୍ରୋଧାନ୍ୱିତ ଅତ୍ୟନ୍ତ ତହିଁରେ ।
ସୀତାନାଥେ କହି ନାନା ପ୍ରକାର ବଚନ
ନିବାରଣ ଚେଷ୍ଟା କଲେ ଅନ୍ଦର ଗମନ ।
ସୀତାନାଥ ଉତ୍ତରିଲେ ତହୁଁ ହସି ହସି
ଜାଣ ନା କି ଗଦାଧର ଅକଳଙ୍କ ଶଶୀ ।
ତା ଶୁଣି କହିଲେ ଦୁର୍ଗାଦାସ ଅହଂକାରେ
"ପୁରୁଷ ପ୍ରବେଶ କ୍ଷମ ନୁହେ ମୋ ଅନ୍ଦରେ ।
କେହି ନ ଜାଣନ୍ତି ତେଣୁ ମୋ ଅନ୍ଦର କଥା
ତୁମ୍ଭର ଏ କାର୍ଯ୍ୟମାନ ଅବାଧ୍ୟ ସର୍ବଥା ।"
ଦୁର୍ଗାଦାସେ ସମ୍ବୋଧିଣ କହିଲେ ଗଦାଇ
"ନାରୀ କି ରହିବେ ସଦା ଅବରୋଧେ ଥାଇ ?"
ଦେବପାଦେ ଭକ୍ତି କିମ୍ବା ସତ୍‌ଶିକ୍ଷା ଗୁଣେ
ସମର୍ଥ ହୁଅନ୍ତି ନାରୀ ସତୀତ୍ୱ ରକ୍ଷଣେ ।
ଇଚ୍ଛା କଲେ ମୁହିଁ ତବ ଅନ୍ଦରେ ପ୍ରବେଶି
ନାରୀଙ୍କ ବାରତା ଆଣି ଦେବ ଫେରି ଆସି ।"

ଦୁର୍ଗାଦାସ ଅହଂକାରେ ହୋଇ ପ୍ରଜ୍ୱଳିତ
ବୋଇଲେ "ଅଟଇ ଏହା ତବ ସାଧ୍ୟାତୀତ ।"
ଉତ୍ତରିଲେ ପ୍ରଭୁ ତହୁଁ ସହାସ୍ୟ ବଦନେ ।
"କ୍ଷମ କି ଅକ୍ଷମ ଦେଖ ଆଦେଶ ପ୍ରଦାନେ ।"
ସଦମ୍ଭେ ଶ୍ରୀ ଦୁର୍ଗାଦାସ ଦେଲେ ଅନୁମତି
ଉପାୟ ପାଞ୍ଚିଲେ ତହୁଁ ପ୍ରଭୁ ଜଗପତି ।
ମୋଟା ଶାଢ଼ୀ ଖଡ଼ୁ ଆଦି ରୌପ୍ୟ ଅଳଙ୍କାର
ଯୋଗାଡ଼ କରିଲେ ଦିନେ ପ୍ରଭୁ ଗଦାଧର ।
ନାରୀ ବେଶେ ସଜ ହୋଇ ଅତ୍ୟନ୍ତ ଗୋପନେ
ଟୋକେଇ ଗୋଟିଏ କାଖେ ଧରିଲେ ଯତନେ ।
ଏସନ ବାନ୍ଧିଲେ ବେଶ ପ୍ରଭୁ ପରମେଶ,
ତନ୍ତୁବାୟଙ୍କର କୁଳ-ରମଣୀ ସଦୃଶ ।
ଦୁର୍ଗାଦାସ ଗୃହ ମୁଖେ ସନ୍ଧ୍ୟାରେ ଗମିଣ
ତାହାଙ୍କୁ ଭେଟିଣ ଦ୍ୱାରେ କହିଲେ ବଚନ ।
"ତନ୍ତୁବାୟ କୁଳେ ମୁହିଁ ହୋଇଛୁ ସମ୍ଭୂତ
ହାଟେ ଆସିଥିଲି ସୂତା କିଣିବା ନିମିତ୍ତ ।
ଆତ୍ମୀୟ ସ୍ୱଜନ ଯେତେ ମୋ ସଙ୍ଗତେ ଥିଲେ
ମୋତେ ଛାଡ଼ି ସେ ସକଳେ ଗୃହେ ଚାଲିଗଲେ ।
ତରୁଣ ବୟସ ମୋର ରାତି ସମାଗତ
ଗୃହେ ଏକା ଯିବା ପାଇଁ ମନ ସଶଙ୍କିତ ।
ଆଜ ରାତି ପାଇଁ ମୋତେ ଦିଅନ୍ତୁ ଆଶ୍ରୟ
ମଙ୍ଗଳ କରିବେ ତବ ପ୍ରଭୁ ଦୟାମୟ ।"
ଏମନ୍ତ କରୁଣ ବାକ୍ୟ ଶୁଣି ତରୁଣୀର
ବିଗଳିତ ହେଲା ଚିତ୍ତ ଦୁର୍ଗାଦାସଙ୍କର ।
ଭୃତ୍ୟଙ୍କୁ ଡକାଇ ତହୁଁ କଲେ ଆଜ୍ଞାଦାନ
ତରୁଣୀକୁ ଅନ୍ତଃପୁରେ ସାବଧାନେ ନେନ ।
ନାରୀ ବେଶେ ପଶି ପ୍ରଭୁ ଅନ୍ଦର ମହଲେ
ମହିଳାଙ୍କ ପାଶେ ନିଜ ଦୁଃଖ ନିବେଦିଲେ ।
ସେ ସକଳେ ଶୁଣି ତାଙ୍କ ଦୁଃଖର କାହାଣୀ
ମୁଡ଼ି ଉଖୁଡ଼ାଦି ଦେଲେ ଜଳପାନ ଆଣି ।
ଆନନ୍ଦେ ଭୋଜନ କରି ତାହା ଗଦାଧର
ତୋଷିଲେ ମଧୁର ବାକ୍ୟେ ନାରୀଙ୍କ ଅନ୍ତର ।
କ୍ରମେ କ୍ରମେ ବଧୂଗଣ ହୋଇ ଏକତ୍ରିତ
ମିଷ୍ଟାଳାପ କଲେ ବସି ତାହାର ସହିତ ।
ପ୍ରହର ସରକ ରାତି କଟିଲା ଏସନେ
ବିଳମ୍ବ ଦେଖିଣ ମାତା ଚନ୍ଦ୍ରାଦେବୀ ଏଣେ ।

ମଧ୍ୟମ ସନ୍ତାନ ରାମେଶ୍ୱରଙ୍କୁ ଡାକିଣ
ପ୍ରେରିଲେ ଗଦାଧରଙ୍କୁ ଖୋଜିବା କାରଣ ।
ରାମେଶ୍ୱର ପ୍ରବେଶିଣ ବଣିକ ପଲ୍ଲୀରେ
ଅନ୍ୱେଷିଲେ ଅଗ୍ରେ ତାଙ୍କୁ ସୀତାନାଥ ଘରେ ।
ସନ୍ଧାନ ନ ପାଇ ତହିଁ ହେଲେ ଅଗ୍ରସର
'ଗଦାଇ' 'ଗଦାଇ' ବୋଲି ଡାକ ବାରମ୍ବାର ।
ମଧ୍ୟମ ଭ୍ରାତାଙ୍କ ଡାକ ଯେମନ୍ତ ଶୁଣିଲେ
'ଯାଉଛୁ' 'ଯାଉଛୁ' କହି ଅନ୍ଦରୁ ଧାଇଁଲେ ।
ତନ୍ନୁବାସ୍ତ ନାରୀ ନୋହେ ଏ ଯେ ଗଦାଧର
ଜାଣି ପାରି ଦୁର୍ଗାଦାସ କ୍ରୋଧେ ଜରଜର ।
ଅତଃପର ମୁଗ୍ଧ ହୋଇ ତାଙ୍କ ନାରୀବେଶେ
କ୍ରୋଧ ତେଜି କ୍ଷଣ ମଧ୍ୟେ ହସିଲେ ଉଲ୍ଲାସେ ।
ସେ ଦିବସୁ ଦୁର୍ଗାଙ୍କର ବଦଳିଲା ମନ
ଗଦାଧର ପ୍ରତି ସ୍ନେହ ବଢ଼ିଲା ଦ୍ୱିଗୁଣ ।
ପରିବାରବର୍ଗେ ଆଉ ନ କରିଲେ ମନା
ଶୁଣିବାକୁ ଶ୍ରୀମୁଖରୁ ଶାସ୍ତ୍ର ଆଲୋଚନା ।
ସୀତାନାଥ ଗୃହେ ଆସି ମହିଳାଏ ନିତି
ପୁରାଣାଦି ପାଠ ଶୁଣି ମନେ ତୋଷ ଅତି ।
ଦୁର୍ଗାଙ୍କର ଅହଂକାର ଏସନେ ବିଚୂର୍ଣ୍ଣ
ସୀତାନାଥଙ୍କ ହୃଦୟ ମନୋଲ୍ଲାସେ ପୂର୍ଣ୍ଣ ।
ରଙ୍ଗପ୍ରିୟ ଗଦାଧର ପଲ୍ଲୀନାରୀ ସହ
ଏମନ୍ତେ କରିଲେ ନାନା କ୍ରୀଡ଼ା ଅହରହ ।
ନାରୀ ଆଭରଣ ଆଣି ପ୍ରଭୁ ଆଉ ଦିନେ
ନାନା ଅଳଙ୍କାରେ ସଜ ହୋଇଲେ ଆପଣେ ।
ପିନ୍ଧି ଏକ ପିଗ୍ରପାଡ଼ୀ ଶାଢ଼ୀ ମନୋହର
କାଖରେ କଳସୀ ଧରି ହୋଇଲେ ବାହାର ।
ଡାକିଲେ ପଡ଼ୋଶୀ ଦ୍ୱାରେ ଆସ ଲୋ ଭଉଣୀ
ହାଲଦାର ପୋଖରୀକୁ ଯିବା ପାଣି ଆଣି ।
ଗଦାଇଙ୍କୁ ନାରୀବେଶେ ଦେଖି ବଧୂଗଣେ
ବାହାର ହୋଇଲେ ବେଗେ ପୁଲକିତ ମନେ ।
ପାଣିର ନ ଥିଲା ଯାର କିଛୁ ପ୍ରୟୋଜନ
ସେ ବି ବାହାରିଲା କାଖେ କଳସୀ ଘେନିଣ ।
କୋଳାହଳେ ଯାନ୍ତି ନାରୀ ମନ୍ଥର ଗତିରେ
ଶ୍ରୀମୁଖେ ଓଢ଼ଣା ଦେଇ ଗଦାଇ ମଧ୍ୟରେ ।
ଗନ୍ତବ୍ୟ ମାର୍ଗର ବେନିପାର୍ଶ୍ୱେ ଯେତେ ଘର
ଯେଉଁମାନେ ବସିଥିଲେ ଦାଣ୍ଡଦ୍ୱାରେ ତାର ।

ନାରୀ ସଙ୍ଗେ ଯା'ନ୍ତି ପ୍ରଭୁ କୁମ୍ଭ କାଖେ ଧରି
ତାଙ୍କୁ ଚିହ୍ନିବାକୁ ଶକ୍ତି ନୋହିଲା କାହାରି ।
ନାନାରଙ୍ଗେ କ୍ରୀଡ଼ା କରି ପଲ୍ଲୀବାସୀ ସଙ୍ଗେ
ତାଙ୍କୁ ଭସାଇଲେ ପ୍ରଭୁ ପ୍ରେମର ତରଙ୍ଗେ ।
ବୃନ୍ଦା ମା ନାମେ ଜଣେ ବ୍ରାହ୍ମଣ ରମଣୀ
ଗଦାଇଙ୍କ ପ୍ରତି ତା'ର ଅତି ସ୍ନେହ ପୁଣି ।
ବିବିଧ ଖାଦ୍ୟ ସେ ନିତ୍ୟ ସ୍ୱହସ୍ତେ ରାନ୍ଧିଣ
ଭୋଜନ ନିମିତ୍ତ ତାଙ୍କୁ କରଇ ଆହ୍ୱାନ ।
ସୁଖେ ଭୁଞ୍ଜନ୍ତି ଶ୍ରୀଦେବ ବସିଣ ଆସନେ
ବିପ୍ରାଣୀର ମହାନନ୍ଦ ତାହା ଦରଶନେ ।
ବାତ୍ସଲ୍ୟ ଭାବରେ ଶେଷେ ଆବଦ୍ଧ ଏମନ୍ତ
ବିନା ନିମନ୍ତ୍ରଣେ ପ୍ରଭୁ ହୁଅନ୍ତି ଉପସ୍ଥିତ ।
ସେ ଯାହା ଦିଅଇ ତାଙ୍କୁ ସ୍ନେହ ସହକାରେ
ଆନନ୍ଦେ ଭୁଞ୍ଜନ୍ତି ତାହା କରୁଣା ସାଗରେ ।
ନ ଥିଲେହେଁ ଉଚ୍ଚନୀଚ କିଛିତ ବାରଣ
ତଥାପି ଶଙ୍କିତ ଚିତ୍ତ ଜାତିରେ ଯେ ହୀନ ।
ଟେଢ ମା ନାମକ ନାରୀଜାତି ସୂତ୍ରଧର
ବାସନା ହୋଇଲା ଦିନେ ହୃଦୟେ ତାହାର
ନିଜ ହସ୍ତେ କରିବ ସେ ଯତନେ ରନ୍ଧନ
ଗୃହେ ବସି ଗଦାଧର କରିବେ ଭୋଜନ ।
ବ୍ୟକ୍ତ କରିବାକୁ ଚିନ୍ତା ହୋଇ ମନ କଥା
ଫେଡ଼ିଲା ଶଙ୍କରୀ ପାଶେ ତାର ହୃଦ ବ୍ୟଥା ।
ପ୍ରଭୁଙ୍କର ଭିକ୍ଷାମାତା ଧନୀ କମାରୁଣୀ
ଶଙ୍କରୀ ଅଟଇ ତାର କନିଷ୍ଠା ଭଗିନୀ ।
ଶଙ୍କରୀ ବୋଇଲା ତାକୁ ଦେଇ ଆଶ୍ୱାସନା
ଗଦାଇ କେବେହେଁ ଏଥି ନ କରିବ ମନା ।
ପ୍ରଭୁଙ୍କର ମତାମତ ଗ୍ରହଣ ନିମିତ୍ତ
ଶଙ୍କରୀ ତାଙ୍କ ସମୀପେ ହେଲେ ଉପନୀତ ।
ଅନ୍ତର୍ଯାମୀ ବିଶ୍ୱସ୍ୱାମୀ ପ୍ରଭୁ ଗଦାଧର
ଜାଣିଲେ ସମସ୍ତ କଥା ଦେଖିବା ମାତର ।
ଶଙ୍କରୀଙ୍କୁ ଡାକିନେଇ କହିଲେ ଗୋପନେ
"ଟେଢ ମା'ର ଅଭିଳାଷ କିସ ଅଛି ମନେ ।"
ଶଙ୍କରୀ କହିଲା ମୋର ଆସିବା କାରଣ
ଅଗୋଚରେ ହେଲାଣି ତ ତୁମ୍ଭଙ୍କୁ ଜ୍ଞାପନ ।
ଯାହା ଖାଇବାକୁ ଇଚ୍ଛା ହେଉଛି ତୁମ୍ଭର
ଗୋପନେ ମୁଁ ଆଣି ଦେବି ପାଇଲେ ଉତ୍ତର ।

ଶ୍ରୀଦେବ ବୋଇଲେ "କହିଁ ଏଠାକୁ ଆଣିବ
ତା ଗୃହେ ଖାଇବି ବସି ଯାହା ସ୍ନେହେ ଦେବ ।"
ଭକତବତ୍ସଳ ଭାବ ଦେଖ କି ସୁନ୍ଦର
ଭୋଜନ ନିମିତ୍ତ ଗଲେ ସୂତ୍ରଧର ଘର ।
କୁଳାଚାର ଯେଉଁ ବଂଶେ ସୁଦୃଢ଼ ଏମନ୍ତ
ଶୂଦ୍ରଦତ୍ତ ଦ୍ରବ୍ୟ ନେଲେ ହୁଏ ଜାତିଚ୍ୟୁତ ।
ସେହି ବଂଶେ ଜନ୍ମ ଲଭି ପ୍ରଭୁ ନରହରି
ଯେ ଯାହା ଦିଅନ୍ତି ତାହା ଭୁଞ୍ଜନ୍ତି ଆଦରି ।
ଭ୍ରୂକ୍ଷେପ ନ ଥାଏ ଜାତି ଗହ୍ୱରର ପ୍ରତି
ଭକ୍ତବାଞ୍ଛା କଳ୍ପତରୁ ଯେଣୁ ଜଗତ୍ପତି ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଭବପାରାବାର ।

ଦୂର ହେବ ଶୋକ ଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ହେବେ ପ୍ରଭୁ ଭଗବାନ ।

---

# ଅଷ୍ଟାଦଶ ଅଧ୍ୟାୟ

## ବାଲ୍ୟଲୀଳାର ଅବସାନ ଏବଂ କଲିକତାନଗରୀକୁ ଆଗମନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନାରାୟଣ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ବୟୋବୃଦ୍ଧି କ୍ରମେ ଯେତେ ଗଦାଧରଙ୍କର
ତେତେ ସେ ବଢ଼ିଲା ସ୍ୱଭାବ ଗମ୍ଭୀର ।
ତାହାକୁ କୌଣସି କଥା ନ କହିଣ ଏବେ
ଗ୍ରାମପ୍ରାନ୍ତ ସ୍ଥାନାନ୍ତରେ ମଧ୍ୟେ ମଧ୍ୟେ କେବେ ।
ବିଳୁପ୍ତ ପୂରୁବ ଭାବ, ବିଳାସବିହୀନ
ଔଦାସ୍ୟରେ ପରିପୂର୍ଣ୍ଣ ଚିନ୍ତାକୁଳ ମନ
ଆଜିଣିକରି କ୍ରୀଡ଼ାକଲେ ଯାଙ୍କ ସଙ୍ଗ ଏତେ
ମିଷ୍ଟାଳାପ ନାହିଁ ଆଉ ତାହାଙ୍କ ସଙ୍ଗତେ ।
ଜଗତ କାରଣ କେହି ହେତୁ ପଚାରିଲେ
ଉତ୍ତର ଦିଅନ୍ତି ଅତି କଷ୍ଟେ ବେଳେ ବେଳେ ।
"ବୃଥା କାର୍ଯ୍ୟେ ଏତେଦିନ ଯାପିଲି ଜୀବନ
ନ କଲି ବିଭୁଙ୍କ ଚିନ୍ତା କିମ୍ବା ଅନ୍ୱେଷଣ ।
ସଂସାର ଅନିତ୍ୟ ଅଟେ ମନେ ରଖ ଭାଇ !
ବିଭୁ ବିନୁ ପ୍ରାଣୀଙ୍କର ଗତ୍ୟନ୍ତର ନାହିଁ ।
ସାଧିବାକୁ ଉଚିତ କାର୍ଯ୍ୟ ଜନମ ମୋହର
ମାନସେ ଅଦୃଷ୍ଟ ଇଚ୍ଛା ଜାଗ୍ରତ ଏହାର ।
ଜୀବନେ ଗନ୍ତବ୍ୟ ପଥ କି ହେବା ଉଚିତ
ଏଥିରେ ମାନସ ମୋର ସଦା ଉଦ୍‌ବେଳିତ ।
ସାଧୁଙ୍କର ପୂତ ଧୂନି ଗୈରିକ ବସନ
ବିଭୁଙ୍କଠି ନିର୍ଭରତା, ଭିକ୍ଷାଲବ୍ଧ ଅନ୍ନ ।
ଶୀତ ବର୍ଷା ସୂର୍ଯ୍ୟତାପେ ନ ଥାଏକ କ୍ଲେଶ
ଶୋକ ଶଙ୍କାଶୂନ୍ୟ ଚିତ୍ତ ତରୁତଳେ ବାସ ।
ସର୍ବାପେକ୍ଷା ଶ୍ରେଷ୍ଠ ଅଟେ ଏ ପନ୍ଥା ଜଗତେ
ଏ ଭାବ ଜାଗ୍ରତ ଏବେ ମୋ ଚିତ୍ତେ ନିରତେ ।
ପରକ୍ଷଣେ ଚିନ୍ତା ପୁଣି ବୟୋବୃଦ୍ଧା ମାତା
ତାଙ୍କ ଅହେତୁକ ସ୍ନେହ, ମାୟା ବା ମମତା ।
ସହୋଦର ପ୍ରଭୃତିଙ୍କ ଅକପଟ ସ୍ନେହ
ଯା ଯୋଗୁଁ ଅଜ୍ଞାତ ଭବେ ପିତାଙ୍କ ବିରହ ।
ପାରିବାରିକ ଅବସ୍ଥା ନୁହଇ ସ୍ୱଚ୍ଛଳ
ଅର୍ଥାଭାବ ହେତୁ ସର୍ବେ କେତେ କଳବଳ ।
ଏସନ ବିପଦେ ତାଙ୍କୁ କଲେ ବରଜନ
ବିଭୁଙ୍କଠି ଅପରାଧୀ ହେବି ଚିରଦିନ ।
ପଲ୍ଲୀବାସୀ ଅନୁରକ୍ତ ସରଳ ବିଶ୍ୱାସେ
ଚିତ୍ତ ମଧ୍ୟ ବ୍ୟାକୁଳିତ ତାହାଙ୍କ ସକାଶେ ।
କେମନ୍ତେ ହୋଇବ ତାଙ୍କ ଜୀବନେ ଉନ୍ନତି
ସେଥିପାଇଁ ମଧ୍ୟ ଚିନ୍ତା ମୋର ଦିନରାତି ।
କି ପ୍ରକାର ପନ୍ଥା ଟିଏ ହେଲେ ଆବିଷ୍କୃତ
ସମସ୍ତଙ୍କୁ ନିର୍ଦ୍ଦେଶିବ ଉନ୍ନତିର ପଥ ।
ମହାସନ୍ଧିସ୍ଥଳେ ଭାଇ ! ପଡ଼ିଅଛୁ ମୁହିଁ
ଭଗବାନ ବିନୁ ଆଉ ଗତ୍ୟନ୍ତର ନାହିଁ ।"

ଏମନ୍ତ ସଙ୍କଳ୍ପ କରି ପ୍ରଭୁ ନାରାୟଣ
ରଘୁବୀରଙ୍କ ଚରଣେ ନେଇଲେ ଶରଣ ।
କି ଉପାସ୍ୟ କଲେ ତାର ବ୍ରହ୍ମାଣ୍ଡ ଗୋସାଇଁ
ସାଧୁଜନେ ଶୁଣ ଏବେ ଏକ ଚିତ୍ତ ହୋଇ ।
ପ୍ରଭୁଙ୍କର ଜ୍ୟେଷ୍ଠଭ୍ରାତା ଶ୍ରୀରାମକୁମାର
ଗ୍ରାମେ ଉପନୀତ କର୍ମ୍ମୁଁ ପାଇ ଅବସର ।
ତିନ ବର୍ଷ ହେଲା ସ୍ଥାପିଛନ୍ତି ଚତୁଷ୍ପାଠୀ
କ୍ରମେ କ୍ରମେ ବୃଦ୍ଧିପ୍ରାପ୍ତ ଛାତ୍ର ସଂଖ୍ୟା ସେଠି ।
ଗୃହ କାର୍ଯ୍ୟେ ରତ ଥାଇ ଶିକ୍ଷାକାର୍ଯ୍ୟେ ବାଧା
ଲୋକଟିଏ ଲୋଡ଼ା ତେଣୁ ସମୀପେ ସର୍ବଦା ।
ଶିକ୍ଷାପ୍ରତି ଗଦାଇ ତ ସଦା ଉଦାସୀନ
ରଙ୍ଗ ରସେ ମାତି ଯାପେ ତାହାର ଜୀବନ ।
ଭବିଷ୍ୟ ଜୀବନେ ତାର ଉନ୍ନତି ସକାଶେ
ଜ୍ୟେଷ୍ଠ ଭ୍ରାତା ଚିନ୍ତାକୁଳ ହୋଇଣ ବିଶେଷେ,
ଜନନୀ ଆଉ ମଧ୍ୟମ ସହୋଦର ସଙ୍ଗେ
ପରାମର୍ଶ କଲେ ଦିନେ ବସି ଏ ପ୍ରସଙ୍ଗେ ।
"ଗଦାଇ ତ ଶିକ୍ଷା ପ୍ରତି ଦେଉ ନାହିଁ ମନ
ଗ୍ରାମରେ ରହିଲେ ତାର ହେବ ଅକଲ୍ୟାଣ ।
ବିପ୍ରକୁଳେ ଜନମିଣ ବିପ୍ରକୁଳ ବୃତ୍ତି
ନ ଶିଖିଲେ ହୋଇବ କି ଜୀବନେ ଉନ୍ନତି ?
ଛୁଟି ଶେଷେ ଫେରିଯିବ କାର୍ଯ୍ୟେ ଯେତେବେଳେ
କଲିକତାକୁ ଚାଲୁ ସେ ସଙ୍ଗତେ ସେ କାଳେ ।
ତହିଁ ରହି ଚତୁଷ୍ପାଠୀ ଛାତ୍ରଗଣ ସାଥେ ।
ଶିକ୍ଷା ଲଭିଲେ ଗମିବ କ୍ରମୋନ୍ନତି ପଥେ ।
ଏକାକୀ ହେଉଛି ମୁହିଁ ତହିଁ ହରବର
ସାହା ମଧ୍ୟ ହୋଇବ ସେ ଗୃହକାର୍ଯ୍ୟେ ମୋର ।"
ଏସନ ପ୍ରସ୍ତାବେ ସର୍ବେ ହୋଇ ଏକମତ
ଗଦାଧର ସମୀପେ ତା କଲେ ସମାଗତ ।

ଅଗ୍ରଜଙ୍କୁ ସେବିବାର ଅଧିକାର ପାଇ
ଆନନ୍ଦେ ସମ୍ମତି ଦେଲେ ପ୍ରଭୁ ବିଶ୍ୱ ସାଇଁ ।
ଶୁଭଦିନେ ଶୁଭକ୍ଷଣେ ପ୍ରଭୁ ଗଦାଧର
ଇଷ୍ଟପାଦେ ପ୍ରଣମିଣ ଭକ୍ତି ସହକାର,
ଜନନୀ ଚରଣ ରଜ ନେଇ ନିଜ ଶିରେ
କଲିକତା ବିଜେ କଲେ ପ୍ରଫୁଲ୍ଲ ଚିତ୍ତରେ ।
ମାତା ଚନ୍ଦ୍ରାଦେବୀ ଆଉ ଯେତେ ନରନାରୀ
ଗଦାଇଙ୍କ ପ୍ରତି ଯା'ଙ୍କ ଅନୁରାଗ ଭାରି ।
ନିରାନନ୍ଦେ ଏ ସରବେ ହେଲେ ନିମଗନ
ଦିବାନିଶି ଭାଳି ଭାଳି ତାଙ୍କ କଥାମାନ ।
ଅତଃପର ଚିନ୍ତି ତାଙ୍କ ଭବିଷ୍ୟ ମଙ୍ଗଳ
ପ୍ରଶାନ୍ତି ଲଭିଣ ଚିତ୍ତେ କଟାଇଲେ କାଳ ।
ସାଙ୍ଗ ହେଲା ବାଲ୍ୟଲୀଳା ଗଦାଧରଙ୍କର
ଭାଙ୍ଗିଲା ଆନନ୍ଦ ହାଟ ଗ୍ରାମରେ ଏଥର ।
କଲିକତା ଆଗମିଣ ଚନ୍ଦ୍ରାଙ୍କ ନନ୍ଦନ
କଲେ ଯେଉଁ ଅଲୌକିକ ସାଧନ ଭଜନ ।
ଗାଇବ ଆଖ୍ୟାନ ତାର ଦ୍ୱିତୀୟ ଖଣ୍ଡରେ
ଅଧମ ପୋଷିଛି ଆଶା କ୍ଷୁଦ୍ର ହୃଦୟରେ ।
ପ୍ରଭୋ ଦୀନବନ୍ଧୁ ଦୀନନାଥ ନରହରି
ଦୟା ବନ୍ଧ ଶୁଣ ଥରେ ଦରିଦ୍ର ଗୁହାରି ।
ବେନି କରଯୋଡ଼ି ମୁହିଁ କରୁଛି ମିନତି
କରୁଣା କଣିକା ଦାନେ କରନ୍ତୁ ସଦ୍‌ଗତି ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ ତରିବେ ପ୍ରାଣୀ ଏ ଭବସାଗର ।
ଦୂର ହେବ ଶୋକଦୁଃଖ ସଂସାର କଷଣ
କର୍ଣ୍ଣଧାର ରୂପେ ଥିବେ ନିଜେ ଭଗବାନ ।
ପ୍ରଭୁଙ୍କର ବାଲ୍ୟଲୀଳା ହୋଇଲା ସମାପ୍ତ
ହରି ହରି ବୋଲ ସର୍ବେ ହୋଇ ଏକ ଚିତ୍ତ ।



# ଦ୍ୱିତୀୟ ଖଣ୍ଡ

# ସାଧନ ଭଜନ ଲୀଳା

## ପ୍ରଥମ ଅଧ୍ୟାୟ

### ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର କଲିକତା ଆଗମନ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅଖିଳ ବ୍ରହ୍ମାଣ୍ଡପତି ଜଗଜ୍ଜନ-ଗୁରୁ ।
ଜୟ ଜୟ ରାମକୃଷ୍ଣ କରୁଣା ସାଗର
ଜଗବନ୍ଧୁ ଜଗନ୍ନାଥ ପରମ ଈଶ୍ୱର ।
ରାମକୃଷ୍ଣ ଲୀଳା ଗାଥା ଶ୍ରବଣ ମଙ୍ଗଳ
କୀର୍ତ୍ତନେ ସନ୍ତପ୍ତ ଚିତ୍ତ ହୁଅଇ ଶୀତଳ ।
କୋଟି ଜନ୍ମାର୍ଜ୍ଜିତ ପାପ ଖଣ୍ଡଇ ଦଣ୍ଡକେ
ଘୋର ତମ ନାଶ ହୁଏ ଯେମନ୍ତ ଆଲୋକେ ।
ଦେବଭାବେ ପ୍ରଣୋଦିତ ହୋଇ ପ୍ରାଣ ମନ
ପ୍ରତିଭାତ ହୁଏ ଏକ ନବୀନ ଜୀବନ ।
ବିମୋହିତ ପଞ୍ଚଭୂତ ଇନ୍ଦ୍ରିୟ ନିଚୟ
ନିମିଷକେ ଅସ୍ତ ହୁଏ ଚଞ୍ଚଳ ହୃଦୟ ।
ଦୂର ହୁଏ ଚିତ୍ତ-ଦ୍ୱନ୍ଦ୍ୱ ଅଜ୍ଞାନାବରଣ
ମାୟାମୋହ ବିଶ୍ଳିପିକା କ୍ଷଣେ ନିବାରଣ ।
ଶୁଣ ରେ ଅବୋଧ ମନ ! ଲୀଳା ପ୍ରଭୁଙ୍କର
ଭବ-ବ୍ୟାଧି ମହୌଷଧି ଶକ୍ତିର ଆଧାର ।
କାମାରପୁକୁର ଗ୍ରାମୁଁ ଲୀଳା ସାଙ୍ଗ କରି
କଲିକତା ନଗରୀରେ ପ୍ରବେଶ ଶ୍ରୀହରି ।
ଶ୍ରୀରାମକୁମାର ତାଙ୍କ ଜ୍ୟେଷ୍ଠ ସହୋଦର
ଧର୍ମ୍ମନିଷ୍ଠ ଶାସ୍ତ୍ରାଧ୍ୟାୟୀ ପଣ୍ଡିତ ପ୍ରବର ।
ତାହାଙ୍କର ଚତୁଷ୍ପାଠୀ ଝାମା ପୁକୁରରେ
ଖ୍ୟାତନାମା ପଲ୍ଲୀ କଲିକତା ସହରରେ ।
ଜ୍ୟେଷ୍ଠଙ୍କ ସମୀପେ ପ୍ରଭୁ କରି ଅବସ୍ଥାନ
କେବଣେ କଲେକ ଲୀଳା ଶୁଣ ସେ ଆଖ୍ୟାନ ।

ସନ୍ନିକଟେ ଦିଗମ୍ବର ମିତ୍ରଙ୍କ ଆବାସ
ପଲ୍ଲୀରେ କ୍ଷମତାଶାଳୀ ପ୍ରଧାନ ପୁରୁଷ ।
ଧର୍ମେ ନିଷ୍ଠା, ଇଷ୍ଟେ ଭକ୍ତି ଚିତ୍ତେ ନିରନ୍ତର
ବ୍ରାହ୍ମଣ ପଣ୍ଡିତ ପ୍ରତି ବିଶେଷ ଆଦର ।
ଗୃହେ କୁଳଦେବତାଙ୍କ ପୂଜା ଯଥାବିଧି
ଶୁଦ୍ଧାଚାରୀ ଦ୍ୱିଜ ଲୋଡ଼ା ତେଣୁ ନିରବଧି ।
ଶ୍ରୀରାମ କୁମାର ଦ୍ୱିଜ ଅତି ନିଷ୍ଠାପର
ପୂଜକେ ବରିଲେ ତାଙ୍କୁ ମିତ୍ର ଦିଗମ୍ବର ।
ଶିକ୍ଷକ କାର୍ଯ୍ୟରେ ଦ୍ୱିଜ ଯାହା ଅରଜିଲେ
ଅଭାବ ମେଣ୍ଟିଲା ନାହିଁ ତହିଁ କେତେବେଳେ ।
ଅର୍ଥାଭାବେ ପ୍ରପୀଡ଼ିତ ହୋଇଣ ଏସନ
ଇଚ୍ଛା ବିରୋଧେ ନରିଲେ ସେ କର୍ମ ଗ୍ରହଣ ।
ଦେବସେବା ହେତୁ ଏବେ ଶିକ୍ଷାକାର୍ଯ୍ୟେ ବାଧା
ବିପ୍ରଙ୍କର ମନେ ମନେ ତେଣୁ ମହା ଧନ୍ଦା ।
କଲିକତା ଆସିଲାରୁ ପ୍ରଭୁ ଗଦାଧର
ତାଙ୍କ ହସ୍ତେ ସମର୍ପିଲେ ଦେବାର୍ଚ୍ଚନ ଭାର ।
ଦେବସେବା ଅଧିକାର ହୋଇଣ ପ୍ରାପତ
ଗଦାଧରଙ୍କ ହୃଦୟ ଆନନ୍ଦେ ପୂରିତ ।
ସ୍ୱଭାବ ସରଳ ଯଥା ଅକଳଙ୍କ ଶଶୀ
ଅତୁଳ ଅଟଇ ତଥା ଦିବ୍ୟ ରୂପରାଶି ।
ବୀଣା-ବିନିନ୍ଦିତ ତାଙ୍କ ମଧୁ କଣ୍ଠ ସ୍ୱର
ତହିଁରେ ଆକୃଷ୍ଟ ହେଲେ ମିତ୍ର ପରିବାର ।
ମଧ୍ୟେ ମଧ୍ୟେ ଲୁଣ୍ଡ ହୋଇ ରମଣୀ ମଣ୍ଡଳୀ
ଶ୍ରୀମୁଖୁଁ ଭଜନ ଶୁଣି ଅତି କୌତୂହଳୀ ।

ପଲ୍ଲୀମଧ୍ୟେ ଏ ବାରତା ଅଚିରେ ପ୍ରଚାର
ଧାଇଁଲେ କ୍ରମଶଃ ବନ୍ଧୁ ଭଦ୍ର ପରିବାର ।
ଶୁଣି ତାଙ୍କ ସୁଧାମୟ ଭଜନ କୀର୍ତ୍ତନ
ଚିତ୍ତ ଅତି ପୁଲକିତ, ଦ୍ରବୀଭୂତ ପ୍ରାଣ ।
ମହାଶକ୍ତି ପରିପୂର୍ଣ୍ଣ ପ୍ରଭୁଙ୍କ ସଙ୍ଗୀତ
କରଇ ପାଷାଣ ଚିତ୍ତ କ୍ଷଣେ ବିଗଳିତ ।
ଆନନ୍ଦାଶ୍ରୁ ବହିଯାଏ ନେତ୍ରୁ ଅବିରଳ
ପ୍ରସ୍ରବଣୁ ପ୍ରବାହିତ ଯେମନ୍ତ ସଲିଳ ।
ମନୋହର ଗୀତ, ସ୍ୱର ଲଳିତ ମାଧୁରୀ,
ଶ୍ରୀକଣ୍ଠେ ମୋହନ ବଂଶୀ ଲୁଚିଛି ଯେପରି ।
ବାରେକ ଶୁଣିଲେ ତାଙ୍କ ମଧୁର ସଙ୍ଗୀତ
ନାଚ ଉଠେ ହୃଦତନ୍ତ୍ରୀ ହୋଇ ଉଲ୍ଲସିତ ।
ମହା ଭାଗ୍ୟବନ୍ତୀ ସେହି ରମଣୀ ନିଚୟ
ଯାʼଙ୍କ ପ୍ରତି କଲେ କୃପା ପ୍ରଭୁ ଦୟାମୟ ।
ଗୃହକର୍ମେ ନ ଲଗଇ ଆଉ ତାଙ୍କ ମନ
ଗଦାଇଙ୍କୁ ଦେଖିବାକୁ ସଦା ଛନ୍ନ ଛନ୍ନ ।
ଯେଉଁ ଦିନ ନ ଆସନ୍ତି ପ୍ରଭୁ ଗଦାଧର
ଲୋକ ହାତେ ତାଙ୍କ ପାଶେ ପ୍ରେରନ୍ତି ଖବର ।
ପୁରୁଷ, ବାଳକ, ନାରୀ ହୋଇ ଏକତ୍ରିତ
ଭଜନ କୀର୍ତ୍ତନ ଶୁଣି ଅତି ଆନନ୍ଦିତ ।
ଝାମାପୁକୁରେ ଯଥାତଥା ଏ ସ୍ଥାନରେ
ଭକ୍ତଙ୍କ ମେଳେ କାଳ ଯାପିଲେ ସୁଖରେ ।
ଅନୁଜଙ୍କ ରୀତି ଗତି କରିଣ ଦର୍ଶନ
ଜ୍ୟେଷ୍ଠ ଭ୍ରାତା ମନେ ମନେ ହେଲେ ଅତି କ୍ଷୁଣ୍ଣ ।
ଯଜନ ଯାଜନ ଆଦି ବିପ୍ରୋଚିତ କର୍ମ
ଅନୁଜଙ୍କୁ ଶିକ୍ଷା ଦେବେ କରିଥିଲେ ମନ ।
ସେ କାରଣେ ଆଣାଇଥିଲେ ତାଙ୍କୁ ନିଜ ପାଶେ
ବୃଥା ହେଲା କିନ୍ତୁ ସବୁ ଆଶା ଅବଶେଷେ ।
ବହୁତ ଯତନ କଲେ ଶିକ୍ଷା ଦେବା ପାଇଁ
ସବୁ ପରିଶ୍ରମ ଯାକ ଗଲା ପଣ୍ଡ ହୋଇ ।

ସତତ ଅମନୋଯୋଗୀ ପ୍ରଭୁ ଶିକ୍ଷା ପ୍ରତି
ତା ଦର୍ଶନେ ଜ୍ୟେଷ୍ଠ ଭ୍ରାତା ବିରକ୍ତ ସେ ଅତି ।
କର୍କଶ ବାକ୍ୟରେ ଦିନେ କଲେ ତିରସ୍କାର
ଉତ୍ତରେ କହିଲେ ତାଙ୍କୁ ପ୍ରଭୁ ଗଦାଧର ।
"ଚାଉଳ କଦଳୀ ଯେଉଁ ବିଦ୍ୟାର ଉଦ୍ଦେଶ୍ୟ
ସେ ବିଦ୍ୟାଧ୍ୟୟନେ ମୋର ନାହିଁ ଅଭିଲାଷ ।
ଯେ ଶିକ୍ଷା ସାହାଯ୍ୟେ ଜ୍ଞାନ ହେବ ପ୍ରତିଷ୍ଠିତ
ସତ୍ୟପଥେ ଜୀବନକୁ କରିବ ଚାଳିତ ।
ପ୍ରବଳ ବାସନା ଚିତ୍ତେ ସେହି ଶିକ୍ଷା ପାଇଁ
ଅସାର ଶିକ୍ଷାରେ ମୋର ମନ ନ ବଳଇ ।
ଯେଉଁ ଶିକ୍ଷା ପ୍ରଭାବରେ ଅବିଦ୍ୟା ପ୍ରବୃତ୍ତି
ବଳାଉଛି କମ୍ପା ମୋତେ ସେହି ଶିକ୍ଷା ପ୍ରତି ।"
ଏ ହେତୁ ଶିକ୍ଷାର କଥା ହେଲେ ଉତ୍ଥାପିତ
କର୍ଣ୍ଣ ନ ଡେରନ୍ତି ତହିଁ ଶ୍ରୀଦେବ କଦାଚିତ ।
ଏହାର ମର୍ମ ବୁଝିବେ କେମନ୍ତେ ଅଜ୍ଞାନ
ବିଷୟ ରସରେ ସଦା ମଗ୍ନ ଯାଙ୍କ ମନ ।
ମହତ ଉଦ୍ଦେଶ୍ୟ ଥିଲା ଗଦାଇଙ୍କ ମନେ
ସାଧାରଣ ଲୋକେ ତାହା ଜାଣିବେ କେସନେ ।
ଶ୍ରୀରାମକୁମାର ଅତି ଚିନ୍ତିତ ଅନ୍ତର
କେମନ୍ତେ ସେ ଚଳାଇବେ ଆପଣା ସଂସାର ।
ଦିନ ଦିନୁ ହେଉଅଛି ଅର୍ଥ ଅନାଟନ
ତହିଁ ପୁଣି ଅନୁଜଙ୍କ ବେଭାର ଏସନ ।
ଏସନେ ବରଷ ତିନି ହୋଇଗଲା ଅତୀତ
ବାରଶ ବାଷଠି ସାଲ ହେଲା ସମାଗତ ।
ଅଗ୍ରଜଙ୍କ ଚିନ୍ତା ଦେଖି ପ୍ରଭୁ ଚିନ୍ତାମଣି
ଉପାୟ ପାଞ୍ଚିଲେ ଯାହା ଶୁଣ ସେ କାହାଣୀ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ କୀର୍ତ୍ତନେ ଚିତ୍ତ କଲ୍ମଷ ଦୂର ।
ଗାଅ ମନ ! ଭଜ ମନ ! ସେହି ସୁଧା ନାମ
ଅନ୍ତରେ ଲଭିବୁ ଯଦି ପ୍ରଭୁ ଆତ୍ମାରାମ ।

# ଦ୍ୱିତୀୟ ଅଧ୍ୟାୟ

## ଦକ୍ଷିଣେଶ୍ୱରରେ ରାଣୀ ରାସମଣିଙ୍କ କର୍ତ୍ତୃକ କାଳୀମନ୍ଦିର ପ୍ରତିଷ୍ଠା

ଜୟ ଜୟ ରାମକୃଷ୍ଣ ପତିତପାବନ
ଅନାଦି କାରଣ ବିଭୁ ପ୍ରଭୁ ନାରାୟଣ ।
ଜୟ ଜୟ ରାମକୃଷ୍ଣ କରୁଣାସାଗର
ଭକତ ଜନଙ୍କ ଆଶା ଭବ କର୍ଣ୍ଣଧାର ।
କେମନ୍ତେ ରଚିଲେ ପ୍ରଭୁ ଲୀଳା ସଙ୍ଗୋପନେ
ଶୁଣ ରେ ଅବୋଧ ମନ ! ତାହା ସାବଧାନେ ।
ପ୍ରଥମେ ଯେ ରଙ୍ଗମଞ୍ଚେ କଲେକ ପ୍ରବେଶ
ସର୍ବାଗ୍ରେ ଗାଇବି ମୁହିଁ ତାଙ୍କର ସନ୍ଦେଶ ।
ସୁବୃହତ କର୍ମକାଣ୍ଡେ ଧନ ପ୍ରୟୋଜନ
ତହୁଁ ପ୍ରବେଶିଲେ ଏକ ଧନୀ ମହାଜନ ।
କରଯୋଡ଼ି ବନ୍ଦେ ତାଙ୍କ ଚରଣ ଯୁଗଳ
ଯାଙ୍କ ସହ ସର୍ବାଗ୍ରରେ ପ୍ରଭୁଙ୍କର ମେଳ ।
ମହା ଭାଗ୍ୟବତୀ ସେହି ରାଣୀ ରାସମଣି
ଅଷ୍ଟ ନାୟିକାଙ୍କ ମଧ୍ୟେ ଅଟନ୍ତି ଅଗ୍ରଣୀ ।
ଯେମନ୍ତେ ଯୋଜନା ହେଲା ଲୀଳାର ସୋପାନ
ତା ଶ୍ରବଣେ ଦିବ୍ୟ ନେତ୍ର ହୁଏ ଉନ୍ମୋଚନ ।
କଲିକତା ନଗରୀର ଦକ୍ଷିଣ ପାର୍ଶ୍ୱରେ
ସୁବିଖ୍ୟାତ ପଲ୍ଲୀ ଜାନ-ବଜାର ନାମରେ ।
ରାଣୀ ରାସମଣିଙ୍କର ସେଠାରେ ବସତି
କୁବେର ସମାନ ଯାଙ୍କ ଅତୁଳ ସମ୍ପତ୍ତି ।
ତାଙ୍କର ସୌଭାଗ୍ୟ କଥା ନ ହୁଏ ବଖାଣି
ଯଥା ଧନବତୀ ତଥା ଭକ୍ତିମତୀ ପୁଣି ।
ଦୀନ ଦୁଃଖୀ ପାଇଁ ସଦା ଚିତ୍ତ ବିଗଳିତ
ନିତ୍ୟ ଅକାତରେ ଦାନ ବହୁ ଧନ ବିତ୍ତ ।
ଶ୍ୟାମା-ପାଦପଦ୍ମେ ତାଙ୍କ ଅପ୍ରମେୟ ଭକ୍ତି
ଶ୍ୟାମା ଗୁଣ କୀରତନେ ସଦା ଅନୁରକ୍ତି ।
ଶ୍ୟାମା ନାମ ସଦା ଜପ, ଶ୍ୟାମା ନାମ ଧ୍ୟାନ
ସଂସାରୀ ହେଲେହେଁ ଶ୍ୟାମା ପାଦେ ସଦା ମନ ।
ସିରସ୍ତାରେ ଥିଲା ଯେତେ କାଗଜପତର
ଶୀର୍ଷଦେଶେ ଶ୍ୟାମା ନାମ ଅଙ୍କିତ ତାହାର ।
"ଶ୍ୟାମା-ପଦ ଅଭିଳାଷୀ ରାସମଣି ଦାସୀ"
ମୋହରରେ ଖୋଦିତ ଏହା ଭକ୍ତି ପରକାଶି ।
ବହୁକାଳୁଁ ତାହାଙ୍କର ବାଞ୍ଛା ଥିଲା ମନେ
କାଶୀରେ କରିବେ ବାସ ଅନ୍ତିମ ଜୀବନେ ।
ସେଠାରେ ପୂଜିବେ ଅନ୍ନପୂର୍ଣ୍ଣା ବିଶ୍ୱେଶ୍ୱର
ଦିନକରେ କଲେ ତହୁଁ ଯାତ୍ରାକାଳ ସ୍ଥିର ।
ଦରକାରୀ ଦ୍ରବ୍ୟମାନ ଯାହା ପ୍ରୟୋଜନ
ଆଦେଶାନୁସାରେ ସବୁ ହେଲା ଆୟୋଜନ ।
ନାନା ଦ୍ରବ୍ୟେ ଶତ ଶତ ନାବ ପୂର୍ଣ୍ଣ ହୋଇ
ରହିଲା ଜାହ୍ନବୀ ତଟେ ସଙ୍ଗେ ଯିବା ପାଇଁ ।
ଯାତ୍ରାର ପୂରବ ରାତେ ଦେବୀ ଜଗନ୍ମାତା
ରାଣୀଙ୍କୁ କହିଲେ ସ୍ୱପ୍ନେ ହୋଇ ଆବିର୍ଭୂତା
"କି କାରଣେ ଯିବ ତୁମ୍ଭେ ପୁଣ୍ୟଧାମ କାଶୀ ।
ମୁହିଁ ଯହିଁ ଆବିର୍ଭୂତା ତହିଁ ବାରାଣସୀ ।
ମୋ ମୂର୍ତ୍ତି ସ୍ଥାପନ କରି ଭାଗୀରଥୀ ତୀରେ
ଅର୍ଚ୍ଚନ ବ୍ୟବସ୍ଥା କର ବିଧି ଅନୁସାରେ ।
ସେ ମୂର୍ତ୍ତି ଅଶ୍ରୟେ ମୁହିଁ ଆବିର୍ଭୂତା ହୋଇ
ଗ୍ରହଣ କରିବି ତବ ପୂଜା ନିତ୍ୟ ଯାଇ ।"
ଏସନ ଆଦିଷ୍ଟା ହୋଇ ଭକ୍ତିମତୀ ରାଣୀ
ଅତି ପୁଲକିତା ନିଜ ସଉଭାଗ୍ୟ ମଣି ।
ବିଧିର ବିଧାନେ କାଶୀ ଗମନ ସ୍ଥଗିତ
ମନ୍ଦିର ପ୍ରତିଷ୍ଠା ପାଇଁ ହେଲେ ଦୃଢ଼ ଚିତ୍ତ ।
ଧନରତ୍ନ ଜମା ଥିଲା ଯେତେକ ଭଣ୍ଡାରେ
ଉତ୍ସର୍ଗ କଲେ ମନ୍ଦିର ନିର୍ମାଣ କାର୍ଯ୍ୟରେ ।
ଚୌଦିଗେ ପ୍ରେରିଲେ ନିଜ କର୍ମ୍ମଚାରୀଗଣ
ଅନ୍ୱେଷଣ କରିବାକୁ ଉପଯୁକ୍ତ ସ୍ଥାନ ।
କଲିକତାଠାରୁ ତିନି କୋଶ ଉତ୍ତରରେ
ଦକ୍ଷିଣେଶ୍ୱର ନାମକ ସ୍ଥାନ ଗଙ୍ଗାତୀରେ ।
ସେଠାରେ ଦେଖିଲେ ଏକ ସୁପ୍ରଶସ୍ତ ସ୍ଥାନ
ଷୋଡ଼ଶ ବିଘା ଅଟଇ ଯାର ଆୟତନ ।
କଳ କଳ ନାଦେ ପାଶେ ବହେ ସୁରଧୁନୀ
ଧାତା ଯେସନ୍ତେ ଗଢିଛନ୍ତି ଲୀଳାସ୍ଥଳ ଜାଣି ।
କୂର୍ମ୍ମ ପୃଷ୍ଠ ପରି ଅଟେ ଆକୃତି ତାହାର
ତନ୍ତ୍ରମତେ ପୂତ ସ୍ଥାନ ଦେବୀ ପ୍ରତିଷ୍ଠାର ।

ମନୋମତ ସ୍ଥାନ ପାଇ ଭକ୍ତିମତୀ ରାଣୀ
କାଳ ବିଳମ୍ବ ନ କରି ତାହା ନେଲେ କିଣି ।
ବାରଶତ ପଞ୍ଚାବନ ଭାଦ୍ରବ ମାସରେ
ରେଜେଷ୍ଟରୀ ଭୁକ୍ତ ହେଲା ରାଜ-ଦରବାରେ ।
ମନ୍ଦିର ନିର୍ମାଣ କାର୍ଯ୍ୟ ତହିଁ ସଙ୍ଗେ ସଙ୍ଗେ
ଆରମ୍ଭିଲେ ରାଜରାଣୀ ଅତି ଅନୁରାଗେ ।
ସେ ନିମନ୍ତେ ଯେତେ ଅର୍ଥ ହେଲା ପ୍ରୟୋଜନ
ଅକୁଣ୍ଠିତ ଭାବେ ତାହା ଭଣ୍ଡାରୁଁ ପ୍ରଦାନ ।
ମଧ୍ୟସ୍ଥଳେ ନିରମିଲେ ଦୁଇଟି ମନ୍ଦିର
ନବରତ୍ନେ ସୁଶୋଭିତ ଚୂଡ଼ାମାନ ଯାର ।
ଗୋଟିକରେ ଶ୍ୟାମା ମୂର୍ତ୍ତି ହେବ ପ୍ରତିଷ୍ଠିତ
ଅନ୍ୟଟିରେ ରାଧାକାନ୍ତ ମୂରତି ସ୍ଥାପିତ ।
ମନ୍ଦିରର ଚତୁର୍ଦ୍ଦିଗେ ପ୍ରଶସ୍ତ ପ୍ରାଙ୍ଗଣ
ବହୁ ଶତ ଲୋକଙ୍କର ବସିବାର ସ୍ଥାନ ।
ତାହାର ପଶ୍ଚିମେ ପୁଣ୍ୟତୋୟା ଭାଗୀରଥୀ
ସୁନ୍ଦର ସୋପାନେ ଘାଟ ବନ୍ଧା ହେଲା ତଥି ।
ସୋପାନକୁ ଲାଗି ଏକ ବୃହତ ଚୌତରା
ଯହିଁରୁ ଜାହ୍ନବୀ ଶୋଭା ଦିଶେ ମନୋହରା ।
ଦ୍ୱାଦଶ ଶିବ ମନ୍ଦିର ଦୁଇ ପାର୍ଶ୍ୱେ ତାର
ସ୍ଥାନର ମହିମା ଯାହା କରଇ ବିସ୍ତାର ।
ବେଢ଼ାର ଅପର ତିନି ପାର୍ଶ୍ୱମାନଙ୍କରେ
ନିରମିଲେ ଅଟ୍ଟାଳିକା ବିବିଧ ପ୍ରକାରେ ।
ପାନ୍ଥଶାଳା, ପାକଶାଳା, ନଇବେଦ୍ୟ ଘର,
ଭଣ୍ଡାରାଦି ନିରମିଲେ ଯଥା ସ୍ଥାନେ ତାର ।
ଖାଜାଞ୍ଚି ଭଣ୍ଡାରୀ ଦ୍ୱାରପାଳ ଆଦି ଯେତେ
ସମସ୍ତଙ୍କ ପାଇଁ ଖଞ୍ଜା ଗୃହ ବିଧିମତେ ।
ଉତ୍ତର ଦକ୍ଷିଣେ ଦୁଇ ନହବତ ଖାନା
ପ୍ରତ୍ୟହ ବାଜିବ ଯହିଁ ମଙ୍ଗଳ ବାଜଣା ।
ଏମନ୍ତେ ହୋଇଲା ଷଷ୍ଠ ବର୍ଷ ଅତିକ୍ରାନ୍ତ
ତଥାପି ନିର୍ମାଣ କାର୍ଯ୍ୟ ନୋହିଲା ସମାପ୍ତ ।
ବିଳମ୍ବ ଦେଖିଣ ଏଣେ ଦେବୀ ଜଗନ୍ମାତା
ସ୍ୱପ୍ନ ଯୋଗେ ରାଣୀ ପାଶେ ପୁଣି ଆବିର୍ଭୂତା ।
ତାହାଙ୍କୁ କହିଲେ "ଆଉ କେତେକାଳ ମୁହିଁ
କାଷ୍ଠ * ସିନ୍ଦୁକ ମଧ୍ୟରେ ଥିବି ବନ୍ଦ ହୋଇ ।"
ଘର୍ମାକ୍ତ ହୋଇଛି ଦେଖ ମୋର କଳେବର
ଅନତି ବିଳମ୍ବେ ପୂଜା ଆୟୋଜନ କର ।
ଏମନ୍ତେ ଆଦିଷ୍ଟା ହୋଇ ପୁଣ୍ୟବତୀ ରାଣୀ
ଦେବୀ ପ୍ରତିଷ୍ଠା ନିମନ୍ତେ ହେଲେ ଉଦ୍ୟୋଗିନୀ ।
ନିରୂପଣ କରିବାକୁ ପ୍ରତିଷ୍ଠାର ଦିନ
ନିମନ୍ତ୍ରି ଆଣିଲେ ବହୁ ପଣ୍ଡିତ ବ୍ରାହ୍ମଣ ।
ଜ୍ୟୈଷ୍ଠମାସ ଦେବସ୍ନାନ ପୂର୍ଣ୍ଣିମା ଦିବସ
ମନ୍ଦିର ପ୍ରତିଷ୍ଠା ପାଇଁ ହୋଇଲା ନିର୍ଦ୍ଦେଶ ।
ସାତିଶୟ ଅଭିଳାଷ ତାହାଙ୍କର ଚିତ୍ତେ
ଅନ୍ନଭୋଗ ସେବା ତହିଁ ଲାଗିବା ନିମିତ୍ତେ ।
ଏ ନିମନ୍ତେ ଶାସ୍ତ୍ରପଟୁ ପଣ୍ଡିତ ବ୍ରାହ୍ମଣ
ଡକାଇ ଆଣିଲେ ଦିନେ ଆପଣା ସଦନ ।
ତାଙ୍କ ପାଶେ ବ୍ୟକ୍ତ କରି ନିଜ ମନକଥା
ତାହାଙ୍କୁ କହିଲେ ଦିଅ ଶାସ୍ତ୍ରର ବ୍ୟବସ୍ଥା ।
"ଦେବୀଙ୍କଠି ଅନ୍ନଭୋଗ ବାସନା ମୋହର
କାର୍ଯ୍ୟେ ପରିଣତ ହେବ ତାହା କି ପ୍ରକାର ।
ସେଥିପାଇଁ ଯାହା ଅଛି ଶାସ୍ତ୍ରର ବିଧାନ
କହନ୍ତୁ ତା ସୁଧୀଗଣ ! ବିଚାର କରିଣ ।"
ଶାସ୍ତ୍ର ଆଲୋଚନା କରି ପଣ୍ଡିତ ନିକରେ
ନିବେଦିଲେ ତାଙ୍କ ମତ ରାଣୀଙ୍କ ଆଗରେ ।
"ଶୂଦ୍ର ଜାତି ଦେବଦେବୀ ପ୍ରତିଷ୍ଠା କରିଲେ
ଅନ୍ନଭୋଗ ବିଧି ନୁହେ ତହିଁ କେତେବେଳେ ।"
ଏହା ଶୁଣି ଭକ୍ତିମତୀ ରାଣୀ କ୍ଷୁଣ୍ଣମନା
"ଶାସ୍ତ୍ରକାରଙ୍କର ଏହା କିବା ବୃଥାମଣା ।
ଭକ୍ତି ସହକାରେ ଶୂଦ୍ର ନିବେଦିଲେ ଅନ୍ନ
ଦେବତା କରିବେ ନାହିଁ ତାହାକୁ ଗ୍ରହଣ ।
ଭଗବାନ ଭକ୍ତଙ୍କର ଚିର ସ୍ନେହସଖା
ପୁରାଣାଦି ଗ୍ରନ୍ଥେ ଅଛି ଭୂରି ଭୂରି ଲେଖା ।
ଭକ୍ତିସହ ତାଙ୍କଠାରେ ଯାହା ନିବେଦିବ
ଆଦରେ ଘେନିବେ ତାହା ପ୍ରଭୁ ବିଶ୍ୱଦେବ ।
ଉଚ୍ଚ ନୀଚ ତାଙ୍କଠାରେ ସରବେ ସମାନ
କରମ ବିଭାଗ ଅଟେ ଲୌକିକ ବିଧାନ ।

---

* କଥିତ ଅଛି ଯେ, ରାଣୀ ଦେବୀମୂର୍ତ୍ତି ନିର୍ମାଣ କରାଇ ତାହା ଭାଙ୍ଗିଯିବା ଭୟରେ ସିନ୍ଦୁକରେ ବନ୍ଦ କରି ରଖିଥିଲେ ।

ଭକ୍ତ-ସ୍ପର୍ଶ ବିପ୍ର-ଅନ୍ନ ଦେବ-ଗ୍ରହଣୀୟ
ସୁଭକ୍ତ ଶୂଦ୍ରର ଅନ୍ନ ହେବ ବର୍ଜନୀୟ ।
ଆଶ୍ଚର୍ଯ୍ୟ ମଣଇ ମୁହିଁ ଶାସ୍ତ୍ରର ବିଧାନ
ସ୍ୱାର୍ଥପର ଥିଲେ କି ସେ ଶାସ୍ତ୍ରକାରଗଣ ?
ଆପଣା ପ୍ରାଧାନ୍ୟ ରଖି ଶାସ୍ତ୍ର ରଚିଗଲେ
ବିଭୁପାଦେ ଭକ୍ତପ୍ରତି ଆସ୍ଥା ନ ରଖିଲେ ।
ପଣ୍ଡିତଙ୍କ ମତେ ମନ ବଳୁ ନାହିଁ ମୋର
କେବେ ହେଁ ନୋହିବ ଶାସ୍ତ୍ର ଏତେ ଅନୁଦାର ।"
ଅସନ୍ତୁଷ୍ଟ ହୋଇ ରାଣୀ ବିପ୍ରଙ୍କ ସିଦ୍ଧାନ୍ତେ
କର୍ମଚାରୀବୃନ୍ଦେ ଡାକି କହିଲେ ତୁରନ୍ତେ ।
ସହର ବା ଅନ୍ୟ ସ୍ଥାନେ ଟୋଲ ଅଛି ଯହିଁ
ସେଠାରୁ ସତ୍ୱର ଆଣ ବ୍ୟବସ୍ଥା ମଗାଇ ।
ଏସନ ଆଦେଶ ପାଇ କର୍ମଚାରୀଗଣ
ଚତୁର୍ଦ୍ଦିଗେ ଜଣେ ଜଣେ କଲେ ଅଭିଯାନ ।
କ୍ରମେ କ୍ରମେ ନାନାସ୍ଥାନୁ ଆସିଲା ବ୍ୟବସ୍ଥା
କେହି ନ କହିଲେ ଅନ୍ନ ଭୋଗ ଦେବା କଥା ।
ଶେଷରେ ବ୍ୟବସ୍ଥା ଦେଲେ ଶ୍ରୀରାମକୁମାର
"ଶ୍ୟାମାପୁକୁରରେ ଚତୁଷ୍ପାଠୀ ଯାହାଙ୍କର ।
ପ୍ରତିଷ୍ଠା ପୂର୍ବରୁ ରାଣୀ ତାଙ୍କର ସମ୍ପତ୍ତି
ବିପ୍ରନାମେ ଲେଖିଦେଲେ ନ ଥିବ ଆପତ୍ତି ।
ସେ ବ୍ରାହ୍ମଣ ସେ ମନ୍ଦିରେ ଦେବୀ ସଂସ୍ଥାପିଣ
ବ୍ୟବସ୍ଥା କରିବ ତହିଁ ଅନ୍ନଭୋଗ ଦାନ ।
ତାହା ହେଲେ ଶାସ୍ତ୍ରବାକ୍ୟ ହୋଇବ ପାଳିତ
ଉଚ୍ଚବର୍ଣ୍ଣ ସେ ପ୍ରସାଦ ହୋଇବେ ପ୍ରାପତ ।"
ପ୍ରାପ୍ତି ମାତ୍ରେ ଏ ପ୍ରକାର ଆଶ୍ୱାସ ବଚନ
ମହାନନ୍ଦେ ଉତ୍‌ଫୁଲ୍ଲିତ ରାଣୀଙ୍କର ମନ ।
ସାଢ଼େ ଦୁଇ ଲକ୍ଷ ମୁଦ୍ରା ତହୁଁ ବ୍ୟୟ କରି
ଦିନାଜପୁରରେ କ୍ରୟ କଲେ ଜମିଦାରୀ ।
ଆପଣାର ମନ୍ତ୍ରଦାତା ଗୁରୁଦେବେ ଡାକି
ତାଙ୍କ ନାମେ ଦାନପତ୍ର ତ୍ୱରା ଦେଲେ ଲେଖି ।
ସେ ସମ୍ପତ୍ତି ବୁଝାସୁଝା କରିବା କାରଣ
ତତ୍ତ୍ୱାବଧାରକ ରୂପେ ନିଯୁକ୍ତ ଆପଣ ।
ଅନ୍ନଭୋଗ ଦେବାପାଇଁ ସୁବ୍ରାହ୍ମଣ ଜଣେ
ଅତଃପର ଅନ୍ୱେଷିଲେ ରାଣୀ ନାନାସ୍ଥାନେ ।
ଦେଶୀୟ ବ୍ରାହ୍ମଣ କେହି ନୋହିଲେ ସମ୍ମତ
ତାହାଦେଖି ରାସମଣି ଅତି ମର୍ମ୍ମାହତ ।

"ଶାସ୍ତ୍ରାପେକ୍ଷା ଦେଶାଚାର ଏତେ ବଳୀୟାର
ଶାସ୍ତ୍ରବାକ୍ୟ ଏଡ଼ିବାକୁ ସର୍ବେ ଅଗ୍ରସର ।
ମୋହର ସମ୍ପର୍କ ଏଥି ଥିବାହେତୁ ସିନା
ଅନ୍ନଭୋଗ ଦେବାପାଇଁ ବିପ୍ରେ କଲେ ମନା ।
ନୀଚକୁଳେ ଜନ୍ମ ଦେଲ କିପାଁ ପ୍ରଭୋ ! ମୋତେ"
ଏମନ୍ତ କହିଣ ରାଣୀ ଖେଦ କଲେ କେତେ ।
ଉପାସ୍ୟ ବିହୀନା ହୋଇ ବ୍ୟାକୁଳ ଅନ୍ତରେ
ସମ୍ବାଦ ପ୍ରେରିଲେ ରାମକୁମାର ପାଶରେ ।
"ଶାସ୍ତ୍ରବିଧିମତେ ସବୁ କଲି ଆୟୋଜନ
ତଥାପି ଅର୍ଚ୍ଚନା ପାଇଁ ଅମିଳ ବ୍ରାହ୍ମଣ ।
ଆପଣ ପୂଜକ ପଦ ଗ୍ରହଣ ନ କଲେ
ମୋର ସବୁ ପରିଶ୍ରମ ଯିବ ରସାତଳେ ।"
ଦେଖି ଭକ୍ତ ଧର୍ମ୍ମନିଷ୍ଠ ଶ୍ରୀରାମକୁମାର
ଏସନ ସଂବାଦ ପାଇ କରନ୍ତି ବିଚାର ।
ପୂଜାକାର୍ଯ୍ୟ ଭାର ମୁହିଁ ନ କଲେ ଗ୍ରହଣ
ଦେବ କାର୍ଯ୍ୟ ବିଘ୍ନ ହୋଇ ହେବ ଅକଲ୍ୟାଣ ।
ସେ କାର୍ଯ୍ୟ ଗ୍ରହଣେ ତେଣୁ ହୋଇଲେ ସମ୍ମତ
ଲୋକାଚାରେ ଦୋଷ ହେଲେ, ଶାସ୍ତ୍ର ଅନୁମତ ।
ପରିଚିତ ଦେଶବାସୀ ସହରେ ଯେ ଥିଲେ
ତାଙ୍କୁ ଡାକି ପୂଜାକାର୍ଯ୍ୟେ ତ୍ୱରା ନିୟୋଜିଲେ ।
ପ୍ରାପ୍ତ ହୋଇ ମନୋମତ ପୂଜକ ବ୍ରାହ୍ମଣ
ପ୍ରତିଷ୍ଠା ନିମନ୍ତେ ରାଣୀ କଲେ ଆୟୋଜନ ।
ପାଣ୍ଡିତ୍ୟ ନିମନ୍ତେ ଯେଉଁ ଦେଶମାନ ଖ୍ୟାତ
ସୁବ୍ରାହ୍ମଣମାନ ଆଛି ଯହିଁ ଅବସ୍ଥିତ ।
ଯଥାବିଧି ନିମନ୍ତ୍ରଣ ସେଠାକୁ ପଠାଇ
ବହୁ ପଣ୍ଡିତ ବ୍ରାହ୍ମଣ ଆଣିଲେ ଡକାଇ ।
ଚଟ୍ଟଗ୍ରାମ, ନବଦ୍ୱୀପ, କାନ୍ୟକୁବ୍‌ଜ, କାଶୀ,
ଶ୍ରୀହଟ୍ଟ, ଉତ୍କଳ ଆଦି ବହୁଦୂର-ବାସୀ ।
ବ୍ରାହ୍ମଣ ପଣ୍ଡିତେ ତାଙ୍କ ଛାତ୍ରଗଣ ସହ
ଦକ୍ଷିଣେଶ୍ୱରରେ ଜୁଟି ହେଲେ ଶହ ଶହ ।
ଯାତ୍ରାବାଲା, ପାଲାବାଲା, କୀର୍ତ୍ତନୀୟା ଦଳ
ପ୍ରତିଷ୍ଠା ପୂରବ ଦିନୁ ସର୍ବେ ହେଲେ ଠୁଳ ।
ଚର୍ବ୍ୟ ଚୋଷ୍ୟ, ଲେହ୍ୟ, ପେୟ ଖାଦ୍ୟଦ୍ରବ୍ୟମାନ
କେତେ ଯେ ଅଇଲା କାହୁଁ ନାହିଁ ତା କଳନ ।
ବସିଲା ଦକ୍ଷିଣେଶ୍ୱରେ ଆନନ୍ଦ ବଜାର
କେମନ୍ତେ ପାହିଲା ନିଶା ନୋହିଲା ଗୋଚର ।

କାହୁଁ କାହୁଁ ଲୋକ ଆସି ଜମା ହେଲେ ତହିଁ
ସଂଖ୍ୟା କରିବାକୁ ମାନବର ଶକ୍ତି କାହିଁ ।
ଶୁଭକ୍ଷଣେ ସମାଗତ ଶ୍ରୀରାମକୁମାର
ସଙ୍ଗେ ଘେନି ଜଗଦ୍ଭ୍ରାତା ପ୍ରଭୁ ଗଦାଧର ।
ମର୍ମ୍ମର ପ୍ରସ୍ତରେ ଗଢ଼ା ମନ୍ଦିର ଚଟାଣ
ତଦୁପରେ ବିରାଜିତ ରଜତ-ସିଂହାସନ ।
ସହସ୍ର ପାଖୁଡ଼ାଯୁକ୍ତ ରଜତ କମଳ
ସିଂହାସନୋପରେ ଆଭା ଦିଶେ ଝଲମଲ ।
ଶ୍ୱେତ ପ୍ରସ୍ତର ନିର୍ମ୍ମିତ ଉମାପତି ଶିବ
ତଦୁପରେ ଶୋଇଛନ୍ତି ଯେସନ୍ତେ ମହାଶବ ।
ବକ୍ଷରେ ଦଣ୍ଡାୟମାନ ଶ୍ୟାମା ତ୍ରିନୟନୀ
ତ୍ରିତାପହାରିଣୀ ଦେବୀ ଅଭୟଦାୟିନୀ ।
ଦେବୀଙ୍କ ଚରଣେ ସ୍ୱର୍ଣ୍ଣ ଖଡ଼ୁ ଆଠବାଙ୍କୀ
ନୂପୁର, ପାଉଞ୍ଜି ଆଉ ପାପଦ୍ମ, ଚୁଟକୀ ।
ନିମ୍ନ ହସ୍ତେ ବାଳା, ଖଡ଼ୁ, ବାଉଟୀ, ରସିନା,
ଊର୍ଦ୍ଧ୍ୱ ହସ୍ତେ ବାଜୁ, ତାଡ଼, ତାବିଜ ଗହଣା ।
ତହିଁରୁ ଦୋଳଇ ଝୁମ୍ପା ବିବିଧ ପ୍ରକାର
ଜନମନଲୋଭା ଶୋଭା ଅତି ମନୋହର ।
କଟୀରେ କମରପଟୀ ଆଉ ନିମ୍ବଫଳ
ତା ତଳେ ଦୋଦୁଲ୍ୟମାନ ନର-କରମାଳ ।
ଗଳଦେଶେ ଚିକ, ମୁକ୍ତା-ସପ୍ତନଳୀ ହାର
କର୍ଣ୍ଣମାଳ ଦାନାମାଳ ବର୍ଣ୍ଣିଶ ନହର ।
ତଦୁପରେ ସୁବର୍ଣ୍ଣର ନରମୁଣ୍ଡମାଳା
ପ୍ରକାଶେ ଭୈରବୀ ମୂର୍ତ୍ତି ଭୟଙ୍କର ଲୀଳା ।
ମସ୍ତକେ ମୁକୁଟ ଆଉ କର୍ଣ୍ଣେ କର୍ଣ୍ଣଫାଶ
କାନବାଳା, ଫୁଲ ଆଦି ଶୋଭଇ ବିଶେଷ ।
ନାସିକାରେ ନୋଥ ସହ ଦୋଳଇ ନୋଳକ
ଦରଶକବୃନ୍ଦଙ୍କର ଚିତ୍ତ ଆକର୍ଷକ ।
ବାମ କର ଦ୍ୱୟରେ ଅସି ନୃମୁଣ୍ଡ ଧାରଣ
ଦକ୍ଷିଣ ହସ୍ତରେ ବର ଅଭୟ ପ୍ରଦାନ ।
ପ୍ରତିମାର ସୌନ୍ଦର୍ଯ୍ୟର ନାହିଁ ପଟାନ୍ତର
ଶ୍ୟାମ ଅଙ୍ଗେ ଶୋଭେ ଯେସନ୍ତେ ଶ୍ୟାମା ଅଳଙ୍କାର
ନାନା ଆଭରଣେ ଦେବୀ ହୋଇ ଅଳଙ୍କୃତା
ସ୍ନାନପୂର୍ଣ୍ଣିମୀ ଦିବସେ ହେଲେ ପ୍ରତିଷ୍ଠିତା ।
ଜନତା ଠେଲିଣ ଆସି ପ୍ରଭୁ ଗଦାଧର
ବହୁ କଷ୍ଟେ ପ୍ରବେଶିଲେ ମନ୍ଦିର ଭିତର ।

ଦେବୀଙ୍କୁ ଦର୍ଶନ ମାତ୍ରେ ଶୂନ୍ୟ ବାହ୍ୟଜ୍ଞାନ
ଯେସନ୍ତେ ସ୍ୱୟଂ ନାରାୟଣ ଭବେ ମୂର୍ତ୍ତିମାନ ।
ସମାରୋହ ଦେଖି ମନେ ହେଲା ଅନୁମିତ
ଅନ୍ନପୂର୍ଣ୍ଣା ଦେବୀ ଉତ୍ସ ମହୀରେ ଯେମନ୍ତ ।
ବ୍ରାହ୍ମଣ ବୈଷ୍ଣବ ଆଦି ଛତିଶ ପାଟକ
ଯେଉଁଠି ଯେ ଥିଲେ ମନ୍ଦିରର ଆଖପାଖ ।
କେତେ ଯେ ଅଇଲେ କାହୁଁ ସଂଖ୍ୟା କେ କରିବ
ଯେ ଦିଗେ ପଡ଼ଇ ଦୃଷ୍ଟି ନର-ମହାର୍ଣ୍ଣବ ।
ପ୍ରତିଷ୍ଠାନ୍ତେ ପ୍ରାପ୍ତ ହେଲେ ସରବେ ପ୍ରସାଦ
ଆଣ ଦିଅ ନିଅ ଖାଇ ଚତୁର୍ଦ୍ଦିଗେ ଶବ୍ଦ ।
ଯେ ଯାହା ମାଗିଲା ତାହା ଅବାଧରେ ପ୍ରାପ୍ତ
ଦାନସାଗର ଯେସନ ହୋଇଛି ଉନ୍ମୁକ୍ତ ।
ଆଗତ ପଣ୍ଡିତ ବିପ୍ର ଅଧ୍ୟାପକ ଯେତେ
ବିଦାକ ପାଇଲେ ପାଟ ମୋହର ସହିତେ ।
ପ୍ରତିଷ୍ଠା କାର୍ଯ୍ୟ ନିର୍ବିଘ୍ନେ ସମ୍ପନ୍ନ ଏସନ
ମୋଟ ବ୍ୟୟ ନବଲକ୍ଷ ମୁଦ୍ରା ପରିମାଣ ।
ପ୍ରଭୁ ଗଦାଧର ସେହି ପ୍ରତିଷ୍ଠା ଦିବସ
ମନ୍ଦିର ସମ୍ପର୍କ ଦ୍ରବ୍ୟ ନ କଲେ ସ୍ପରଶ ।
ଉଖୁଡ଼ା ପଇସାକର ବଜାରୁ ଅଣାଇ
ସାରା ଦିବସ ଯାପିଲେ ତାହାକୁ ସେ ଖାଇ ।
ଦିବା ଅବସାନ ପ୍ରାପ୍ତ ହେଲା ଯେତେବେଳେ
ଝାମାପୁକୁର ସଦନେ ପ୍ରଭୁ ବାହୁଡ଼ିଲେ ।
ଷଷ୍ଠ ଦିବସ କ୍ରମଶଃ ହୋଇଲା ଅତୀତ
ତେବେ ପୁଚ୍ଛା ନ ଫେରିଲେ ଗୃହେ ଜ୍ୟେଷ୍ଠଭ୍ରାତ
ଜାଣିବାକୁ ଅଗ୍ରଜଙ୍କ କୁଶଳ ସନ୍ଦେଶ
ଦକ୍ଷିଣେଶ୍ୱରରେ ପ୍ରଭୁ ପୁନଶ୍ଚ ପ୍ରବେଶ ।
ଶୁଣିଲେ ସେଠାରେ ଜ୍ୟେଷ୍ଠ ଶ୍ରୀରାମକୁମାର
ଏଡ଼ି ନ ପାରିଣ ଅନୁରୋଧ ରାଣୀଙ୍କର ।
ଯାବତ ଜୀବନ ପୂଜା କାର୍ଯ୍ୟେ ଥିବେ ବ୍ରତୀ
ଅଙ୍ଗୀକାର କରିଛନ୍ତି ତାଙ୍କଠି ଏମନ୍ତି ।
ଏସନ ସମ୍ବାଦେ ପ୍ରଭୁ ହୋଇ ଆଚମ୍ବିତ
ଖରତର ଅଗ୍ରଜଙ୍କ ପାଶେ ଉପନୀତ ।
ତାହାଙ୍କୁ ବୋଇଲେ "ଦେଖ ଜନକ ଆମ୍ଭର
ନିର୍ଦ୍ଧନ ହେଲେହେଁ ଥିଲେ ଅତି ନିଷ୍ଠାପର ।
ଶୂଦ୍ର ଦତ୍ତ ଭିକ୍ଷା କେଭେଁ ନ କଲେ ଗ୍ରହଣ
ତୁମ୍ଭେ କିଂପା କଲ ସେହି ପ୍ରଥାର ଲଙ୍ଘନ ।

କୈବର୍ତ୍ତି ଗୃହରେ ହେଲ ଦେବୀଙ୍କ ପୂଜନ
କୁଳ ମର୍ଯ୍ୟାଦାରେ ସିନା ବୋଲାଇଲ ଜଳଙ୍କ ।”
ଶ୍ରୀରାମକୁମାର ତହୁଁ କହିଲେ ବୁଝାଇ
ଦେଶାଚାରେ ଦୋଷ ହେଲେ, ଶାସ୍ତ୍ରେ ବିଧି ଥାଇ ।
ଶାସ୍ତ୍ର କାଢ଼ି ନାନା ଯୁକ୍ତି ତାଙ୍କୁ ଶୁଣାଇଲେ
ପ୍ରଭୁ ଗଦାଧର ତାହା କିଛି ନ ମାନିଲେ ।
ତା ଦେଖିଣ ଜ୍ୟେଷ୍ଠଭ୍ରାତା ହେଲେ ଚିନ୍ତାନ୍ୱିତ
କି ଉପାୟେ ତାର ଭ୍ରମ ହେବ ଦୂରୀଭୂତ ।
ବହୁ ଚିନ୍ତା ପରେ ଶେଷେ କରିଲେ ସେ ସ୍ଥିର
ଆଜ୍ଞାପତ୍ର ପକାଇବା ଦେବୀଙ୍କ ପୟର ।
ସକଳବିଶ୍ୱାସୀ ପ୍ରଭୁ ଜଗତର ନାଥ
ଜ୍ୟେଷ୍ଠଙ୍କ ପ୍ରସ୍ତାବେ ଶେଷେ ହୋଇଲେ ସମ୍ମତ ।
ଈଶ୍ୱରଙ୍କ ମାୟା କିଏ ବୁଝିବ ସଂସାରେ
ଶୁଣ କିସ ଆଜ୍ଞା ହେଲ ଆଜ୍ଞା ପତ୍ରିକାରେ ।
ଯାଜନ ପଦ ଗ୍ରହଣେ ଶ୍ରୀରାମକୁମାର
କରିନାହାନ୍ତି କରମ ଅପଯଶସ୍କର ।
ଏଥିରେ ଜଗତେ ହେବ ପ୍ରାଣୀଙ୍କ ମଙ୍ଗଳ
ଏହା ଜାଣି କ୍ଷାନ୍ତ ହେଲେ ପ୍ରଭୁ ଆଦ୍ୟମୂଳ ।
ଏଥିଅନ୍ତେ ଅନ୍ୟ ଚିନ୍ତା ମନ୍ଥିଲା ହୃଦୟ
ଚତୁଷ୍ପାଠୀ ଭାଙ୍ଗି ଗଲେ କି ହେବ ଉପାୟ ।
ଝାମାପୁକୁରକୁ ଆଉ ଲେଉଟି ନ ଯାଇ
ସାରାଦିନ ଚିନ୍ତାମଗ୍ନ ରହିଲେ ଗୋସାଇଁ ।
ପ୍ରସାଦ ସେବନେ ଜ୍ୟେଷ୍ଠ ଡାକିଲେକ ଯେତେ
ଶ୍ରୀଦେବ ନୋହିଲେ ରାଜି କଉଣସିମତେ ।
କନିଷ୍ଠଙ୍କ ପାଶେ ଡାକି ଜ୍ୟେଷ୍ଠ ସହୋଦର
ସ୍ନେହ ସହ ବୁଝାଇଲେ ନାନା ପରକାର ।
“ଦେବାଳୟମାନ ଅଟେ ସୁପବିତ୍ର ସ୍ଥାନ
ତହିଁ ପୁଣି ଗଙ୍ଗାଜଳେ ଏ ଭୋଗ ରନ୍ଧନ ।
ଜଗନ୍ମାତା ନାମେ ପୂତ ହୁଏ ଚରାଚର
ଭକ୍ତିରେ ଅର୍ପିତ ତାଙ୍କୁ ଏ ଭୋଗ ସମ୍ଭାର ।
ନୋହିବ କୌଣସି ଦୋଷ ଏ ଭୋଗ ଭକ୍ଷଣେ
ଅଶ୍ରଦ୍ଧା ପ୍ରକାଶ କର ତୁମ୍ଭେ କି କାରଣେ ?”
ତଥାପି ନୋହିଲେ ରାଜି ଶ୍ରୀଦେବ ଅଚ୍ୟୁତ
ଅନ୍ୟ ପ୍ରସ୍ତାବ କାଢ଼ିଲେ ତହୁଁ ଜ୍ୟେଷ୍ଠଭ୍ରାତ ।
“ରନ୍ଧନ ସାମଗ୍ରୀ ତବ ଆବଶ୍ୟକ ଯାହା
ଦେଉଛୁ ଯୋଗାଡ଼ କର ସଯତନେ ତାହା ।
ସେ ସବୁ ଘେନି ଯାଇ ପଞ୍ଚବଟୀ ମୂଳେ
ସ୍ୱହସ୍ତରେ ପାକ କର ପୂତ ଗଙ୍ଗାଜଳେ ।
ଚିରପୂତ ଗଙ୍ଗାଜଳ ଏଥି ନାହିଁ ଦ୍ୱିଧା
ସ୍ୱପକ୍ୱ ଅନ୍ନ ଭୋଜନେ କିଛି ନାହିଁ ବାଧା ।”
ସମ୍ମତ ହୋଇଲେ ଏଥି ପ୍ରଭୁ ଜଗପତି
ଏ ଭାବେ କେତେକ ଦିନ ତହିଁ ଅବସ୍ଥିତି ।
ଗଙ୍ଗାର ମାହାତ୍ମ୍ୟ କେତେ ଶୁଣ ମନ ଦେଇ
ଯାହା କହିଛନ୍ତି ପ୍ରଭୁ ଜଗତ ଗୋସାଇଁ ।
“ପ୍ରାଣୀମାନଙ୍କୁ ପବିତ୍ର କରିବା ନିମିତ୍ତ
ଗଙ୍ଗୋଦକ ରୂପେ ବ୍ରହ୍ମ ମର୍ତ୍ତ୍ୟେ ଆବିର୍ଭୂତ ।
ଏହାର ଅପର ନାମ ତେଣୁ ବ୍ରହ୍ମବାରି
ତ୍ରିତାପ ହୁଅଇ ନାଶ ଯାହା ସ୍ପର୍ଶ କରି ।
ଭାଗୀରଥୀ ତୀରେ ଯେହୁ କରୁଛନ୍ତି ବାସ
ତାଙ୍କ ଠାରେ ଦେବଭାବ ସ୍ୱତଃ ପରକାଶ ।
ପବିତ୍ର ବାଷ୍ପୀୟ କଣା ତାର ଦୁଇ ତୀରେ
ଯେତେଦୂର ଉଡ଼ିଯାଏ ବାୟୁ ପ୍ରଭାବରେ ।
ସେ ସମସ୍ତ ଭୂମିଖଣ୍ଡ ସଦା ସୁପବିତ୍ର
ତାର ଅଧିବାସୀଙ୍କର ନିର୍ମଳ ଚରିତ୍ର ।
ସଦାଚାର, ଇଷ୍ଟେ ଭକ୍ତି, ଅନ୍ତର୍ମୁଖୀ ମନ
ଜାହ୍ନବୀ ଜଳର ଅଟେ ମାହାତ୍ମ୍ୟ ଏସନ ।”
ଗଙ୍ଗୋଦକେ ପ୍ରଭୁଙ୍କର କେପରି ଭକତି
ସାଧୁଜନେ ଶୁଣ ଏବେ ତାହାର ବିବୃତି ।
ବିଷୟୀ ମାନବ କେହି ତାଙ୍କ ପାଶେ ଆସି
କହିଲେ ବିଷୟ କଥା ବହୁକ୍ଷଣ ବସି ।
ତାହାକୁ କହନ୍ତି ପ୍ରଭୁ କରୁଣା ସାଗର
“ଗଙ୍ଗୋଦକ ପାନକରି ଚିତ୍ତ ଶୁଦ୍ଧି କର ।”
ଈଶ୍ୱର ବିମୁଖ ପ୍ରାଣୀ କେହି କେତେବେଳେ
ବିଷୟ ଚିନ୍ତିଲେ ତାଙ୍କ ପାଶେ ଥିଲାବେଳେ ।
ସ୍ଥାନର କଳୁଷ ଦୂର କରିବା କାରଣ
ଗଙ୍ଗୋଦକ ଆଣି ତହିଁ କରନ୍ତି ସିଞ୍ଚନ ।
ବାଲ୍ୟକାଳେ ଯେଉଁ ପ୍ରଭୁ ଏଡ଼ି କୁଳପ୍ରଥା
ଧନୀ କମାରୁଣୀଙ୍କୁ ହିଁ କଲେ ଭିକ୍ଷାମାତା ।
ଯୌବନେ ପ୍ରାରମ୍ଭେ କିପାଁ ସେହି ଦେବଙ୍କର
ପ୍ରସାଦ ଭକ୍ଷଣେ ଆଜି ଭାବ ଅନୁଦାର ।
ବାୟା ମନ ! କି ବୁଝିବୁ ଏଥିର ରହସ୍ୟ
ନିରତେ ରହିଣ ତୁହି ବିଷୟର ଦାସ ।

କଣ୍ଠାଦ୍ୱାର ଯେତ୍ନେ ପାଇଁ କଣ୍ଠା ବାହାରଇ
ବାହାରଗଲାରୁ ବେନ କଣ୍ଠା ପିଙ୍ଗାହୋଇ ।
ଶାସ୍ତ୍ରୋକ୍ତ ନିଷ୍ଠାକୁ ତଥା ସୁଦୃଢ଼ରେ ଧରି
ସାଧନ ଭଜନ ଶାସ୍ତ୍ର ବିଧାନେ ଆଚରି ।
ଶାସ୍ତ୍ରାତୀତ ବ୍ରହ୍ମ ବସ୍ତୁ ହୋଇଲେ ଅର୍ଜନ
ତଦନ୍ତେ ବର୍ଜନ ବିଧି ଶାସ୍ତ୍ରାନୁଶାସନ ।
ଉପମାରେ ଯା କହିଲେ ଜଗତ ଗୋସାଇଁ
ସାଧୁଜନେ ଶୁଣ ଏବେ ତାହା ମନ ଦେଇ ।
"ବିଶୁଦ୍ଧ ସୁବର୍ଣ୍ଣ ସଙ୍ଗେ ଖାଦ ନ ମିଶିଲେ
ଅଳଙ୍କାର ତହିଁ ଗଢ଼ା ନ ହୁଅଇ ଭଲେ ।
ଶୁଦ୍ଧ ସତ୍ତ୍ୱଗୁଣ ତଥା କରିଣ ଆଶ୍ରୟ
ଆକାର ଧାରଣେ କ୍ଷମ ନୁହେଁ ଦୟାମୟ ।
ସତ୍ତ୍ୱ ସଙ୍ଗେ ରଜ ତମଃ ହୋଇଲେ ମିଶ୍ରିତ
କଳେବର ଧରିବାକୁ କ୍ଷମ ଆଦିନାଥ ।

ଧରନ୍ତି ସେ ଯେତେବେଳେ ନର କଳେବର
ନରଭଳି ତାହାଙ୍କର ଆଚ୍ଛର ବେଭାର ।
ଅଙ୍ଗୁଳି ନିର୍ଦ୍ଦେଶ କରି ନିଜ ଦେହ ପ୍ରତି
ବାରମ୍ବାର କହିଛନ୍ତି ପ୍ରଭୁ ଜଗପତି ।
ରାମ, କୃଷ୍ଣ ଆଦି ରୂପ ଧରିଣ ଯେ ହରି
ଯୁଗେ ଯୁଗେ ଅବତୀର୍ଣ୍ଣ ହେଲେ କୃପା କରି ।
ଆସିଛନ୍ତି ସେହୁ ଏବେ ଏ ଦେହ ପଞ୍ଜରେ
ଆଡ଼ମ୍ବର ପରିଶୂନ୍ୟ ଗୁପତ ଭାବରେ ।
ରାଜା ଯଥା ମଧ୍ୟେ ମଧ୍ୟେ ଧରି ଛଦ୍ମବେଶ
ସହର ଭ୍ରମଣ କରି ଲଭନ୍ତି ସନ୍ତୋଷ ।"
ଭବ କର୍ଣ୍ଣଧାର ଆସିଛନ୍ତି ଦୟା କରି
ନାବେ ଏବେ ବସ ମନ ! ହେବୁ ଯଦି ପାରି ।
ବେଳ ଗଲେ ଆଉ ହୋଇବୁ ହତାଶ
ଯେତେ ଚେଷ୍ଟା କଲେ ସୁଦ୍ଧା ନ ମେଣ୍ଟିବ ଆଶ ॥

ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଗାଅ ମନ ! ଭଜ ମନ, ଶୁଦ୍ଧ ଅନିବାର ।

---

## ତୃତୀୟ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କ ପୂଜକ ପଦଗ୍ରହଣ

ଜୟ ଜୟ ରାମକୃଷ୍ଣ ଗୋଲୋକବିହାରୀ
ଭକତଜନଙ୍କ ପ୍ରାଣ ପ୍ରଭୁ ନରହରି ।
ଜୟ ଜୟ ରାମକୃଷ୍ଣ ଅନାଦି କାରଣ
ଭକ୍ତବାଞ୍ଛା-କଳ୍ପତରୁ କରୁଣା ନିଦାନ ।
ତୁମ୍ଭଠି ସମାନ ସର୍ବେ ଜଗତ ଗୋସାଇଁ !
ଜାତି କୁଳ ଶୀଳମାନ ବିଚାର ନ ଥାଇ ।
ପ୍ରଥମେ ଭାଙ୍ଗିଲ ପ୍ରଭୋ ! କୁଳର ବନ୍ଧନୀ
ଦେଖାଇଲ ପଥ ତହିଁ ଧନୀ କମାରୁଣୀ ।
ଅତଃ ପର ଜ୍ୟେଷ୍ଠ ଭ୍ରାତା ଶ୍ରୀରାମକୁମାର
ଶୂଦ୍ର ପ୍ରତିଷ୍ଠିତ ଦେବ-ଅର୍ଚ୍ଚନ ସ୍ୱୀକାର ।
ଭକତବତ୍ସଳ ହରି ଭକ୍ତ ପ୍ରାଣଧନ
ଭକ୍ତଠାରେ ଭକ୍ତଡୋରେ ଆବଦ୍ଧ ଯେ ପୁଣି ।
ପୂର୍ଣ୍ଣ କରିବାକୁ ହରି ଭକ୍ତ ମନୋରଥ
ଜ୍ୟେଷ୍ଠଙ୍କୁ ମନ୍ଦିରେ ରଖି ମୁକ୍ତ କଲେ ପଥ ।
ଧନ୍ୟ ଧନ୍ୟ ଭକ୍ତିମତୀ ରାଣୀ ରାସମଣି

ଭକ୍ତିରେ ବାନ୍ଧିଲ ଗୃହେ ବ୍ରହ୍ମାଣ୍ଡର ସ୍ୱାମୀ ।
ଯାହାଙ୍କୁ ଆନନ୍ଦ ଧ୍ୟାନ କରି ଯୋଗିଗଣ
ଯୁଗ ଯୁଗ ବିତିଗଲେ ନ ପାନ୍ତି ସନ୍ଧାନ ।
ସେ ଅମୂଲ୍ୟ ଧନ ତୁମ୍ଭେ ରଖିଲ ଭବନେ
ତୁମ୍ଭ ତୁଲେ ଭାଗ୍ୟବତୀ କେ ଅଛି ଭୁବନେ ।
କି ଆଖ୍ୟା ତୁମ୍ଭଙ୍କୁ ଦେବ ବାକ୍ୟ ନ ସ୍ଫୁରଇ
ତବ ପଦରେଣୁ ସଦା ଅଧମ ମାଗଇ ।
ସୁକୌଶଳୀ ପ୍ରେମମୟ ପ୍ରଭୁ ନାରାୟଣ,
ତାଙ୍କର କୌଶଳ କଥା କେ ଜାଣିବ ପୁଣ !
ମନ୍ଦିର ପ୍ରତିଷ୍ଠା କାଳୁଁ ମାସେ ହେଲା ଗତ
ଜ୍ୟେଷ୍ଠ ଅନୁରୋଧେ ପ୍ରଭୁ ତହିଁ ଅବସ୍ଥିତ ।
ମହା ଭକ୍ତପରାୟଣ ମଥୁର ମୋହନ
ରାଣୀ ରାସମଣିଙ୍କର ଜାମାତା ପ୍ରଧାନ ।
ଶ୍ରୀପ୍ରଭୁଙ୍କୁ ଦେଖି ଦିନେ ମନ୍ଦିର ଭିତରେ
ପୁଚ୍ଛିଲେକ ପରିଚୟ ଶ୍ରୀରାମକୁମାରେ ।

କିଏ ଏ ନବୀନ ମୂର୍ତ୍ତି ବୟସଃ ସୁକୁମାର
ତେଜ ପୂର୍ଣ୍ଣ କଳେବର ମନୋମୁଗ୍ଧକର ।
ଉତ୍ତରେ କହିଲେ ଧୀରେ ଶ୍ରୀରାମକୁମାର
ବାଳକ ଅଟେ କନିଷ୍ଠ ସହୋଦର ମୋର ।
ସୁକୋମଳ ଦୀପ୍ତିଯୁକ୍ତ ମୂରତି ଦେଖିଣ
ଆକୃଷ୍ଟ ହୋଇଲେ ଭକ୍ତ ମଥୁର ମୋହନ ।
ସାତିଶୟ ଅଭିଳାଷ ଜନ୍ମିଲ ହୃଦୟେ
ପୂଜକ ପଦେ ବରିବେ ତାଙ୍କୁ କି ଉପାୟେ ।
ଏସନ ସଙ୍କଳ୍ପ କରି ମଥୁର ମୋହନ
ଶ୍ରୀରାମକୁମାର ପାଶେ କଲେ ନିବେଦନ ।
ମଥୁର ବଚନ ଶୁଣି ଶ୍ରୀରାମକୁମାର
ମହା ଧନ୍ଦାରେ ପଡ଼ିଣ ହେଲେ ହରବର ।
ନାନା ପରକାରେ ତାଙ୍କୁ କଲେକ ବାରଣ
ନ ବୁଝିଲେ କଦାଚନ ମଥୁର ମୋହନ ।
ତାଙ୍କ ଚିତ୍ତ ସମାକୃଷ୍ଟ ପ୍ରଭୁଙ୍କ ପଦ୍ମରେ
ଲୌହ ଲାଗି ରହେ ଯଥା ଚୁମ୍ବକ ପ୍ରସ୍ତରେ ।
ପ୍ରସ୍ତାବଟି ମନେ ମନେ ରହିଲ ଜାଗ୍ରତ
ସମସ୍ତ ଦେଖି କରିବେ କାର୍ଯ୍ୟେ ପରିଣତ ।
ଈଶ୍ୱର ବିଧାନ ଅବା କାହାକୁ ଗୋଚର
ଭେଟିଲେ ଏକାଳେ ଜଣେ ଲୀଳା-ସହଚର ।
ବିପ୍ରକୁଳେ ଜନ୍ମ, ନାମ ହୃଦୟ ମୁଖୁର୍ଯ୍ୟା
ସମ୍ବନ୍ଧେ ଅଟନ୍ତି ସେହୁ ପ୍ରଭୁଙ୍କ ଭଣଜା ।
ସୁଦୃଢ଼ ବଳିଷ୍ଠ ସୁଶ୍ରୀ ରୂପ ଦୀର୍ଘାକାର
ବୟସ କେବଳ ମାତ୍ର ଷୋହଳ ସତର ।
ଉଭୟଙ୍କ ମଧ୍ୟେ ଆଗୁଁ ଅହେତୁକୀ ପ୍ରୀତି
ଦରଶନେ ତେଣୁ ଚିତ୍ତ ପୁଲକିତ ଅତି ।
ଅଳପକେ ଶ୍ରେଷ୍ଠବଡ଼ ଭଣଜା ମାଉଳ
ଗଦାଇଙ୍କ ବୟଃକ୍ରମ ବିଂଶତି କେବଳ ।
ଏସନେ ବିଦେଶେ ପାଇ ବାଲ୍ୟ ସହଚର
ପ୍ରଭୁଙ୍କ ହୃଦୟେ ଜାତ ଆନନ୍ଦ ଅପାର ।
ରନ୍ଧନ ଯୋଗାଡ଼ କରି ଦିଅନ୍ତି ହୃଦୟ
ମଧ୍ୟାହ୍ନେ କରନ୍ତି ପାକ ପ୍ରଭୁ ଦୟାମୟ ।
ରାତିରେ ଲୁଚି କଚୁରି ଦେବୀଙ୍କଠି ଭୋଗ
କିଞ୍ଚିତେ ଭୁଞ୍ଜନ୍ତି ତହୁଁ ପ୍ରଭୁ ମହାଭାଗ ।
ଖାଇ ଖାଇ ବହିଯାଏ ନେତ୍ରୁ ଅଶ୍ରୁଧାର
ନିସ୍ତାସ୍ୱରେ ପ୍ରାଣ ମନ ଅନୁକ୍ଷଣ ଭର ।

ଦେବୀଙ୍କୁ କହନ୍ତି ପ୍ରଭୁ ଆକ୍ଷେପେ ବଚନ
"ଖାଇବାକୁ ଦେଲୁ ମାତଃ ! କୈବର୍ତ୍ତିର ଅନ୍ନ !
ଯେଉଁ ଅନ୍ନ ଭୁଞ୍ଜିବାକୁ ଦ୍ୱିଜେତର ଜାତି
ସବୁବେଳେ ନାନାବିଧ ଦ୍ୱିଧା ପ୍ରକାଶନ୍ତି ।
ସେ ଦେବଦେବୀ ପ୍ରସାଦ ତେଣୁ ରାଶି ରାଶି
ଗାଈଗୋରୁ ଖାଇଯାନ୍ତି ପଲ ପଲ ଆସି ।
ଯାହା ଥାଏ ଅବଶିଷ୍ଟ ପଡ଼ଇ ଗଙ୍ଗାରେ
ସେ ପ୍ରସାଦ ଖାଇବାକୁ ଦେଲୁ ମାତଃ ! ମୋରେ ।"
ଏମନ୍ତେ କରନ୍ତି କେତେ ଖେଦ ନିରନ୍ତର
ଏସନେ ଭାଷିଲେ ହୃଦୁ ଭଣଜା ତାଙ୍କର ।
ମାଉଳଙ୍କ ଅତି ପ୍ରିୟ ଅଟନ୍ତି ହୃଦୟ
ସାଧନ ଭଜନ କାଳେ ପ୍ରଧାନ ସହାୟ ।
ବାରମ୍ବାର କହୁଛନ୍ତି ପ୍ରଭୁ ଆଦିନାଥ
"ହୃଦୟର ଯତ୍ନେ ମୋର ଏ କାୟା ରକ୍ଷିତ ।
ସାଧନ ସମୟେ ପାଶେ ହୃଦୟ ନ ଥିଲେ
ରକ୍ଷା ନୋହିଥାନ୍ତା ମୋର କାୟା କେତେବେଳେ ।"
ଧରାଧାମେ ଭାଗ୍ୟବାନ ହୃଦୟ ଠାକୁର
ତାଙ୍କର ପଦ୍ମରେ ମୋର କୋଟି ନମସ୍କାର ।
ଗୋପନରେ ଏବେ ପ୍ରଭୁ କରନ୍ତି ସାଧନ
ହୃଦୟ ନ ପାନ୍ତି କିଛି ତାହାର ସନ୍ଧାନ ।
ମଧ୍ୟେ ମଧ୍ୟେ ଦୁଇ ଏକ ଘଣ୍ଟା ନିରୁଦ୍ଦେଶ
କାରଣ ପୁଛିଲେ ତାର କହନ୍ତି ଉପଦେଶ ।
"ଏଠାରେ ହିଁ ଥିଲି ମୁହିଁ ଯାଇ ନାହିଁ କାହିଁ ।"
ଏମନ୍ତେ କେତେକ ମାସ ଗଲା ଅତିବାହି ।
ଏକ ଦିନ ହୃଦୁ ସହ ପ୍ରଭୁ ଭଗବାନ
କରୁଥିଲେ ବେଢ଼ା ମଧ୍ୟେ ଯେବେ ବିଚରଣ ।
ସହସା ପ୍ରବେଶ ତହିଁ ମଥୁର ବିଶ୍ୱାସ
ରୂପ ଦର୍ଶନେ ହୃଦୟେ ଆନନ୍ଦ ବିଶେଷ ।
ପ୍ରାଣରେ ଆକାଂକ୍ଷା ସଙ୍ଗେ କହିବାକୁ କଥା
ଜ୍ୟେଷ୍ଠ ସହୋଦରେ ଡାକି ପ୍ରେରିଲେ ବାରତା ।
ଅଗ୍ରଜ ବଚନ ଶୁଣି ପ୍ରଭୁ ଗଦାଧର
ନାସ୍ତି କଲେ ଯିବା ପାଇଁ ପାଶକୁ ତାଙ୍କର ।
ବିନୟେ ପୁଛିଲେ ତହୁଁ ଭଣଜା ହୃଦୟ
"କିପାଁ ନାସ୍ତି କର ତୁମ୍ଭେ ମାମୁଁ ମହୋଦୟ ।
କୁବେର ସମ ଅଟନ୍ତି ସେହୁ ଧନୀମାନୀ
ତାଙ୍କ କଥା ରକ୍ଷା କଲେ ଅଛୁ କିସ ହାନି ?"

ଉତ୍ତରେ କହିଲେ ପ୍ରଭୁ ପୁରୁଷୋତ୍ତମ
"ନ ଜାଣେ କହିତ ରହି ଏଥିର ମରମ ।
ଗମନ କଲେକ ମୁହିଁ ତାଙ୍କ ସନ୍ନିହିତେ
ପୂଜକ ହେବାକୁ ଏଠି କହିବେ ସେ ମୋତେ ।
ଚାକିରି କରିବା ପାଇଁ ନାହିଁ ମୋର ମନ
ନାସ୍ତିକଲେ ହୋଇବେ ସେ ଅତୀବ ବିଷଣ୍ଣ ।
ଅଯଥା କାହାରି ମନେ କଷ୍ଟ ଦେବା ପାଇଁ
ମୋ ପ୍ରାଣେ କେବେହେଁ ହୃଦୁ ! ଇଚ୍ଛା ନ ହୁଅଇ ।
ବିଶେଷତଃ ଏ ମନ୍ଦିରେ ପୂଜକ ଯେ ହେବ
ଗୁରୁ ଦାୟିତ୍ୱର ଭାର ସେହୁ ମୁଣ୍ଡାଇବ ।
ଦେବୀଙ୍କ ଶ୍ରୀଅଙ୍ଗେ ବହୁମୂଲ୍ୟ ଅଳଙ୍କାର
ରକ୍ଷଣାବେକ୍ଷଣ କିଏ କରିବ ତାହାର ।
ମୋ ଦ୍ୱାରା ସେ କର୍ମ କେଭେଁ ସମ୍ଭବ ନୁହଇ
ରାଜି ନୁହେ ତେଣୁ ତାଙ୍କ ପାଖେ ଯିବାପାଇଁ ।
ଦାୟିତ୍ୱ ଗ୍ରହଣେ ତୋର ଥିଲେକ ସମ୍ମତ
ପୂଜକ ହେବାକୁ ମୋର ନୋହିବ ଆପତ୍ତି ।"
ଏଥିରେ ହେଲାରୁ ରାଜି ଭଣଜା ହୃଦୟ
ଆଶ୍ୱାସ ପାଇଣ ପ୍ରଭୁ ତୋଷ ଅତିଶୟ ।
ମଥୁର ସମୀପେ ତହୁଁ ଚଳିଲେ ବହନ
ହୃଦୁ ତାଙ୍କ ପଛେ ପଛେ ତରୁଛାୟା ସମ ।
ଭକ୍ତ ମଥୁର ମୋହନ ଶ୍ରୀପ୍ରଭୁଙ୍କୁ ଦେଖି
ସସମ୍ଭ୍ରମେ ଠିଆ ହେଲେ ଆସନ ଉପେକ୍ଷି ।
ଗୋପନେ ଡାକିଣ ତାଙ୍କୁ କହିଲେ ସାଦରେ
"ବିନତି ମୋହର ଏକ ତୁମ୍ଭର ପସ୍ଥରେ ।
ଦେବୀଙ୍କ ପୂଜକ ପଦ କରିଲେ ଗ୍ରହଣ
ବାଧିତ ରହିବ ମୁହିଁ ଏ ସାରା ଜୀବନ ।"
ଉତ୍ତରେ କହିଲେ ତାଙ୍କୁ ବ୍ରହ୍ମାଣ୍ଡଠାକୁର
"ଦେବୀଙ୍କ ଶ୍ରୀଅଙ୍ଗେ ବହୁ ରତ୍ନ ଅଳଙ୍କାର ।
କିଏ ସେ କରିବ ବୋଲି ତାହାର ଯତନ
ଏ କାର୍ଯ୍ୟ ସାଧନେ ତେଣୁ ଅକ୍ଷମ ସମ୍ପୂର୍ଣ୍ଣ ।
ହୃଦୟକୁ ଯେବେ ସେହି କାର୍ଯ୍ୟେ ନିୟୋଜିବ
ପୂଜକ ହେବାକୁ ମୋର ଆପତ୍ତି ନ ଥିବ ।"
ମଥୁର ମୋହନ ତହୁଁ ପ୍ରଫୁଲ୍ଲ ଅନ୍ତରେ
ସମ୍ମତି ପ୍ରକାଶ କଲେ ଏହି ପ୍ରସ୍ତାବରେ ।
ବେଶକାରୀରେ ନିଯୁକ୍ତ ହେଲେ ଚନ୍ଦ୍ରାସୁତ
ସହକାରୀ ହେଲେ ହୃଦୁ ତାଙ୍କର ସହିତ ।

ତଦନ୍ତେ ଯେ କାଳେ ଦେବରାଜ୍ୟ ଭଜନରେ
ବିଚରଣ କରୁଥିଲେ ମନ୍ଦିର ବେଢ଼ାରେ ।
ରାଣୀ ରାସମଣି ଆସି ତହିଁ ଉପଗତ
ଶ୍ରୀମୁଖ ଦର୍ଶନେ ଟାଣି ହେଲା ତାଙ୍କ ଚିତ୍ତ ।
ଦିବ୍ୟଭାବାପନ୍ନ କାୟ ଦିବ୍ୟ ମୁଖ-ଜ୍ୟୋତିଃ
ତପନକୁ ଜିଣି ଯାହା ଦୀପ୍ତିମାନ ଅତି ।
ମନୋମୁଗ୍ଧକର ରୂପ ଶୋଭାର ଆକାର
ଦର୍ଶନ ମାତ୍ରକେ ଚିତ୍ତେ ଭକତି ସଞ୍ଚାର ।
କେବଳ ଭକତି ନୁହେ ସ୍ନେହ ବିମିଶ୍ରିତ
ଯେତେ ଦେଖିଲେ ହେଁ ପ୍ରାଣ ନ ହୁଏ ତୃପତ ।
ଭକ୍ତର ଆଶ୍ଚର୍ଯ୍ୟ ଖେଳା ଭକତଙ୍କ ସଙ୍ଗେ
ପ୍ରାଣେ ପ୍ରାଣେ ହୁଏ କଥା ଅତି ଅନୁରାଗେ ।
ଚୁମ୍ବକ ଲୌହକୁ ଯଥା କରେ ଆକର୍ଷଣ
ବିଭୁପାଦେ ତଥାକୃଷ୍ଟ ଭକ୍ତଙ୍କର ପ୍ରାଣ ।
ଏ କାଳେ ଘଟିଲା ଏକ ଅଦ୍ଭୁତ ଘଟଣା
ଯାର ମର୍ମ ବୁଝିବାକୁ ନରବୁଦ୍ଧି ବଣା ।
ମନ୍ଦିର ପ୍ରତିଷ୍ଠା ଦିନୁ ତିନିମାସ ପରେ
ବାରଶ ବାଷଠି ସାଲ ଭାଦ୍ରବ ମାସରେ ।
ଜନ୍ମାଷ୍ଟମୀ ବ୍ରତ ଯଥାବିଧି ସୁସମ୍ପନ୍ନ
ସମାରୋହେ ନନ୍ଦୋତ୍ସବ ହେଲା ପରଦିନ ।
ମଧ୍ୟାହ୍ନେ ଅର୍ଚ୍ଚନା ଶେଷେ ଦ୍ୱିଜ କ୍ଷେତ୍ରନାଥ
ରାଧାରାଣୀଙ୍କୁ କରିଲେ ପଲଙ୍କେ ଶାୟିତ ।
ଶ୍ରୀକୃଷ୍ଣଙ୍କୁ ଧରି ଯେବେ ଶୁଆଇବା ପାଇଁ
ଯାଉଥିଲେ କ୍ଷେତ୍ରନାଥ ଅମନସ୍କ ହୋଇ ।
ପିଚ୍ଛିଳ ସହସା ପାଦ ପଡ଼ିଲେ ଭୂତଳେ
ବିଗ୍ରହର ପାଦଟିଏ ଭାଙ୍ଗିଲା ଯା ଫଳେ ।
ପରସ୍ପର ଏ ବାରତା ହୋଇଣ ପ୍ରଚାର
ପ୍ରବେଶିଲା ଅବଶେଷେ ରାଣୀଙ୍କ ପାଶର ।
ପ୍ରାପ୍ତ ହୋଇ ରାଣୀ ଏହି ଅଶୁଭ ସମ୍ବାଦ
ଅତୀବ ଅଧୀର ହୋଇ ଗଣିଲେ ପ୍ରମାଦ ।
କିବା ଅପରାଧ କଲି ବିଷ୍ଣୁଙ୍କ ପସ୍ଥରେ
ଅମଙ୍ଗଳ ହେଲା ଯହୁଁ ଏ ପୁଣ୍ୟତୀର୍ଥରେ ।
ମନ୍ଦିର ଭିତରେ ଯେତେ କର୍ମଚାରୀଗଣ
ସମସ୍ତଙ୍କ ହୃଦ ହେଲା ଭୟେ କମ୍ପମାନ ।
ବିଶେଷେ ପୂଜକ ଭଟ୍ଟାଚାର୍ଯ୍ୟ କ୍ଷେତ୍ରନାଥ
ଆତଙ୍କେ ଯାଙ୍କର ଚିତ୍ତ ଅତ୍ୟନ୍ତ ବ୍ୟଥିତ ।

ଭଗ୍ନ ବିଗ୍ରହର ପୂଜା ନୁହେ ଶାସ୍ତ୍ର ବିଧି
ନିତ୍ୟାର୍ଚ୍ଚନ ବନ୍ଦ ହେଲା ତେଣୁ ତଦବଧି ।
ନୂତନ ବିଗ୍ରହ ଆଣି ପୂଜିବା ନିମନ୍ତେ
ବିଧି ଦେଲେ ଯେତେ ଥିଲେ ବିଧିଜ୍ଞ ପଣ୍ଡିତେ ।
ପୁରାତନ ବିଗ୍ରହଟି ଫିଙ୍ଗା ହେବ ଜଳେ
ଏ ସିଦ୍ଧାନ୍ତ ଶୁଣି ପ୍ରଭୁ ମର୍ମ୍ମାହତ ହେଲେ ।
ବିଷାଦେ କହିଲେ ଯାଇ ରାଣୀଙ୍କ ପାଶର
"ବିଧି ବୋଲି ଏ ଅବିଧି କିମ୍ପାଇ ଆଚର ।
ନିମନ୍ତ୍ରଣ କରି ଆଣ ଶାସ୍ତ୍ରଜ୍ଞ ପଣ୍ଡିତେ
ଶାସ୍ତ୍ରର ବ୍ୟବସ୍ଥା କିବା ଦେଖ ଭଲମତେ ।"
ପ୍ରଭୁଙ୍କର ହିତବାଣୀ ଶିରୋଧାର୍ଯ୍ୟ କରି
ନିମନ୍ତ୍ରଣ ପତ୍ର ଦେଲେ ବିଳମ୍ବ ନ କରି ।
ଆସିଲେ ପଣ୍ଡିତଗଣ ନିରୂପିତ ଦିନେ
ଗଣ୍ଡଗୋଳ ଉପୁଜିଲା ଶାସ୍ତ୍ରର ବିଧାନେ ।
ନାନା ଯୁକ୍ତି କରି ସର୍ବେ ହେଲେ ଏକମତ
ଭଗ୍ନ ମୂର୍ତ୍ତି ପୂଜା ନୁହେ ଶାସ୍ତ୍ର ସନମତ
ଏସନ ସିଦ୍ଧାନ୍ତ ଶୁଣି ପ୍ରଭୁ ଗଦାଧର
ଖରତରେ ପ୍ରବେଶିଣ ରାଣୀଙ୍କ ଗ୍ରାମୁର,
ତାହାଙ୍କୁ କହିଲେ ଶୁଣ ଭକ୍ତିମତୀ ରାଣୀ
ମର୍ମ୍ମାହତ ହେଲି ମୁହିଁ ଶାସ୍ତ୍ର ବିଧି ଶୁଣି
ପୃଚ୍ଛନ୍ତି ସାମାନ୍ୟ ପ୍ରଶ୍ନ ପଣ୍ଡିତପ୍ରବରେ
ସ୍ୱାମୀ ପାଦ ଭାଙ୍ଗିଗଲେ କି ବିଧି ସଂସାରେ ?
ଶାସ୍ତ୍ର କି ବୋଲଇ ପତି ତେଜିବା ନିମିତ୍ତ
କି ଅବା ଚିକିତ୍ସା ତାର ଅଟଇ ବିହିତ ?
ସ୍ୱଭାବେ ସରଳ ଯଥା ପ୍ରଭୁ ନରହରି ।
ସରଳତା ପରିପୂର୍ଣ୍ଣ ବାକ୍ୟ ସେହିପରି ।
ସରଳୁଁ ସରଳ ଅଟେ ରାମକୃଷ୍ଣ କଥା
ଶାସ୍ତ୍ରର ଜଟିଳ ତର୍କ ଗନ୍ଧ ନାହିଁ ତଥା ।
ଏସନ ସରଳ ବାଣୀ ଶୁଣିଣ ତାଙ୍କର
ସେହି ପ୍ରଶ୍ନ କଲେ ରାଣୀ ସୁଧୀଙ୍କ ଆଗର ।
ମୂଢ଼େ ବୁଝିବେ ଯେ ପ୍ରଶ୍ନ ଏସନ ସରଳ
ପଣ୍ଡିତଙ୍କ ମଧ୍ୟେ କିନ୍ତୁ ପଡ଼ିଲା-ଚହଲ ।
ସୁଧୀଗଣ ପରସ୍ପରେ ରହିଲେ ଅନାଇ
ବୁଦ୍ଧି ନ ଦିଶିଲା ତାଙ୍କୁ ପ୍ରତ୍ୟୁତ୍ତର ପାଇଁ ।
ସ୍ୱାମୀର ଚିକିତ୍ସା ବିଧି ଯଦି ବୋଲୁଛନ୍ତି
ଶାସ୍ତ୍ରର ମୀମାଂସା ଯାହା ତାକୁ ଖଣ୍ଡୁଛନ୍ତି ।
ଲେଙ୍ଗଡ଼ା ପତିକୁ ସତୀ ତେଜିବା ବିହିତ
ଶରୀର ଧରିଣ ଦେବେ କିପରି ଏ ମତ ।
ଅବଶେଷେ ସୁଧୀଗଣ କହିଲେ ଉତ୍ତରେ
"ପୀଡ଼ିତ ପତିର ସେବା ବିଧି ସବୁଠାରେ ।"
ଏମନ୍ତ ବିଧାନ ଶୁଣି ରାଣୀ ପୁଲକିତ
ମନର ଅଶାନ୍ତି କ୍ଷଣେ ହେଲା ଦୂରୀଭୂତ ।
ଶ୍ରୀପ୍ରଭୁଙ୍କ ପଦ୍ମପାଦେ ତାଙ୍କ ଶ୍ରଦ୍ଧା ଭକ୍ତି
ସେହିଦିନୁ ଚତୁର୍ଗୁଣ ହେଲା ବୃଦ୍ଧିପ୍ରାପ୍ତି ।
ଆଉ ତାଙ୍କୁ ସୁନିପୁଣ କାରିଗର ଜାଣି
ପାଦ ଯୋଖିବାର ଭାର ତାଙ୍କୁ ଦେଲେ ରାଣୀ ।
ସାନନ୍ଦେ ସେ କାର୍ଯ୍ୟଭାର କରିଣ ସ୍ୱୀକାର
ଭଗ୍ନପାଦ ଯୋଖିଦେଲେ ମୁହୂର୍ତ୍ତ ମଧ୍ୟର ।
କେଉଁଠାରେ ଭାଙ୍ଗିଥିଲା ବିଗ୍ରହ ଚରଣ
ଜଣା ନ ପଡ଼ିଲା ତାହା କିଞ୍ଚିତ ପ୍ରମାଣ ।
ଆଶ୍ଚର୍ଯ୍ୟ ମଣିଲେ ସର୍ବେ ମନର ମଧ୍ୟରେ
ନିଶ୍ଚୟ ଏ ବିଶ୍ୱକର୍ମ୍ମା ମାନବ ଆକାରେ ।
ନୋହିଲେ ଏ କର୍ମ୍ମ କେଉଁ ନରେ ନ ସମ୍ଭବେ
ଏମନ୍ତ ଅଦ୍ଭୁତ କାର୍ଯ୍ୟ ଦେଖିନାହୁଁ କେବେ ।
ଯାଙ୍କ ଇଙ୍ଗିତେ ହୁଅଇ ଏ ବିଶ୍ୱ ସୃଜନ
ତାଙ୍କଠାରେ ଏ କରମ ଅତୀବ ନଗଣ୍ୟ ।
ଧରିଛନ୍ତି ବୋଲି ଏବେ ନର କଳେବର
ନର ଭଳି ଅଟେ ସବୁ ଆଚାର ବେଭାର ।
ହର୍ତ୍ତାକର୍ତ୍ତା ବିଶ୍ୱଧାତା ପ୍ରଭୁ ଚିନ୍ତାମଣି
ଧରି ଭାର ଗୁରୁ ହେଲା ମନେ ମନେ ଗୁଣି
ଦୀନ ଦରିଦ୍ର କୁଟୀରେ ହେଲେ ଆବିର୍ଭୂତ
ବାହ୍ୟ ଆଡ଼ମ୍ବର ବେଶଭୂଷା ବିବର୍ଜ୍ଜିତ ।
ଦୀନ ଦୁଃଖୀ ନିରକ୍ଷର ପରାନ୍ନ ଭୋଜନ
ନଗଣ୍ୟ ମାନବ ପ୍ରାପ୍ୟ ବାହ୍ୟ ଦରଶନ ।
ନରଜ୍ଞାନ ତାଙ୍କଠାରେ କରିଣ ଆରୋପ
ଅତ୍ୟାଶ୍ଚର୍ଯ୍ୟ ଦେଖି ସର୍ବେ ଏ କାର୍ଯ୍ୟକଳାପ ।
ଅନ୍ତରେ ଅସୀମ ଶକ୍ତି ରହଇ ନିହିତ
ବାହ୍ୟ ଦର୍ଶନରେ ତାହା ନୁହେ ଅନୁମିତ ।
ହରି ଲୁବ୍ଧ ଚକ୍ଷୁଷ୍ମାନ ଅଟନ୍ତି ଯେ ବ୍ୟକ୍ତି
ଦର୍ଶନ ମାତ୍ରକେ ସେହି ଅକ୍ଳେଶେ ଚିହ୍ନନ୍ତି ।
ପ୍ରଭୁଙ୍କ ଅଦ୍ଭୁତ ଶକ୍ତି ଦେଖି ରାସମଣି
ଭକ୍ତିରେ କହିଲେ ତାଙ୍କୁ ସବିନୟେ ବାଣୀ ।

ବିଷ୍ଣୁଙ୍କ ସେବା ନିମନ୍ତେ ତୁମ୍ଭେ ହିଁ ସୁଯୋଗ୍ୟ
ସେ କାର୍ଯ୍ୟେ ସ୍ୱୀକୃତ ହେଲେ ମଣିବି ସୌଭାଗ୍ୟ ।
ଭକତବତ୍ସଳ ହରି ଭକ୍ତ ପାଶେ ବନ୍ଧା
ତହିଁରେ ସମ୍ମତ ଦେଲେ ନ କରିଣ ଦ୍ୱିଧା ।
କାଳୀଙ୍କ ପୂଜକ ଜ୍ୟେଷ୍ଠ ଶ୍ରୀରାମକୁମାର
ବଡ଼ ଭଟ୍ଟାଚାର୍ଯ୍ୟ ଆଖ୍ୟା ହୋଇଲା ତାଙ୍କର ।
ସାନ ଭଟ୍ଟାଚାର୍ଯ୍ୟ ନାମେ ପ୍ରଭୁ ପରିଚିତ
ବେଶକାରୀ ରୂପେ ସେହୁ ହୋଇଲେ ନିଯୁକ୍ତ ।
ଏମନ୍ତେ ଚଳିଲା କାର୍ଯ୍ୟ କେତେକ ସମୟ
ଦେବ ପାଦେ ରାମକୃଷ୍ଣ ପ୍ରଭୁ ଦୟାମୟ ।
ଶ୍ରୀରାଧାକାନ୍ତ ଅର୍ଚ୍ଚନା ସମାପନ କରି
ତନମନେ ଶିବଙ୍କୁ ଯେ ପୂଜନ୍ତି ଶ୍ରୀହରି ।
ଇତି ମଧ୍ୟେ ହେଲା ତାଙ୍କ ଅଭିଳାଷ ମନେ
ସ୍ୱହସ୍ତେ ଗଢ଼ିଣ ଶିବ ପୂଜିବେ ଆପଣେ ।
ବାଲ୍ୟକାଳୁ ଦେବରାଜ ପ୍ରଭୁ ଗୁଣଧାମ
ମୂର୍ତ୍ତି ଗଢ଼ିବା କାର୍ଯ୍ୟରେ ଥିଲେ ପାରଙ୍ଗମ ।
ସ୍ୱହସ୍ତେ ମୃତ୍ତିକା ଆଣି ଜାହ୍ନବୀ ତଟରୁ
ଗଢ଼ିଲେ ଦିବ୍ୟ ମୂରତି ସୁଠାମ ସୁନ୍ଦରୁ ।
ତ୍ରିଶୂଳ ଡମ୍ବରୁ ନାଗ ଯାହା ଯହିଁ ଲୋଡ଼ା
ଅତି ପରିପାଟୀ ସହ ତାହା ହେଲା ଗଢ଼ା ।
ତ୍ରିଲୋକ-ବିଜୟୀ ବୃଷ ବାହନେ ଆସୀନ
ଜଟାଜୂଟ ଶଶୀକଳା ଶିରେ ସୁଶୋଭନ ।
ରୁଦ୍ରାକ୍ଷର ମାଳା କଣ୍ଠେ ଦିଶେ ମନୋହର
ଯାହାର ସୌନ୍ଦର୍ଯ୍ୟ ଭବେ ନାହିଁ ପଟାନ୍ତର ।
ବେଶ ବିନ୍ୟାସର ଦେବା କି ଅବା ତୁଳନା
ନିଜ ହସ୍ତେ ଧାତା ଯାକୁ କରିଲେ ରଚନା ।
ଜଡ଼ କି ଜୀବନ୍ତ ମୂର୍ତ୍ତି ନ ହୁଅଇ କହି
କୈଳାସୁ ଆସିଲେ ଯେହ୍ନେ ଶିବ ଦୟା ବହି ।
ଯେ ଦେଖଇ ତାର ମନ ହୁଏ ଆକର୍ଷିତ
କେ ଜାଣଇ କି ମୋହିନୀ ତହିଁରେ ନିହିତ ।
ଭକ୍ତ ଚିତ୍ତ-ହର ପ୍ରଭୁ କରୁଣା ସାଗର
ତାଙ୍କର କୌଶଳ ଅବା କାହାକୁ ଗୋଚର ।
ଏ ଜଡ଼ ବୁଦ୍ଧିରେ ତାହା ନୋହିବ କଳନା
ହୃଦୟ ଦର୍ପଣେ ଆରେ ମନ ! ଥରେ ଅନା ।
ମୂର୍ତ୍ତିଟିକୁ ଗଢ଼ିସାରି ପୂଜା କଲାବେଳେ
ମଥୁର ମୋହନ ଆସି ତହିଁ ପ୍ରବେଶିଲେ ।
ମୂର୍ତ୍ତିର ଦର୍ଶନ ମାତ୍ରେ ବିମୋହିତ ମନ
ଅଲକ୍ଷିତଭାବେ ପ୍ରାଣ ତହିଁ ଆକର୍ଷଣ ।
ହୃଦୁକୁ ପୁଚ୍ଛିଲେ "କାହୁଁ ଏ ମୂର୍ତ୍ତି ଅଇଲା
କିଏ ସେ ଏମନ୍ତେ ତାକୁ ସୁଠାମେ ଗଢ଼ିଲା ?"
ବିନମ୍ରେ ଉତ୍ତର ଦେଲେ ହୃଦୟ ଠାକୁର
"ନିଜ ହସ୍ତେ ଗଢ଼ିଛନ୍ତି ମାତୁଳ ମୋହର ।
କାରିଗରି ଆଦି କଳା ଚିତ୍ରାଙ୍କନ କର୍ମ
ସବୁ ବିଷୟେ ଅଟନ୍ତି ସେହୁ ପାରଙ୍ଗମ ।
ହୃଦୁଙ୍କ ବଚନ ଶୁଣି ମଥୁର ମୋହନ
ଆଶ୍ଚର୍ଯ୍ୟ ମଣିଲେ ଦେଖି ଚାରୁକାର୍ଯ୍ୟମାନ ।
ମୂର୍ତ୍ତିଟିକୁ ନେବାପାଇଁ ବାଞ୍ଛା କରି ମନେ
ଜଣାଇଲେ ହୃଦୟଙ୍କୁ ବିନମ୍ର ବଚନେ ।
"ଅର୍ଚ୍ଚନାନ୍ତେ ଏ ମୂର୍ତ୍ତିକୁ ଜଳେ ନ ଫିଙ୍ଗିଣ
ବାଧିତ କରିବ ମୋତେ କଲେକ ପ୍ରଦାନ ।"
ହୃଦୟ ତହିଁରେ ରାଜି ଦ୍ୱିରୁକ୍ତି ନ କରି
ପୂଜା ଶେଷେ ତାଙ୍କ ପାଶେ ଗଲେ ମୂର୍ତ୍ତି ଧରି ।
ସେ ମୂର୍ତ୍ତି ଘେନିଣ ତହୁଁ ମଥୁର ମୋହନ
ବହନେ ଚଳିଲେ ତାଙ୍କ ଶାଶୁ ସନ୍ନିଧାନ ।
ମୂର୍ତ୍ତିର ସୌନ୍ଦର୍ଯ୍ୟ ଦେଖି ରାଣୀ ପୁଲକିତା
ପୁଚ୍ଛିଲେ "ମୂର୍ତ୍ତିର କିଏ ଅଟଇ ନିର୍ମାତା ।"
ଉତ୍ତରେ କହିଲେ ଧୀରେ ଜାମାତା ମଥୁର
"ବଡ଼ ଭଟ୍ଟାଚାର୍ଯ୍ୟଙ୍କର ଭ୍ରାତା କାରିଗର ।
ନବୀନ ବୟସ ବେଶ ବ୍ରହ୍ମଚର୍ଯ୍ୟ ପ୍ରାପ୍ତ
ଦରଶନେ ପ୍ରାଣ ମନ ମୁଗ୍ଧ ଅତିଶୟ ।
କାଳୀଙ୍କ ପୂଜକ ପଦେ ତାଙ୍କୁ ନିଯୋଜିଲେ
ଜାଗ୍ରତା ହୋଇବେ ଦେବୀ ଅତି ଅଳ୍ପକାଳେ ।
ମୋ ଚିତ୍ତେ ହୁଅଇ ଦୃଢ଼ ବିଶ୍ୱାସ ଏମନ୍ତ
"ତାଙ୍କୁ ତହିଁ ନିଯୋଜିବ ଦେଲେ ଅନୁମତ ।"
ଆନନ୍ଦେ ସମ୍ମତ ଦେଲେ ଭକ୍ତିମତୀ ରାଣୀ
ମଥୁର ଅଇଲେ ପୁନଃ ଶୁଭବାର୍ତ୍ତା ଘେନି ।
ଉପସ୍ଥିତ ହୋଇ ତ୍ୱରା ପ୍ରଭୁ ସନ୍ନିହିତେ
ଅନୁରୋଧ କଲେ ତାଙ୍କୁ ଅତ୍ୟନ୍ତ ବିନୀତେ ।
'ଶ୍ୟାମାଙ୍କ ପୂଜକ ପଦ କଲେକ ସ୍ୱୀକାର
ପରମ ସୌଭାଗ୍ୟ ଆମ୍ଭେ ମଣିବୁ ତହିଁର ।'
ଉତ୍ତରେ କହିଲେ ପ୍ରଭୁ ଜଗତ ଗୋସାଇଁ
"ତନ୍ତ୍ରମନ୍ତ୍ର ଆଦି ମୁହିଁ ଭଲ ନ ଜାଣଇ ।

ଶାସ୍ତ୍ର ବିଧି ମତେ ପୂଜା କରିବା ନିମିତ୍ତେ
ଯୋଗ୍ୟପାତ୍ର ନୁହଇ ମୁଁ ଜାଣ ଦୃଢ଼ଚିତ୍ତେ ।"
ପ୍ରତ୍ୟୁତ୍ତରେ ବୋଇଲେକ ମଥୁର ବିଶ୍ୱାସ
"ଦେବ ଦେବୀ ପାଦେ ତବ ଭକତି ଯାଦୃଶ ।
ସେ ଭକତି ବଳେ ଦେବୀ ହୋଇବେ ପ୍ରସନ୍ନ
ଶାସ୍ତ୍ରର ବିଧାନେ ଆଉ କେଉଁ ପ୍ରୟୋଜନ ।
ବୟୋବୃଦ୍ଧି ହେତୁ ଜ୍ୟେଷ୍ଠ ଶ୍ରୀରାମକୁମାର
ଅପାରଗ ଘେନିବାକୁ ଶ୍ୟାମା ପୂଜା ଭାର ।
ମୋର ଏ ପ୍ରସ୍ତାବେ ତୁମ୍ଭେ ହୋଇଲେ ସମ୍ମତ
ତୁମ୍ଭଠି ସେ ଭାର କେବେ ହୋଇବ ଅର୍ପିତ ।"
ଭକ୍ତ ଅନୁରୋଧ ପ୍ରଭୁ ଏଡ଼ି ନ ପାରଣ
କାଳୀ ପୂଜକ ହେବାକୁ ରାଜି ହେଲେ ପୁଣ ।
ଦେବୀ ପୂଜା ଭାର ପ୍ରଭୁ ଘେନିଲେ ଏମନ୍ତ
ବିଷ୍ଣୁଙ୍କ ପୂଜକ ରୂପେ ଅଗ୍ରଜ ନିଯୁକ୍ତ ।
ପୂଜକେ ନିଯୁକ୍ତ ହୋଇ ପ୍ରଭୁ ବିଶ୍ୱପାଇଁ
ଯେ ଭାବେ ପୂଜିଲେ ତାର ପଟାନ୍ତର ନାହିଁ ।
ବିଧିମତେ ଆରାଧନା ସର୍ବାଙ୍ଗସୁନ୍ଦର
ବିତିଯାଏ ପୂଜାକାର୍ଯ୍ୟେ ପ୍ରହରୁ ପ୍ରହର ।
ସମ୍ୟକ ଭାବରେ ମନ ତହିଁ ନିମଗନ
ବାହ୍ୟଜ୍ଞାନ ଏକାବେଳେ ହୋଇଯାଏ ଶୂନ୍ୟ ।
ବାହାରର କଥା କିମ୍ବା ଲୋକ ଆତଯାତ
ଲକ୍ଷ୍ୟ ନାହିଁ ତହିଁ ପ୍ରତି ତନ୍ମୟ ଏମନ୍ତ ।
ମଧୁଲୋଭୀ ଭୃଙ୍ଗ ଯେସନ୍ତେ କୁସୁମେ ବସିଲେ
ସବୁ ବିସ୍ମୃତ ହୁଅଇ ମଧୁପାନ ବେଳେ ।
ପୂଜାର ବିଧିବିଧାନ ଦେଖି ବିପ୍ରଗଣ
ମଣିଲେ ବ୍ରହ୍ମଣ୍ୟ ଦେବ ଏହି ମହାଜନ ।
କରୁଣା କାରଣ ନରକଳେବର ନେଇ
ଦେବୀଙ୍କୁ ପୂଜନ୍ତି ଭବେ ଜୀବ ଶିକ୍ଷା ପାଇଁ ।
ଏବେ ଘୋର କଳିକାଳ ଯେତେ ଜୀବଗଣ
ଭଜନ୍ତି ପୂଜନ୍ତି ସର୍ବେ କାମିନୀକାଞ୍ଚନ ।
ଦେବଦେବୀ ସେବାପୂଜା ନିତ୍ୟ ଆରାଧନା
ଜପତପ କିମ୍ବା କର୍ମ ସାଧନା ଭଜନା ।
ଏ ମଧ୍ୟରୁ ଏକାବେଳେ ଗନ୍ଧ ଲେପ ପାଇ
ଯାହା ଅଛି, ତା କେବଳ ଲୋକଦେଖା ପାଇଁ ।
ବୁଝନ୍ତୁ ବା ନ ବୁଝନ୍ତୁ ମର୍ମ ଯା ମନ୍ତ୍ରର
ଅଟେ ମାତ୍ର ଉଚ୍ଚାରଣ କୌଣସି ପ୍ରକାର,

ମାନସେ ଭାଳନ୍ତି ତାଙ୍କ କାର୍ଯ୍ୟ ହେଲା ଶେଷ
ଭାବାବେଗ ପାଇଁ କେବେ ନ ଥାଏ ପ୍ରୟାସ ।
ଗଦାଧରଙ୍କର ପୂଜା ନୁହେ ସେ ପ୍ରକାର
ଯଥାଯଥ ଭାବାବେଗ ଚଳେ ନିରନ୍ତର ।
ଆସନର ଚତୁଃପାର୍ଶ୍ୱେ ଜଳଧାର ଦେଇ
'ରଂ ଇତି ଧାରୟ୍ୟା' ଆଦି ବାକ୍ୟମାନ କହି ।
ଆରମ୍ଭନ୍ତି ପୂଜା ଯେବେ ପ୍ରଭୁ ନାରାୟଣ
ସତ୍ୟ ସତ୍ୟ ହୁଏ ତାଙ୍କ ଦେବତା ଦର୍ଶନ ।
ବହ୍ନିରାଶି ଚତୁର୍ଦ୍ଦିଗେ ଜିହ୍ୱାକୁ ବିସ୍ତାରି
ବିରଚେ ଅଲଙ୍ଘନୀୟ ପ୍ରାଚୀର ଯେପରି ।
ଏ ପ୍ରକାରେ ବହ୍ନିଶିଖା ତାଙ୍କୁ ଘେରି ରହି
ସର୍ବବିଧ ବାଧାବିଘ୍ନ ରକ୍ଷା କରୁଥାଇ ।
ଅଙ୍ଗନ୍ୟାସ କରନ୍ୟାସ ପୂଜାଙ୍ଗ ନିଚୟ
ଆଚରନ୍ତି ଯେତେବେଳେ ପ୍ରଭୁ ଦୟାମୟ ।
ବର୍ଣ୍ଣେ ବର୍ଣ୍ଣେ ମନ୍ତ୍ରଯାକ ଉଜ୍ଜ୍ୱଳ ଭାବରେ
ସନ୍ନିବେଶିତ ରହଇ ଯେସନ୍ତେ ଶ୍ରୀଅଙ୍ଗରେ ।
ଏମନ୍ତେ ଦେଖନ୍ତି ସଦା ପ୍ରଭୁ ଗଦାଧର
ଶ୍ରୀମୁଖ ନିଃସୃତ ବାଣୀ ଏହା ତାହାଙ୍କର ।
ତଦନ୍ତେ ଯେକାଳେ ଦେବ ଧ୍ୟାନେ ନିମଜ୍ଜନ୍ତି
ସର୍ପାକାର ଧରି ତାଙ୍କ କୁଣ୍ଡଳିନୀ ଶକ୍ତି,
ସୁଷୁମ୍ନା ନାଡ଼ୀରେ ଉଠି ଊର୍ଦ୍ଧ୍ୱେ ଧୀରେ ଧୀରେ
ପ୍ରବେଶିବା ପାଇଁ ଧାଏଁ ସହସ୍ରା ପଦ୍ମରେ ।
ସେ କାଳେ ତାଙ୍କର ସ୍ପଷ୍ଟ ହୁଏ ଅନୁଭୂତ
କାୟାର ଯେ ଅଂଶ ଦେଇ ଗମେ ସେ ଶକତି ।
ସେହି ସେହି ଅଂଶମାନ ସମ୍ପୂର୍ଣ୍ଣ ଭାବରେ
ନିସ୍ପନ୍ଦ ନିଶ୍ଚଳ ହୁଏ ମୃତ ଯେ ପ୍ରକାରେ ।
ପୂଜାବେଳେ କେହି ଯଦି ତାଙ୍କ ପାଶେ ଆସି
ଆହ୍ୱାନ କରଇ ତାଙ୍କୁ ମଧୁରେ ସମ୍ଭାଷି ।
ଶ୍ରବଣେ ସେ କଥାମାନ ନ କରେ ପ୍ରବେଶ
ପୂଜାରେ ଶରୀର ମନ ସମ୍ୟକ ନିବେଶ ।
ଏମନ୍ତ ଅଟଇ ଯାଙ୍କ ଦେବପୂଜା ରୀତି
ଦେବତା ଜାଗ୍ରତ ହେବେ କିମାଶ୍ଚର୍ଯ୍ୟ ଏଥି ।
କନିଷ୍ଠର କାର୍ଯ୍ୟାବଳୀ ଜ୍ୟେଷ୍ଠ ନିରେଖିଣ
ଦୂରୀଭୂତ ହେଲା ତାଙ୍କ ପୂର୍ବ ଚିନ୍ତାମାନ ।
କନିଷ୍ଠ ହୋଇବେ ଏବେ ଉପାର୍ଜ୍ଜନ କ୍ଷମ
ଏମନ୍ତ ଭାଳିଣ ଚିତ୍ତେ ଉପୁଜିଲା ପ୍ରେମ ।

ଦେବଦେବୀ ପୂଜା ବିଧି ଚଣ୍ଡୀପାଠ ଆଦି
କନିଷ୍ଠ ଶିଖିଲେ ଭଲେ ହେବେ ଦ୍ୱିଜୋତ୍ତମ ।
ନିରନ୍ତେ ବସାଇ ତାଙ୍କୁ ନିଜ ସନ୍ନିଧାନେ
ସେ ସମସ୍ତ ଶିକ୍ଷା ଦେଲେ ଜ୍ୟେଷ୍ଠ ସଯତନେ ।

ଏସନେ ପୂଜକ କାର୍ଯ୍ୟେ ଦକ୍ଷତା ଅର୍ଜିଣି
ହୃଦୟେ ବହିଲା ଅନ୍ୟ ଭାବର ତୋଫାନ ।
ଦୀକ୍ଷା ବିନା ଦେବୀ ପୂଜା ପ୍ରଶସ୍ତ ନୁହଇ
ସ୍ଥିର କଲେ ଶକ୍ତି ମନ୍ତ୍ରେ ଦୀକ୍ଷା ନେବା ପାଇଁ ।

କେଣାରାମ ଭଟ୍ଟାଚାର୍ଯ୍ୟ ନାମକ ବ୍ରାହ୍ମଣ
ଶକତି ସାଧକ ସେହୁ ବୟସେ ପ୍ରବୀଣ ।
କଲିକତା ସହରରେ ଅଟଇ ନିବାସ
ତାଙ୍କଠୁଁ ଘେନିଲେ ମନ୍ତ୍ର ପ୍ରଭୁ ପରମେଶ ।

ମନ୍ତ୍ର ଦୀକ୍ଷା ଦେଲେ ଯେବେ ଦ୍ୱିଜ କେଣାରାମ
କ୍ଷଣ ମଧ୍ୟେ ଭାବାବିଷ୍ଟ ପ୍ରଭୁ ଗୁଣଧାମ ।
ତା ଦେଖିଣ ଗୁରୁଦେବ ଆନନ୍ଦେ ବିହ୍ୱଳ
ଏମନ୍ତ ଭକତି ଭାବ ମର୍ତ୍ତ୍ୟରେ ବିରଳ ।

ସର୍ବାନ୍ତଃକରଣେ ଗୁରୁ କଲେ ଆଶୀର୍ବାଦ
ଅଚିରେ ପ୍ରାପତ ହୁଅ ତୁମ୍ଭେ ଇଷ୍ଟପଦ ।
ବିଷ୍ଣୁଙ୍କ ପୂଜକ ଥାଇ ଜ୍ୟେଷ୍ଠ କିଛି ଦିନ
ଛୁଟି ନେଇ କାର୍ଯ୍ୟାନ୍ତରେ କଲେକ ଗମନ ।

ଅଳ୍ପଦିନ ପରେ ସେହୁ ତେଜିଲେ ଶରୀର
ହୃଦୟ ବାହାଲ ହେଲେ କାର୍ଯ୍ୟରେ ତାଙ୍କର ।
ଦେଖ କି କୌଶଳ କରି ପ୍ରଭୁ ଆଦିନାଥ
ଶ୍ୟାମାମୂର୍ତ୍ତି ଏ ସ୍ଥାନରେ କଲେ ପ୍ରତିଷ୍ଠିତ ।

ନର କଳେବର ଧରି ଆପଣେ ଶ୍ରୀହରି
ଆପଣାକୁ ନିୟୋଜିଲେ ତାଙ୍କ ସେବାକାରୀ ।
ଯେଉଁ ସ୍ଥାନେ ବିରାଜନ୍ତି ହରି ଯେତେବେଳେ
ଦିବ୍ୟ ଭାବେ ପରିପୂର୍ଣ୍ଣ ତାହା ତେତେବେଳେ ।

ସେଠାରେ ପ୍ରବେଶ ମାତ୍ରେ ଭକ୍ତଙ୍କ ହୃଦୟେ
ଅନିର୍ବଚନୀୟ ଶାନ୍ତି-ସ୍ରୋତ ବହିଯାଏ ।
ସଂସାରର ଶୋକ ଦୁଃଖ ହୋଇ ଦୂରୀଭୂତ
ହୃଦୟରେ ଦିବ୍ୟଭାବ ହୁଅଇ ଜାଗ୍ରତ ।

ଆପଣାର ସତ୍ତା ଆଦେ ବିସ୍ମୃତ ହୋଇଣ
ନବ ଭାବେ ମନ ପ୍ରାଣ କରଇ ଗଠନ ।

ଏମନ୍ତେ ଅଜ୍ଞାତ ଶକ୍ତି ତହିଁ କ୍ରୀଡ଼ା କରି
ଆଗନ୍ତୁକ ଜନ ମନେ ବାନ୍ଧିଦିଏ ଡୋରି ।
ସ୍ଥାନ ତେଜି ଯିବା ପାଇଁ ଚିତ୍ତ ନ ବଳଇ
କିଏ ଯେହ୍ନେ ଅଜ୍ଞାତରେ ଆକର୍ଷି ରଖଇ ।

ଅତ୍ୟନ୍ତ ନିଗୂଢ଼ ଅଟେ ପ୍ରଭୁଙ୍କ ଚରିତ
ମୋହାନ୍ଧ ମାନବ ତାହା ବୁଝିବେ କେମନ୍ତ ।
ବେଦାଦି ଯାହାଙ୍କ ଅନ୍ତ ନ ପାନ୍ତି ଖୋଜିଣ
ସ୍ଥୂଳ ମନୁଷ୍ୟ କି ଅବା କରିବ କଳନ ।

ତାଙ୍କ କୃପାବଳେ ମୋହ ହୋଇଲେକ ଦୂର
ତେବେ ସେ ଲୀଳା ଦର୍ଶନେ କ୍ଷମ ହୋନ୍ତି ନର ।
ଜାହ୍ନବୀ ତୀରରେ ଯେତେ ଅଛି ଦେବାଳୟ
ଏ ମନ୍ଦିର ସଙ୍ଗେ କେହି ନୁହେ ତୁଳନୀୟ ।

କାହୁଁ କାହୁଁ ସାଧୁ ଆସି ହୁଅନ୍ତି ପ୍ରବେଶ
ମୂର୍ତ୍ତି ଦେଖି ହରିନିଏ ପଥଶ୍ରମ କ୍ଲେଶ ।
ଦର୍ଶନେ ଧାଇଁଲେ ତେଣୁ ଲୋକ ଅଗଣନ
ସକଳ ଶ୍ରେଣୀର ବ୍ୟକ୍ତି ଧନୀମାନୀ ଦୀନ ।

ତାଙ୍କ ମଧ୍ୟେ ଯାହାଙ୍କର ଅବସ୍ଥା ସ୍ୱଚ୍ଛଳ
ଦେବଦେବୀଙ୍କଠି ଭେଟି ଦିଅନ୍ତି ବହୁଳ ।
ମନ୍ଦିରର ପ୍ରଚଳିତ ପ୍ରଥା ଅନୁସାରେ
ପୂଜକର ପ୍ରାପ୍ୟ ତାହା ସମ୍ପୂର୍ଣ୍ଣ ଭାବରେ ।

ପ୍ରଣାମି ଟଙ୍କାକୁ ପ୍ରଭୁ ନ କରି ସ୍ପରଶ
ଦୀନ ଜନେ ଦେବା ପାଇଁ ଦିଅନ୍ତି ଆଦେଶ ।
ଆଜୀବନ ଅନାସକ୍ତ ତ୍ୟାଗୀ ଯୋଗୀବର
ରଜତ କାଞ୍ଚନ ସ୍ପର୍ଶେ ଅଶ୍ରଦ୍ଧା ତାଙ୍କର ।

ଭକତବତ୍ସଳ ପ୍ରଭୁ ଭକ୍ତ ତାଙ୍କ ପ୍ରାଣ
କେହି ପ୍ରିୟ ନୁହନ୍ତି ତ ଭକତ ସମାନ ।
ଭକ୍ତିମତୀ ରାଣୀଙ୍କର ହୃଦୟେ ବିଷାଦ
ଇଚ୍ଛାସତ୍ତ୍ୱେ ନ ସେବନ୍ତି ଦେବୀଙ୍କ ପ୍ରସାଦ ।

ସେ ବିଷାଦ ଦୂରୀଭୂତ କରିବା ମାନସେ
ପୁରୀ ମଧ୍ୟେ ବିରାଜିଲେ ପ୍ରଭୁ ପରମେଶେ ।
ଆପଣେ ପ୍ରସାଦ ପାଇ କରୁଣା ନିଧାନ
ସାଧୁ ସନ୍ଥ ଅଭ୍ୟାଗତେ ତାହା କଲେ ଦାନ ।
ନିଷ୍ଠାବନ୍ତ ଦ୍ୱିଜେ ଦ୍ୱିଧା ନ କରନ୍ତି ଏବେ
ପ୍ରସାଦ ସେବନ୍ତି ତୋଷେ ଆସିଣ ସରବେ ।

ରାଣୀଙ୍କର ମନୋରଥ ପୂରିଲା ଏମନ୍ତେ
ନିରତେ ଭାଷିଲେ ତେଣୁ ହର୍ଷୋତ୍‌ଫୁଲ୍ଲ ଚିତ୍ତେ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଭକ୍ତିସହେ ପାନ କଲେ ହୋଇବ ଅମର ।

ବୋଲ ଥାଉଁ ହୁର ମନ ! ଅଭୟ ଚରଣ
ସଫଳ ହୋଇବ ତବ ମାନବ ଜୀବନ ।

---

# ଚତୁର୍ଥ ଅଧ୍ୟାୟ

## ବ୍ୟାକୁଳତା ଓ ଦେବୀଙ୍କ ଦର୍ଶନଲାଭ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ବିଶ୍ୱଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପ୍ରଭୁ ନରହରି
ଆଦି ବ୍ରହ୍ମାଣ୍ଡ ଠାକୁର ତ୍ରିଭୁ ଦଇତାରି ।
ଶ୍ୟାମାଙ୍କ ପୂଜକ ପଦେ ହୋଇଣ ନିଯୁକ୍ତ
କେମନ୍ତେ ପୂଜିଲେ ତାଙ୍କୁ ଶୁଣ ସେ ଚରିତ ।
ସ୍ୱହସ୍ତେ କରନ୍ତି ବେଶ ନାନା ପରକାର
ଦେଖିଲେହିଁ ବିମୋହିତ ଦର୍ଶକ-ଅନ୍ତର ।
ନିତ୍ୟ ନିତ୍ୟ ନବବେଶ ନବ-ଅନୁରାଗେ
ତାହାର ଉପମା ଅବା ଦେବ କାହା ସଙ୍ଗେ ।
ପାଷାଣେ ନିର୍ମିତ ସେହି ଶ୍ୟାମାଙ୍କ ମୂରତି
ପାଲଟିଗଲେ ଚିନ୍ମୟ ପ୍ରତିମା ଯେମତି
ଥରେ ମାତ୍ର ଯେ ତାହାଙ୍କୁ କଲାକ ଦର୍ଶନ ।
ପାଷାଣ୍ଡ ହେଲେହେଁ ଚିତ୍ତେ ଭକ୍ତି ଉଦ୍ଦୀପନ ।
କେ ଜାଣେ କି ଶକ୍ତି ତହିଁ ହୋଇଲା ନିହିତ
ଦର୍ଶନ କଲେକ ପ୍ରାଣ ମନ ବିଗଳିତ ।
ପୂଜା କରୁ କରୁ ତାଙ୍କୁ ନିତି ଏକମନେ
ଭାବ କ୍ରମେ ଗାଢ଼ତର ହେଲା ଦିନୁଁ ଦିନେ
ଦେବୀଙ୍କୁ ଭକତି ସହ କଲେକ ଅର୍ଚ୍ଚନ
ପ୍ରସନ୍ନା ହୁଅନ୍ତି ଦେବୀ ଶାସ୍ତ୍ରର ବଚନ ।
ସତ୍ୟ କି ଆରାଧ୍ୟ ଦେବୀ ପାଶେ ଉଭା ହୋଇ
ଦର୍ଶନ ଦିଅନ୍ତି ଭକ୍ତଜନେ ଦୟା ବହି ।
ଏମନ୍ତ ଚିନ୍ତାରେ ଚିତ୍ତ ନିରତ ବ୍ୟାକୁଳ
ଭାବ ଭାବ ନ ପାଇଲେ ତାର ଅଳକୂଳ ।
ପୂଜାନ୍ତେ ମନ୍ଦିର ମଧ୍ୟେ ଏକାକୀ ବସିଣ
ଦେବୀଙ୍କ ଧ୍ୟାନରେ ପ୍ରଭୁ ରହନ୍ତି ମଗନ ।
କେବେ ଅବା ବସି ତହିଁ ପ୍ରାଣର ଉଚ୍ଛ୍ୱାସେ
ଗାଆନ୍ତି ମଧୁର ଗୀତ ବୁଡ଼ି ଭକ୍ତିରସେ ।
କମଳାକାନ୍ତ ଅଥବା ଶ୍ରୀରାମ ପ୍ରସାଦ
ଏ ଦୁଇ ଭକ୍ତଙ୍କ ଗୀତେ ଅତୀବ ଆହ୍ଲାଦ ।
ଗୀତ ଗାଇ ଗାଇ ପ୍ରାଣ ଏମନ୍ତ ବିହ୍ୱଳ
କ୍ଷଣେ ଆତ୍ମହରା ହୋଇ ପଡନ୍ତି ଭୂତଳ ।
ନିଶୀଥେ ମନ୍ଦିର ଦ୍ୱାର ରୁଦ୍ଧ ଯେତେବେଳେ
ଗୋପନେ ଗମନ୍ତି ପ୍ରଭୁ ପଞ୍ଚବଟୀ ମୂଳେ ।
ସ୍ୱହସ୍ତେ ରଚିତ ତହିଁ ତୁଳସୀ କାନନ
ତହିଁ ମଧ୍ୟେ ବସି ନିତ୍ୟ ଧ୍ୟାନେ ନିମଗନ ।
ସେ ତୁଳସୀବନ କଥା ଅପୂର୍ବ ଭାରତୀ
ସାଧୁଜନେ ଶୁଣ ଏବେ ତାହାର ବିବୃତି ।
ଆଦ୍ୟରୁ ସେ ସ୍ଥାନ ଥିଲା ଅତ୍ୟନ୍ତ ନିର୍ଜ୍ଜନ
ଦିନବେଳେ ଯିବା ପାଇଁ ସଶଙ୍କିତ ମନ ।
ନିରଜନ କରିବାକୁ ତାହାକୁ ଅଧିକ
ବାଡ଼ ବାନ୍ଧିବାକୁ ମନ କଲେ ପଦ୍ମମୁଖ ।
ବାଡ଼ ବାନ୍ଧିବା ସାମଗ୍ରୀ କିଛି ନାହିଁ ପାଶେ
ଚିନ୍ତାକୁଳ ସେଥିପାଇଁ ପ୍ରଭୁ ପରମେଶେ ।
ଘଟିଲା ଏ କାଳେ ଏକ ଅଦ୍ଭୁତ ବ୍ୟାପାର
ଊର୍ଦ୍ଧ୍ୱ ଊର୍ଦ୍ଧ୍ୱ ଜାହ୍ନବୀରେ ଆସିଲା ଜୁଆର ।
ପ୍ରସାରି ସହସ୍ର କର ତାର ଊର୍ମ୍ମିମାଳା
ଶ୍ରୀଚରଣ ସ୍ପର୍ଶ ପାଇଁ ଧାବମାନ ହେଲା ।
ରିକ୍ତହସ୍ତ ନୁହେ ପୁଣି ସଙ୍ଗେ ଉପହାର
ପ୍ରଭୁଙ୍କ ଚରିତ କଥା ଅମୃତ ଭଣ୍ଡାର ।
ବାଡ଼ ବାନ୍ଧିବା ନିମନ୍ତେ ଯାହା ଆବଶ୍ୟକ
ଭାସି ଆସିଲା ସେ ସବୁ ଜଳେ ଅଚାନକ ।

ଏ ସମୟରେ ପ୍ରତିକୂଳ ବାୟୁ ପ୍ରବାହରେ
ଲାଗିଲା ଗୋଟିଏ କାଠ ଘାଟ ସମୀପରେ ।
ମନ୍ଦିରର ମାଳୀ ତହିଁ ସହସା ପ୍ରବେଶ
ତାକୁ ଦେଖି ଆଦେଶିଲେ ପ୍ରଭୁ ଜଗଦୀଶ ।
କାଠ ଗୋଟିକୁ ତୁମ୍ଭେ ଆଣ ଉଠାଇଣ
ଆଦେଶ ମାତ୍ରକେ ମାଳୀ ଚଳିଲା ବହନ ।
ଭିଡ଼ିଆଣି ଦେଖିଲା ସେ ତାହା ସଙ୍ଗେ ପୁଣି
କଟୁରି ଖଣ୍ଡିଏ ଆଉ କେତେକ ବନ୍ଧନୀ ।
ଶ୍ରେଷ୍ଠ ଶ୍ରେଷ୍ଠ କାଠମାନ ସମାନ ମାପର
ଉପଯୁକ୍ତ କେବଳ ତା ବାଡ଼ ବାନ୍ଧିବାର ।
ଦେବଙ୍କ ଆଦେଶମତେ ସେହି ଉପାଦାନେ
ଭକ୍ତମାଳୀ ବାନ୍ଧି ଦେଲା ବାଡ଼ ସେହିକ୍ଷଣେ ।
ଏମନ୍ତେ ପ୍ରେରିଲା ଦ୍ରବ୍ୟ କିଏ ସେ ସଜାଡ଼ି
ଅଧିକ ନ ଥିଲା ଖଣ୍ଡେ କାଠ ବା ଦଉଡ଼ି ।
କାହୁଁ ବା ଅଇଲା ଭାସି ଏ ସବୁ ଦରବ
କିଏ ଏହା ପଠାଇଲା ଦେବ ବା ମାନବ ।
ସେ ରହସ୍ୟ ଭେଦିବାକୁ ବୁଦ୍ଧି ପରାଭୂତ
ଅଦ୍ଭୁତ ଘଟଣାବଳୀପୂର୍ଣ୍ଣ ଶ୍ରୀଚରିତ ।
ଏହି ସେ ତୁଳସୀ ବନ ଯହିଁ ବିଶ୍ୱପତି
ନିରଜନେ ନିମଜ୍ଜନ୍ତି ଧ୍ୟାନେ ନିତି ନିତି ।
ମନ୍ଦିରର ଯେଉଁ ଦିଗେ ଏହା ଅବସ୍ଥିତ
ଭୟାବହ ସ୍ଥାନ ବୋଲି ଆଗହୁଁ କଥିତ ।
ବହୁତ ଜଙ୍ଗଲୀ ବୃକ୍ଷେ ତାହା ପରିପୂର୍ଣ୍ଣ
ପୂର୍ବେ ଥିଲା ଯବନଙ୍କ କବରର ସ୍ଥାନ ।
ସେଥିପାଇଁ ସେ ସ୍ଥାନଟି ଅତି ଭୟଙ୍କର
ଦିବାଭାଗେ ଗମିବାକୁ କମ୍ପଇ ଶରୀର ।
ନିଶୀଥ ସମୟେ ଭୂତ ପ୍ରେତାଦିଙ୍କୁ ଡରି
ସେପଟେ ଯିବାକୁ ମନ ନ ବଳେ କାହାରି ।
ଦେବରାଜ ଗଦାଧର ନିର୍ଭୀକ ଅନ୍ତର
ଆନନ୍ଦେ ଗମନ୍ତି ତହିଁ ହେଲେ ନିଶା ଘୋର ।
ଗତିବିଧି ଦେଖି ହୃଦୁ ଚିନ୍ତାକୁଳ ମନ
ପ୍ରତ୍ୟହ ନିଶୀଥେ ମାମୁଁ ଶଯ୍ୟା ବରଜିଣ ।
କେଉଁଠାକୁ ଯାଉଛନ୍ତି ଗୋପନେ ଏକାକୀ
ଜାଣିବାକୁ ତାର ତଥ୍ୟ ରହିଲେକ ଛକି ।
ଦିନକରେ ଯଦି ପ୍ରଭୁ ହୋଇଲେ ବାହାର
ହୃଦୁ ଗଲେ ଧୀରେ ଧୀରେ ପଶ୍ଚାତେ ତାଙ୍କର ।

ନିବିଡ଼ ଜଙ୍ଗଲେ ପ୍ରଭୁ ଯଦି ପ୍ରବେଶିଲେ
ଦୂରରେ ରହିଣ ହୃଦୁ ଢେଲା ନିକ୍ଷେପିଲେ ।
ମନେ ପାଞ୍ଚୁଥିଲେ ମାମୁଁ ଭୟଭୀତ ହୋଇ
ନିଶ୍ଚୟ ଗନ୍ତବ୍ୟ ସ୍ଥାନୁଁ ଆସିବେ ପଳାଇ ।
ଅତି ନିର୍ଭୀକ ଅଟନ୍ତି ପ୍ରଭୁ ଗଦାଧର
ବିଫଳ ହୋଇଲା ସବୁ ପ୍ରୟାସ ହୃଦୁର ।
ଲକ୍ଷ୍ୟ ନ ରଖିଣ ପ୍ରଭୁ କଉଣସି ଦିଗେ
ଧ୍ୟାନେ ନିମଜ୍ଜିଲେ ତହିଁ ଅତି ଅନୁରାଗେ ।
ଭୟ ଦେଖାଇଲେ ପୁଣି ହୃଦୁ ବାରମ୍ବାର
ଭୀତ ନୋହି ପ୍ରଭୁ ରତ କାର୍ଯ୍ୟେ ଆପଣାର ।
ବିଫଳପ୍ରୟାସ ହୋଇ ଭୀତି ଉତ୍ପାଦନେ
କୌତୂହଳେ ମାତୁଳଙ୍କୁ ପୁଚ୍ଛିଲେ ସେ ଦିନେ ।
"ଅର୍ଦ୍ଧରାତେ ମାମୁଁ ତୁମ୍ଭେ ଶଯ୍ୟା ତ୍ୟାଗ କରି
ପଞ୍ଚବଟୀ ଆଡ଼େ ଯାଅ ମନେ କି ବିଚାରି ।"
ଉତ୍ତରେ ବୋଇଲେ ତାଙ୍କୁ ପ୍ରଭୁ ଭଗବାନ
"ଧ୍ୟାନ କରିବାକୁ ତହିଁ କରଇ ଗମନ ।
ଆମଳକୀ ତରୁତଳେ ଧ୍ୟାନହିଁ ପ୍ରଶସ୍ତ
ଏଥିର ମାହାତ୍ମ୍ୟ ବହୁ ଶାସ୍ତ୍ରରେ ବର୍ଣ୍ଣିତ ।
ଯେ ଯାହା ବାସନା କରି ତହିଁ କରେ ଧ୍ୟାନ
ନିଶ୍ଚୟ ହୁଅଇ ତାର ମନସ୍କାମ ପୂର୍ଣ୍ଣ ।
ଏସନ ବିଶ୍ୱାସ ଚିତ୍ତେ ଦୃଢ଼ଭାବେ ଧରି
ନିତ୍ୟ ନିତ୍ୟ ଯାଏ ତହିଁ ହେଲେ ବିଭାବରୀ ।"
ମାତୁଳ ବଚନ ଶୁଣି ହୃଦୟ ଠାକୁର
ଇଚ୍ଛା କଲେ ଦେଖିବାକୁ ଧ୍ୟାନ ତାହାଙ୍କର ।
ଶଯ୍ୟା ତ୍ୟାଗ କରି ଦିନେ ମାମୁଁ ଯେତେବେଳେ
ପଞ୍ଚବଟୀ ଅଭିମୁଖେ ଧୀରେ ଧୀରେ ଗଲେ ।
ହୃଦୟ ଠାକୁରେ ତାଙ୍କ ପଛେ ପଛେ ଯାଇ
ରହିଲେ ଅଦୃଶ୍ୟ ଭାବେ ଦୂରେ ଠିଆ ହୋଇ ।
ନିରୂପିତ ସ୍ଥାନେ ଆସି ପ୍ରଭୁ ନାରାୟଣ
ସମୀପେ ରଖିଲେ ବସ୍ତ୍ର ପଇତା କାଢ଼ିଣ ।
ଦିଗମ୍ବରଧାରୀ ହୋଇ ନିମଜ୍ଜିଲେ ଧ୍ୟାନେ
ଚିନ୍ତାନ୍ୱିତ ହେଲେ ହୃଦୁ ଏମନ୍ତ ଦର୍ଶନେ ।
ଅଶାସ୍ତ୍ରୀୟ କର୍ମ ମାମୁଁ କିପାଁ ଆଚରନ୍ତି
ଏ ପ୍ରକାର ଧ୍ୟାନ ରୀତି ଶାସ୍ତ୍ରରେ ଅଶ୍ରୁତ ।
କନିଷ୍ଟ ମାମୁଁ କି ମୋର ବାତୁଳ ହୋଇଲେ
ତା ନ ହେଲେ ଏ ଅବିଧି କିପାଁ ଆଚରିଲେ ।

ଏମନ୍ତ ବିଚାର ହେତୁ ଗଲେ ଖରତର
ତତକ୍ଷଣେ ପ୍ରବେଶ ହେଲେ ମାତୁଳ ପାଶର ।
ଧୀର ଗମ୍ଭୀରେ ତାହାଙ୍କୁ ବୋଇଲେ ବଚନ
"ଅଶାସ୍ତ୍ରୀୟ କର୍ମ ମାମୁ ! କର କି କାରଣ ।
ସାଧନ ଭଜନ କର ମନା ନାହିଁ ତହିଁ
ବସ୍ତ୍ର ଉପବୀତ କାଢ଼ି ରଖିଛ କିପାଇଁ ?"
ଚକ୍ଷୁ ଉନ୍ମୀଳିଣ ତହୁଁ ପ୍ରଭୁ ଗଦାଧର
ସହାସ୍ୟ ବଦନେ ତାଙ୍କୁ କହିଲେ ଉତ୍ତର ।
"କିଛିହିଁ ନ ଜାଣୁ ତୁହି ଧ୍ୟାନର ମରମ
ବନ୍ଧନ ବିମୁକ୍ତ ଧ୍ୟାନ ଶାସ୍ତ୍ରୀୟ ନିୟମ ।
ଜାତି, ଭୟ, ଲଜ୍ଜା, ଘୃଣା, କୁଳ, ଶୀଳ, ମାନ,
ଆଜନ୍ମ ଏ ଅଷ୍ଟମାନେ ମାନବେ ବନ୍ଧନ ।
ଏ ସବୁ ପାଶରୁ ସେହୁ ନୋହିଲେ ମୁକତ
ଜପ ତପ ଧ୍ୟାନ ଆଦି ସବୁହିଁ ସେ ବ୍ୟର୍ଥ ।
ଉପବୀତ ଅଟଇ ଯେ ବନ୍ଧନ ବିଶେଷ
ଜାତିଗତ ଅହଂକାର କରଇ ପ୍ରକାଶ ।
ତେଣୁ ସବୁ ବନ୍ଧନରୁ ହୋଇଣ ମୁକତ
ଏକମନେ ବିଭୁ ଧ୍ୟାନ ଅଟଇ ସଙ୍ଗତ ।
ପଇତା, ପିନ୍ଧିବା ବସ୍ତ୍ର, କାଢ଼ି ସେ କାରଣେ
ସନ୍ନିଧାନେ ରଖିଅଛୁ ଅତୀବ ଯତନେ ।
ଏ ସବୁ ପିନ୍ଧିବି ପୁନଃ ଧ୍ୟାନ ଶେଷ ହେଲେ ।
ନ କରଇ ଅଶାସ୍ତ୍ରୀୟ କର୍ମ କେତେବେଳେ ।"
ଏମନ୍ତ ଯୁକତି ଶୁଣି ହୃଦସ୍ଥ ଠାକୁର
ଲେଉଟି ଅଇଲେ ଧୀରେ ଆପଣା କୁଟୀର ।
ଦିବସେ କରନ୍ତି ପ୍ରଭୁ ଦେବୀଙ୍କ ଅର୍ଚ୍ଚନ
ନିଶୀଥେ ନିର୍ଜ୍ଜନେ ବସି ଧ୍ୟାନେ ନିମଗନ ।
ଏ ଭାବେ କ୍ରମଶଃ ଯେତେ ଦିନ ଅଗ୍ରସର
ଅନୁରାଗ ଚିତ୍ତେ ବୃଦ୍ଧି ହେତେ ତାହାଙ୍କର ।
ବାହ୍ୟିକ ଲକ୍ଷଣ ତାର ଶ୍ରୀଅଙ୍ଗେ ପ୍ରକାଶ
ତା ସଙ୍ଗେ ଆହାର ନିଦ୍ରା କ୍ରମେ ହେଲା ହ୍ରାସ ।
ଶୋଣିତ ପ୍ରବାହ ବକ୍ଷଃ ମସ୍ତିଷ୍କେ ଲକ୍ଷିତ
ତେଣୁ ତା ଆରକ୍ତ, ଚକ୍ଷୁ ଜଳଧାରାକ୍ରାନ୍ତ ।
ନ ରହିଲା ଅର୍ଚ୍ଚନାର ନିର୍ଦ୍ଦିଷ୍ଟ ସମୟ
କୌଣସି କଥାର କିଛି ନ ରହିଲା ଥୟ ।
ଯଥାବିଧି ପୁଷ୍ପଟିଏ ଥୋଇଣ ମସ୍ତକେ
ନିମଜ୍ଜିଲେ ବିଭୁ ଧ୍ୟାନେ ଘଣ୍ଟା ଦୁଇତକେ ।

ପୁନଃ ଚେତା ଆସିଲାରୁ ପୂଜାରେ ନିବିଷ୍ଟ
କିଞ୍ଚିତ ସମୟ ପରେ ପୁଣି ଭାବାବିଷ୍ଟ ।
କେତେବେଳେ ଭୋଗ ମାତ୍ର ନିବେଦନ କରି
ସ୍ଥିର ଭାବେ ବସିଲେ ସେ ଜଡ଼ ମୂର୍ତ୍ତି ପରି ।
ସନ୍ତୋଷେ ଭୁଞ୍ଜନ୍ତି ଦେବୀ ଏମନ୍ତ ଭାଳିଣ
ଅଭିଳାଷ ନ କରନ୍ତି ତହିଁ ବାଧା ଦାନ ।
ବେଶ କଲାବେଳେ ମଗ୍ନ ମାନସ ଭୂଷଣ
ଘଣ୍ଟା ଘଣ୍ଟା ବିତିଯାଏ ନ ଥାଏକ ହୋସ ।
କେବେ ପୁଣି ଚିତ୍ତେ ଜାତ ଏତେ ଅନୁରାଗ
ଆରତି କରନ୍ତି ଯେବେ ପ୍ରଭୁ ମହାଭାଗ ।
ପ୍ରାଣ ମନ ଏକାବେଳେ ତହିଁ ବୁଡ଼ିଯାଇ
ବାହ୍ୟଜ୍ଞାନର କୌଣସି ଶକୁନ ନ ଥାଇ ।
ବଜାଇ ବଜାଇ ଘଣ୍ଟା ଝାଞ୍ଜ ବାଦ୍ୟକାରେ
ଥକା ହୋଇ ବସିଯାନ୍ତି ଅତ୍ୟନ୍ତ ଶ୍ରମରେ ।
ତେବେ ସୁଦ୍ଧା ନ ହୁଅଇ ଆରତିର ଶେଷ
ହସ୍ତ ବୁଲୁଥାଏ କଲ ଚଳଇ ଯାଦୃଶ ।
କେତେବେଳେ ଅବା ପୁଣି ସନ୍ଧ୍ୟାରତି ସାରି
ଆସନ ପକାଏ ଦେବୀ ସମ୍ମୁଖେ ବିସ୍ତାରି ।
ତହିଁ ବସି ଗୀତ ଗା'ନ୍ତି ପ୍ରଭୁ ଏକମନେ
ହୃଦତନ୍ତ୍ରୀ ନାଚି ଉଠେ ଯେ ସବୁ ଶ୍ରବଣେ ।
କେତେ ସମୟ ଏ ଭାବେ ହେଲାଣି ଅତୀତ
ତହିଁ ଭ୍ରୂକ୍ଷେପ ନ ଥାଏ ତାଙ୍କର କିଞ୍ଚିତ ।
ଭାବରେ ବିହ୍ୱଳ ପ୍ରାଣମନ ଏ ପ୍ରକାର
କାଳାକାଳ ନ ରହିଲା ପୂଜା କରିବାର ।
ପୂଜା କରିବା ନିମନ୍ତେ ଚେତାଇଲେ ସୁଦ୍ଧା
ଚେତା ନ ଆସଇ, ମନ ଦେବୀପାଦେ ବନ୍ଧା ।
ପ୍ରାତଃକାଳେ ଦେବସ୍ୱହସ୍ତେ ଶଯ୍ୟାତ୍ୟାଗ କରି
କୁସୁମ ଚୟନେ ଯାନ୍ତି ଗୁଞ୍ଚୁଡ଼ିଟି ଧରି ।
ଉଦ୍ୟାନରୁ ନାନାବିଧ ପୁଷ୍ପ ତୋଳିଆଣି
ସ୍ୱହସ୍ତେ ଗୁନ୍ଥନ୍ତି ମାଳ ପ୍ରଭୁ ଗୁଣମଣି ।
ଏ ପ୍ରକାରେ ପ୍ରଭୁ ଦେବ ଚନ୍ଦ୍ରାଙ୍କ ନନ୍ଦନ
ଦେବୀଙ୍କ ପୂଜାରେ ରତ ହେଲେ କିଛିଦିନ ।
କାଳ ଯେତେ କ୍ରମେ କ୍ରମେ ହେଲା ଅଗ୍ରସର
ଦେବୀଙ୍କ ଦର୍ଶନ ପାଇଁ ବ୍ୟାକୁଳ ଅନ୍ତର ।
ପ୍ରତିମା ସମୀପେ ଯାଇ ପ୍ରଭୁ ଦେବସ୍ୱସ୍ତେ
ପ୍ରାର୍ଥନା କରନ୍ତି କେତେ ବ୍ୟଥିତ ହୃଦୟେ ।

କେବେ ଅବା ଏକା ବସି ଝାଳାନ୍ତ ଅନ୍ତରେ
ରାମପ୍ରସାଦ ପ୍ରମୁଖ ଭକତ ନିକରେ ।
ଦେବୀଙ୍କ ଦର୍ଶନ ଲଭି ଧନ୍ୟ ହେଲେ ଭବେ
ଅଧମ ଭାଗ୍ୟେ କି ଏହା ନ ଘଟିବ କେବେ ।
ଝଲ୍କୁ ଝଲ୍କୁ ବ୍ୟାକୁଳତା ଏମନ୍ତ ପ୍ରବଳ
ଦେବୀଙ୍କୁ କହନ୍ତି ଖେଦେ ପ୍ରଭୁ ଆଦିମୂଳ ।
"ଶ୍ରୀରାମ ପ୍ରସାଦେ ମାତଃ ! ଦେଲୁ ତୁ ଦର୍ଶନ
ବଞ୍ଚିତ କରିବୁ ତେବେ ମୋତେ କି କାରଣ ?
ମୁହିଁ କି ଅଟଇ ତୋର ଅକୃତି ସନ୍ତାନ
ମୋ ପ୍ରତି କି ନ କରିବୁ କୃପା ପ୍ରଦର୍ଶନ ?
ଧନ ଜନ ଭୋଗ ସୁଖ ନ ମାଗଇ କିଛି
ଦରଶନ ଭିକ୍ଷା ମାତ୍ର ଅଧମ ମାଗୁଛି ।"
ଏ ପ୍ରକାର କହୁ କହୁ ନେତ୍ରୁ ବହି ଜଳ
ଝରିଯାଏ ଦୁଇଧାରେ ଗଣ୍ଡ ବକ୍ଷଃ ସ୍ଥଳ ।
ଏ ଭାବେ କେତେକ ଦିନ ହୋଇଲା ଅତୀତ
ଦେବୀଙ୍କ ଦର୍ଶନ ବିନୁ ହୃଦୟ ମନ୍ଥିତ ।
କି ଉପାୟେ ପ୍ରାପ୍ତ ହେବେ ସେ ପୁଣ୍ୟ ଦର୍ଶନ
ସେଥିପାଇଁ ସଦାବେଳେ ମନ୍ଥି ହେଲା ପ୍ରାଣ ।
ଦର୍ଶନ ବିହୁନେ ଚିତ୍ତେ କେମନ୍ତ ଯନ୍ତ୍ରଣା
ମାନବ ବୁଦ୍ଧିରେ ଏହା ନ ହୁଏ କଳନା ।
ଉପମାରେ ଯା କହିଲେ ପ୍ରଭୁ ନାରାୟଣ
ସାଧୁଜନେ ସାବଧାନେ କରନ୍ତୁ ଶ୍ରବଣ ।
ଓଦା ଗାମୁଛାରୁ ଜଳ ନିଷ୍କାସନ ପାଇଁ
ଚିପୁଡ଼ି ଦେଲାରୁ ଜୋରେ ଯେମନ୍ତ ହୁଅଇ ।
କିଏ ଯେହ୍ନେ ମୋ ହୃଦକୁ କଲାକ ତେମନ୍ତ
ଯନ୍ତ୍ରଣାର ଅନୁଭୂତି ହୋଇଲା ଏମନ୍ତ ।
ସଙ୍କଟେ ପଡ଼ିଣ ପ୍ରଭୁ ସର୍ବ ଗୁଣାକର
କାତରେ ପ୍ରାର୍ଥନା କଲେ ଦେବୀଙ୍କ ପୟର ।

"ଦିନ ବିତିଗଲା ମାତଃ ! ନ ଦେଲୁ ଦର୍ଶନ
ଏ ଜୀବନ ଆଉ ମୋର କେଉଁ ପ୍ରୟୋଜନ ?"
ଏମନ୍ତେ ହତାଶ ହୋଇ ପ୍ରଭୁ ନରହରି
"ନାଶିବି ଏ ପ୍ରାଣ" କହି ଉଠିଲେ ହୁଙ୍କାରି ।
ଦେବୀଙ୍କର ଖଡ଼୍ଗ ଯାହା ମନ୍ଦିରେ ରକ୍ଷିତ
ଯେମନ୍ତ ଧରିଲେ ତାକୁ ହୋଇ ଉନମତ୍ତ ।
ତକ୍ଷଣେ ଶ୍ରୀଜଗନ୍ମାତା ହୋଇଣ ପ୍ରସନ୍ନ
କୃପାକରି ପ୍ରଦାନିଲେ ଦିବ୍ୟ ଦରଶନ ।
ସଂଜ୍ଞାହୀନ ହୋଇ ପ୍ରଭୁ ପଡ଼ିଲେ ଭୂତଳେ
ଦୁଇଦିନ ଯାଏ ଆଉ ଚେତା ନ ପାଇଲେ ।
ଚିଦାନନ୍ଦ ପ୍ରେମଧାରା ବହିଣ ଅନ୍ତରେ
ଅତ୍ୟନ୍ତ ଉନ୍ମତ୍ତ କଲା ତାଙ୍କୁ ନିରନ୍ତରେ ।
ସେ ଦିବ୍ୟ ଦର୍ଶନେ ଯାହା କଲେ ଅନୁଭୂତି
ସାଧୁଜନେ ଶୁଣ ସେହି ଅପୂର୍ବ ଭାରତୀ ।
"ଘରଦ୍ୱାର ମନ୍ଦିରାଦି ହୋଇଣ ବିଲୀନ
ପରିଣତ ହେଲା ସବୁ ଏକ ମହାଶୂନ୍ୟ ।
ଅନନ୍ତ ଚୈତନ୍ୟମୟ ଜ୍ୟୋତିଃ ପାରାବାର
ଚୌଦିଗେ ବିରାଜେ ଦୃଷ୍ଟି ଗଲା ଯେତେଦୂର ।
ତହିଁରୁ ଉଠିଣ ଊର୍ମିମାଳା ଅଗଣନ
ତର୍ଜ୍ଜନ ଗର୍ଜ୍ଜନ କରି ଆସିଲା ବହନ ।
ଦେଖୁ ଦେଖୁ ସେ ସକଳ ହୋଇ ଏକତ୍ରିତ
ମୋତେ ଗ୍ରାସିବା ନିମିତ୍ତ ହେଲେ ପ୍ରଧାବିତ ।
ନିମିଷ ମଧ୍ୟରେ ମୋତେ ମାଡ଼ିଦେଲା ତହିଁ
ଷଟିଣ ବୁଡ଼ିଗଲା ଚେତା ଅଙ୍କୁ ପାଙ୍କୁ ହୋଇ ।
ପ୍ରଥମ ଦର୍ଶନ କଥା ପ୍ରଭୁ ଭଗବାନ
ଏ ପ୍ରକାର କରିଛନ୍ତି ଶ୍ରୀମୁଖେ ବର୍ଣ୍ଣନ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣ କୀର୍ତ୍ତନ ହେଲେ ଭବସିନ୍ଧୁ ପାର ।

ବେଳ ଥାଉ ଜପ ମନ ଅଭୟ ଚରଣ
ହୁଡ଼ିଗଲେ ଭାବୁଥିବୁ ଏ ସାରା ଜୀବନ ।



# ପଞ୍ଚମ ଅଧ୍ୟାୟ

## ସାଧନା ଓ ଦିବ୍ୟୋନ୍ମତ୍ତତା

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ପ୍ରଭୁ ନିରଞ୍ଜନ ।
ଦିବ୍ୟ ଦର୍ଶନ ଲଭିଣ ଗଦାଧରଙ୍କର
ଶାନ୍ତି ନ ଆସିଲା ଚିତ୍ତେ କିଞ୍ଚିତ ମାତର ।
ହୃଦେ ଆଶା ଦେବୀଙ୍କର ଚିନ୍ମୟ ମୂରତି
ଅବାଧ ଦର୍ଶନ ପ୍ରାପ୍ତ ହୋଇବେ କେମତି ।
କେବଣେ ସେ ଅଭିଳାଷ ହୋଇବ ସଫଳ
ଏମନ୍ତ ଚିନ୍ତାରେ ଚିତ୍ତ ସତତ ବ୍ୟାକୁଳ ।
ଦିନୁ ଦିନ ବୃଦ୍ଧିପାଇ ସେହି ବ୍ୟାକୁଳତା
ସହିଲେ ସେ ଯେତେ କଷ୍ଟ ନାହିଁ ତା ଇୟତ୍ତା ।
ବାତୁଳ ପରାୟେ ହୋଇ ସ୍ୱଭାବ ଚରିତ
ନ ରହିଲା ପୂଜା ବିଧି ବିଧାନ କିଞ୍ଚିତ ।
ଏକାଳେ ଶ୍ରୀ ପ୍ରଭୁଦେବ ଜଗତ ଗୋସାଇଁ
ପଞ୍ଚବଟୀ ମୂଳେ ଦିନେ ବସିଥିଲେ ଯାଇ ।
ସେଠାରେ କଲେକ ଏକ ଅପୂର୍ବ ଦର୍ଶନ
ଶ୍ରୀମୁଖ ନିଃସୃତ ବାଣୀ ସାବଧାନେ ଶୁଣ ।
ଅଦୂରେ ଦେଖିଲେ ଏକ ଜ୍ୟୋତିର୍ମ୍ମୟ ରୂପ
ନିରୁପମା ସୁଲାବଣ୍ୟା ନାରୀର ସ୍ୱରୂପ ।
ନାନାବିଧ ଅଳଙ୍କାରେ ଅଙ୍ଗ ବିଭୂଷିତା
ଦରଶନେ ଉପୁଜିଲା ଚିତ୍ତେ ପ୍ରସନ୍ନତା ।
ଆବିର୍ଭୂତା ହୋଇ ବାମା ନିମିଷ ମଧ୍ୟରେ
ପୂର୍ଣ୍ଣକଲା ଚତୁର୍ଦ୍ଦିଗ ଆଲୋକ ଛଟାରେ ।
ଏଥିଅନ୍ତେ ଦିବ୍ୟଦେବୀ ସହାସ୍ୟ ବଦନେ
ଧୀରେ ଧୀରେ ଅଗ୍ରସର ପ୍ରଭୁ ସନ୍ନିଧାନେ ।
ଦେବୀ କା ମାନବୀ କିଏ ଅଟେ ଏ ରମଣୀ
ଏମନ୍ତ ଚିନ୍ତା'ରେ ମଗ୍ନ ହେଲେ ଚିନ୍ତାମଣି ।
ସହସା ଶୂନ୍ୟରୁ ଖସି ଏକ ହନୁମନ୍ତ
ସପ୍ରେମେ ଲୋଟିଲା ଆସି ଦେବୀ ପଦପ୍ରାନ୍ତ ।
ଅନ୍ତରେ ଅନ୍ତରେ ପ୍ରଭୁ ପାଇଲେ ବାରତା
ରାମଙ୍କ ଗୃହିଣୀ ଏହି ଜନକ ଦୁହିତା ।
ଅଧୀର ହୋଇଣ ରହୁଁ 'ମା' 'ମା' ସମ୍ବୋଧିଣ
ସାଷ୍ଟାଙ୍ଗେ ପଡ଼ିଲେ ଦେବୀ ପାଦ ଆଲିଙ୍ଗିଣ ।
ନିମିଷେ ସେ ଦିବ୍ୟଦେବୀ ଜ୍ୟୋତିରୂପ ଧରି
ପ୍ରବେଶିଲେ ଅତି ବେଗେ ଶ୍ରୀଅଙ୍ଗେ ତାଙ୍କରି ।
ବିସ୍ମୟାନନ୍ଦେ ହୃଦୟ ହେଲା ପରିପୂର୍ଣ୍ଣ
ନ ରହିଲା ତାହାଙ୍କର କିଞ୍ଚିତରେ ଜ୍ଞାନ ।
ଅତଃପର ଦେବରାୟ ଚନ୍ଦ୍ରାଙ୍କ କୁମର
ଆରମ୍ଭିଲେ ଅମାନୁଷୀ ସାଧନ ନିକର ।
ସାଧାରଣ ନିୟମକୁ ଅତିକ୍ରମ କରି
କେତେ ବୃକ୍ଷେ ଅଗ୍ରେ ଫଳ ପରେ ଫୁଲ ଧରି ।
ଅବତାର ପୁରୁଷଙ୍କ ସମ୍ବନ୍ଧେ ତେସନ
ପ୍ରଥମେ ଦର୍ଶନ, ପରେ ସାଧନ ଭଜନ ।
ମାୟାମୁଗ୍ଧ ପ୍ରାଣୀଙ୍କର ମଙ୍ଗଳ ନିମିତ୍ତ
ଅସାଧ୍ୟ ସାଧନ ପ୍ରଭୁ ସାଧିଲେ ବହୁତ ।
ଯେତେ ଧର୍ମ୍ମ ପ୍ରଚଳିତ ଥିଲା ଏ ସଂସାରେ
ସେ ସବୁ ସାଧିଲେ ଦେବ ବିଧି ଅନୁସାରେ ।
ଏସନେ ହୋଇଲା ଗତ ଦ୍ୱାଦଶ ବରଷ
ତଦନ୍ତେ ପ୍ରଭୁର କାର୍ଯ୍ୟେ ନିଯୁକ୍ତ ଭବେଶ ।
ଆଦି ଗୁରୁବର୍ଗ କଥା ଗାଇବ ଏଠାରେ
କୃପା କରି ଶକ୍ତି ଦିଅ ପ୍ରଭୋ ! ଲେଖନୀରେ ।
ଶ୍ରୀରାମକୃଷ୍ଣ ଚରିତ ଅମୃତ ଭାରତୀ
ଶ୍ରବଣେ କୀର୍ତ୍ତନେ ଚିତ୍ତେ ଉପୁଜେ ଭକତି ।
ପ୍ରତିଦିନ ପ୍ରଭାତରେ ପ୍ରଭୁ ଭଗବାନ
ପୂଜା ପାଇଁ ଯେବେ ପୁଷ୍ପ କରନ୍ତି ଚୟନ ।
ସେକାଳେ ଦେଖିଲେ ତାଙ୍କ କାର୍ଯ୍ୟ କର୍ମ୍ମ ରୀତି
ମନେହୁଏ କେହି ଯେହ୍ନେ ଭ୍ରମେ ସାଥି ସାଥି ।
ସ୍ୱହସ୍ତେ ଗ୍ରନ୍ଥିଣ ମାଳ ଅତି ଯତନରେ
ମଣ୍ଡନ୍ତି ଦେବୀଙ୍କ ଅଙ୍ଗ ପ୍ରେମଭକ୍ତିଭରେ ।
ତନ ମନ ସହ ହୁଏ ଦେବୀଙ୍କ ଅର୍ଚ୍ଚନା
ଏ ମହୀମଣ୍ଡଳେ ନାହିଁ ଯାହାର ତୁଳନା ।
ନିଶୀଥେ ନ ହୁଏ ନିଦ୍ରା କିଞ୍ଚିତ ମାତର
ଭଜନ ସଙ୍ଗୀତେ ମତ୍ତ ଥାନ୍ତି ନିରନ୍ତର ।

କେବେ ଅବା ଏକା ଯାଇ ପଞ୍ଚବଟୀ ମୂଳେ
ଧ୍ୟାନେ ନିମଗ୍ନ ହୁଅନ୍ତି ଘୋର ନିଶାକାଳେ ।
ଶେଷେ ଦେବୀଙ୍କ ଅବାଧ ଦର୍ଶନ ନିମିତ୍ତ
ବ୍ୟାକୁଳତା ବିରହରେ ଆଲୋଡ଼ିତ ଚିତ୍ତ ।
ନିତ୍ୟ ନୈମିତ୍ତିକ କ୍ରିୟା ସମାପନ ପାଇଁ
କହଣପି କାଳାକାଳ ବିଚାର ନ ଥାଇ ।
ଦେବୀଙ୍କୁ ପୂଜିଲେ ଏକ ଅଭିନବ ଭାବେ
ଦେଖିଲେହିଁ ମନେ ହୁଏ ନରେ ନ ସମ୍ଭବେ ।
ଜବା ବିଲ୍ୱପତ୍ର ଧରି ଭକ୍ତି ସହକାରେ
ଅଙ୍ଗେ ସ୍ପର୍ଶି ପରେ ଦେଲେ ଦେବୀଙ୍କ ପଦ୍ମରେ ।
କେବେ ପୁଣି ସ୍ପର୍ଶକରି ତାହା ନିଜ ପାଦେ
ତଦନ୍ତେ ଦେବୀଙ୍କୁ ଦେଲେ ଅତି ପ୍ରେମାସ୍ପଦେ ।
ବକ୍ଷ ଚକ୍ଷୁ ମଧ୍ୟେ ମଧ୍ୟେ ଆରକ୍ତ ଏସନ
ଦେଖିଲେ ହିଁ ମନେହୁଏ ମାତାଲ ଯେସନ ।
କେବେ କେବେ ଅତିଶୟ ଉନ୍ମତ୍ତାବସ୍ଥାରେ
ପୂଜା ତେଜି ଆରୋହନ୍ତି ସିଂହାସନୋପରେ ।
ଦେବୀଙ୍କ ଓଷ୍ଠକୁ ସ୍ନେହେ ଧରିଣ ଶ୍ରୀକରେ
ଗାଆନ୍ତି ସଙ୍ଗୀତମାନ ଅତି ଆହ୍ଲାଦରେ ।
କେବେ ପୁଣି ଦେବୀ-ହସ୍ତ ଶ୍ରୀହସ୍ତେ ଧରିଣ
ନୃତ୍ୟେ ମତ୍ତ ହୁଅନ୍ତି ଯେ ପ୍ରଭୁ ଭଗବାନ ।
କେବେ ଅବା ନିବେଦନ କରୁ କରୁ ଭୋଗ
ଆସନ ତେଜି ଉଠନ୍ତି ପ୍ରଭୁ ମହାଭାଗ ।
ଥାଳରୁ ଅନ୍ନବ୍ୟଞ୍ଜନ ଧରିଣ କିଞ୍ଚିତ
ସିଂହାସନେ ଆରୋହଣ ସସ୍ନେହେ ତ୍ୱରିତ,
ଦେବୀଙ୍କର ମୁଖେ ତାହା ଲଗାଇ ରଖିଣ
କହନ୍ତି ଭାବରେ ବୁଡ଼ି ପ୍ରଭୁ ନାରାୟଣ ।
“ମାଆ’ ‘ମାଆ’ ଆଲୋ ‘ମାଆ’ ଗୁଣ୍ଡିଏ ତୁ ଖାଆ
‘ଖାଆ’ ‘ଖାଆ’ ଆଲୋ ‘ମାଆ’ ଭଲକରି ଖାଆ ।”
ନିଜକୁ କହନ୍ତି ନିଜେ ପୁଣି ପରକ୍ଷଣେ
“ମୋତେ କି କହୁଛୁ ଅଗ୍ରେ ଭୁଞ୍ଜିବା କାରଣେ ।
ଭଲକଥା, ନିରେଖ ମା’ ଖାଉଅଛୁ ମୁହିଁ”
କିଞ୍ଚିତ ଖାଇଲେ ସେଥୁ ନିଜେ ଏହା କହି ।
ଅବଶିଷ୍ଟ ଅଂଶ ଧରି ଦେବୀଙ୍କ ସମ୍ମୁଖେ
ଖାଇବାକୁ ଅନୁରୋଧ ନାନା ସ୍ନେହବାକ୍ୟେ ।
“ଏଥର ତ ଖାଇଅଛୁ ଆଲୋ ମାଆ ମୁହିଁ
ଅବଶିଷ୍ଟ ଯାହା ଅଛୁ ଖାଇ ଦେ’ ଲୋ ତୁହି ।”

ଭୋଗ ଦେଲାବେଳେ ଥରେ ଗୋଟିଏ ବିରାଡ଼ି
ଗୃହରେ ପ୍ରବେଶି କଲା ମ୍ୟାଉଁ ମ୍ୟାଉଁ ରଡ଼ି ।
ସାଦରେ ଧରିଣ ତାକୁ ପ୍ରଭୁ ନରହରି
ଭକ୍ତିରେ କହିଲେ ବାକ୍ୟ ଦେବୀ ଜ୍ଞାନକରି ।
‘ଖାଇବାକୁ ଇଚ୍ଛା କଲେ ଏ ଅନ୍ନବ୍ୟଞ୍ଜନ
ଏହା କହି ତାକୁ ଦେଲେ କିଞ୍ଚିତ ପ୍ରମାଣ ।
ଦେବୀଙ୍କର ସନ୍ଧ୍ୟାଧୂପ ହେଲେ ସମାଗତ
ଶୟନ ଦେବାକୁ ଯାଇ ପ୍ରଭୁ ଆଦିନାଥ ।
ଦେବୀଙ୍କୁ ସମ୍ବୋଧି ପୁଣି କହନ୍ତି ଆଦରେ
“ଶୋଇବାକୁ କହୁଛୁ ତୁ ମୋତେ ଲୋ ପାଖରେ !
ସମ୍ଭାଳ ଟିକିଏ ମା’ଲୋ ଯାଉଅଛୁ ମୁହିଁ”
ଶୋଇଲେ ଦେବୀଙ୍କ ଶେଯେ ଏ ପ୍ରକାର କହି ।
କେତେବେଳେ ଅବା ପୁଣି ପ୍ରଭୁ ପରମେଶ
ପୂଜା କରୁ କରୁ ଚିତ୍ତ ଏମନ୍ତ ନିବେଶ ।
ତନ୍ମୟ ଭାବରେ ଦେବୀ ଧ୍ୟାନେ ନିମଗନ
ଦେଖୁ ଦେଖୁ ଏକାବେଳେ ଶୂନ୍ୟ ବାହ୍ୟଜ୍ଞାନ ।
ଦୁଇ ତିନି ଘଣ୍ଟାକାଳ ଏ ଭାବେ ଅତୀତ
ସଂଜ୍ଞାଲାଭ କରି ପରେ ପୂଜାକାର୍ଯ୍ୟେ ରତ ।
ପୂଜା କରିବାକୁ ଯେବେ ହୁଅନ୍ତି ଅକ୍ଷମ
ଅନ୍ୟ ବିପ୍ର ଆସି ସମ୍ପାଦଇ ସେ କରମ ।
ମନ୍ଦିରେ ଥିଲେକ ଯେତେ ରାଜ କର୍ମଚାରୀ
ଅତି ଭୀତ ହେଲେ ଅମଙ୍ଗଳ ଶଙ୍କା କରି ।
ଭଟ୍ଟାଚାର୍ଯ୍ୟଙ୍କ ମସ୍ତିଷ୍କ ହେଲାଣି ବିକୃତ
ଅଥବା ଉପଦେବତା ତାଙ୍କଠି ଆଶ୍ରିତ ।
ଜଗତର ଯେତେ ଯାହା ଅନ୍ୟାୟ କରମ
ପ୍ରାଣୀଠାରେ ସମ୍ଭବଇ ବୁଝି ହେଲେ ଭ୍ରମ ।
ସବୁହିଁ ସେ କରୁଛନ୍ତି ଅଶଙ୍କିତ ଚିତ୍ତେ
ଦ୍ୱିଧା ହେଉ ନାହିଁ ତାଙ୍କ ହୃଦୟେ କିଞ୍ଚିତେ ।
ଏଥିକୁ ଉପାୟ କିସ କରିବାକୁ ସ୍ଥିର
ଏକମେଳ ହୋଇ ସର୍ବେ କଲେକ ବିଚାର ।
ତର୍କଯୁକ୍ତି କରି ଶେଷେ ହେଲେ ଏକମତ
ମାଲିକଙ୍କୁ ଏ ସମ୍ବାଦ ପ୍ରେରିବା ବିହିତ ।
ଉନକରେ ଦଳବାନ୍ଧି ସରବେ ଗମିଣ
ସବୁ କଥା ତାଙ୍କ ପାଖେ କଲେ ନିବେଦନ ।
ସମସ୍ତ ଘଟଣା ଶୁଣି ଭକତ ମଥୁର
ଆଜ୍ଞା ଦେଲେ କରିବେ ସେ ତ୍ୱରା ପ୍ରତିକାର ।

ଯେତେ ଦିନଯାଏ କିଛି ନ ହୁଏ ବିଧାନ
ଇଚ୍ଛାମତେ ଭଟ୍ଟାଚାର୍ଯ୍ୟ କରିବେ ଅର୍ଚ୍ଚନ ।
ତାହାଙ୍କୁ ନ ଦେବ ବାଧା କୌଣସି ପ୍ରକାର
ଏମନ ଆଦେଶ ହେଲା ସଦରୁ ବାହାର ।
ଆଦେଶ ଶ୍ରବଣ କରି ଭାବିଲେ ସରବେ
କରମ-ଚ୍ୟୁତର ଆଜ୍ଞା ନିଶ୍ଚୟ କରିବେ ।
ଦେବୀଙ୍କଠି ଭଟ୍ଟାଚାର୍ଯ୍ୟ ଅପରାଧୀ ଅତି
କେତେ ବା ସହିବେ ଆଉ ମାତା ଭଗବତୀ ।
ଏମନ୍ତେ କଲେ ଯେ କେତେ ଜଳ୍ପନାକଳ୍ପନା
ସାଧ୍ୟ କାର କିଏ ତାହା କରିବ କଳନା ।
ଏଥିଅନ୍ତେ ଯାହା ହେଲା ଶୁଣ ଆରେ ମନ
ଶ୍ରୀରାମକୃଷ୍ଣ ଚରିତ ଅମୃତ ଆଖ୍ୟାନ ।
ପୂଜକଙ୍କ ପୂଜାବିଧି ଦର୍ଶନ ନିମିତ୍ତ
ମଥୁର ସହସା ଦିନେ ମନ୍ଦିରେ ଆଗତ ।
ପ୍ରବେଶ ମାତ୍ରକେ ଗଲେ ଦେବୀଙ୍କ ଦର୍ଶନେ
ପୂଜାରେ ନିବିଷ୍ଟ ଥିଲେ ପ୍ରଭୁ ଯେଉଁସ୍ଥାନେ ।
ସମୀପେ ଦଣ୍ଡାୟମାନ ଭକତ ମଥୁର
ସେ ଦିଗେ ଭ୍ରୂକ୍ଷେପ ନାହିଁ କିଞ୍ଚିତ ତାଙ୍କର ।
ଦେବୀଙ୍କ ପଦ୍ମରେ ମନ ଏକାବେଳେ ଲୀନ
ବାହ୍ୟ କାର୍ଯ୍ୟ କର୍ମ ପ୍ରତି ଚେତନା ବିହୀନ ।
ମଥୁର ଦେଖିଲେ ପ୍ରଭୁ ବାଳକ ସଦୃଶ
ଦେବୀ ସଙ୍ଗେ କରୁଛନ୍ତି ହାସ୍ୟ ପରିହାସ ।
ଧ୍ୟାନେ ନିମଜ୍ଜିଣ ଚିତ୍ତ ଆନନ୍ଦେ ବିହ୍ୱଳ
ଅଶ୍ରୁଧାର ବହିଯାଏ ନେତ୍ରୁ ଅବିରଳ ।
କେବେ ପୁଣି ଅନୁନୟ ବିନୟ ପ୍ରାର୍ଥନା
ଯେ କାଳେ ଉଦୟେ ଚିତ୍ତେ ଯେମନ୍ତ ଭାବନା ।
ପୂଜା ବିଧି ନିରେଖିଣ ଭକତ ମଥୁର
ବିକୃତ ମସ୍ତିଷ୍କ ନୁହେ କରିଲେ ଯେ ସ୍ଥିର ।
ଐକାନ୍ତିକ ପ୍ରେମଭକ୍ତି ପ୍ରେରଣା ବଶତଃ
ଅତି ଉଚ୍ଚ ଅବସ୍ଥାରେ ମନ ଉପସ୍ଥିତ ।
ଏମନ୍ତ ସରଳ ଭକ୍ତି ଚିତ୍ତେ ଯାର ଥାଇ
ଅଚିରେ ତାଙ୍କଠି ଦେବୀ ପ୍ରସନ୍ନା ହୁଅଇ ।
ଦେବୀଙ୍କ ସ୍ୱରୂପେ ଦିବ୍ୟ ଭାବ ପ୍ରକଟିତ
ଯା ଦର୍ଶନେ ମଥୁରଙ୍କ ଚିତ୍ତ ପୁଲକିତ ।
ଧନ୍ୟ ସେ ପୂଜକ ଯାଙ୍କ ଭକତି ବଳରେ
ପାଷାଣ ମୂର୍ତ୍ତିକୁ ଦେଖେଁ ଚିନ୍ମୟ ଆକାରେ ।
ଦେବୀ ଆଉ ପୂଜକଙ୍କୁ ଦେଖୁଛି ମୁଁ ଯେତେ
ଆନନ୍ଦ ବଢ଼ୁଛି କ୍ରମେ ମୋ ହୃଦୟେ ତେତେ ।
ମନ୍ଦିର ପ୍ରତିଷ୍ଠା ଆଜ ହୋଇଛି ସାର୍ଥକ
ପାଷାଣ ବିଗ୍ରହେ ଦେବୀ ଯହିଁ ଜାଗରୂକ ।
ଏମନ୍ତ ଭାଳିଣ ଭାବେ ଗଦ ଗଦ ହୋଇ
ପ୍ରାସାଦେ ଫେରିଲେ କିଛି ଆଦେଶ ନ ଦେଇ ।
ଗୃହେ ବାହୁଡ଼ିଣ ପରେ ପ୍ରେରିଲେ ହୁକୁମ
ଭଟ୍ଟାଚାର୍ଯ୍ୟ ଇଚ୍ଛାମତେ କରିବେ କରମ ।
ତାଙ୍କୁ ଯେହ୍ନେ ବାଧାବିଘ୍ନ ନ ଦେବେକ କେହି
ସେଥିପ୍ରତି ସର୍ବେ ଥିବେ ସତରକ ହୋଇ ।
ଏମନ ଆଦେଶ ଦେଇ ମଥୁର ବିଶ୍ୱାସେ
ସବୁ କଥା ନିବେଦିଲେ ରାଣୀଙ୍କର ପାଶେ ।
ଭଟ୍ଟାଚାର୍ଯ୍ୟଙ୍କ ଅର୍ଚ୍ଚନେ ଜାଗ୍ରତ ଦେବତା
ଏହାଶୁଣି ଭକ୍ତିମତୀ ରାଣୀ ପୁଲକିତା ।
ପ୍ରଭୁଙ୍କର କଣ୍ଠସ୍ୱର ଅତୀବ ମଧୁର
ତହିଁରେ ଉଚ୍ଛ୍ୱାସପୂର୍ଣ୍ଣ ସଙ୍ଗୀତ ତାଙ୍କର ।
ଥରେ ମାତ୍ର ଯେହୁ ତାହା କରିଛି ଶ୍ରବଣ
ବାରମ୍ବାର ଶୁଣିବାକୁ ଧାଏଁ ତାର ପ୍ରାଣ ।
ଶ୍ୟାମାଙ୍କ ସଙ୍ଗୀତ ଯାହା ଶ୍ରୀମୁଖୁ ନିଃସୃତ
ଅମୃତର ମଧୁରତା ତାଠି ପରାଭୂତ ।
ମହାଭକ୍ତି ପରାୟଣା ରାଣୀ ରାସମଣି
ବେଳେ ବେଳେ ତେଜି ତାଙ୍କ ବିଷୟ କର୍ମାଣି,
ମନ୍ଦିରେ ଆସନ୍ତି ଧାଇଁ ପ୍ରଭୁ ଦେବ ପାଶେ
ଶ୍ୟାମା ସମ୍ବନ୍ଧୀୟ ଗୀତ ଶ୍ରବଣ ସକାଶେ ।
ଦେବୀଙ୍କ ମନ୍ଦିରେ ବସି ପ୍ରଭୁ ଗଦାଧର
ଗାଉଥିଲେ ଦିନେ ଗୀତ ଅତ୍ୟନ୍ତ ମଧୁର ।
ଭକ୍ତିମତୀ ରାଣୀ ତାଙ୍କ ସମୀପେ ବସିଣ
ଏକଚିତ୍ତେ ଶୁଣୁଥିଲେ ସେ ସଙ୍ଗୀତମାନ ।
ଏ କାଳେ ଘଟିଲା ତାଙ୍କ ଚିତ୍ତ ଚଞ୍ଚଳତା
ମନେ ପଡ଼ିଗଲା ମାତ୍ରେ ମକଦମା କଥା ।
ଯହିଁରେ କଲେଣି ସେହୁ ବହୁ ଅର୍ଥ ବ୍ୟୟ
ଅନ୍ତର ବ୍ୟାକୁଳ ଭାବି ଜୟ ପରାଜୟ ।
ସର୍ବ-ଘଟ ବାର୍ତ୍ତାବେତ୍ତା ପ୍ରଭୁ ନରହରି
ଅନ୍ୟମନା ହେବା କଥା କ୍ଷଣେ ଜାଣିପାରି ।
ବୃଥା ଚିନ୍ତା ତେଜି ଗୀତ ଶୁଣିବା ନିମନ୍ତେ
ଚାପୁଡ଼ାଏ ମାରିଦେଲେ ରାଣୀ ପୃଷ୍ଠ ପ୍ରାନ୍ତେ ।

ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇଲେ ତାଙ୍କୁ
ସମ୍ମୁଖରେ ଦେଖ ମୋର ବିଶ୍ୱ-ଜନନୀଙ୍କୁ ।
ସେ ଦିବ୍ୟ ରୂପ ଦେଖିଣ ପୁଣ୍ୟବତୀ ରାଣୀ
ଆନନ୍ଦେ ବିହ୍ୱଳା ହେଲେ, ନ ସ୍ଫୁରିଲା ବାଣୀ ।
ନେତ୍ରୁ ବହିଗଲା ଅଶ୍ରୁଧାର ଅନିବାର
ଦିବ୍ୟ ସୁଖ ଆସ୍ୱାଦନ ହୃଦୟ ମଧୁର ।
ରାଣୀଙ୍କୁ ଆଘାତ କଲେ ପୂଜକ ବ୍ରାହ୍ମଣ
ତାହା ଦେଖିଣ ମଥୁର ଚଞ୍ଚଳ ତକ୍ଷଣ ।
ବିପ୍ରଙ୍କୁ କଠିନ ଦଣ୍ଡ ନିଶ୍ଚୟ ଏଥର
ସେଥିରୁ ଲଭିବେ ନାହିଁ କେବେହେଁ ନିସ୍ତାର ।
ଏଠାରେ ଓଲଟା ଶାସ୍ତି ନ ଜାଣନ୍ତି କେହି
ମାୟା ମୁଗ୍ଧ ଜୀବେ ଅବା ଜାଣିବେ ତା କାହିଁ ?
ଶ୍ରୀମଧୁସୂଦନ ପ୍ରଭୁ କରୁଣାସାଗର
ଗୁରୁପୂଜା ଛଳରେ କଲେ ଚୈତ ସଞ୍ଚାର ।
ରାଣୀଙ୍କର ଦିବ୍ୟ ନେତ୍ର ମୁକୁଳି ତକ୍ଷଣ
ଧନ୍ୟା ହେଲେ ଲଭିଣ ସେ ଦେବୀଙ୍କ ଦର୍ଶନ ।
ମସ୍ତିଷ୍କ ବିକୃତ ନୁହେ ଭଟ୍ଟାଚାର୍ଯ୍ୟଙ୍କର
ଏସନ ସିଦ୍ଧାନ୍ତ କରି ବାହୁଡ଼ିଲେ ଘର ।
ଦିନ ଅଗ୍ରସର ହେଲା କ୍ରମେ ଯେତେ ଯେତେ
ଦିବ୍ୟୋନ୍ମାଦ ବୃଦ୍ଧିପ୍ରାପ୍ତ କ୍ରମେ ତା ସହିତେ ।
କେତେବେଳେ କି ଆକାର କଲା ତା ଧାରଣ
ଠିକଣା ରହିଲା ନାହିଁ କିଛିତ ପ୍ରମାଣ ।
କେତେବେଳେ କରଯୋଡ଼ି ଶ୍ୟାମା ସନ୍ନିଧାନେ
ପ୍ରାର୍ଥନା କରନ୍ତି ପ୍ରଭୁ ବିନୀତ ବଚନେ ।
"ନ ଚାହେଁ ମା ଲୋକଖ୍ୟାତି ପ୍ରତିପତ୍ତି ଧନ
ଚାହେଁ ନା ମୁଁ ଅଷ୍ଟସିଦ୍ଧି ଅନର୍ଥ କାରଣ ।
ନେ ଲେ, ତୋର ଅହଂକାର ଆଉ ଜ୍ଞାନାଜ୍ଞାନ
ନେ ଲେ ତୋର ଭଲମନ୍ଦ ମାନ ଅପମାନ ।
ଘେନ ଯା ଲେ ମାଆ ଶୁଦ୍ଧ ସର୍ବସ୍ୱ ମୋହର
ଭକତି ରତନ ଦେ ଲେ ବିନିମୟେ ତାର ।
ଅହଂବୁଦ୍ଧି ମୋ ଚିତ୍ତରୁ ଯିବ କେଉଁଦିନ
ଦୀନାପେକ୍ଷା ହେବି ଦୀନ, ହୀନାପେକ୍ଷା ହୀନ ।"
କେମନ୍ତେ ଶ୍ରୀଦେବରସ୍ୱେ ସାଧିଲେ ଦୀନତା
ଭକ୍ତି ଉପୁଜଇ ଚିତ୍ତେ ଶୁଣିଲେ ସେ କଥା ।
ଦେବୀଙ୍କ ମହିମା ଏବେ ଖ୍ୟାତ ଦେଶେ ଦେଶେ
ବହୁ ସାଧୁଏ ଆସନ୍ତି ଦର୍ଶନ ସକାଶେ ।
ତାଙ୍କ ଆଶ୍ରୟ ନିମନ୍ତେ ଖଞ୍ଜା ସଦାବ୍ରତ
ବିଶ୍ରାମ ଲଭିଣ ତହିଁ ସରବେ ତୃପତ ।
ଭକ୍ତିମତୀ ରାଣୀ ସାଧୁଙ୍କର ସେବା ପାଇଁ
ବିବିଧ ପ୍ରକାର ଖାଦ୍ୟ ଖଞ୍ଜିଥିଲେ ତହିଁ ।
ତା ସଙ୍ଗେ ସଂଯୁକ୍ତ ପୁଣି ଅନ୍ନଛତ୍ର ନିତି
ଦୀନଦୁଃଖୀ ଖାଇଯାନ୍ତି ସହିଁ ତୋଷେ ଅତି ।
ଯେତେକ ଉଚ୍ଛିଷ୍ଟ ପତ୍ର ପଡ଼ଇ ଚୌଦିଗେ
ଯତନେ ଗୋଟାଇ ତାକୁ ପ୍ରଭୁ ମହାବେଗେ ।
ଶିରେ ବୋହି ନିକ୍ଷେପନ୍ତି ଜାହ୍ନବୀ ଗର୍ଭରେ
ତା ପରେ ମାର୍ଜ୍ଜନୀ ଧରି ଓଳାନ୍ତି ଶ୍ରୀକରେ ।
କେତେବେଳେ ପୁଣି ପ୍ରଭୁ ବ୍ରହ୍ମାଣ୍ଡ ଠାକୁର
ବର୍ଜ୍ଜନ କରିବା ପାଇଁ ମନୁଁ ଅହଂକାର ।
କାଙ୍ଗାଳୀ ଉଚ୍ଛିଷ୍ଟ ଖାନ୍ତି ନିର୍ବିକାର ଚିତ୍ତେ
ନାରାୟଣ ବିରାଜନ୍ତି ଜାଣି ସର୍ବଭୂତେ ।
କେବେ ପୁଣି ଜଳପାତ୍ର ମାର୍ଜ୍ଜନୀ ଘେନିଣ
ସଫା ସୁତୁରା କରନ୍ତି ପାଇଖାନାମାନ ।
ଚନ୍ଦନରୁ ଆରମ୍ଭ କରି ପୁରୀଷ ପର୍ଯ୍ୟନ୍ତ
ପଞ୍ଚଭୂତର ବିକାର ଅଟଇ ସମସ୍ତ ।
ସର୍ବ ଦ୍ରବ୍ୟେ ସମଜ୍ଞାନ ସାଧନ ନିମିତ୍ତେ
ଜିହ୍ୱାରେ ସ୍ପର୍ଶନ୍ତି ବିଷ୍ଠା ନିର୍ବିକାର ଚିତ୍ତେ ।
ମାନସୁଁ କାଞ୍ଚନାସକ୍ତି କରିବାକୁ ଦୂର
ଜାହ୍ନବୀ ତଟରେ ବସି ବ୍ରହ୍ମାଣ୍ଡ ଠାକୁର ।
ମୁଦ୍ରା ଆଉ ମାଟି ବେନି ହସ୍ତରେ ଧରିଣ
ସଦସତ୍ ବିଚାରରେ ହୁଅନ୍ତି ମଗନ ।
"ଆରେ ମନ ! ଏହାକୁ ତ ବୋଲନ୍ତି ମୃତ୍ତିକା
ଏହାର ଶକତି ନାନା ଶସ୍ୟ ଉତ୍ପାଦିକା ।
ତଦନ୍ତେ ମୁଦ୍ରାକୁ ଧରି ବୋଲନ୍ତି ଶ୍ରୀପତି
ରଜତ ଖଣ୍ଡର ଏହା ଆରେକ ଆକୃତି ।
ଏହାର ଶକତିବଳେ ମୃତ୍ତିକା ପରାୟ
କିଣା ବିକା ହୁଏ ନାନା ଦରବ ନିଚୟ ।
ମୁଦ୍ରା ଆଉ ମାଟି ତେବେ ଉଭୟ ସମାନ
ଈଶ୍ୱର ଦର୍ଶନ ପଥେ ଦୁହେଁ ଅକଲ୍ୟାଣ ।
ମନ ମଧ୍ୟେ ସମଜ୍ଞାନ ଦୃଢ଼ୀଭୂତ ହେଲେ
ଫିଙ୍ଗନ୍ତି ମୃତ୍ତିକା ମୁଦ୍ରା ଜାହ୍ନବୀ ସଲିଳେ ।"
କେବେ ପୁଣି ବିଭୁଙ୍କର ଦର୍ଶନ ସକାଶ
ବିରହ ବହ୍ନିରେ ଦଗ୍ଧ ହୃଦୟ ଉଦ୍ଦୁଶ ।

"ଧନ ଗଲା ଆଲୋ ମାଆ ! ନ ଦେଲୁ ଦର୍ଶନ"
ଏମନ୍ତ ଭାଷିଣ କେତେ କରିଲେ କ୍ରନ୍ଦନ ।
କେବେ ପୁଣି ଭୂମେ ପଡ଼ି କରନ୍ତି ଚିତ୍କାର
ଲୋକେ ଧାଇଁ ରୁଣ୍ଡ ହୋନ୍ତି ଚୌଦିଗେ ତାଙ୍କର ।
ଭିତରେ ବୁଝିବେ କିବା ତାଙ୍କର ଅବସ୍ଥା
ଶୂଳବ୍ୟାଧି ବୋଲି ତେଣୁ କରନ୍ତି ଚିକିତ୍ସା ।
ବେଳେ ବେଳେ ସେ ଯନ୍ତ୍ରଣା ଅସହ୍ୟ ଏସନ
ଉପାୟ ବିହୀନ ହୋଇ ପ୍ରଭୁ ଭଗବାନ ।
ଭୂତଳେ ଘଷନ୍ତି ମୁଖ ଯୋରେ ଏପ୍ରକାର
ପଦ୍ମମୁଖ ଛିଣ୍ଡି ଯାଇ ବହଇ ରୁଧିର ।
ତହିଁରେ ଭ୍ରୂକ୍ଷେପ ନାହିଁ ତାଙ୍କର କିଞ୍ଚିତ
ଏପରି ଭୋଗିଲେ ଦେବ କଷଣ ବହୁତ ।
ଏକମାତ୍ର ଜୀବନ୍ତ ବ୍ରତ ଚିତ୍ତେ ଧରି
ଅସାଧ୍ୟ ସାଧନ କେତେ ସାଧିଲେ ଶ୍ରୀହରି ।
ସେଥିର ସୁଫଳ ଯାହା ରଖିଗଲେ ସମ୍ଭୃ
ସେଦିଗେ କମାଇ ମନ ! ତୋହର ଅରୁଚ ।
ବୁଝି ବୁଝ ନାହିଁ ଭବ ହାଟ ବଳିଆର
ହାଟ ଭାଙ୍ଗିଗଲେ କେହି ନୁହଇ କାହାର ।
ଯାର କାର୍ଯ୍ୟ ସରିଯାଏ ଚାଲିଯାଏ ସେହି
ଅପେକ୍ଷା କରଇ ନାହିଁ କାହାପାଇଁ କେହି ।
ତେବେ କିଆଁ ବାୟାମନ ! କ୍ଷଣିକ ସକାଶେ
ଅଶ୍ରଦ୍ଧା କରୁଛୁ ଚିଦାନନ୍ଦ ପରମେଶେ ।
ଅମୃତକୁ ବଳି ତାଙ୍କ ଚରିତ ମଧୁର
ଆସ୍ୱାଦିଲେ ବୁଝିବୁରେ ମାହାତ୍ମ୍ୟ ତାହାର ।
ଧ୍ୟାନେ ନିମଜ୍ଜନ୍ତି ଯେବେ ପ୍ରଭୁ ଜଗପୂତ
ସେ କାଳେ ଯେମନ୍ତ ହେଲା ଅପୂର୍ବାନୁଭୂତ ।
ସାଧୁଜନେ ସାବଧାନେ କରନ୍ତୁ ଶ୍ରବଣ
ଶ୍ରୀମୁଖ ନିଃସୃତ ସେହି ଦିବ୍ୟ ବିବରଣ ।
"ଏ ଶରୀରେ ସମୁଦାୟ ଗ୍ରନ୍ଥି ଅଛି ଯେତେ
ପାଦରୁ ଆରମ୍ଭ କରି ଶିର ପର୍ଯ୍ୟନ୍ତେ !
ଖଟଖଟ ଶବ୍ଦ ହୋଇ ଗୋଟି ପରେ ଗୋଟି
ତାଲାରେ ବୁଲିଲେ ଯେହ୍ନେ ହୁଏ ଚାବିକାଠି ।
କିଏ ଯେହ୍ନେ ସେହିପରି ଦେହ ଅଭ୍ୟନ୍ତରେ
ଲଗାଇ ଦିଅଇ ଚାବି ଗ୍ରନ୍ଥିମାନଙ୍କରେ ।
ଯେତେକ୍ଷଣ ଯାଏ ଧ୍ୟାନ ଶେଷ ନ ହୁଅଇ
ଅଙ୍ଗପ୍ରତ୍ୟଙ୍ଗ ଚାଳନେ ସମର୍ଥ ନ ଥାଇ ।
ଏପରି କି ଶରୀରକୁ ବୁଲାଇ ଟିକିଏ
ଆସନ ପରିବର୍ତ୍ତନେ ଶକତ ନ ଥାଏ ।
କିମ୍ବା ଧ୍ୟାନ ପରିତେଜି ଅନ୍ୟତ୍ର ଗମନ
ଅଭିଲାଷ କଲେ ସୁଦ୍ଧା କ୍ଷମତାବିହୀନ ।
ଊର୍ଦ୍ଧ୍ୱଦିଶୁ ଖଟଖଟ ଶବ୍ଦେ ପୁନର୍ବାର
ନ ଫିଟଇ ଯେତେକ୍ଷଣ ସେ ଗ୍ରନ୍ଥି ଅଙ୍ଗର
କେ ଯେହ୍ନେ ବସାଇ ରଖେ ମୋତେ ବଳାତ୍କାରେ
ଧ୍ୟାନବେଳେ ଅନୁଭୂତ ନିତ୍ୟ ଏ ପ୍ରକାରେ ।"
କି ଅବା ବର୍ଣ୍ଣିବ ମୁହିଁ ଧ୍ୟାନର ମହିମା
ପାଇନାହାନ୍ତି ବ୍ରହ୍ମାଦି ଦେବ ଯାର ସୀମା ।
ସେ କାଳେ ହୁଅନ୍ତି ମଗ୍ନ ଭାବେ ଏ ପ୍ରକାର
ଜଡ଼ କି ଚେତନ ଅଙ୍ଗ ବୁଝିବା ଦୁଷ୍କର ।
ଧ୍ୟାନରେ ଲଭିଲେ ଯେଉଁ ଦିବ୍ୟ ଦରଶନ
ସେ ବୃତ୍ତାନ୍ତ ଏ ମର୍ତ୍ତ୍ୟରେ ଅପୂର୍ବ କଥନ ।
"ପ୍ରଥମାବସ୍ଥାରେ ଜ୍ୟୋତି ବିନ୍ଦୁ ବିନ୍ଦୁ ହୋଇ
ଖଦ୍ୟୋତ ସଦୃଶ ଦୃଷ୍ଟିଭଙ୍ଗେ ବିଚରଇ ।
ଦ୍ୱିତୀୟାବସ୍ଥାରେ ପୁଞ୍ଜ ପୁଞ୍ଜ ଜ୍ୟୋତିଃ ରାଶି
କୁଜ୍ଝଟିକା ସମ ଚତୁର୍ଦ୍ଦିଗେ ଯାଏ ଭାସି ।
ଗଳିତ ରଜତ ପ୍ରାୟ ସମୁଜ୍ଜ୍ୱଳ ଜ୍ୟୋତି
ତୃତୀୟାବସ୍ଥାରେ ହୁଏ ତାଙ୍କ ଅନୁଭୂତ ।
ଶେଷେ ମନୋହର ଦୃଶ୍ୟ ଜ୍ୟୋତିଃ ପାରାବାର
ଯାହାର ତରଙ୍ଗେ ଖେଳେ ବିଶ୍ୱ ଚରାଚର ।"
ଏମନ୍ତ ଦେଖନ୍ତି କେବେ ମୁଦ୍ରିତ ନୟନେ
କେତେବେଳେ ଅବା ଚକ୍ଷୁ ଉନ୍ମୁକ୍ତ ଯେ କ୍ଷଣେ ।
ନିଜେ ପୁଣି କେତେବେଳେ ସେ ଜ୍ୟୋତିରେ ଲୀନ
ଅଙ୍ଗ ହୁଏ ଜଡ଼ ପ୍ରାୟ, ଶୂନ୍ୟ ବାହ୍ୟ ଜ୍ଞାନ ।
ଦେହୀ ଭାବ ଦୂର ହୋଇ ସମ୍ପୂର୍ଣ୍ଣରୂପରେ
ମନ ମିଶିଯାଏ ଚିଦାନନ୍ଦ ପାରାବାରେ ।
ନାନା ଦିବ୍ୟ ଦରଶନ ହେଲା ନିତ୍ୟ ନିତ୍ୟ
ଜାଣି ନ ପାରିଲେ ପ୍ରଭୁ ସେ ସବୁର ତଥ୍ୟ ।
ଶୁଭ କି ଅଶୁଭ ଫଳ ହୁଅଇ ଏଥିରେ
ଚିନ୍ତାକୁଳ ଦେବବର୍ଯ୍ୟେ ଏମନ୍ତ ବିଷୟରେ ।
କୌଣସି ସିଦ୍ଧାନ୍ତ କରି ନ ପାରିଣ ସ୍ଥିର
କହିଲେ ଅତି ବ୍ୟାକୁଳେ ଦେବୀଙ୍କ ଆଗର ।
"ମାଆ ମାଆ ଏସବୁ ଯା ଦେଖୁଅଛି ମୁହିଁ
ଏଥିର ମରମ କିଛି ବୁଝିପାରୁ ନାହିଁ ।

ତନ୍ତ୍ର ମନ୍ତ୍ର କିଛୁ ମାତ୍ର ଜଣା ନାହିଁ ମୋତେ
ସେଥିପାଇଁ ଚିତ୍ତେ ମୋର ଭାବନା ନିରତେ ।
ଯା'କଲେ ପ୍ରାପତ ହେବ ତୋହର ଦର୍ଶନ
ଦୟା ବହି କର ମାଗୋ ସେହି ଶିକ୍ଷା ଦାନ ।
ତୋ ବିନୁ ମୋହର କେହି ନାହିଁ ତ ସହାୟ
ଯାହା ପାଶେ ଯାଇ ମୁହିଁ ଘେନିବି ଆଶ୍ରୟ ।
ତୁ ଯଦି ନ ଦେବୁ ଶିକ୍ଷା ଅଲୋ ! ଜଗଦମ୍ବେ !
କିଏ ତେବେ ଶିକ୍ଷା ଦେବ ଆଉ ମୋତେ ଭବେ ।"
ଏମନ୍ତ ପ୍ରାର୍ଥନା କରି ଦେବୀ ସନ୍ନିଧାନେ
ରୋଦନ କରନ୍ତି ବସି ଦେବ ଅନୁକ୍ଷଣେ ।
ସୁତର କାତର ବାଣୀ ଶୁଣି ଏ ପ୍ରକାର
ଆସନ ଟଳିଲା ଦେବୀ ଭଗବତୀଙ୍କର ।
ଶିକ୍ଷୟିତ୍ରୀ ହୋଇ ସେହୁ କେବଣ ଉପାୟେ
ଶିକ୍ଷା ଦାନ କଲେ ତାଙ୍କୁ ବିବିଧ ବିଷୟେ ।
ଶ୍ରବଣେ କୀର୍ତ୍ତନେ ନିତ୍ୟ ସେହି ବିବରଣ
ଭକ୍ତି ଉପୁଜଇ ଚିତ୍ତେ ହେଲେହେଁ ପାଷାଣ ।
ଶ୍ରୀଦେବ ବୋଲନ୍ତି "ଏକ ସନ୍ନ୍ୟାସୀ ପୁରୁଷ
ମୋ ଦେହୁଁ ବାହାରି ଠିଆ ହୁଅନ୍ତେ ଗୋ ପାଶ ।
ଯେତେବେଳେ ଯେଉଁ ଉପଦେଶ ଆବଶ୍ୟକ
ତା ଦେଇଣ ହେଲେ ମୋର ପଥ ପ୍ରଦର୍ଶକ ।
ସାଧନ ଭଜନେ ସ୍ୱଳ୍ପ ଅମନସ୍କ ହେଲେ
ନାନା ଭୟ ପ୍ରଦର୍ଶନ କରନ୍ତେ ସେ କାଳେ ।
ଶାଣିତ ତ୍ରିଶୂଳ ଧରି କହନ୍ତି ପୁରୁଷ
କପଟପେ ନ କଲେକ ମନ ସନ୍ନିବେଶ ।
ଏହି ଶାଣିତ ତ୍ରିଶୂଳେ ବକ୍ଷକୁ ତୁମ୍ଭର
ବିଦାରଣ କରିଦେବି କ୍ଷଣେ ନାରଖାର ।
କେବେ ଅବା ପୁଣି ସେହୁ ସହାସ୍ୟ ବଦନେ
ଉତ୍ସାହ ଦଅନ୍ତି କେତେ ସାଧନ ଭଜନେ ।
କେଉଁ ସାଧନ କି ଭଳି ହେବ ଅନୁଷ୍ଠିତ
ଫଳାଫଳ ତାର ଅବା ହୋଇବ କେମନ୍ତ ।
ଏ ସବୁ ବିଷୟେ ନାନା ଉପଦେଶ ଦେଇ
ମୋର କଳେବର ପୁଣି ବିଲୀନ ହୁଅଇ ।"
ଯେ ପାପ ପୁରୁଷ ପ୍ରାଣୀ ଶରୀରେ ଥାଇଣ
ଭୋଗବିଳାସେ କରଇ ଚିତ୍ତ ଆକର୍ଷଣ ।
ତାହାକୁ ସମ୍ପୂର୍ଣ୍ଣ ଧ୍ୱଂସ କରିବା ନିମିତ୍ତ
ମାନସେ ସଂକଳ୍ପ କଲେ ଶ୍ରୀଦେବ ଅଦ୍ଭୁତ ।
ବସିଥିଲେ ବେଳେ ବନେ ପଞ୍ଚବଟୀ ମୂଳେ
ଧ୍ୱଂସ କଲେ ତାକୁ ତହିଁ ଅପୂର୍ବ କୌଶଳେ ।
ଚିନ୍ତା ମାତ୍ରେ ସେ ପୁରୁଷ ଦେହରୁ ବାହାର
ବର୍ଣ୍ଣରେ ତ୍ରିପଣ୍ଡ କଳା ଭୀଷଣ ଆକାର ।
ବେନି ଲୋଚନ ଆରକ୍ତ ଯେସନ ମହୁଆ
ଟଳି ଟଳି ଆସି ତାଙ୍କ ପାଶେ ହେଲା ଠିଆ ।
ପର ମୁହୂର୍ତ୍ତିରେ ଏକ ସନ୍ନ୍ୟାସୀ ପୁରୁଷ
ଅଙ୍ଗୁ ବାହାରିଲେ ପିନ୍ଧି ଗେରୁକଷ ବାସ ।
ଦରଶନେ ସୌମ୍ୟମୂର୍ତ୍ତି ହସ୍ତରେ ତ୍ରିଶୂଳ
ଆଚମ୍ବି କାଳସ୍ୱରୂପେ ବଧିଲେ ଚଣ୍ଡାଳ ।
ପାପସ୍ୱରୂପ ଏସନେ ହେଲାରୁ ବିନଷ୍ଟ
ଦିବ୍ୟଦେହ ଶ୍ରୀଅଙ୍ଗରେ ପୁନଶ୍ଚ ପ୍ରବିଷ୍ଟ ।
ଦୂରସ୍ଥ ଦେବଦେବୀଙ୍କ ଦର୍ଶନ ନିମିତ୍ତ
ଅଭିଳାଷ ହେଲେ ତାଙ୍କ ହୃଦୟେ ଜାଗ୍ରତ ।
କିମ୍ବା ଦୂରେ ହେଉଥିଲେ ଭଜନ କୀର୍ତ୍ତନ
ତାହା ଶୁଣିବାକୁ ମନ ହେଲେ କଦାଚନ ।
ଦେହରୁ ବାହାରି ପୁଣି ସେ ଦେବପୁରୁଷ
ଜ୍ୟୋତିର୍ମୟ ମାର୍ଗେ ତହିଁ ହୁଅନ୍ତି ପ୍ରବେଶ ।
ଦର୍ଶନ ଶ୍ରବଣ ସୁଖ ଉପଭୋଗ କରି
ପୁଣି ଦେହେ ଲୀନ ହୋନ୍ତି ସେହି ମାର୍ଗ ଧରି ।
ଏମନ୍ତେ ଶ୍ରୀଅଙ୍ଗୁ ଯେତେ ରୂପର ଉଦ୍ଭବ
ସାଧ୍ୟ କାର କିଏ ତାହା କଳନା କରିବ ।
ପ୍ରସନ୍ନା ହୋଇଣ ଏବେ ଦେବୀ ଜଗନ୍ମାତା
ନିରତ ରହିଲେ ପାଶେ ସହଚର ଯଥା ।
ପ୍ରାତଃକାଳେ ଶଯ୍ୟା ତେଜି ପ୍ରଭୁ ଭଗବାନ
ଉଦ୍ୟାନେ କରନ୍ତି ଯେବେ କୁସୁମ ଚୟନ ।
ଦେବୀ ଭଗବତୀ ତାଙ୍କ ସାଥେ ସାଥେ ରହି
ନାନା କ୍ରୀଡ଼ା କହୁରୂକ ଉନମତ୍ତ ତହିଁ ।
କେତେବେଳେ ପାଶେ ବସି ସହାସ୍ୟ ବଦନେ
ରଙ୍ଗରସ ହୁଏ କେତେ କଥୋପକଥନେ ।
ଗମ୍ଭୀର ଭାବରେ କେବେ ଶିକ୍ଷାଦାତ୍ରୀ ସମ
ସାଧନ ଭଜନ ପାଇଁ କଲେ ଶିକ୍ଷାଦାନ ।
କେବେ ବା ଦେବୀଙ୍କୁ ଭୋଗ ନିବେଦନ କାଳେ
ବାଳିକା ରୂପେ ସେ ଆସି ତୌରୁକେ ଭୁଞ୍ଜିଲେ ।
କେତେବେଳେ ମନ୍ତ୍ରପାଠ ନ ହେଉଣୁ ଶେଷ
ଭୋଜନେ ବସନ୍ତି ଦେବୀ ଆଗ୍ରହେ ବିଶେଷ ।

ଆଦରେ କହନ୍ତି ତାଙ୍କୁ ପ୍ରଭୁ ନାରାୟଣ
ଟିକିଏ ସମ୍ଭାଳ ମନ୍ତ୍ର କରେ ଉଚ୍ଚାରଣ ।
ଅନୁନୟ ନ ମାନିଲେ ଦେବୀ ଭଗବତୀ
ପୂଜାର ଆଦ୍ୟରୁ ତେବେ ଭୋଗ ନିବେଦନ୍ତି ।
ପାଷାଣ ମୂରତି ଏବେ ଚିନ୍ମୟ ଆକାର
ତାଙ୍କର ଉଜ୍ଜ୍ୱଳ ଜ୍ୟୋତିଃ ଚୌଦିଗେ ବିସ୍ତାର ।
ସତ୍ୟ ସତ୍ୟ ଦେବୀଙ୍କର ନାସିକାରନ୍ଧ୍ରରୁ
ନିଃଶ୍ୱାସ ବହଇ ଯଥା ପ୍ରାଣୀଙ୍କ ନାସାରୁ ।
ଚିଦ୍‌ଘନ ମୂରତି ରୂପେ ଦେବୀ ବିରାଜିତ
ଶ୍ରୀଅଙ୍ଗର ଛାୟା କାହିଁ ନ ହୁଏ ଲକ୍ଷିତ ।
ଆଲୋକ ଧରଣ ପ୍ରଭୁ ଯେତେ ନିରେଖନ୍ତି
ଦେବୀଙ୍କର ଛାୟା କାହିଁ ଦେଖି ନ ପାରନ୍ତି ।
ନିଶୀଥେ ଦେଖନ୍ତି ପ୍ରଭୁ ଅନେକ ସମୟେ
ମନ୍ଦିରୁ ବାହାର ଦେବୀ ବାଳିକା ପରାୟେ ।
ମୁକ୍ତକେଶେ ବିଚରନ୍ତି ପ୍ରାଙ୍ଗଣ ମଧ୍ୟରେ
କେବେ ପୁଣି ଆରୋହନ୍ତି ମନ୍ଦିର ଚୂଡ଼ାରେ ।
ଜାହ୍ନବୀର ଶୋଭା ତହୁଁ କରନ୍ତି ଦର୍ଶନ
କମ୍ରା କଲିକତା ଶୋଭା ଦର୍ଶନେ ମଗନ ।
ଏମନ୍ତେ ଜାଗ୍ରତା ହୋଇ ଜଗତ ଜନନୀ
ଯେତେ କ୍ରୀଡ଼ା କଲେ ତାହା ଅପୂର୍ବ କାହାଣୀ ।
ଦକ୍ଷିଣେଶ୍ୱର ମନ୍ଦିର ମର୍ତ୍ତ୍ୟରେ ବୈକୁଣ୍ଠ
ବ୍ରହ୍ମାଣ୍ଡ ଜନନୀ ଯହିଁ ଏମନ୍ତେ ପ୍ରକଟ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ କୀର୍ତ୍ତନେ ହୋଇଲେ ଭବସିନ୍ଧୁ ପାର ।

ବୋଲ ଥାଉଁ ଭଜ ମନ ଅଭୟ ଚରଣ
କର୍ଣ୍ଣଧାର ରୂପେ ହେବେ ପ୍ରଭୁ ଭଗବାନ ।

---

## ଷଷ୍ଠ ଅଧ୍ୟାୟ

ଅତ୍ୟନ୍ତ ଅନୁରାଗର ବଶବର୍ତ୍ତୀ ହୋଇ ନିତ୍ୟନୈମିତ୍ତିକ ପୂଜାରୁ କ୍ଷାନ୍ତ ଓ ତାଙ୍କ ସ୍ଥାନରେ ତାଙ୍କ ଖୁଲ୍ଲତାତଙ୍କ ପୁତ୍ର ଶ୍ରୀରାମ ତାରକଙ୍କ ଶ୍ୟାମାଙ୍କ ପୂଜକ ପଦେ ନିଯୁକ୍ତ ।

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅନାଦି କାରଣ ବିଭୁ ବିଶ୍ୱଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅପାର କରୁଣା ସିନ୍ଧୁ ବ୍ରହ୍ମ ସନାତନ ।
ଦିବସ କ୍ରମଶଃ ଯେତେ ହୋଇଲା ଅଗ୍ରସର
ଅନୁରାଗ ବୃଦ୍ଧି ହେଲା ଉତ୍ତରୋତ୍ତର ।
ଦେବୀ ଧ୍ୟାନ ଦେବୀ ଜ୍ଞାନ ଦେବୀହିଁ ସକଳ
ଦେବୀଙ୍କ ନିମନ୍ତେ ପ୍ରାଣ ସତତ ବ୍ୟାକୁଳ ।
ଆସ୍ଥା ନ ରହିଲା ଆଉ ପୂଜାବିଧି ପ୍ରତି
ଅର୍ଚ୍ଚନ କରନ୍ତି ତାଙ୍କ ବାସନା ଯେମତି ।
ନିତି ରହିଲେ ଏବେ ଭାବେ ନିମଗନ
ଶାସ୍ତ୍ରବିଧି ପାଳିବାକୁ ହୁଏ ବିସ୍ମରଣ ।
ସ୍ନାନ ଅବକାଶ ଆଉ ନ ହେଉଣୁ ଶେଷ
କେବେ କେବେ ନିବେଦନ୍ତି ଭୋଗ ଦେବୀ ପାଶ ।
କେବେ ପୁଣି ଧ୍ୟାନେ ମଗ୍ନ ହୋନ୍ତି ଏ ପ୍ରକାର
ବିସ୍ମରନ୍ତି ଏକାବେଳେ ଅସ୍ତିତ୍ୱ ତାଙ୍କର ।
ପୂଜା ନିମିତ୍ତ ଯା ଥାଏ କୁସୁମ ଚନ୍ଦନ
ତହିଁରେ କରନ୍ତି ନିଜ ଶ୍ରୀଅଙ୍ଗ ମଣ୍ଡନ ।
ସ୍ୱଳ୍ପକେ ତନ୍ମୟ ଭାବ ଯେବେ ହୁଏ ହ୍ରାସ
ବିରହ ବେଦନା ହୃଦେ ଉପୁଜେ ବିଶେଷ ।
ଅନୁରାଗ ପୂର୍ଣ୍ଣଭକ୍ତି ପ୍ରବଳ ବାତ୍ୟାରେ
ପ୍ରାଣ ମନ ଆଲୋଡ଼ିତ ହେଲା ନିରନ୍ତରେ ।
ଉତ୍ତେଜନା ଅବଶେଷେ ଏପରି ପ୍ରବଳ
ହୃଦୟେ ଜ୍ୱଳିଲା ଯେହ୍ନେ ବହ୍ନି ହଳାହଳ ।
ତା ପ୍ରଭାବେ ଅଙ୍ଗ ଜ୍ୱାଳା ହେଲା ଏ ପ୍ରକାର
ଘରେ ବା ବାହାରେ ଶାନ୍ତି ନୋହିଲା ତାଙ୍କର ।
ଓଦା ଗାମୁଛାକୁ ଶିରେ କରଣ ସ୍ଥାପନ
ଜାହ୍ନବୀରେ ବୁଡ଼ିଥାନ୍ତି ପ୍ରଭୁ ଅନୁକ୍ଷଣ ।

ପ୍ରହର ପ୍ରହର କାଳ ଏ ସ୍ତବେ ଅତୀତ
ତେବେ ମଧ୍ୟ ନ ଲଭିଲେ ଶାନ୍ତି କଥଞ୍ଚିତ ।
ଏସନ ଅବସ୍ଥା ଦେଖି ମଥୁର ମୋହନ
ବାତ ବ୍ୟାଧି ଭାବି ପଣା ଖଞ୍ଜିଲେ ବହନ ।
ଦେବୀଙ୍କର ଯଥାବିଧି ଅର୍ଚ୍ଚନ ନିମିତ୍ତ
ଅନ୍ୟ ଦ୍ୱିଜ ନିଯୋଜିବେ କଲେ ସ୍ଥିରୀକୃତ ।
ରାମ ତାରକ ପ୍ରଭୁଙ୍କ ଖୁଲ୍ଲତାତ ସୁତ
କର୍ମ ଅନ୍ୱେଷଣେ ଏବେ ଏଠି ଉପସ୍ଥିତ ।
ସୁପଣ୍ଡିତ ନିଷ୍ଠାଚାରୀ ବିପ୍ର ଜଣେ ପାଇ
ଶ୍ରୀମଥୁର ନିଯୋଜିଲେ ତାଙ୍କୁ ପୂଜା ପାଇଁ ।
ରାମତାରକର ଅନ୍ୟ ନାମ ହଲଧାରୀ
ଶକ୍ତି ପୂଜକ ହେଲେହେଁ ବିଷ୍ଣୁଭକ୍ତ ଭାରି ।
ଦେବୀଙ୍କଠି ପଶୁବଳି ପ୍ରଥାର ଦର୍ଶନେ
ନିଷ୍ଠାଚାରୀ ହଲଧାରୀ ଅତି କ୍ଷୁଣ୍ଣ ମନେ ।
ନିଷ୍ଠା ସହ ପୂଜିବାକୁ ଚିତ୍ତେ ନାହିଁ ପ୍ରୀତି
ଏଥିରେ ଶ୍ରୀଜଗନ୍ମାତା ଅସନ୍ତୁଷ୍ଟ ଅତି ।
କଥିତ ହୁଅଇ ଦିନେ ଦ୍ୱିଜ ହଲଧାରୀ
ସନ୍ଧ୍ୟା କରୁଥିଲେ ବସି ନିତ୍ୟ ପୂଜା ସାରି ।
ଭୟଙ୍କରୀ ମୂର୍ତ୍ତି ଧରି ଶ୍ରୀଦେବୀ ଏକାଳେ
ସହସା ତାଙ୍କ ସମ୍ମୁଖେ ଉପସ୍ଥିତ ହେଲେ ।
ଆଦେଶିଲେ "ଶୁଣ ଦ୍ୱିଜ ! ମୋହର ବଚନ
ତୁମ୍ଭ ପୂଜା ନ କରିବି କେବେହେଁ ଗ୍ରହଣ ।
ଲଙ୍ଘନ କଲେକ ତୁମ୍ଭେ ଏ ଆଜ୍ଞା ମୋହର
ସମନ ସଦନେ ଯିବ ସନ୍ତାନ ତୁମ୍ଭର ।"
ମାନସ-ବିକାର ଭାବି ଦେବୀଙ୍କ ଆଜ୍ଞାକୁ
ବିରତ ନୋହିଲେ ଦ୍ୱିଜ ପୂଜା କରିବାକୁ ।
ଦେବୀଙ୍କ ଆଦେଶମତେ କିଛିକାଳ ପରେ
ହଲଧାରୀଙ୍କ ସନ୍ତାନ ଗଲେ ଯମପୁରେ ।
ଦେବୀଙ୍କର ଆଜ୍ଞା ଦ୍ୱିଜ ସୁମରି ମାନସେ
ତାଙ୍କ ପୂଜାକାର୍ଯ୍ୟୁ କ୍ଷାନ୍ତ ହେଲେ ଅବଶେଷେ ।
ହୃଦୟ ନିଯୁକ୍ତ ହେଲେ ଦେବୀଙ୍କ ପୂଜକ
ହଲଧାରୀ ହେଲେ ରାଧାକୃଷ୍ଣଙ୍କ ସେବକ ।
ଦେବୀଙ୍କ ଆଜ୍ଞାରେ ତାଙ୍କ ସୁତ ଗଲା ନାଶ
ତାମସୀ ମୂରତି ଦେବୀ ସୁଦୃଢ଼ ବିଶ୍ୱାସ ।
ପ୍ରଭୁଙ୍କୁ କହିଲେ ଡାକି ଦିନେ ଦ୍ୱିଜବର
"ତମୋଗୁଣୀ ଦେବୀ ତୁମ୍ଭେ କିପାଁ ପୂଜା କର ।
ଏଥିରେ ନୋହିବ କେଭେଁ ତୁମ୍ଭର ମଙ୍ଗଳ
ବୃଥାରେ ଯାଉଛି କିପାଁ ବହୁମୂଲ୍ୟ କାଳ ।"
ଜଗଜ୍ଜନନୀଙ୍କ ନିନ୍ଦା ଶୁଣିଣ ଏମନ୍ତ
ଦେବରାୟେ ହୋଇଲେକ ବ୍ୟଥିତ ଅତ୍ୟନ୍ତ ।
ଯା କହିଲେ ହଲଧାରୀ ତାର ସତ୍ୟାସତ୍ୟ
ଜାଣିବାକୁ ଅତି ବ୍ୟଗ୍ର ହେଲା ତାଙ୍କ ଚିତ୍ତ ।
ଖରତରେ ଆସି ତହୁଁ ଦେବୀ ସନ୍ନିଧାନେ
ତାହାଙ୍କୁ ପୁଛିଲେ ସ୍ନେହେ ବାଳକ ସମାନେ ।
"ଆଲୋ ମା ! ହଲଧାରୀ କହୁଅଛି ମୋତେ
ତମୋଗୁଣେ ବିରାଜିଛୁ ତୁହି ଏ ଜଗତେ ?
ଏଥିରେ ମୋ ମନେ ଜାତ ବିଷମ ସନ୍ଦେହ
ସତ୍ୟ କି ଅସତ୍ୟ ଏହା ଫେଡ଼ି ମୋତେ କହ ।"
ଶିଶୁକୁ ପ୍ରବୋଧି ଦିଏ ଜନନୀ ଯେସନ
ହିତବାଣୀ କହି ଦେବୀ ତୋଷିଲେ ତେସନ ।
ଏମନ୍ତେ ପ୍ରାପତ ହୋଇ ଯଥାର୍ଥ ଉତ୍ତର
ହଲଧାରୀ ପାଶେ ଦେବ ଧାଇଁଲେ ସତ୍ୱର ।

ମନ୍ଦିରେ ଦେଖିଣ ତାଙ୍କୁ ପୂଜାରେ ଆସୀନ
ଭାବାବେଶେ ତାଙ୍କ ସ୍କନ୍ଧେ କଲେ ଆରୋହଣ ।
ହୁଙ୍କାରି କହିଲେ ତାଙ୍କୁ ଆରେ ରେ ପାମର !
"ତାମସୀ କହୁଛୁ ତୁହି ମାତାଙ୍କୁ ମୋହର
ଜାଣୁନା କି ମାତା ମୋର ଏ ବିଶ୍ୱଜନନୀ
ଶୁଦ୍ଧ ସତ୍ତ୍ୱ ଗୁଣମୟୀ ତ୍ରିଲୋକ-ତାରିଣୀ ।"
ପ୍ରଭୁଙ୍କ ଶ୍ରୀଅଙ୍ଗ ସ୍ପର୍ଶେ ହଲଧାରୀଙ୍କର
ଦିବ୍ୟ ଲୋଚନ ଉନ୍ମିଲା ନିମେଷ ମଧ୍ୟର ।
ତକ୍ଷଣେ ସେ ପାଣେ ପ୍ରାଣେ କଲେ ଅନୁଭବ
ପ୍ରଭୁଙ୍କଠି ମୂର୍ତ୍ତିମନ୍ତ ଦେବୀ ଆବିର୍ଭାବ ।
କୁସୁମ ଚନ୍ଦନ ଆଦି ପୂଜା ଦ୍ରବ୍ୟମାନ
ଥୋଇଥିଲେ ଯାହା ଦେବୀ ଅର୍ଚ୍ଚନ କାରଣ ।
ବେନକରେ ସେ ସକଳ ଘେନି ଭକ୍ତିଭରେ
ଅର୍ଘ୍ୟ ଦେଲେ ପ୍ରଭୁ ରାମକୃଷ୍ଣଙ୍କ ପଦ୍ମରେ ।
ଅତଃପର ପ୍ରବେଶିଣ ହୃଦୟ ଠାକୁର
ହଲଧାରୀଙ୍କୁ ପୁଛିଲେ କିବା ସମାଚାର ।
"ହେ ମାମୁଁ ? ତୁମ୍ଭେ ତ ବଡ ଶାସ୍ତ୍ରଜ୍ଞ ପଣ୍ଡିତ
ମାତୁଳ ବାତୁଳ ବୋଲି ତୁମ୍ଭର ତ ମତ ।
ସେ ବାତୁଳ ପାଦେ କିପାଁ ଦେଲ ପୁଷ୍ପାଞ୍ଜଳି
ଏଥିର ରହସ୍ୟ କିବା କହିଲୁ ହେ ଖୋଲି ।"

ଉତ୍ତରେ କହିଲେ ତହୁଁ ଦ୍ୱିଜ ହଳଧାରୀ
"କରି ନାହିଁ ଏହା କିଛି ଲକ୍ଷ୍ୟ ଅନୁସରି ।
ନ ଜାଣଇ କି ମୋହିନୀ ଥିଲା ତାହାଠାରେ
କ୍ଷଣେ ବିସ୍ମରିଲି ସବୁ ତା ଅଙ୍ଗ ସ୍ପର୍ଶରେ ।
ସାକ୍ଷାତ ଦେଖିଲି ଯେହ୍ନେ ଶ୍ୟାମଙ୍କ ମୂରତି
ମର୍ମ୍ମ ବୁଝିବାକୁ ପରାହତ ମୋ ଶକତି ।"
ଶ୍ରୀ ପ୍ରଭୁଙ୍କ ଦୈବୀଶକ୍ତି ଏସନେ ବିକାଶ
ପ୍ରତ୍ୟକ୍ଷ କଲେହେଁ ରାମତାରକ ଦ୍ୱିଜେଶ ।
ମୋହ ଜାଲେ ପ୍ରାଣ ମନ ବନ୍ଧା ଏ ପ୍ରକାର
ବିସ୍ମୃତ ହୋଇଲେ ତାହା ମୁହୂର୍ତ୍ତି ମଧ୍ୟର ।
ବାହ୍ୟ ଶୌଚ ସଦାଚାର କର୍ମ୍ମ ଶାସ୍ତ୍ରଜ୍ଞାନ
ବୃଥା ସବୁ ମାୟାମୋହେ ମୁଗ୍‌ଧ ଯାର ମନ ।
ଦୂର ନ ହେଲେ କାମିନୀ-କାଞ୍ଚନ ଆସକ୍ତି
ସଦ୍‌ବସ୍ତୁ ଗ୍ରହଣେ ଚହେ ନ ଥାଏ କି ଶକ୍ତି ।
ଉପମାରେ ଯା କହିଲେ ପ୍ରଭୁ ଦେବରାୟ
ସାବଧାନେ ଶୁଣ ମନ ! ଚିତ୍ତ କରି ଅସ୍ଥ ।
ଦିଆସିଲି କାଠି ଯଥା ଜଳେ ସିକ୍ତ ହେଲେ
ଯେତେ ଘଷିଲେକ ଆଉ କଦାପି ନ ଜ୍ୱଳେ
କାମିନୀ କାଞ୍ଚନାସକ୍ତ ହେଲେ ମନ ତଥା
ସତ୍‌ବସ୍ତୁ ଚିହ୍ନିବାକୁ ଅକ୍ଷମ ସର୍ବଥା ।
ଶାସ୍ତ୍ରଜ୍ଞ ପଣ୍ଡିତ ହଳଧାରୀ ଦ୍ୱିଜୋତ୍ତମ
ପୁରାଣାଦି ପଢ଼ିବାରେ ଶକ୍ତି ଅନୁପମ ।
ସେ ଅଗାଧ ପାଣ୍ଡିତ୍ୟର ନାହିଁ ପଟାନ୍ତର
ସରବେ ବିମୁଗ୍‌ଧ ଶୁଣି ଶାସ୍ତ୍ରର ବିଚାର ।
ହଳଧାରୀ ଦିନେ ଶାସ୍ତ୍ର ବ୍ୟାଖ୍ୟା କଲାବେଳେ
ଈଶ୍ୱର ଦର୍ଶନ କଥା ପ୍ରଭୁ ପ୍ରଶ୍ନ କଲେ ।
ହଳଧାରୀ ଶାସ୍ତ୍ର କାଢ଼ି କଲେ ପ୍ରତିପନ୍ନ
ଭାବର ଅତୀତ ବସ୍ତୁ ପ୍ରଭୁ ନିରଞ୍ଜନ ।
ଭାବାବେଶେ ହୁଏ ଯେଉଁ ରୂପ ଅନୁଭୂତ
ସେ ସକଳ ମିଥ୍ୟା, ଏହା ଶାସ୍ତ୍ରର ଉକତ ।
ବାଳକ ସ୍ୱଭାବାପନ୍ନ ପ୍ରଭୁ ନରହରି
ଏମନ୍ତ ସିଦ୍ଧାନ୍ତେ ହେଲେ ବିଚଳିତ ଭାରି ।
ବିଷମ ସନ୍ଦେହେ ଚିତ୍ତ ହେଲା ଆଲୋଡ଼ିତ
"ଭ୍ରମାତ୍ମକ ଅଟଇ କି ମୋ ଗନ୍ତବ୍ୟ ପଥ ?
ଭାବାବେଶେ ଦେଖିଲି ମୁଁ ଯେତେ ବିଭୁ ରୂପ
ଆଦେଶ ଲଭିଲି ଯେତେ ତାଙ୍କର ସମୀପ ।
ସେ ସବୁ କି ତେବେ ମୋର ମନର ବିକାର
ଭଣ୍ଡିଲେ କି ଜଗଦ୍ଧାତ୍ରୀ ମୋତେ ଏ ପ୍ରକାର ।"
ବିଷଣ୍ଣ ବଦନେ ତହୁଁ ପ୍ରଭୁ ଗୁଣମଣି
ଦେବୀଙ୍କୁ କହିଲେ କେତେ ଆକ୍ଷେପରେ ବାଣୀ
"ନିରକ୍ଷର ମୂର୍ଖ ମୁହିଁ ଆଲୋ ଜଗଦମ୍ବେ
ଭଣ୍ଡିଲୁ କି ସେଥିପାଇଁ ମୋତେ ରୁ ଏଭାବେ ।"
ଏମନ୍ତ କହିଣ ଦେବ କାନ୍ଦିଲେ ବହୁତ
ଯା ଶୁଣି ଦେବୀ ଆସନ ଟଳିଲା ତ୍ୱରିତ ।
ଅବଶେଷେ ହେଲା ଏକ ଅଦ୍ଭୁତ ଦର୍ଶନ
ସାଧୁଜନେ ସାବଧାନେ ଶୁଣ ବିବରଣ ।
ଯେ ଗୃହେ ବସିଣ ଦେବ ଏସନେ କାନ୍ଦିଲେ
ଶୂନ୍ୟରୁ ଉଠିଲା ଧୂମ ତାର ମଧ୍ୟସ୍ଥଳେ ।
ତଦନ୍ତେ ଧରିଣ ତାହା କୁହୁଡ଼ି ଆକାର
କିୟଦଂଶ ପରିପୂର୍ଣ୍ଣ କଲା ସେ ଗୃହର ।
ଜୀବନ୍ତ ମୂରତି ଏକ ତହୁଁ ବାହାରିଲା
ଯାର ଦିବ୍ୟରୂପ ଦେଖି ମୁଗ୍‌ଧ ଚନ୍ଦ୍ରକଳା ।
ସହାସ୍ୟ ବଦନ ଦୀର୍ଘ ଶ୍ମଶ୍ରୁ ଲମ୍ବମାନ
ଜନମନୋହର ରୂପ, ଜ୍ୟୋତି ଶୁଭ୍ରବର୍ଣ୍ଣ ।
ପ୍ରଭୁଙ୍କୁ ଗୃହିଁଣ ମୂର୍ତ୍ତି କହିଲେ ଗମ୍ଭୀରେ
"ଭାବ ଯେନ ଭାବେ ମଗ୍ନ ଥାଅ ନିରନ୍ତରେ ।"
ତଦନ୍ତର ଏସନେ ସେ କରିଣ ଆଶିଷ
କୁହୁଡ଼ି ମଧ୍ୟରେ ପୁନଃ ହୋଇଲେ ଅଦୃଶ୍ୟ ।
ତଦନ୍ତେ ନିମିଷ ମଧ୍ୟେ ଅନ୍ତର୍ହିତ ଧୂମ
ଦୈବ ବାଣୀରେ ଆଶ୍ୱସ୍ତ ହେଲେ ଗୁଣଧାମ ।
ହଳଧାରୀ କଥା ଶୁଣି ପୁଣି ଅନ୍ୟ ଦିନେ
ବିଷମ ସନ୍ଦେହ ଉପୁଜିଲା ତାଙ୍କ ମନେ ।
ମୀମାଂସାର୍ଥେ ଦେବୀ ପାଶେ ଉପସ୍ଥିତ ହୋଇ
ବୋଇଲେ ସକଳ କଥା କାନ୍ଦି ବିଶ୍ୱସାଇଁ ।
ପ୍ରସନ୍ନା ହୋଇଣ ଭଗବତୀ ଜଗନ୍ମାତା
ନାରୀବେଶେ ଘଟପାର୍ଶ୍ୱେ ହେଲେ ଆବିର୍ଭୂତା ।
ପ୍ରଭୁଙ୍କୁ ଭାଷିଲେ ଧୀରେ ସସ୍ନେହ ବଚନ
"ଭାବେ ବୁଡ଼ିଥାଅ ବତ୍ସ ! ତୁମ୍ଭେ ଅନୁକ୍ଷଣ ।"
ଏମନ୍ତେ ଆଶ୍ୱସ୍ତ ହୋଇ ପ୍ରଭୁ ପୁନର୍ବାର
ସାଧନେ ନିମଗ୍ନ ହେଲେ ସମ୍ପୂର୍ଣ୍ଣ ରୂପର ।
ଅବାଧ ସାଧନ ଯେତେ ଗୋପନରେ କଲେ
ବିଶେଷ ବିବୃତ କେହି ଜାଣି ନ ପାରିଲେ ।

ଧୈର୍ଯ୍ୟ ସହ ସାଧୁଜନେ କର ଅବଧାନ
ଶାସ୍ତ୍ରଜ୍ଞ ପଣ୍ଡିତ ହଲଧାରୀଙ୍କର ଗୁଣ ।
ବୟସରେ ଜ୍ୟେଷ୍ଠ ଥିଲେ ଦ୍ୱିଜ ହଲଧାରୀ
ଯେପରି ପଣ୍ଡିତ, ଭକ୍ତ ସାଧକ ସେପରି ।
ବୈଷ୍ଣବ ପନ୍ଥାରେ ତାଙ୍କ ଶ୍ରଦ୍ଧା ବିଲକ୍ଷଣ
ବେଶ୍ୟା ଯେନ କରୁଥିଲେ ପ୍ରେମର ସାଧନ ।
ମନ୍ଦିରର ଭୃତ୍ୟଗଣ ଏହା ଜାଣିପାରି
ତୀବ୍ର ଆଲୋଚନା କଲେ ପଶ୍ଚାତେ ତାଙ୍କର ।
ସିଦ୍ଧବାକ ଦ୍ୱିଜ ବୋଲି ଥିଲା ତାଙ୍କ ଖ୍ୟାତି
ଯା'କୁ ଯା ବୋଲନ୍ତି ହୁବ ହୁଏ ଫଳବତୀ ।
ଏ କଥା କହିଲେ ତାଙ୍କ ଚଣ୍ଡେ ହେବ ରୋଷ
ସ୍ପଷ୍ଟ କହିବାକୁ କା'ର ନ ହୁଏ ସାହସ ।
ନିର୍ଭୀକ ଶ୍ରୀଦେବରାୟ ଜାଣିଲେ ଯେମନ୍ତ
ଜ୍ୟେଷ୍ଠଙ୍କର ନିନ୍ଦାବାଦ ହେଉଛି ଏମନ୍ତ ।
ତାଙ୍କ ପାଶେ ଯାଇ ଦିନେ ସବୁ ନିବେଦିଲେ
ତାହା ଶୁଣି ହଲଧାରୀ ମନେ କୋପ କଲେ ।
କନିଷ୍ଠ ହୋଇ ନିନ୍ଦିଲୁ ଏମନ୍ତେ ତୁ ମୋତେ
ଯେ ମୁଖେ ଭାଷିଲୁ, ରକ୍ତସ୍ରୋତ ବହୁ ସେଥେ ।
ଏ ଭାବେ ଦେଲାରୁ ଦ୍ୱିଜବର ଅଭିଶାପ
କ୍ଷମା ମାଗିଲେହେଁ ଶାନ୍ତ ନୋହିଲା ସେ କୋପ ।
କିୟତ୍‌କାଳ ପରେ ରାତ୍ରି ପ୍ରଥମ ପ୍ରହରେ
ତାଳୁ ସଲ ସଲ ହୋଇ ବିଶେଷ ଭାବରେ ।
ବୋହିଲା ଶୋଣିତଧାରା ଶ୍ରୀମୁଖୁ ତାଙ୍କର
ବର୍ଣ୍ଣେ ସଦ୍ୟ ଶିମପତ୍ର ରସ ଯେ ପ୍ରକାର ।
ଶୋଣିତର କିୟଦଂଶ ଲାଗିଣ ଦନ୍ତରେ
ଝୁଲିଲା ତହିଁରୁ ବଟ-ଓହଳ ଆକାରେ ।
ମୁଖେ ଲୁଗା ଦେଇ ପ୍ରଭୁ କରୁଣାସାଗର
ରକ୍ତ ବନ୍ଦ ପାଇଁ ଚେଷ୍ଟା କଲେ ବାରମ୍ବାର ।
ସମସ୍ତ ପ୍ରୟାସ ତାଙ୍କ ହୋଇଲା ବିଫଳ
ଉପାୟ ନ ଦେଖି ପ୍ରଭୁ ହେଲେ ଭୟାକୁଳ ।
ମନ୍ଦିରସ୍ଥ କର୍ମଚାରୀ ପାଇ ଏ ବାରତା
ପ୍ରଭୁଙ୍କ ସମୀପେ ଧାଇଁ ପୁଛନ୍ତି କି କଥା ।
ହଲଧାରୀଙ୍କୁ ତନ୍ମଧ୍ୟେ କରିଣ ଦର୍ଶନ
ଶ୍ରୀଦେବ କହିଲେ ତାଙ୍କୁ କାତରେ ବଚନ ।
"ତବ ଅଭିଶାପୁଁ ହେଲା ଏ ଅବସ୍ଥା ମୋର
କେ ଜାଣେ କି ଫଳ ଶେଷେ ହୋଇବ ଏହାର ।"

କନିଷ୍ଠଙ୍କ ସକରୁଣ ବଚନ ଶୁଣିଣ
ସକାତରେ ହଲଧାରୀ କରିଲେ ରୋଦନ ।
ସୁବିଜ୍ଞ ପ୍ରାଚୀନ ସାଧୁ ଜଣେ ସେ ଦିବସ
କାହୁଁ ଆସି ଶ୍ରୀମନ୍ଦିରେ କରିଥିଲେ ବାସ ।
ଗୋଳମାଳ ଶୁଣି ସେହି ପ୍ରବୀଣ ସନ୍ନ୍ୟାସୀ
ଝଟିତରେ ପ୍ରଭୁ ପାଶେ ପ୍ରବେଶିଲେ ଆସି ।
ଶୋଣିତର ରଙ୍ଗ ଆଉ ଯେ ସ୍ଥାନୁଁ ବହଇ
ତାହା ଦେଖି କହିଲେ ସେ ଭୟ କିଛି ନାହିଁ ।
"ମୋ ବିଶ୍ୱାସ ତୁମ୍ଭେ ଯୋଗାଭ୍ୟାସେ ରତ ଥିଲ
ଶୋଣିତ ବାହାରି ତବ ହୋଇଛି ମଙ୍ଗଳ ।
ହଠଯୋଗ ସାଧନର ଚରମେ ଗମିଣ
ଜଡ଼ ସମାଧିର ହେଉଥିଲା ଉପକ୍ରମ ।
ସୁଷୁମ୍ନା ନାଡ଼ୀର ଦ୍ୱାର ଉଦ୍‌ଘାଟିତ ହୋଇ
ହୃତ୍‌ପିଣ୍ଡୁ ଶୋଣିତ ଶିରେ ଯାଉଥିଲା ବୋହି ।
ମସ୍ତିଷ୍କରେ ନ ଉଠିଣ ସେ ସବୁ ଶୋଣିତ
ଅନ୍ୟ ବାଟ ଦେଇ ତାହା ହେଲା ବହିର୍ଗତ ।
ମୋ ମତେ ଅଟଇ ଏହା ମଙ୍ଗଳ ସୂଚନା
ଏଥିପାଇଁ କର ନାହିଁ କେବେହେଁ ଭାବନା ।
ବାହାରି ନ ଯାଇ ରକ୍ତ ଉଠିଥିଲେ ଶିରେ
ଲଭିଥାନ୍ତ ତୁମ୍ଭେ ଜଡ଼ ସମାଧି ଅଚିରେ ।
ଘଟଣା ଦେଖିଣ ମୋର ହୁଅଇ ବିଶ୍ୱାସ
ଦେବୀଙ୍କର ଅଛି କିଛି ମହତ ଉଦ୍ଦେଶ୍ୟ ।
ଯାହା ସେହୁ ତୁମ୍ଭ ଦ୍ୱାରା କରିବେ ସାଧନ
ସେଥିପାଇଁ ତୁମ୍ଭ କାୟ କଲେ ସଂରକ୍ଷଣ ।"
ଏମନ୍ତ ଆଶ୍ୱାସ ବାଣୀ ଶୁଣି ସାଧୁଙ୍କର
ଆଶ୍ୱସ୍ତ ହୋଇଲେ ପ୍ରଭୁ କରୁଣାସାଗର ।
ଏ ପ୍ରକାରେ ଅଭିଶାପ କାର୍ଯ୍ୟେ ପରିଣତ
ବିଧାତାଙ୍କ ଲୀଳା ଅଟେ ଏ ଭବେ ଅଦ୍ଭୁତ ।
ଆପଣେ ଆଚରି ହଠଯୋଗର ସାଧନ
ପ୍ରାଣୀ ହିତେ କହିଲେକ ପ୍ରଭୁ ଭଗବାନ ।
"ହଠ ଯୋଗେ ପ୍ରବର୍ତ୍ତିତ ଯେ ସାଧନଚୟ
କଳିଯୁଗ ପ୍ରାଣୀ ପକ୍ଷେ ନୁହେ ତା ବିଧେୟ ।
କଳିରେ ଅଳ୍ପାୟୁ ପ୍ରାଣୀ, ଅନ୍ନଗତ ପ୍ରାଣ
ହଠ ଯୋଗାଭ୍ୟାସେ କାୟ ସୁଦୃଢ଼ କରିଣ ।
ରାଜଯୋଗ ସାହାଯ୍ୟରେ ଲଭିବେ ଈଶ୍ୱର
ଏତେ କରିବାକୁ କାହିଁ ଆୟୁଷ ତାହାର ।

ହଠଯୋଗ କ୍ରିୟାଭ୍ୟାସ କରିବାକୁ ହେଲେ
ସିଦ୍ଧ ଗୁରୁ ପାଶେ ପାଶେ ଥିବେ ସଦାବେଳେ ।
ଆହାର ବିହାର ଆଦି ସବୁ ବିଷୟରେ
ଚଳିବାକୁ ହେବ ତାଙ୍କ ଆଦେଶାନୁସାରେ ।
ନିୟମର ଅଳପକେ ହେଲେ ବ୍ୟତିକ୍ରମ
ମୃତ୍ୟୁ ସୁନିଶ୍ଚୟ କିମ୍ବା ବ୍ୟାଧି-ଉପକ୍ରମ ।
ଏ ହେତୁ ସେ ଯୋଗ ପନ୍ଥା ଅତୀବ କଠିନ
କଳିଯୁଗେ ସେ ସବୁର ନାହିଁ ପ୍ରୟୋଜନ ।
ବାୟୁକୁ ରୁନ୍ଧିଣ ମନ ନିରୋଧ କରିଣ
ପ୍ରାଣାୟାମ କୁମ୍ଭକାଦି ତହିଁ ପ୍ରୟୋଜନ ।
ଭକତି ସହିତ ବିଭୁ ଧ୍ୟାନେ ନିମଜ୍ଜିଲେ
ବାୟୁ ମନ ମଧ୍ୟ ରୁଦ୍ଧ ହୋନ୍ତି ଏକାବେଳେ ।"
କଳିରେ ଅଳ୍ପାୟୁ ପ୍ରାଣୀ ଦେହେ କ୍ଷୀଣବଳ
ଏମନ୍ତ ବିଚାରି ମନେ ପ୍ରଭୁ ଆଦିମୂଳ ।
ଇଷ୍ଟ ଲଭ ପାଇଁ ମାର୍ଗ କଲେକ ସୁଗମ
ପ୍ରାଣୀ ପ୍ରତି ତାଙ୍କ କୃପା ଅପାର ଅସୀମ ।
"ପତ୍ନୀ ପୁତ୍ର ବିୟୋଗରେ ପ୍ରାଣୀଙ୍କର ଚିତ୍ତେ
ଛଟପଟ ବ୍ୟାକୁଳତା ଯେଉଁ ପରିମିତେ ।
ସେହିପରି ଯାର ପ୍ରାଣ କାନ୍ଦେ ବିଭୁ ପାଇଁ
ଆଉ ତା ଅଷ୍ଟପ୍ରହର ହୋଇଲେକ ସ୍ଥାୟୀ ।
କରୁଣାସାଗର ହରି ପ୍ରଭୁ ନିରଞ୍ଜନ
ଦୟା ବହି ଥରେ ହେଲେ ଦେବେ ଦରଶନ ।"
ରାଣୀ ରାସମଣି ଶୁଣି ବ୍ୟାଧିର ବାରତା
ଆରୋଗ୍ୟ ନିମନ୍ତେ ହେଲେ ଅତ୍ୟନ୍ତ ଚିନ୍ତିତା ।
ଯାଙ୍କ ପାଇଁ ଶ୍ରୀମନ୍ଦିରେ ନିରତ ଚହଲ
ତାଙ୍କ ସ୍ୱାସ୍ଥ୍ୟଭଙ୍ଗ ଶୁଣି ଅନ୍ତର ବ୍ୟାକୁଳ ।
ମଥୁରଙ୍କ ସଙ୍ଗେ ତହୁଁ କରିଣ ବିଚାର
ଆଦେଶିଲେ କରିବାକୁ ଶୀଘ୍ର ପ୍ରତିକାର ।
କାମିନୀକାଞ୍ଚନାସକ୍ତ ଯାହାଙ୍କର ପ୍ରାଣ
ସେ ଅବା ବୁଝିବେ କିସ ବ୍ୟାଧିର କାରଣ ।
ତୀବ୍ର ବ୍ରହ୍ମଚର୍ଯ୍ୟ ବ୍ରତ ଶ୍ରୀଦେବ ଆଚରି
ଆଧ୍ୟାତ୍ମିକ ବ୍ୟାକୁଳତା ଜନ୍ମିଛି ତାଙ୍କରି ।
ସେ ବ୍ରତକୁ ଭଗ୍ନ କଲେ କୌଣସି ପ୍ରକାରେ
ଦୂରୀଭୂତ ହେବ ବ୍ୟାଧି ସମ୍ୟକ ଭାବରେ ।
ଏମନ୍ତ ବିଚାରି ମନେ ରାଣୀ ରାସମଣି
ବ୍ରତ ଭଙ୍ଗ ଚେଷ୍ଟା କଲେ ବାରାଙ୍ଗନା ଆଣି ।
ରୂପସୀ ଯୁବତୀ ଦୁଇ ବେଶଭୂଷା ହୋଇ
ଆଇଲେ ଦକ୍ଷିଣେଶ୍ୱରେ ରାଣୀ-ଆଜ୍ଞା ପାଇ ।
ଯେ ପ୍ରକୋଷ୍ଠେ ପ୍ରଭୁଦେବ ଶଯ୍ୟାରେ ଶାୟିତ
ବେଳକାଳ ଜାଣି ତହିଁ ହେଲେ ଉପସ୍ଥିତ ।
ଭୁଲାଇବା ପାଇଁ ପ୍ରଭୁ ଦେବଙ୍କର ମନ
ଦେଖାଇଲେ ବାରନାରୀ ନାନା ପ୍ରଲୋଭନ ।
ଦରଶନ ମାତ୍ରେ ତାଙ୍କୁ ପ୍ରଭୁ ଆଦିନାଥ
'ମା' 'ମା' ବୋଲି ଦେବୀଜ୍ଞାନେ ଭୂତଳେ ପତିତ ।
ବାଳକ ସ୍ୱଭାବାପନ୍ନ ପ୍ରଭୁ ନରହରି
ଷଡରିପୁ ଦୂରେ ଥାନ୍ତି ଯାଙ୍କୁ ସଦା ଡରି ।
ନିରତେ କରନ୍ତି କ୍ରୀଡ଼ା ବିଭୁ ଯାଙ୍କ ସହ
ଆଦିବ୍ରହ୍ମଙ୍କର ଯେହୁ ପବିତ୍ର ବିଗ୍ରହ ।
ତାଙ୍କ ଭାବାବସ୍ଥା ଦେଖି ନାରୀ ଦୁହିଁଙ୍କର
ହୃଦୟେ ବାତ୍ସଲ୍ୟ ଭାବ ହୋଇଲା ସଞ୍ଚାର ।
ନିମିଷେ ଗମିଲା ଦୂରେ କୋଟି ଜନ୍ମ ପାପ
ନିବିଡ଼ ତିମିର ଯଥା ଆଲୋକ ସମୀପ ।
ଆପଣା କୁକର୍ମେ ଦୁହେଁ ଅନୁତପ୍ତା ହୋଇ
କରଯୋଡ଼ି ପ୍ରାର୍ଥନା କଲେ କ୍ଷମା ପାଇଁ ।
କାତର କ୍ରନ୍ଦନ ଶୁଣି ନାରୀ ଦୁହିଁଙ୍କର
ଅନ୍ତର୍ଯାମୀ ସଂଜ୍ଞା ଲଭି ଉଠିଲେ ସତ୍ୱର ।
ଜଗତ ଜନନୀ ଜ୍ଞାନେ ବାରାଙ୍ଗନା ଜନେ
ଯୋଡ଼ିକରେ ନମସ୍କାର କଲେ ତତକ୍ଷଣେ ।
ବ୍ୟର୍ଥ ମନୋରଥ ହୋଇ ସେ ଦୁହେଁ ଏମନ୍ତ
ରାଣୀପାଶେ ନିବେଦିଲେ ସରବ ବୃତ୍ତାନ୍ତ ।
ଏଥିରେ ସନ୍ତୁଷ୍ଟ ନୋହି ମଥୁର ମୋହନ
ପରୀକ୍ଷାର୍ଥେ ପୁନର୍ବାର କଲେ ଆୟୋଜନ ।
ଲକ୍ଷ୍ମୀବାଈ ନାମେ ବେଶ୍ୟା ଅତି ରୂପବତୀ
କଲିକତା ସହରରେ ଯାର ବଡ଼ ଖ୍ୟାତି ।
ଯାହାର ସୌନ୍ଦର୍ଯ୍ୟ କଥା କହି ନ ହୁଅଇ
ମୁନି ଋଷି ହେଲେ ମଧ୍ୟ ଦର୍ଶନେ ଭୁଲଇ ।
ତାଙ୍କ ସଙ୍ଗେ ପରାମର୍ଶ କରିଣ ମଥୁର
ଷୋଡଶୀ ରୂପସୀ ଦଳେ କଲେ ଏକତର ।
ମେଛୁଆ ବଜାରେ ଏକ ପଲ୍ଲୀ ଭବନରେ
ପରୀକ୍ଷାର ସ୍ଥଳ ସ୍ଥିର କଲେ ଗୋପନରେ ।
ବେଶ୍ୟାଙ୍କ ସମୀପେ ତହୁଁ କଲେ ଅଙ୍ଗୀକାର
କାର୍ଯ୍ୟସିଦ୍ଧ ହେଲେ ଦେବେ ଯଥା ପୁରସ୍କାର ।

ଷୋଡ଼ଶୀ ଯୁବତୀ ସଙ୍ଗେ ଧରି ଲକ୍ଷ୍ମୀବାଈ
ବାନ୍ଧିଲେ ମୋହିନୀ ବେଶ ପ୍ରଲୋଭନ ପାଇଁ ।
ନିର୍ଦ୍ଦିଷ୍ଟ ସମୟେ ଆସି ମଥୁର ମୋହନ
ପ୍ରଭୁଙ୍କୁ କହିଲେ ଧୀରେ ମଧୁର ବଚନ ।
ହେ ଦେବ ! ଆସନ୍ତୁ ଯିବା ସହର ଭ୍ରମଣେ
ଆଣିଛୁ ଫିଟନ ଗାଡ଼ି ସଙ୍ଗେ ସେ କାରଣେ ।
ମଥୁରଙ୍କ ଅନୁନୟ ଶୁଣି ଭବନାଥେ
ସ୍ୱୀକାରିଲେ ତାଙ୍କ ସଙ୍ଗେ ଉଲ୍ଲସିତ ଚିତ୍ତେ ।
ସୁନ୍ଦର ଫିଟନ ଗାଡ଼ି ସୁସଜ୍ଜିତ ଭଲେ
ଆନନ୍ଦେ ଶ୍ରୀ ଦେବରାୟ ସେଥିରେ ବସିଲେ ।
ବେନି ଅଶ୍ୱେ ଯୋଚିଗାଡ଼ି ଦ୍ରୁତଗାମୀ ଅତି
ସହରାଭିମୁଖେ ଗଲା ଯଥା ବାୟୁଗତି ।
ନିମିଷେ ଚଳାଇ ଗାଡ଼ି ଘଡ଼ିକର ପଥ
ଚକ୍ରପାଣି ସହ ଯେହ୍ନେ ଅର୍ଜ୍ଜୁନଙ୍କ ରଥ ।
ପ୍ରଭୁଙ୍କୁ ଘେନିଣ ଗାଡ଼ି ଭ୍ରମି ନାନାସ୍ଥାନେ
ଅବଶେଷେ ଉପନୀତ ବେଶ୍ୟାଙ୍କ ସଦନେ ।
ଶ୍ରୀଦେବଙ୍କୁ ବେଶ୍ୟାଳୟେ ପ୍ରବେଶ କରାଇ
କାର୍ଯ୍ୟାନ୍ତରେ ଶ୍ରୀ ମଥୁର ଗଲେ ଗାଡ଼ି ନେଇ ।
ନାନା ଆଭରଣେ ବିଭୂଷିତା ବେଶ୍ୟାଗଣ
ମର୍ତ୍ତ୍ୟେ ଯେହ୍ନେ ସ୍ୱରଗର ଅପସରାମାନ ।
ଦର୍ଶନ ମାତ୍ରକେ ତାଙ୍କୁ ଦେବରାୟଙ୍କର
ଶ୍ରୀଅଙ୍ଗେ ହୋଇଲା ମହାଭାବର ସଞ୍ଚାର ।
'ମା' 'ମା' ବୋଲି ସମ୍ବୋଧିଣ ମଧୁର କଣ୍ଠରେ
ଶ୍ୟାମା ଗୁଣ ଗାନ କଲେ ପ୍ରେମ ସହକାରେ ।
ଗୀତ ଶୁଣି ବେଶ୍ୟାଙ୍କର ଚିତ୍ତ ବିମୋହିତ
ପାସୋରିଲେ ଯହିଁପାଇଁ ଥିଲେ ନିୟୋଜିତ ।
ଶ୍ୟାମାଭାବେ ମତ୍ତହୋଇ ପ୍ରଭୁ ଶ୍ରୀଠାକୁରେ
ସଂଜ୍ଞା ହରାଇଣ ନିମଜ୍ଜିଲେ ସମାଧିରେ ।
ଅଶ୍ରୁତ ଅଦୃଷ୍ଟପୂର୍ବ ଅବସ୍ଥା ଦର୍ଶନେ
ଅତି ସଶଙ୍କିତ ହେଲେ ବାରାଙ୍ଗନାମାନେ ।
ବାତ୍ସଲ୍ୟ ଭାବରେ ସର୍ବେ ହୋଇ ପ୍ରଣୋଦିତ
ମାତା ରୂପେ ସ୍ନେହ ଭାବେ ଶୁଶ୍ରୂଷାରେ ରତ ।
ଏମନ୍ତ ସମ୍ବାଦ ପାଇ ମଥୁର ମୋହନ
ବ୍ୟଗ୍ର ଚିତ୍ତେ ପ୍ରବେଶିଲେ ବେଶ୍ୟାଙ୍କ ଭବନ ।
କ୍ଷଣକେ ଯେମନ୍ତ ପ୍ରଭୁ ଲଭିଲେ ଚେତନା
ଶୀଘ୍ର ଘେନିଗଲେ ଗୃହେ ତାଙ୍କୁ ମହାମନା ।

ଶ୍ରୀମଥୁର ରାସମଣି ଏସନ ପ୍ରତ୍ୟେକ
ପ୍ରଭୁଙ୍କୁ ପରୀକ୍ଷା କଲେ ପୃଥକ ପୃଥକ ।
ଶ୍ରୀ ଦେବ କହନ୍ତି "ଏହି ଉଭୟ ସ୍ଥଳରେ
ଶ୍ୟାମାଙ୍କ ସ୍ୱରୂପ ଦୃଷ୍ଟ ନାରନାରୀଠାରେ ।
'ମା' 'ମା' ବୋଲି ତେଣୁ ତାଙ୍କୁ କରି ସମ୍ବୋଧନ
ଦିବ୍ୟ ଦରଶନେ ହେଲି ହତ ବାହ୍ୟଜ୍ଞାନ ।
ଇନ୍ଦ୍ରିୟ କୂର୍ମାଙ୍ଗ ରୂପେ ସଙ୍କୁଚିତ ହୋଇ
ଶରୀରର ଅଭ୍ୟନ୍ତରେ ପ୍ରବେଶିଲା ଯାଇ ।"
ଆପଣା କୁକର୍ମ୍ମ ଭାଳି ମଥୁର ମୋହନ
ପ୍ରଭୁ ପାଶେ ଆଗମନେ ସଙ୍କୁଚିତ ମନ ।
ଅନ୍ତରର ବ୍ୟଥା ଜାଣି ଶ୍ରୀଦେବ ଅଚ୍ୟୁତ
କୌଶଳ କରିଣ ତାହା କଲେ ଦୂରୀଭୂତ ।
ଦିନକରେ ଦେବରାୟ ମନ୍ଦିର ପ୍ରାଙ୍ଗଣେ
ପଦବ୍ରଜେ ବୁଲୁଥିଲେ ଉଲ୍ଲସିତ ମନେ ।
ଶ୍ରୀମଥୁର ଦୂରୁ ତାଙ୍କୁ କରିଣ ଦର୍ଶନ
ବ୍ୟାକୁଳ ହୋଇଲେ ପାଶେ ଆସିବା କାରଣ ।
ଆପଣା କୁକର୍ମ୍ମ ଭାଳି ଲଜ୍ଜିତ ଅତ୍ୟନ୍ତ
ଅନ୍ତର୍ଯ୍ୟାମୀ ପ୍ରଭୁ ତାହା ଜାଣିଲେ ଯେମନ୍ତ ।
ଏକାଧାରେ ଧରିଲେ ସେ ବିଭିନ୍ନ ସ୍ୱରୂପ
ପଶ୍ଚାତେ ଶ୍ୟାମା, ସମ୍ମୁଖେ ରାମକୃଷ୍ଣ ରୂପ ।
ପଛରୁ ଶ୍ୟାମାଙ୍କ ମୂର୍ତ୍ତି ଦେଖନ୍ତି ମଥୁର
ଶ୍ରୀମନ୍ଦିରେ ବିରାଜିତା ଦେଖି ଯେ ପ୍ରକାର ।
ଦେଖୁଛି ନେତ୍ରରେ ଯାହା ସତ୍ୟ କି ସ୍ୱପନ
ସମ୍ମୁଖେ ଆସନ୍ତି ଯେବେ ଏସନ ଭାଳିଣ ।
ଦର୍ଶନ କରନ୍ତି ରାମକୃଷ୍ଣଙ୍କ ସ୍ୱରୂପ
ବ୍ୟାପାର ଦେଖିଣ ତାଙ୍କ ବୁଦ୍ଧି ହେଲା ଲୋପ ।
ତନ୍ନ ତନ୍ନ ନିରୀକ୍ଷଣ କରନ୍ତି ସେ ଯେତେ
ବାରମ୍ବାର ଦୃଷ୍ଟ ହେଲା ରୂପ ସେହିମତେ ।
ବ୍ୟଗ୍ରତା କ୍ରମଶଃ ତାଙ୍କ ଚିତ୍ତେ ଦୃଢ଼ତର
ସ୍ଥିର ରହି ନ ପାରିଲେ ଆଉ ଯେ ମଥୁର ।
ଭକ୍ତିଭରେ ଊର୍ଦ୍ଧ୍ୱଶ୍ୱାସେ ଆସିଣ ଦଉଡ଼ି
ଠିଆ ହେଲେ ସମ୍ମୁଖରେ ବେନିକର ଯୋଡ଼ି ।
ପଚାରିଲେ ପ୍ରଭୁ ତହୁଁ ସହାସ୍ୟ ବଦନେ
"କିପାଇଁ ଆଇଲ ଧାଇଁ ମୋର ସନ୍ନିଧାନେ ।"
ମଥୁରଙ୍କ ମୁଖୁଁ ଆଉ ବାକ୍ୟ ନ ସ୍ଫୁରିଲା ;
ଅଶ୍ରୁଧାରା ଅନର୍ଗଳ ନେତ୍ର ବହିଗଲା ।

ଶ୍ରୀଚରଣେ ଅପରାଧ କରିଥିଲେ ଯେତେ
ଅନ୍ତରେ ମାଗିଲେ କ୍ଷମା ଭିକ୍ଷା ତା ନିମନ୍ତେ ।
ହୃଦସ୍ଥ ବେଦନା ଜାଣି ପ୍ରଭୁ ଚିନ୍ତାମଣି
ଆଶ୍ୱାସିଲେ ମଥୁରଙ୍କୁ କହି ମୃଦୁ ବାଣୀ
ଶ୍ରୀରାମକୃଷ୍ଣ ଚରିତ ଅମୃତ କଥନ
ଅତ୍ୟଦ୍ଭୁତ ଘଟଣାରେ ତାହା ପରିପୂର୍ଣ୍ଣ ।
ମଥୁର ସହିତେ ଦିନେ ପ୍ରଭୁ ଭଗବାନ
ଉଦ୍ୟାନରେ କରୁଥିଲେ ସୁଖେ ବିଚରଣ ।
ଶ୍ରୀଦେବ କହିଲେ ଧୀରେ ଡାକିଣ ମଥୁରେ
"ବିଭୁଙ୍କ ମହିମା ଦେଖ କେସନ ବିସ୍ତାରେ ।
ପତ୍ରପୁଷ୍ପ ତରୁଲତା ଶୋଭେ କି ସୁନ୍ଦର
ବର୍ଣ୍ଣେ ଗୁଣେ ରୂପେ ସବୁ ବିଭିନ୍ନ ପ୍ରକାର ।"
ଉତ୍ତରେ ଭାଷିଲେ ତହୁଁ ମଥୁର ମୋହନ
"ନିୟମେ କରନ୍ତି ବିଭୁ ସୃଜନ ପାଳନ ।
ଯେଉଁ ବୃକ୍ଷେ ଯେଉଁ ଫଳ କୁସୁମ ଧରଇ
ସେହି ଫଳ ସେହି ପୁଷ୍ପ କାଳେ କାଳେ ତହିଁ ।
ନିୟମେ ସୃଜନ୍ତି ସବୁ ପରମ ଈଶ୍ୱର
ନିୟମ ଲଙ୍ଘନେ ଶକ୍ତି ନ ଥାଏ ତାଙ୍କର ।"
ମଥୁର ବଚନ ଶୁଣି ଶ୍ରୀଦେବ ଭାଷିଲେ
"ଯେ ସୃଜେ ନିୟମ, ସେହୁ ଲଙ୍ଘିପାରେ ହେଲେ ।
ଯେ ବୃକ୍ଷେ ଦେଖୁଛ ନାଲି ଜବା ପ୍ରସ୍ଫୁଟିତ
ଇଚ୍ଛାକଲେ ଧଳା ପୁଷ୍ପ ତହିଁ କୁସୁମିତ ।"
ମଥୁର ବୋଇଲେ "ତାହା ନ ହୁଏ ସମ୍ଭବ
ଏକ ବୃକ୍ଷେ ଦୁଇରଙ୍ଗ କିପରି ହୋଇବ ।"
ଉତ୍ତର ନ ଦେଇ ପ୍ରଭୁ ରହିଲେ ମଉନ
ଭ୍ରମଣେ ବାହାର ହେଲେ ପୁଣି ଅନ୍ୟ ଦିନ ।
ନାନା ସ୍ଥାନ ପରିଭ୍ରମି ଶେଷେ ଉପନୀତ
ଯହିଁ ଦେଖିଥିଲେ ରକ୍ତ ଜବା ପ୍ରସ୍ଫୁଟିତ ।
ଏକ ବୃନ୍ତେ ଧଳା ନାଲି ଦୁଇ ପୁଷ୍ପ ଦେଖି
ଶ୍ରୀଦେବ କହିଲେ ତହୁଁ ମଥୁରଙ୍କୁ ଡାକି ।
"ଇଚ୍ଛାମୟ ଇଚ୍ଛାକଲେ କିସ ନ ହୁଅଇ
ଏକ ବୃକ୍ଷେ ଦେଖ ପୁଷ୍ପ ଦୁଇ ରଙ୍ଗେ ଥାଇ ।"
ଅଦ୍ଭୁତ ବ୍ୟାପାର ଦେଖି ମଥୁର ଆଶ୍ଚର୍ଯ୍ୟ
ଭଗବାନଙ୍କର ଭବେ ଅତୁଳ ଐଶ୍ୱର୍ଯ୍ୟ ।
ପୂର୍ବଦିନ କଥା ସ୍ମରି ମଥୁର ମୋହନ
ବାରମ୍ବାର ପୂଜା କଲେ ଯୁଗଳ ଚରଣ ।

ଆଉଦିନେ ଶ୍ରୀଠାକୁରେ ଶିବଙ୍କ ମନ୍ଦିରେ
ଶିବ ସ୍ତୋତ୍ର ପଢୁଥିଲେ ଭକ୍ତି ସହକାରେ ।
ମହିମ୍ନର ଛନ୍ଦଟି ପାଠ କଲେ ଯେତେବେଳେ
ଆତ୍ମହରା ହୋଇଲେକ ଭାବର ପ୍ରାବଲ୍ୟେ ।
"ଅସିତ ଗିରିସମଂ ସ୍ୟାତ୍ କଜ୍ଜଳଂ ସିନ୍ଧୁପାତ୍ରେ
ସୁରତରୁବର ଶାଖା ଲେଖନୀ ପତ୍ରମୁର୍ବୀ
ଲିଖତି ଯଦି ଗୃହୀତ୍ୱା ସାରଦା ସର୍ବକାଳଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି ।"
ଏ ଶ୍ଳୋକଟି ବାରମ୍ବାର କରିଣ ଆବୃତ୍ତି
ବୋଲୁଛନ୍ତି "ହେଇ ହେଇ ଶିବ ପଶୁପତି ।"
ସେ ଦିବ୍ୟ ରୂପ ଦର୍ଶନେ ଏସନ ବିହ୍ୱଳ
ନାହିଁ ଅନ୍ୟ ଭାଷ 'ଶିବ' 'ଶିବ' ହିଁ କେବଳ ।
ଦିବ୍ୟ ରାଜ୍ୟ ପରିଭ୍ରମି ମାନସ ଏମନ୍ତ
ଏକାବେଳେ ହୋଇଛନ୍ତି ବାହ୍ୟଜ୍ଞାନଚ୍ୟୁତ ।
ଦର ଦର ବହିଯାଇ ନେତ୍ରୁ ଅଶ୍ରୁଧାର
ସିକ୍ତକଲା ଗଣ୍ଡ ବକ୍ଷ ଚରଣ ଅଧର ।
ବ୍ୟାପାର ଅଟଇ କିସ ଜାଣିବା କାରଣ
ଧାଇଁଲେକ ମନ୍ଦିରର କର୍ମଚାରୀଗଣ ।
ସଂସାରୀ ଲୋକେ ନ ବୁଝି ମାହାତ୍ମ୍ୟ ଏହାର
ମସ୍ତିଷ୍କ ବିକୃତ ବୋଲି କରିଲେ ସେ ସ୍ଥିର ।
କେହି କେହି କହିଲେ ଯେ ଅତି କ୍ରୋଧଭରେ
ଭିଡି ଆଣ ବାତୁଳକୁ ମନ୍ଦିର ବାହାରେ ।
ନାନାକଥା ଏ ପ୍ରକାରେ କହିଲେ ସେ ତହିଁ
ସେଥିପ୍ରତି ଦେବଙ୍କର ଭ୍ରୂକ୍ଷେପ ତ ନାହିଁ ।
ଏକାଳେ ପ୍ରବେଶ ହୋଇ ମଥୁର ମୋହନ
ନିବାରିଲେ ସମସ୍ତଙ୍କୁ ବ୍ୟାପାର ବୁଝିଣ ।
"ସ୍ପର୍ଶ କର ନାହିଁ କେହି ତାଙ୍କର ଶରୀର
ବିହରନ୍ତି ଯହିଁ ନିଜେ ପ୍ରଭୁ ମହେଶ୍ୱର ।"
ଆହା କି ପ୍ରଶାନ୍ତ ଧୀର ଗମ୍ଭୀର ମୂରତି
ଶିରେ ଦିବ୍ୟ ଜ୍ୟୋତିପୁଞ୍ଜ, ଶୁଭ୍ର ଅଙ୍ଗ କାନ୍ତି ।
ସତେ ଯେହ୍ନେ ଉମାପତି ସ୍ୱଧାମ ତେଜିଣ
ପ୍ରାଣୀଙ୍କ କଲ୍ୟାଣ ହେତୁ ମର୍ତ୍ତ୍ୟେ ଆଗମନ ।
ଦିବ୍ୟ ଭାବୋଚ୍ଛ୍ୱାସେ କ୍ଷଣେ ପୂର୍ଣ୍ଣ ତାଙ୍କ ଚିତ୍ତ
ସତୃଷ୍ଣ ନୟନେ ରହି ହେଲେ ସ୍ତମ୍ଭୀଭୂତ ।
ଏମନ୍ତେ ଦେଖିଣ ନାନାପ୍ରକାର ମୂରତି
ପ୍ରଭୁପାଦେ ଦୃଢ଼ ହେଲା ମଥୁରଙ୍କ ଭକ୍ତି ।

ଭକ୍ତିମତୀ ରାସମଣି ଐଶ୍ୱର୍ଯ୍ୟ ଦର୍ଶନେ
ଅନୁରାଗେ ବନ୍ଧା ଥିଲେ ପ୍ରଭୁଙ୍କ ଚରଣେ ।
ଉଭୟେ ବିଚାରି ଏବେ କରିଲେକ ସ୍ଥିର
ବ୍ରହ୍ମଚର୍ଯ୍ୟ ଯୋଗୁଁ ପୀଡ଼ା ନୁହଇ ତାଙ୍କର ।
ଦାହକା ବ୍ୟାଧିରେ ପ୍ରଭୁ ପାଉଛନ୍ତି କ୍ଲେଶ
ଏହା ଦେଖି ତାଙ୍କ ପ୍ରାଣେ ଆଘାତ ବିଶେଷ ।
ସୁପ୍ରସିଦ୍ଧ କବିରାଜ ଶ୍ରୀ ଗଙ୍ଗାପ୍ରସାଦ
ତାଙ୍କ ସମୀପେ ମଥୁର ପ୍ରେରିଲେ ସମ୍ବାଦ ।
ପରୀକ୍ଷା କରିଣ ତାଙ୍କୁ ବୈଦ୍ୟ ତନ୍ନ ତନ୍ନ
ସ୍ଥିରକଲେ ଯଥାସାଧ୍ୟ ବ୍ୟାଧିର କାରଣ ।
ଖାଇବାକୁ ଦେଲେ ବଡ଼ି, ତୈଳ ମରଦନେ
ଏମନ୍ତ ବ୍ୟବସ୍ଥା କରି ଗଲେ ନିଜ ସ୍ଥାନେ ।
ଯଥାବିଧି ଚିକିତ୍ସାରେ କିଛିକାଳ ଗତ
ଉପଶମ ନୋହିଲାକ ବ୍ୟାଧିର କିଞ୍ଚିତ ।
ଦିନ ଯେତେ ଅଗ୍ରସର, ବୃଦ୍ଧି ତେତେ ବ୍ୟାଧି
ତାହା ଦେଖି ଚିନ୍ତାକୁଳ ପ୍ରଭୁ ଗୁଣନିଧି ।
ବୈଦ୍ୟଙ୍କୁ ସକଳ କଥା ଜ୍ଞାପନ ନିମିତ୍ତ
ତାଙ୍କର ସଦନେ ଦିନେ ନିଜେ ଉପସ୍ଥିତ ।
ପୂର୍ବବଙ୍ଗର ଜଣେ ଖ୍ୟାତ ଚିକିତ୍ସକ
ଏକାଳେ ଆସିଲେ କାହୁଁ ତହିଁ ଅଗ୍ନନକ ।
ଯୋଗସାଧନାରେ ଥିଲା ତାଙ୍କ ଅଭିଜ୍ଞତା
ଦର୍ଶନ ମାତ୍ରେ ଜାଣିଲେ ସମସ୍ତ ବାରତା ।
ନିଶ୍ଚୟ ଅଟନ୍ତି ଯୋଗୀ ଏ ମହାପୁରୁଷ
ଯୋଗୀର ଲକ୍ଷଣମାନ ଅଙ୍ଗେ ସୁପ୍ରକାଶ ।
ସନ୍ଦେହ ଭଞ୍ଜନ ହେତୁ ପୁଚ୍ଛିଲେ ବିନୟେ
"ଯୋଗାଭ୍ୟାସ କରନ୍ତି କି ସାଧୁ ମହାଶୟେ ?"
ଶ୍ରୀମୁଖୁଁ ଶ୍ରବଣ କରି ସମସ୍ତ ବିଷୟ
ଦୃଢ଼ୀଭୂତ ହେଲା ତାଙ୍କ ଧାରଣା ନିଶ୍ଚୟ ।
ଗଙ୍ଗା ପ୍ରସାଦଙ୍କୁ ତହୁଁ କହିଲେ ସମ୍ବୋଧି
ଏ ବ୍ୟାଧିର ନାହିଁ ଭାଇ ! କୌଣସି ଔଷଧି ।
ଯୋଗେଶ ଦୁର୍ଲ୍ଲଭ ବ୍ୟାଧି ନରେ ଅପ୍ରାପତ
ଯାହାର ହୁଅଇ ଭବେ ସେହି ଭାଗ୍ୟବନ୍ତ ।
ଏତେ କଥା ଶୁଣି ସୁଜ୍ଞ ଗଙ୍ଗା କବିରାଜ
ଚିକିତ୍ସା ବର୍ଜ୍ଜନ ପାଇଁ ହୋଇଲେ ନାରାଜ ।
ତାଙ୍କ ପାରୁପର୍ଯ୍ୟନ୍ତ କଲେ ପ୍ରତିକାର
ଫଳ ନୋହିଲା କି ତହିଁ କୌଣସି ପ୍ରକାର ।
ଗୃହେ ଏଣେ ପ୍ରଭୁଙ୍କର ମାତା ଚନ୍ଦ୍ରାଦେବୀ
ଅତ୍ୟନ୍ତ ବ୍ୟଥିତା ପୁତ୍ର କଥା ଭାବି ଭାବି ।
କନିଷ୍ଠ ସନ୍ତାନଠାରେ ମାତାମାନଙ୍କର
ମାୟାମମତା ବିଶେଷ ଦୃଷ୍ଟ ନିରନ୍ତର ।
ତହିଁ ସଙ୍ଗେ ପୁଣି ଜ୍ୟେଷ୍ଠପୁତ୍ରର ବିୟୋଗ
କନିଷ୍ଠର ପୂଜା ତ୍ୟାଗ ହୋଇଲା ସଂଯୋଗ ।
ଗୋଟି ଗୋଟି ଏ ପ୍ରକାର ଦୁର୍ଘଟଣାମାନ
ଚନ୍ଦ୍ରାଙ୍କ ଜୀବନାକାଶ କଲା ସମାଚ୍ଛନ୍ନ ।
ଶୋକ ଦୁଃଖାଘାତେ ମାତା ହୋଇଣ କାତର ।
ପୁତ୍ରଙ୍କୁ ଦେଖିବା ପାଇଁ ହୋଇଲେ ଅଧୀର ।
ମନୁଷ୍ୟ ପଠାଇ ଗୃହେ ଆଣିଲେ ଫେରାଇ
ଜନ୍ମସ୍ଥାନେ ଉପନୀତ ଜଗତ ଗୋସାଇଁ ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ କୀର୍ତ୍ତନେ ହେଲେ ଭବସିନ୍ଧୁ ପାର ।
ନ ରହିବ ଶୋକ ଦୁଃଖ ସଂସାର କଷଣ
ମର୍ତ୍ତ୍ୟଧାମେ ଭଜ ଏବେ ପ୍ରଭୁ ଭଗବାନ ।

---

## ସପ୍ତମ ଅଧ୍ୟାୟ

## ସ୍ୱଦେଶକୁ ପ୍ରତ୍ୟାଗମନ ଓ ବିବାହ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ଜଗତ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପରମ-ଈଶ୍ୱର
କାତରେ କରୁଣାକର କରୁଣାସାଗର ।
ଜନ୍ମଭୂମିରେ ପ୍ରବେଶି ପ୍ରଭୁ ଜଗନ୍ନାଥ
କେମନ୍ତେ କରିଲେ ଲୀଳା ଶୁଣ ସେ ଚରିତ ।
'ମା' 'ମା' ବୋଲି କେତେବେଳେ ବ୍ୟାକୁଳେ କ୍ରନ୍ଦନ
ଭାବାବେଶେ କେତେବେଳେ ଶୂନ୍ୟ ବାହ୍ୟଜ୍ଞାନ ।

କେତେବେଳେ ଅବା ପୁଣି ପ୍ରକୃତିସ୍ଥ ହୋଇ
ପ୍ରେମାଳାପେ ମତ୍ତ ହୋନ୍ତି ବୟସ୍ୟଙ୍କୁ ନେଇ ।
ଉଦାସୀନ ଭାବ ଚିତ୍ତେ ସତତ ବିକାଶ
ଆତୁର ବେଶର କ୍ଷୁଦ୍ର ବାଳକ ସଦୃଶ ।
ଲଜ୍ଜା ଘୃଣା ଭୟ ନାହିଁ କିଞ୍ଚିତ ପ୍ରମାଣ
ଦୁରୂହ ଅଭୀଷ୍ଟ ଲଭେ ପ୍ରଧାବିତ ପ୍ରାଣ ।
କାର୍ଯ୍ୟକଳାପ ଦେଖିଣ ସରବେ ଚିନ୍ତିତ
ଭୂତ ପ୍ରେତ ଉପଦେବ ତାଙ୍କଠି ଆଶ୍ରିତ ।
ସୁତ ପାଇଁ ଚନ୍ଦ୍ରାଦେବୀ ବ୍ୟଥିତ ହୃଦୟ
ମଙ୍ଗଳ ନିମନ୍ତେ କଲେ ବିବିଧ ଉପାୟ ।
ଶ୍ରୀଦେବ ବୋଲନ୍ତି, ଜଣେ ଆସିଲା ଗୁଣିଆ
ଭୂତ ପ୍ରେତାଦିର ଯେହୁ ଜାଣଇ କମିଆଁ ।
ମନ୍ତ୍ର ପାଠ କରେ ଏକ ବଳିତା ପୋଡ଼ାଇ
ମୋ ହସ୍ତେ ଅର୍ପିଲା ତାର ଧୂମ ଘ୍ରାଣ ପାଇଁ ।
କହିଲା ଯଦ୍ୟପି ଭୂତପ୍ରେତ ଆଶ୍ରିଥିବ
ଏହାକୁ ସୁଙ୍ଘିବା ମାତ୍ରେ ଛାଡ଼ି ପଳାଇବ ।
କୌଣସି ସୁଫଳ ଏଥି ନୋହିଲା ଲକ୍ଷିତ
ଆରେକ ଗୁଣିଆ ପୁଣି ହେଲେ ସମାହୃତ ।
ଯଥାବିଧି ପୂଜା କରି ଗୁଣିଆ ପ୍ରଧାନ
ଗମ୍ଭୀର ରଜିରେ କଲେ ଚଣ୍ଡୀଙ୍କୁ ଆହ୍ୱାନ ।
ପୂଜାରେ ସନ୍ତୁଷ୍ଟା ହୋଇ ଚଣ୍ଡୀ ଆବିର୍ଭୂତା
ବୋଇଲେ ସନ୍ଦେହ ଫେଡ଼ି ଯଥାର୍ଥ ବାରତା ।
"ଭୂତପ୍ରେତାଶ୍ରିତ ନୁହେ ସୁତଙ୍କର ଶରୀର
କିମ୍ବା ପୀଡ଼ାଗ୍ରସ୍ତ ନୁହେ କୌଣସି ପ୍ରକାର ।"
ଅତଃପର ଦେବଙ୍କୁ ସେ ସ୍ନେହେ ସମ୍ବୋଧିଣ
କହିଲେ ମଙ୍ଗଳମୟ ନିଦାନ ବଚନ ।
"ସାଧୁ ହେବା ପାଇଁ ଇଚ୍ଛା ଥିଲେ ହେ ଗଦାଇ !
ବହୁତ ଗୁଆ ଚର୍ବଣ ବିହିତ ନୁହଇ ।
ଗୁଆ ଚର୍ବଣ କଲେକ ବହୁ ପରିମାଣେ
କାମଶକ୍ତି ବୃଦ୍ଧି ପାଏ ଚିତ୍ତେ ଦିନେ ଦିନେ ।"
ଚଣ୍ଡୀଙ୍କ ଆଦେଶ ଶୁଣି ପ୍ରଭୁ ପରମେଶ
ସେହି ଦିନୁ ପରିତ୍ୟାଗ କଲେ ସେ ଅଭ୍ୟାସ ।
ଗ୍ରାମକୁ ଆସିଣ ମଧ୍ୟ ଦେବରସ୍ୱଙ୍କର
ସାଧନ ଭଜନେ ତ୍ରୁଟି ନାହିଁ କିଞ୍ଚିତର ।
ସନ୍ନିକଟେ ଯେ ସକଳ ଜନଶୂନ୍ୟ ସ୍ଥାନ
ନିତ୍ୟ ନିତ୍ୟ ଯାଇ ତହିଁ ଧ୍ୟାନେ ନିମଗନ ।

ତନ୍ମଧ୍ୟେ ଦୁଇଟି ସ୍ଥାନ ଅଟଇ ପ୍ରଶସ୍ତ
ବୁଧିଇ ମୋଡ଼ାଲ, ଆଉ ଭୂତିଖାଲ ଖ୍ୟାତ ।
ଦିନ ରାତି କିଛି ମାତ୍ର ନ କରି ବିଚାର
ଯେତେବେଳେ ଇଚ୍ଛା ହୁଏ ଗମନ୍ତି ସେଠାର ।
ମିଷ୍ଟାନ୍ନାଦି ଖାଦ୍ୟ ଦ୍ରବ୍ୟ କରିଣ ସଂଗ୍ରହ
ଦେବଦେବୀଙ୍କଠି ଭୋଗ ଦିଅନ୍ତି ପ୍ରତ୍ୟହ ।
ଭୋଗ ଶେଷ ହେଲେ ହାଣ୍ଡି ମିଷ୍ଟାନ୍ନ ସହିତ
ବାୟୁ ବେଗେ ଊର୍ଦ୍ଧ୍ୱେ ଉଠି ଶୂନ୍ୟରେ ବିଲୁପ୍ତ ।
ମଧ୍ୟେ ମଧ୍ୟେ ଯେତେବେଳେ ହୁଏ ବଳିଦାନ
ଶିବାଗଣ ଆସିଣ ତା କରନ୍ତି ଭକ୍ଷଣ ।
କେବେ କେବେ ଦେବାଦେବୀ ହୋଇ ଆବିର୍ଭୂତ
ହିତ ବଚନେ କରନ୍ତି ସନ୍ଦେହ ଦୂରିତ ।
ଅତଃପର ଦିନକରେ ପ୍ରଭୁ ନରହରି
ଗୃହେ ଫେରିବାକୁ ହେଲା ଅତିଶୟ ଡେରି ।
ଅର୍ଦ୍ଧରାତ୍ରି ପ୍ରାୟ ଆସି ହେଲା ସମାଗତ
ଗୃହେ ନ ଫେରିଲେ ଆଉ ପ୍ରଭୁ ଭବନାଥ ।
ମାତା ଚନ୍ଦ୍ରାଦେବୀ ଆଉ ଭ୍ରାତା ରାମେଶ୍ୱର
ଚିନ୍ତାରେ ହୋଇଲେ ଦୁହେଁ ଅତୀବ କାତର
ମାତାଙ୍କ ଆଦେଶେ ରାମେଶ୍ୱର ବାହାରିଲେ
ନାନା ସ୍ଥାନେ ଖୋଜି ଖୋଜି ଶ୍ମଶାନକୁ ଗଲେ ।
ଗଦାଇ ଗଦାଇ ବୋଲି ଶଙ୍କାଯୁକ୍ତ ଚିତ୍ତେ
ଆହ୍ୱାନ କରିଲେ ତାଙ୍କୁ ଦୂରରୁ ଯେମନ୍ତେ ।
ଉଚ୍ଚସ୍ୱରେ ଉତ୍ତରିଲେ ପ୍ରଭୁ ଗଦାଧର
"ଅଗ୍ରସର ହୁଅ ନାହିଁ ସମୀପେ ମୋହର ।
ଏଠାରେ ଅଛନ୍ତି ଚଣ୍ଡୀଗ୍ରାମଣୀ ବହୁତ
କେ ଜାଣେ ଯଦ୍ୟପି ସେହୁ ହୋଇ ପ୍ରକୁପିତ ।
କରିବେ ତୁମ୍ଭର କିଛି ଅନିଷ୍ଟ ସାଧନ
ସେ ନିମନ୍ତେ ଆସିବାକୁ କରୁଛି ବାରଣ ।"
ସାଧନ ଭଜନ କେତେ ହୋଇଲା ଏମନ୍ତ
ମାନବେ ନୋହିଲେ କେହି ସେ ସବୁ ବିଦିତ ।
ପୂରୁବର ଉନ୍ମତ୍ତତା ଆଉ ବ୍ୟାକୁଳତା
ଦୂରୀଭୂତ ହୋଇ ଏବେ ଉପଶାନ୍ତ ବ୍ୟଥା ।
ପୂର୍ବପରି ନାହିଁ ଆଉ ବ୍ୟାକୁଳ କ୍ରନ୍ଦନ
ଆତୁର ବେଶର ଯେହ୍ନେ ନର ସାଧାରଣ ।
ଦେବଦେବୀ ପୂଜା ଆଉ ଭ୍ରମଣ ଶ୍ମଶାନେ
ବାଲ୍ୟକାଳରୁ ଅଭ୍ୟସ୍ତ ପ୍ରଭୁ ନାରାୟଣେ ।

ଏ ରୂପ ବେଶରେ ଆଉ ତାହାଙ୍କ ମନରେ
ରହିଲା ନାହିଁ ସନ୍ଦେହ କୌଣସି ପ୍ରକାରେ ।
ଏସନେ ଆଶ୍ୱସ୍ତ ହୋଇ ସ୍ନେହମୟୀ ମାତା
ଗୋପନେ ବିଚାର କଲେ ବିଭା ଦେବା କଥା ।
ଚୌଦିଗେ ସନ୍ଧାନ କଲେ ଆତ୍ମୀୟସ୍ୱଜନ
ଉପଯୁକ୍ତ ପାତ୍ରୀଟିଏ ନୋହିଲା ଘଟନ ।
ସଦ୍‌ବଂଶୀୟା ସୁ ଶ୍ରୀ ପାତ୍ରୀ ମିଳିଲା ଯେ ସ୍ଥାନେ
ପଣ ପାଇଁ ବହୁ ଟଙ୍କା ମାଗିଲେ ସେମାନେ ।
ଅର୍ଥାଭାବେ ପ୍ରପୀଡ଼ିତ ଜ୍ୟେଷ୍ଠ ରାମେଶ୍ୱର
ସମ୍ବନ୍ଧ ସ୍ଥାପନେ ତହିଁ କଲେ ଅସ୍ୱୀକାର ।
ଏସନେ ସକଳ ଶ୍ରମ ହେଲାରୁ ବିଫଳ
ମାତା ଚନ୍ଦ୍ରାଦେବୀ ହେଲେ ଅତ୍ୟନ୍ତ ବ୍ୟାକୁଳ ।
ମାତା ଭ୍ରାତା ଉଭୟଙ୍କ ଦେଖିଣ ବିମର୍ଷ
ଭାବାବିଷ୍ଟ ଚିତ୍ତେ ପ୍ରଭୁ ଦେଲେ ପରାମର୍ଶ ।
"ବୃଥା ଚେଷ୍ଟା କର କିପାଁ ନାନା ସ୍ଥାନେ ଯାଇ
ଜୟରାମବାଟୀ ଗ୍ରାମେ ମୋର ପାତ୍ରୀ ଥାଇ ।
ସର୍ବ-ଗୁଣସୁସମ୍ପନ୍ନା ସୁ ଶ୍ରୀ ସଦ୍‌ବଂଶଜା
ତାହାର ପିତାଙ୍କ ନାମ ଶ୍ରୀରାମ ମୁଖୁର୍ଯ୍ୟା ।
ମୋ ସଙ୍ଗେ ସେ ବାଳିକାର ବିଭା ହେବା ପାଇଁ
ଚିହ୍ନିତ ରହିଛି ଆଗୁଁ କୁଟାବନ୍ଧା ହୋଇ ।"
ଭଲ ଫଳଟିଏ ଯଥା ବୃକ୍ଷରେ ଫଳିଲେ
ଦଅଁକୁ ଲାଗିବ ଭୋଗ ଭଲ ପକ୍ୱ ହେଲେ ।
ମାନସିକ କରି ଏହା କୁଟା ଖିଏ ଆଣି
ଚିହ୍ନଟ ସ୍ୱରୂପ ବାନ୍ଧି ଦେଇଥାନ୍ତି ପ୍ରାଣୀ ।
ଏ ବିବାହ ସେହିପରି ଆଗରୁ ନିର୍ଦ୍ଦିଷ୍ଟ
ପ୍ରଭୁଙ୍କଠି ହୋଇଥିଲା ଏହା ଯେ ପ୍ରକଟ ।
କୌତୂହଳପୂର୍ଣ୍ଣ କଥା ଅଛଇ ଆବର
ସାଧୁଜନେ ଶୁଣ ସେହି ପୂତ ସମାଚାର ।
କାମାରପୁକୁର ପଲ୍ଲୀ ଅନତି ଦୂରରେ
ଖ୍ୟାତନାମା ଗ୍ରାମ ଏକ ଶିହୁଡ଼ ନାମରେ ।
ଶ୍ରୀପ୍ରଭୁଙ୍କ ଜ୍ୟେଷ୍ଠାଭଗ୍ନୀ ଦେବୀ ହେମାଙ୍ଗିନୀ
ବିଭା କରିଥିଲେ ତହିଁ ଉଚ୍ଚ କୁଳ ଜାଣି ।
ହୃଦୟ ମୁଖୁର୍ଯ୍ୟା ନାମ ସନ୍ତାନ ତାଙ୍କର
ଯେହୁ ଥିଲେ ପ୍ରଭୁଙ୍କର ବାଲ୍ୟ ସହଚର ।
ତାଙ୍କର ଗୃହକୁ ତେଣୁ ପ୍ରଭୁ ଭଗବାନ
ମଧ୍ୟେ ମଧ୍ୟେ କରୁଥିଲେ ଗମନାଗମନ ।

ସୁଗାୟକ ଜଣେ ଥରେ ତହିଁ ଉପସ୍ଥିତ
ସର୍ବେ ବ୍ୟଗ୍ର ତାଙ୍କ ଗୀତ ଶୁଣିବା ନିମିତ୍ତ ।
ସେଥିପାଇଁ ଯଥାଯଥ ହେଲା ଆୟୋଜନ
ଚତୁର୍ଦ୍ଦିଗେ ରାଷ୍ଟ୍ର ହେଲା ସେ କଥା ବହନ ।
ନିର୍ଦ୍ଦିଷ୍ଟ ଦିବସେ ଆସି ଗ୍ରାମ୍ୟ ନରନାରୀ
ଜୁଟି ହେଲେ କେତେ କିଏ କରିବ ସୁମାରି ।
ପ୍ରତିବାସୀଙ୍କ ସହିତେ ପ୍ରଭୁ ଭଗବାନ
ଆସିଥିଲେ ତହିଁ ଗୀତ ଶ୍ରବଣ କାରଣ ।
ଗୀତ ସମାପ୍ତ ହେଲାରୁ ଜଣେକ ରମଣୀ
କ୍ଷୁଦ୍ର ବାଳିକା ଗୋଟିକୁ ତାର କୋଳେ ଘେନି,
ରଙ୍ଗ କରି କହିଲେକ ଶ୍ରୋତାଙ୍କୁ ଦେଖାଇ
କାହାକୁ ହେଉଛି ମନ ବିଭାହେବା ପାଇଁ ।
ତକ୍ଷଣେ ସେ ଶିଶୁ କର ଉତ୍ତୋଳନ କରି
ଅଙ୍ଗୁଳିରେ ନିର୍ଦ୍ଦେଶିଲା ପ୍ରଭୁ ନରହରି ।
ସେହି କନ୍ୟା ଏହୁ ଯାଙ୍କୁ ବିବାହ ନିମନ୍ତେ
ଇଚ୍ଛା ପ୍ରକାଶିଲେ ଦେବ ଭାବାବିଷ୍ଟ ଚିତ୍ତେ ।
କିଏ ଏ ବାଳିକା ରୂପେ ବିପ୍ରଙ୍କ ସଦନେ
କୋଟୀ ନମସ୍କାର ମୋର ତାଙ୍କର ଚରଣେ ।
ଶୁଣ ମନ ଏଥିଅନ୍ତେ ବିବାହ ବିବୃତ
ଶିଶୁ ଭୁଲେ ରଙ୍ଗ କଲେ କେତେ ଜଗପୃତ ।
କନିଷ୍ଠଙ୍କ କଥାମତେ ଜ୍ୟେଷ୍ଠ ରାମେଶ୍ୱର
ଜୟରାମବାଟୀ ଲୋକ ପ୍ରେରିଲେ ସତ୍ୱର ।
ପଞ୍ଚମ ବୟସ ମାତ୍ର କରି ଅତିକ୍ରମ
ଷଷ୍ଠ ବୟସରେ କରିଛନ୍ତି ପଦାର୍ପଣ ।
ତିନଶତ ମୁଦ୍ରା ପଣ ନୋହିଲେ ପ୍ରାପତ
ବିବାହ ହେବାକୁ କନ୍ୟା ପିତା ଅସମ୍ମତ ।
ଘଟକଠୁଁ ଏ ସମ୍ବାଦ ପାଇଲେ ଯେପରି
ମାତା ପାଶେ ନିବେଦିଲେ ଜ୍ୟେଷ୍ଠ ତ୍ୱରା କରି ।
ଶୁଭ ସମାଚାର ଚନ୍ଦ୍ରା ଶ୍ରବଣ ମାତ୍ରକେ
ରାମେଶ୍ୱରେ କହିଲେକ ଅତୀବ ପୁଲକେ ।
ଏମନ୍ତ ସୁଯୋଗ ତୁମ୍ଭେ କେବେହେଁ ନ ଛାଡ଼
ଯେ କୌଣସିମତେ କର ବିବାହ ଯୋଗାଡ଼ ।
ଏସନ ଆଦେଶ ପାଇ ଜ୍ୟେଷ୍ଠ ରାମେଶ୍ୱର ।
ବିବାହ ନିମନ୍ତେ ଏବେ ହେଲେ ତତପର ।
ବାରଶ ବାଷଠି ସାଲ ବଇଶାଖ ମାସେ
ଶୁଭଦିନ ସ୍ଥିର ହେଲା ବିବାହ ସକାଶେ

ତେଇଶ ବରଷ ପ୍ରଭୁ ବୟ ଅତିକ୍ରମ
ଚବିଶରେ କରିଛନ୍ତି ମାତ୍ର ପଦାର୍ପଣ ।
କାମାରପୁକୁର ଗ୍ରାମେ ନରନାରୀ ଯେତେ
ଗଦାଇଙ୍କୁ ଅତି ସ୍ନେହ କରନ୍ତି ସମସ୍ତେ ।
ତାଙ୍କ ପରିଣୟ କଥା କରିଣ ଶ୍ରବଣ
ମହାନନ୍ଦ ପାରାବାରେ ସର୍ବେ ଭାସମାନ ।
ବିବାହ ଦିବସ ଯେବେ ହେଲା ଉପସ୍ଥିତ
ପ୍ରତିବାସୀ ନାରୀମାନେ ହୋଇ ସମବେତ ।
କେହି ବସି ବର ପାଇଁ ଘୋରିଲା ଚନ୍ଦନ
କୁସୁମ ତୋଳିଲା କେହି ଭୃଙ୍ଗୀ ଯେସନ ।
କେହିବା ଗୁନ୍ଥିଲା ମାଳା ଦିବ୍ୟ ମନୋହର
ଚନ୍ଦନ ଚିତ୍ରାଇ କେହି ସଜ କଲା ବର ।
କେହି ଦେଲା ହୁଳହୁଳି କେହି ଶଙ୍ଖନାଦ
ଏମନ୍ତେ ଆନନ୍ଦେ ମଗ୍ନ ହେଲେ ନାରୀବୃନ୍ଦ ।
ଭାଇଜଙ୍କ ମନ ନିରାନନ୍ଦ ଅତିଶୟ
ବାଦ୍ୟ ଆଡ଼ମ୍ବରଶୂନ୍ୟ ଶୁଭପରିଣୟ ।
ଅନ୍ତରେ ଜାଣିଣ ଏହା ପ୍ରଭୁ ନାରାୟଣ
ମଧୁଭାଷେ କହିଲେକ ସାନ୍ତ୍ୱନା ଦେଇଣ ।
ବୃଥାରେ କିପାଇଁ ତୁମ୍ଭେ କରୁଅଛ ଖେଦ
କିପରି ବାଜୁଛି ଶୁଣ ସୁମଙ୍ଗଳ ବାଦ୍ୟ ।
ଏମନ୍ତ କହିଣ ଶିଶୁମତି ଗଦାଧର
ଶ୍ରୀମୁଖେ କଲେକ ଧ୍ୱନି ବାଦ୍ୟ ଯେ ପ୍ରକାର ।
ଦଡ଼୍‌ଦଡ଼ା ଦୁମ୍ ଦଡ଼ା ଦଡ଼୍ ଦଡ଼୍ ଦଡ଼ା ଦୁମ୍
ଦୁମ୍ ଦୁମ୍ ଦଡ଼୍ ଦଡ଼୍ ଦଡ଼୍ ଦଡ଼୍ ଦଡ଼ା ଦୁମ୍
ଏସନେ ବଜାଇ ବାଦ୍ୟ ପ୍ରଭୁ ପରମେଶ
ଆନନ୍ଦେ ନାଚିଲେ ଗୃହେ ବାଳକ ସଦୃଶ ।
ରଙ୍ଗପ୍ରିୟ ପ୍ରଭୁଙ୍କର ଏ ରଙ୍ଗ ଦେଖିଣ
ହସି ହସି ଗଡ଼ିଗଲେ ଆଗନ୍ତୁକ ଜନ ।
ଅତିଶୟ ଲଜ୍ଜାହୀନ ଯାହାର ସ୍ୱଭାବ
ବିବାହ ସମୟେ ତାର ହୁଏ ଲଜ୍ଜାଭାବ ।
ପ୍ରଭୁଙ୍କଠି ଦୃଷ୍ଟି ତାର ବିପରୀତ ରୀତି
ମରମ ବୁଝିଇ ସେହୁ ଯା ଚିତ୍ତେ ଭକତି ।
ଲଜ୍ଜା ଘୃଣା ଭୟଶୂନ୍ୟ ପ୍ରଭୁ ନିରଞ୍ଜନ
ଆଚାର ବେଭାର ସଦା ବାଳକ ସମାନ ।
ମାୟାମୁକ୍ତ ନେତ୍ରେ ତାଙ୍କ କାର୍ଯ୍ୟ ନିରେଖିଲେ
ସ୍ୱଚ୍ଛ ଦିଶେ ଯେସନ୍ତେ କାଚେ ମଇଳା ନ ଥିଲେ ।

ମାଙ୍ଗଳିକ ଧ୍ୱନି ମଧ୍ୟେ ବିଜେ କଲେ ବର
ସମ୍ମୁଖେ ପଶ୍ଚାତେ ବର-ଯାତ୍ରୀ ନିକର ।
ଖାଲି ପାଦ, ଖାଲି ଦେହ, ଠେଙ୍ଗା ବାଡ଼ି କରେ
କଟିରେ ଚଦର ଭିଡ଼ା ଗାମୁଛା କାନ୍ଧରେ ।
ନାନାରଙ୍ଗ କଉତୁକ ଯାଇ ଯାଇ ପଥେ
ମହେଶ ବିବାହ ବେଳେ ଭୈରବ ଯେମନ୍ତେ ।
ବରସହ ବରଯାତ୍ରୀ ମନ୍ଥର ଗମନେ
ବିବାହ ମଣ୍ଡପେ ଉପସ୍ଥିତ ଶୁଭକ୍ଷଣେ ।
ଶୁଭ ଲଗ୍ନେ ସମାପିତ ଶୁଭପରିଣୟ
ଅତଃପର କନ୍ୟାକର୍ତ୍ତା ବ୍ୟସ୍ତ ଅତିଶୟ ।
ବରଯାତ୍ରୀ କନ୍ୟାଯାତ୍ରୀ ସମାଗତ ଯେତେ
ଭୋଜନ କରିବେ କି ପ୍ରକାରେ ବିଧିମତେ ।
ତହିଁମଧ୍ୟେ ଥିଲେ ଯେତେ ବ୍ରାହ୍ମଣ ପଣ୍ଡିତ
ସ୍ଥାନାଭାବେ ଅଗ୍ରେ ହେଲା ତାଙ୍କର ପଙ୍ଗତ ।
ପାର୍ଶ୍ୱସ୍ଥିତ କୋଠରୀରେ ରମଣୀ ମଣ୍ଡଳୀ
ରଚିଲେ ବାସର ଶଯ୍ୟା ହୋଇ କୁତୂହଳୀ ।
ରମଣୀଙ୍କ ରଙ୍ଗ ଢଙ୍ଗ ଦେଖିଲେ ଯେସନ
ଶ୍ୟାମାଭାବ ପ୍ରଭୁଙ୍କର ଚିତ୍ତେ ଉଦ୍ଦୀପନ ।
'ମାଆ' 'ମାଆ' ବୋଲି କ୍ଷଣେ ଭାବେ ବିମୋହିତ
ବୀଣା-ବିନିନ୍ଦିତ କଣ୍ଠେ ଗାଇଲେ ସଙ୍ଗୀତ ।
ପଦୁତୋଳା ଶୁଣି ଯେସନ୍ତେ ମୋହିତ ନାଗୁଣୀ
ସ୍ତମ୍ଭୀଭୂତ ହେଲେ ତେସନ୍ତେ ପୁରୁଷ, ରମଣୀ ।
ଯେ ଥିଲେ ଯେବଣ ଭାବେ ପଙ୍ଗତ ଉପରେ
ରହିଲେ ସେ ଭାବେ କାଷ୍ଠପିତୁଳା ରୂପରେ ।
ତରୁଣୀଏ ଆବାକାବା ଶୁଣିଣ ସଙ୍ଗୀତ
ଅନିମେଷ ନେତ୍ରେ ଚାହିଁ ହେଲେ ଜଡ଼ୀଭୂତ ।
ରଙ୍ଗ କରିବାକୁ ଚିତ୍ତେ ଯେତେ ଇଚ୍ଛା ଥିଲା
ଏ ରଙ୍ଗ ଦେଖିଣ ତାହା ଦୂରେ ଉଡ଼ିଗଲା ।
ଧନ୍ୟ ସେ ରମଣୀବୃନ୍ଦ ଏ ମହୀମଣ୍ଡଳେ
ହରଗୌରୀ ଯେନ ଯେହୁ ଏସନେ ଖେଳିଲେ ।
ଯେ ଯୁଗ୍ମ ଦର୍ଶନ ପାଇଁ ବିରଞ୍ଚି ଅକ୍ଷମ
ହେଲେ ତା ପାଇଣ ତାଙ୍କ ସାର୍ଥକ ଜନମ ।
ମହା ଭାଗ୍ୟବତୀ ପୂଜ୍ୟା ଶାଶୁ ପ୍ରଭୁଙ୍କର
ଜାମାତା ସ୍ୱରୂପେ ପ୍ରାପ୍ତ ବ୍ରହ୍ମାଣ୍ଡ ଠାକୁର ।
ତାଙ୍କ ତୁଲେ ଭାଗ୍ୟବତୀ କେ ଅଛି ମହୀରେ
ବିଶ୍ୱଜନନୀଙ୍କୁ ଯେହୁ ଧରିଲେ ଉଦରେ ।

ସମସ୍ତଙ୍କ ପଦରେଣୁ ମାଗଇ ଅଧମ
କାତରେ କରୁଣା କର ପ୍ରଭୁ ଗୁଣଧାମ !
ବିଭା ଶେଷେ ବରକନ୍ୟା ଗୃହେ ବାହୁଡ଼ିଲେ
ନବ ବଧୂ ପାଇ ଚନ୍ଦ୍ରା ଆନନ୍ଦେ ଭାସିଲେ ।
ବିଧାତାଙ୍କ ଲୀଳା ଭବେ ଅଟଇ ବିଚିତ୍ର ।
ସୁଖ ଦୁଃଖ କାଳେ କାଳେ ଭ୍ରମଇ ଏକତ୍ର ।
ଏ ଆନନ୍ଦ ଦିନେ ନିରାନନ୍ଦ ଉପସ୍ଥିତ
ସେଥିର ସନ୍ଦେଶ ଶୁଣ ସ୍ଥିର କରି ଚିତ୍ତ ।
ଗୃହେ ବିରାଜିଲେ ମଧ୍ୟ ବ୍ରହ୍ମାଣ୍ଡ କରତା
ଅର୍ଥାଭାବେ ଚନ୍ଦ୍ରାଦେବୀ ଚିର ପ୍ରପୀଡ଼ିତା ।
ତିନିଶତ ମୁଦ୍ରା ଯାହା ଦେଇଥିଲେ ପଣ
ଅତି କଷ୍ଟେ କରିଥିଲେ ତାହା ଆୟୋଜନ ।
ଅଳଙ୍କାର ଗଢ଼ିବାକୁ ଅର୍ଥର ଅଭାବ
ମାଗିଆଣି ଚଳାଇଲେ ବିବାହ ଉତ୍ସବ ।
ଫେରାଇବା ଦିନ କ୍ରମେ ହେଲା ଉପସ୍ଥିତ
ଚନ୍ଦ୍ରାଦେବୀ ସେଥିପାଇଁ ଅତ୍ୟନ୍ତ ଚିନ୍ତିତ ।
ନବବଧୂର ଅଙ୍ଗରୁ ଅଳଙ୍କାରମାନ
ଶାଶୁ ହୋଇ କେଉଁ ପ୍ରାଣେ କାଢ଼ିନେବେ ପୁଣ ।
ଏମନ୍ତ ଚିନ୍ତାରେ ଚନ୍ଦ୍ରା କରନ୍ତି ରୋଦନ
ଜାଣିପାରି ମନ କଥା ପ୍ରଭୁ ନାରାୟଣ ।
ବଧୂମାତା ନିଦ୍ରାଗତା ଥିଲେ ଯେତେବେଳେ
ଅଳଙ୍କାର କାଢ଼ିନେଲେ ଅତୀବ କୌଶଳେ ।
ନିଦ୍ରା ଭାଜିଲାରୁ ବଧୂ ଶାଶୁ ପାଶେ ଯାଇ
ବୋଇଲେ "ଗହଣା ନାହିଁ" ଶ୍ରୀଅଙ୍ଗ ଦେଖାଇ ।
"ଗୃହେ ଶୋଇଥିଲି ସୁଖେ, ନ ଥିଲେକ କେହି
କେ ନେଲା ଚୋରାଇ କିଛି ଜାଣିପାରୁ ନାହିଁ ।"
ସଜଳ ଲୋଚନେ ଚନ୍ଦ୍ରା କୋଳେ ତାଙ୍କୁ ଘେନି
ଭୁଲାଇଲେ କହି ନାନା ଆଶ୍ୱାସନା ବାଣୀ ।
ଏ ସମ୍ବାଦ କନ୍ୟାପକ୍ଷ ଯେମନ୍ତ ପ୍ରାପତ
ଚନ୍ଦ୍ରାଙ୍କୁ ବକିଲେ କଟୁ ବଚନେ ବହୁତ ।
ମାତାଙ୍କୁ ସାନ୍ତ୍ୱନା ଦେଇ କହିଲେ ଗଦାଇ
"ସେମାନଙ୍କ କଥା କିଛି ମନେ ଘେନ ନାହିଁ ।
ବିବାହ କାର୍ଯ୍ୟ ତ ଏବେ ହୋଇଛି ସମ୍ପନ୍ନ
ଆଉ କି ଫେରାଇ ନେବେ କନ୍ୟାକୁ ସେ ପୁଣ ।
ତାଙ୍କର କଥାର ଆଉ କିସ ଅଛି ମୂଲ୍ୟ
ସେଥିପାଇଁ କେତେବେଳେ ନ ହୁଅ ବ୍ୟାକୁଳ ।"

ପରିଣୟ କାର୍ଯ୍ୟ ହେଲା ଏ ପ୍ରକାରେ ଶେଷ
ସ୍ୱଦେଶେ ରହିଲେ ପ୍ରଭୁ ଊନବିଂଶ ମାସ ।
ଦକ୍ଷିଣେଶ୍ୱରକୁ ବିଜେ କରିଣ ତଦନ୍ତେ
ସାଧନ ଭଜନେ ମଗ୍ନ ହେଲେ ପୂର୍ବମତେ ।
ପରିଣୟ କଥା ଶୁଣି କିସ ଭାବୁ ମନ !
ଈଶ୍ୱର ଚିନ୍ତାରେ ଯେହୁ ନିରତେ ନିମଗ୍ନ ।
ପ୍ରସନ୍ନ ହୋଇଣ ଯା'ଙ୍କ ପ୍ରତି ପରମେଶ
ବିହରନ୍ତି ତାଙ୍କ ସଙ୍ଗେ ମାନବ ସଦୃଶ ।
ସେ ପ୍ରଭୁ କିପାଇଁ ଅବା କଲେ ପରିଣୟ
କହୁଛି ତା ମର୍ମ ଶୁଣ ଚିତ୍ତ କରି ଥୟ ।
ବାଲ୍ୟକାଳୁଁ ଜ୍ଞାନଭକ୍ତି କରିଣ ଅର୍ଜନ
ସଂସାର କରନ୍ତି ପରେ ଯେଉଁ ପ୍ରାଣୀଗଣ ।
ଅନିତ୍ୟ ସୁଖରେ ସେହୁ ନ ହୋଇ ବିମୁଗ୍ଧ
ଆଶା ନ ରଖନ୍ତି ଚିତ୍ତେ ବିଭବ ସମ୍ପଦ ।
ଶୋକଦୁଃଖ ଦରିଦ୍ରତା ତାଙ୍କୁ ନ ସ୍ପର୍ଶଇ
ଅଟଳ ସୁମେରୁ ତୁଲ ଚିତ୍ତ ଦୃଢ଼ ଥାଇ ।
ଏମନ୍ତେ ଆଚରି ସେହୁ ବିଦ୍ୟାର ସଂସାର
ହେଲେ ତରିଯାନ୍ତି ଏହି ଭବ-ପାରାବାର ।
ଜଗତେ ସ୍ଥାପିବା ପାଇଁ ଏସନ ଆଦର୍ଶ
ପରିଣୟ ସୂତ୍ରାବଦ୍ଧ ହେଲେ ପରମେଶ ।
ଇନ୍ଦ୍ରିୟ ସମ୍ଭୋଗ ନୁହେ ବିବାହର ଲକ୍ଷ୍ୟ
ଆପଣା ଜୀବନେ ପ୍ରଭୁ ଦେଲେ ତାର ସାକ୍ଷ୍ୟ ।
ଗୃହସ୍ଥାଶ୍ରମେ କିପରି ରହିବାକୁ ହେବ
ସେ ସମ୍ବନ୍ଧେ ଯା କହିଲେ ପ୍ରଭୁ ବିଶ୍ୱଦେବ
ଶୁଣ ଆରେ ବାପୁମାନେ ! ସେ ଅମିୟ ବାଣୀ
ତରିବାକୁ ଇଚ୍ଛା ଥିଲେ ଭବତରଙ୍ଗିଣୀ ।
"ପ୍ରଥମେ ଈଶ୍ୱରଲାଭ, ତା ପରେ ସଂସାର
ଏହା ଯେ କରି ପାରଇ, ଧନ୍ୟ ସେହି ନର ।
ବହୁ ଶ୍ରମ କରି ସୁନା ପାଇଲେକ କେହି
ଯେଉଁଠି ତାହାକୁ ରଖି ତଦ୍ରୂପ ରହଇ ।
ମାଟିରେ ପୋତୁ ବା ତାକୁ ରଖି ବାକସରେ
କିମ୍ବା ଫିଙ୍ଗି ଦେଉ ତାକୁ ସାଗର ଗର୍ଭରେ ।
ସୁନାର ଆକାରେ ସୁନା ଥିବ କାଳେ କାଳେ
ବଦଳିବ ନାହିଁ ତାର ରୂପ କେତେବେଳେ ।
ମନ କଞ୍ଚା ଥିଲାବେଳେ ପଶିଲେ ସଂସାରେ
କଳୁଷିତ ହୁଅଇ ତା ଅଳ୍ପ ସମୟରେ ।

ସେ କାରଣ ଜ୍ଞାନ-ଧନ କରିଣ ଅର୍ଜ୍ଜନ
ସଂସାରେ ପ୍ରବେଶ ଅଟେ ବହୁତ ବିଧାନ ।
ବିରାଟ ଜଳଧି ସମ ଏ ଭବ ସଂସାର
ପ୍ରାଣୀର ମନଟି ଖାଣ୍ଟି ଦୁଗ୍ଧ ସେ ପ୍ରକାର ।
ଦୁଧକୁ ରଖିଲେ ଯଥା ସଲିଳ ମଧ୍ୟରେ
କ୍ଷଣ ମଧ୍ୟେ ମିଶିଯାଏ ସେଥି ସହିତରେ ।
ଦୁଗ୍ଧକୁ ନିର୍ଜ୍ଜନେ କଳୁ ବସାଇଣ ଦହି
ନହୁଣୀ କାଢ଼ିଲେ ସେଥୁଁ ପ୍ରାତଃକାଳେ ମୋହି ।"
ତା ପରେ ଥୋଇଲେ ତାକୁ ସଲିଳ ଉପରେ
ନ ମିଶିଣ ଭାସୁଥାଏ ପୃଥକ ଭାବରେ ।
ମାନସ ରୂପ ଦୁଗ୍ଧରୁ ସେହି ପରକାର
ଜ୍ଞାନଭକ୍ତି ନହୁଣୀକୁ କରିଣ ବାହାର,
ତା ପରେ ଥୋଇଲେ ତାକୁ ସଂସାର ସଲିଳେ
ନିର୍ଲିପ୍ତ ହୋଇଣ ଭାସୁଥିବ କାଳେ କାଳେ ।
ସଂସାର କରଇ ଯେହୁ ଲଭି ବିଭୁପଦ
ପତ୍ନୀ ସହ ରଖେ ନାହିଁ ଦୈହିକ ସମ୍ବନ୍ଧ ।
ବିଭୁଙ୍କର ପ୍ରିୟ ଭକ୍ତ ହେଲେ ପତିପତ୍ନୀ
ବିଭୁଙ୍କ ପ୍ରସଙ୍ଗେ ଲିପ୍ତ ଦିବସ ରଜନୀ ।
ବିଭୁ ଧ୍ୟାନ, ବିଭୁ ଜ୍ଞାନ, ବିଭୁ ହିଁ ସର୍ବସ୍ୱ
ବିଭୁ ବିନୁ ଅନ୍ୟ କାହିଁ ନ ଥାଏକ ଆଶ ।
ପ୍ରଭୁ ଭଗବାନ ସର୍ବ ଘଟେ ବିରାଜନ୍ତି
ଚିତ୍ତରେ ଏ ଭାବ ରଖି ପ୍ରାଣୀଙ୍କୁ ସେବନ୍ତି ।
ପିତାମାତାଙ୍କୁ ଜାଣିଣ ଈଶ୍ୱର ଈଶ୍ୱରୀ
ସେବାରେ ନିଯୁକ୍ତ ଥାନ୍ତି ଦିବସ ଶର୍ବରୀ ।
ସସ୍ନେହେ ଶିଶୁଙ୍କୁ ଡାକି ଦିଅନ୍ତି ଭୋଜନ
ବାଳ ଗୋପାଳ ଭାବରେ ଚିତ୍ତ ପରିପୂର୍ଣ୍ଣ ।
ପତିପତ୍ନୀ ଦୁହିଁଙ୍କର ହୃଦେ ଥିଲେ ଭକ୍ତି
ଏ ଭାବେ ସଂସାର ଯାହା ଭାଗ୍ୟବଳେ ପାନ୍ତି ।
ଈଶ୍ୱର-ଆନନ୍ଦ ଦୁହେଁ ଆଗୁଁ ଭୁଞ୍ଜିଥିଲେ
ଏ ସୁଖ ପ୍ରାପତ ହୁଏ ବହୁ ପୁଣ୍ୟ ଫଳେ ।
ଈଶ୍ୱରଙ୍କ ସବିଶେଷ କରୁଣା ବିହୁନେ
ଏପରି ସଂସାର ଭୋଗ ଅତୁଳ ଭୁବନେ ।
ତା ନ ହେଲେ ପତିପତ୍ନୀ ଦୁହିଙ୍କ ଅମେଳ
ଜନ୍ମାଏ କଳହ ଆଦି ନାନା ଗଣ୍ଡଗୋଳ ।
ଧନଗର୍ବେ ପତ୍ନୀ ଖେଦେ ବୋଲଇ ବଚନ
ପିତା ମୋତେ ଦେଲେ କମା ଏ ପାତ୍ରରେ ଦାନ ।
ଏପରି ଲୋକର ହାତ ଧରିଅଛୁ ମୁହିଁ
ସୁଖ କ'ଣ ଦିନେ ସୁଦ୍ଧା ଜାଣିଲିତ ନାହିଁ ।
ପେଟକୁ ମୁଠାଏ ପୁରା ନ ମିଳିଲା ମୋତେ
ପିଲାଏ କି ଅବା ଗୁଣ୍ଡେ ଖାଇଲେ ତୃପତେ ।
ପିନ୍ଧିବାକୁ ନ ପାଇଲି ଖଣ୍ଡେ ଛିଣ୍ଡାକନା
ହସ୍ତେ ପାଦେ ଦେହେ ନାହିଁ ରତ୍ତିଏ ଗହଣା ।
ପିଲାଙ୍କ ଦେହରେ କୌଣସିଟି କିଛୁ ନାହିଁ
କି ସୁଖେ ରଖିଛ ତୁମ୍ଭେ ଦେଖ ଥରେ ଚାହିଁ ।
ଆଖି ମୁଦି ସଦାବେଳେ ଈଶ୍ୱର ଈଶ୍ୱର
ଚକ୍ଷୁନାହିଁ କିଛି ମାତ୍ର ସଂସାର ଖବର ।
ଈଶ୍ୱର ଫିଶ୍ୱର ଆଦି ଗୁଡ଼ା ପାଗଳାମି
ଲୋକଭଳି ଘର କର ପିଲାଛୁଆ ଘେନି ।
ଈଶ୍ୱରଙ୍କ ପାଦେ ଯାର ମଜ୍ଜିଥିବ ମନ
ଏ କଟୁ ବାକ୍ୟେ କି ଘରେ ରହିବ ସେ ପୁଣ ।
ଯେ ସ୍ଥାନେ ରମିଲେ କେହି କୌଣସି ପ୍ରକାରେ
ବାଧା ବିଘ୍ନ ଦେବେ ନାହିଁ ବିଭୁ ଭଜିବାରେ ।
ଅନ୍ୱେଷିଣ ସେ ପ୍ରକାର ଜନଶୂନ୍ୟ ସ୍ଥାନ
ସେଠାରେ ରହିବ ଘରୁ ପୃଥକ ହୋଇଣ ।
ଯେସନେ ପଙ୍କିଲ ମାଛ ପଙ୍କ ମଧ୍ୟେ ଥାଇ
ପଙ୍କର କୌଣସି ଦାଗ ଗାତ୍ରେ ନ ଲାଗଇ ।
ଜ୍ଞାନ ଭକ୍ତି ଅରଜିଣ କୌଣସି ପ୍ରକାରେ
ସଂସାର କଲେକ ଦାଗ ନ ଲାଗେ ଗାତ୍ରରେ ।
ବିଭୁଙ୍କ ଦର୍ଶନ ଲଭି କଲେକ ସଂସାର
ଅବିଦ୍ୟା ପ୍ରଭାବ ଦୂର ହୁଅଇ ପ୍ରାଣୀର ।
କାମିନୀ କାଞ୍ଚନାସକ୍ତି ଅବିଦ୍ୟା ପ୍ରଭାବ
ହୃଦି ମଧ୍ୟେ କେତେବେଳେ ସ୍ଥାନ ନ ପାଇବ ।
ଭକ୍ତି ଭଗବାନ ଭକ୍ତ ଏ ତିନି ଘେନିଣ
ବିଦ୍ୟାର ସଂସାର ସୁଖେ କରିବ ଯାପନ ।"
ପ୍ରାଣୀହିତେ ଦେବରାୟ କହିଲେ ଏମନ୍ତ
ମାୟା ଶକ୍ତି ଏଡ଼ିବାକୁ ଏହାହିଁ ସୁପଥ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ପାନକଲେ କଣିକାଏ ଭବସିନ୍ଧୁ ପାର
ବେଳ ଥାଉଁ ଭଜ ମନ ! ଅଭୟ ଚରଣ
ହୁଡ଼ିଗଲେ ଭାବୁଥିବୁ ଏ ସାରା ଜୀବନ ।

# ଅଷ୍ଟମ ଅଧ୍ୟାୟ

## ଦକ୍ଷିଣେଶ୍ୱରରେ ଭୈରବୀ ବ୍ରାହ୍ମଣୀଙ୍କର ପ୍ରବେଶ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ବ୍ରହ୍ମ ସନାତନ ।
ବାରଶତ ସତଷଠି ସାଲର ଶେଷରେ
ବାହୁଡ଼ିଲେ ଦେବରାୟ କରମ କ୍ଷେତରେ ।
ଅତଃପର ଭକ୍ତିମତୀ ରାଣୀ ରାସମଣି
ଚାଲିଗଲେ ସ୍ୱର୍ଗଧାମେ ଶ୍ୟାମା ନାମ ଗୁଣି ।
ତାଙ୍କ ଦେହତ୍ୟାଗ କଥା ଅପୂର୍ବ କଥନ
ସାଧୁଜନେ ଏକମନେ ଶୁଣ ବିବରଣ ।
ମରଣ ସମୟ ଜାଣି ରାଣୀ ଆପଣାର
ଗୃହ ତେଜି ବାସକଲେ ଭାଗୀରଥୀ ତୀର ।
ତାଙ୍କର ମୃତ୍ୟୁ ପୂର୍ବରୁ ଆତ୍ମୀୟ ସମୂହେ
ଗଙ୍ଗାଯାତ୍ରା କରାଇଲେ ମହା ସମାରୋହେ ।
ଆଲୋକମାଳାରେ ଚତୁର୍ଦ୍ଦିଗ ସୁମଣ୍ଡିତ
ତା ଦେଖି କହିଲେ ରାଣୀ ବିରକ୍ତେ ଅତ୍ୟନ୍ତ ।
ଦୂରେ ଘେନିଯାଅ ଏହି ଭୌତିକ ରୋଶନୀ
ବିଜେ କରୁଛନ୍ତି ମୋର ଜଗତ ଜନନୀ ।
ତାଙ୍କ ଅଙ୍ଗ ବାହାରଣ ଦିବ୍ୟ ଜ୍ୟୋତିରାଶି
ଉଦ୍ଭାସିତ କରୁଅଛି ଦେଖ ଦଶଦିଶି ।
ଏମନ୍ତ କହିଣ ରାଣୀ ରହିଲେ ମଉନ
ପୁନଶ୍ଚ ଭାଷିଲେ ଧୀର ଗମ୍ଭୀର ବଚନ ।
ଆସିଲକି ଜଗଦମ୍ବେ ! ଜଗତ ଜନନୀ
ଚରଣେ ମାଗଇ ସ୍ଥାନ ଦାସୀ ଅଭାଗିନୀ ।
କଥା ସରୁ ନ ସରୁଣୁ ଆସି ଶିବାକୁଳ
ରାବଦେଇ ଚତୁର୍ଦ୍ଦିଗେ କଲେ ମହାରୋଳ ।
ମହା ପୁଣ୍ୟବତୀ ରାଣୀ ପ୍ରଶାନ୍ତ ହୃଦୟେ
ମାତୃକୋଡ଼େ ଲୀନ ହେଲେ ସମାଧି ଆଶ୍ରୟେ ।
ରାଣୀଙ୍କର ମୃତ୍ୟୁପରେ ମଥୁର ମୋହନ
ମନ୍ଦିର ଚାଳନା ଭାର କଲେକ ଗ୍ରହଣ ।
ରାଣୀଙ୍କ ବିପୁଳୈଶ୍ୱର୍ଯ୍ୟେ ହୋଇ ଅଧିପତି
ବିପଥେ ନ ଯାଇ ଭକ୍ତିମାର୍ଗେ ସଦା ମତି ।
ପ୍ରଭୁଙ୍କ ଚରଣେ ତାଙ୍କ ଭକତି ବିଶ୍ୱାସ
ଦିନୁଦିନୁ ବୃଦ୍ଧିପ୍ରାପ୍ତ ହୋଇଲା ବିଶେଷ ।
ଶ୍ରୀଚରଣ ଦୃଢ଼େ ଧରି କଲେକ ସଂସାର
ଜୀବନର ଲକ୍ଷ୍ୟ ଏହା କରିଲେ ସେ ସ୍ଥିର ।
ଏକାଦିକ୍ରମେ ଏସନ ଏଗାର ବରଷ
ସେବିଲେ ଦେବଙ୍କ ପାଦ ମଥୁର ବିଶ୍ୱାସ ।
ଧନ୍ୟ ଧନ୍ୟ ଶ୍ରୀ ମଥୁର ତୁମ୍ଭର ସମାନେ
ଭାଗ୍ୟବାନ କିଏ ଅଛି ଆଉ ଏ ଭୁବନେ ।
ତୁମ୍ଭର ଚରଣେ ମୋର କୋଟି ନମସ୍କାର
ବହୁ ପୁଣ୍ୟ ବଳେ ମିଳେ ଭକ୍ତ ଏ ପ୍ରକାର ।
ଦକ୍ଷିଣେଶ୍ୱରରେ ପ୍ରଭୁ ହୋଇ ଉପନୀତ
ଶ୍ୟାମାଙ୍କ ସେବାରେ ବ୍ରତୀ ରହିଲେ ନିରତ ।
ଦିବ୍ୟୋନ୍ମାଦ ଗାତ୍ରଦାହ ବିରହ ଲକ୍ଷଣ
ଶ୍ରୀଅଙ୍ଗରେ ଉଦ୍ଦୀପନ ହୋଇଲାକ ପୁଣ ।
ଏମନ୍ତ ଉନ୍ମାଦ ଭାବ ଦେଖା ନାହିଁ କେବେ
ମର୍ମ ବୁଝି ନ ପାରନ୍ତି ତେଣୁ ଏ ମାନବେ ।
ମାୟାମୋହେ ବିଜଡ଼ିତ ଯାହାଙ୍କର ମନ
ଦିବାନିଶି ଭଜନ୍ତି ସେ କାମିନୀକାଞ୍ଚନ ।
ଐହିକ ସୁଖସମ୍ଭୋଗ ଯାହାଙ୍କର ଆଶ
ସେ କାହୁଁ ଜାଣିବେ ସ୍ୱାଦ ହରିଭକ୍ତି ରସ ।
ଅନିତ୍ୟ ଅସାର ଅଟେ ଏ ଭବ ସଂସାର
ପ୍ରତି କ୍ଷଣେ ପାଉଛନ୍ତି ପ୍ରମାଣ ତାହାର ।
ତଥାପି ଆସଇ ନାହିଁ ବିରାଗ ତା ପ୍ରତି
ଅଗ୍ନିରେ ପତଙ୍ଗ ସମ ତହିଁ ନିପତନ୍ତି ।
ଆଚରନ୍ତି ଯାହା କିଛି ଭଜନ ପୂଜନ
ତା କେବଳ ଲୋକଦେଖା ବାହ୍ୟ ଆବରଣ
ବିଭୁ ପାଇଁ ସତ୍ୟ ସତ୍ୟ ଯା' ଚିତ୍ତ ବ୍ୟାକୁଳ
ତାକୁ ଦେଖିଣ ବୋଲନ୍ତି ଏ ମୂଢ଼ ବାତୁଳ ।
"କେହି କି ଲଭିଛି କେବେ ଈଶ୍ୱର ଦର୍ଶନ
ସେ କେବଳ ଶୁଣା କଥା ଶାସ୍ତ୍ରର ବଚନ ।"
ଏସନ ସ୍ୱଭାବ ଅଟେ ଯେଉଁ ପ୍ରାଣୀଙ୍କର
ପ୍ରଭୁଙ୍କୁ ଦେଖିଣ ସେହି ବରଜି ସଂସାର,

କେତେବେଳେ ହରି ହରି କେବେ ରାମ ରାମ
କେବେ ସ୍ତୁତି କରୁଛନ୍ତି ଶ୍ୟାମା-ଗୁଣ ଗାନ ।
କ୍ରନ୍ଦନ କରନ୍ତି କେବେ ଦରଶନ ପାଇଁ
ବ୍ୟାକୁଳେ ପଡ଼ନ୍ତି କେବେ ଗଙ୍ଗାତଟରେ ଯାଇ ।
ରାଣୀଙ୍କର ଅନୁଗ୍ରହେ କେତେ କେତେ ଲୋକ
ଧନୀ ହୋଇ ସମ୍ଭୋଗିଲେ ସାଂସାରିକ ସୁଖ ।
ତାଙ୍କ ଅତି ପ୍ରିୟପାତ୍ର ପ୍ରଭୁ ଭାବଗ୍ରାହୀ
ସେ ଧନେ ଉନ୍ନତି ପାଇଁ ଚେଷ୍ଟା କଲେ ନାହିଁ ।
ମାୟାମୁଗ୍ଧ ପ୍ରାଣୀଗଣ ତେଣୁ ବିଚାରିଲେ
ୟାଙ୍କୁ ବଳି ମୂଢ଼ ଆଉ ନାହିଁ ମହୀତଳେ ।
ଏକାଳେ ଭେଟିଲେ ଏକ ଅଦ୍ଭୁତ ରମଣୀ ।
ସାଧୁଜନେ ଶୁଣ ତାର ବିଚିତ୍ର କାହାଣୀ ।
ମନ୍ଦିରର ସୁପ୍ରଶସ୍ତ କୁସୁମ ଉଦ୍ୟାନେ
ଯେକାଳେ ଶ୍ରୀଦେବ ରତ କୁସୁମ ଚୟନେ ।
ସେକାଳେ ସେ ଗଙ୍ଗା ଗର୍ଭେ କଲେକ ଦର୍ଶନ
ମନ୍ଦିର ଘାଟକୁ ଖଣ୍ଡେ ନାବ ଆଗମନ ।
ତହିଁରୁ ଓହ୍ଲାଇ ଏକ ସୁନ୍ଦରୀ ରମଣୀ
ଉପରେ ବସିଲା ଆସି କୁଶାସନ ଘେନି ।
ଚାଳିଶ ବରଷ ପ୍ରାୟ ତାହାର ବୟସ
ପ୍ରୌଢ଼ା ହେଲେ ହେଁ ଯୌବନ-ଶୋଭା ସୁପ୍ରକାଶ
ଗୈରିକ ବସନ ଅଙ୍ଗେ ଦିବ୍ୟ ସୁଶୋଭନ
ଦୀର୍ଘାଲୁଲାୟିତ କେଶ ଶିରେ ଲମ୍ବମାନ ।
ବେଶଭୂଷା ଦେଖିବାକୁ ଭୈରବୀ ସଦୃଶ
କଥିତ ହୁଅଇ ପୂର୍ବ ବଙ୍ଗେ ତାର ବାସ ।
ବ୍ରାହ୍ମଣ ନନ୍ଦିନୀ ବାମା ବାଲ୍ୟକାଳାବଧି
ଈଶ୍ୱର ଚିନ୍ତାରେ ମଗ୍ନ ଥିଲେ ନିରବଧି ।
ବେଦାନ୍ତ ପୁରାଣ ତନ୍ତ୍ର ତାଙ୍କ କଣ୍ଠଗତ
ଯେହ୍ନେ ଦେବୀ ସରସ୍ୱତୀ ମର୍ତ୍ତ୍ୟେ ଆବିର୍ଭୂତ ।
ଯୋଗମାୟା ଅଂଶେ ଜାତ ସେ ବିପ୍ର ନନ୍ଦିନୀ
ଯୋଗେଶ୍ୱରୀ ନାମେ ତାଙ୍କୁ ସର୍ବଦେଶେ ଜାଣି ।
ସ୍ୱପ୍ନ ଯୋଗେ ଦିନେ ବିପ୍ରା କଲେକ ଦର୍ଶନ
ଗଙ୍ଗାତଟରେ ଛନ୍ତି ଏକ ପୁରୁଷ ପ୍ରଧାନ ।
କେମନ୍ତେ ପାଇବେ ସେହି ପୁରୁଷଙ୍କ ଦେଖା
ଏଥିଲାଗି ଗୃହ ତେଜି ଭ୍ରମିଲେକ ଏକା ।
ଶୁଭଦିନେ ପ୍ରବେଶିଲେ ଦକ୍ଷିଣେଶ୍ୱରରେ
ତାପରେ ଘଟିଲା ଯାହା ଶୁଣ ମନ ଧୀରେ ।
କୁସୁମ ଚୟନ ସାରି ପ୍ରଭୁ ନରହରି
ଆପଣା ପ୍ରକୋଷ୍ଠ ମଧ୍ୟେ ଆସିଲେକ ଫେରି ।
ସସ୍ନେହେ କହିଲେ ତହୁଁ ହୃଦୟେ ଡାକିଣ
"ଯେ ବାମା ବସିଛି ଘାଟେ ତାକୁ ଡାକି ଆଣ ।"
ମାତୁଳ ଆଦେଶ ଶୁଣି ହୃଦୟ ବିସ୍ମିତ
କିଏ ଏ ରମଣୀ, ତାଙ୍କୁ କାହିଁକି ଆହୂତ ।
ଏମନ୍ତ ସନ୍ଦେହେ ପଡ଼ି ହୃଦୟ ଠାକୁର
ଉତ୍ତରେ କହିଲେ ତହୁଁ ପ୍ରଭୁଙ୍କ ଛାମୁର ।
"ରମଣୀ ତ ପରିଚିତା ନୁହନ୍ତି ଆମ୍ଭର
ଡାକିଲେ ଆସିବେ କିମ୍ପା ସମୀପେ ତୁମ୍ଭର ।"
ଉତ୍ତରେ କହିଲେ ତାଙ୍କୁ ପ୍ରଭୁ ଆଦିନାଥ
"ମୋ ନାମେ ଡାକିଲେ ସେହୁ ଆସିବେ ନିଶ୍ଚିତ ।"
ତଥାପି ହୃଦୁଙ୍କ ମନୁଁ ନ ଗଲା ସନ୍ଦେହ
ମାତୁଳଙ୍କ ଚିହ୍ନେ କିମ୍ପା ଏମନ୍ତ ଆଗ୍ରହ ।
ଯାହାହେଉ ମାତୁଳଙ୍କ ଆଜ୍ଞା ଶିରେ ଧରି
ବାମା ସନ୍ନିଧାନେ ହୃଦୁ ଗଲେ ତ୍ୱରା କରି
ଉପସ୍ଥିତ ହୋଇ ପାଶେ କହିଲେ ବିନୟେ
ମାତୁଳ ଡାକନ୍ତି ତବ ଦର୍ଶନାଭିପ୍ରାୟେ ।
କି ଅବା ବୁଝିଲେ ସେଥୁ ଭୈରବୀ ରମଣୀ
ଆସନ ତେଜିଣ ତହୁଁ ଉଠିଲେ ତକ୍ଷଣି ।
ଭେଦିବାକୁ ଏ ରହସ୍ୟ ମାନବେ ଅକ୍ଷମ
ହୃଦୁ ମନେ କୌତୂହଳ ଅଧିକ ଜନମ ।
ପ୍ରକୋଷ୍ଠେ ପ୍ରବେଶ ମାତ୍ରେ ବିପ୍ରଙ୍କ ନନ୍ଦିନୀ
ପ୍ରଭୁଙ୍କ ଦର୍ଶନ ଲଭି ଅତି ଆହ୍ଲାଦିନୀ ।
ବେନନେତ୍ରୁ ବହିଗଲା ଆନନ୍ଦାଶ୍ରୁ ଧାର
ବହୁ ଦିନେ ଦେଖା ଯେହ୍ନେ ସୁହୃଦ ବନ୍ଧୁର ।
ପ୍ରେମ ଗଦଗଦ କଣ୍ଠେ କହିଲେ ବଚନ
"ଏଠାରେ ରହିଛ ତୁମ୍ଭେ କରୁଣାନିଧାନ ।
ଦର୍ଶନାଭିଳାଷେ ମୁଁ ଯେ ଗୃହରୁ ବାହାରି
ଖୋଜିଲିଣି ଯେତେ ସ୍ଥାନେ ନାହିଁ ତା ସୁମାରି ।
ଯାହାହେଉ ଆଜ ମୋର ପରମ ସୌଭାଗ୍ୟ
କୃପାକରି ଦେଖାଦେଲେ ପ୍ରଭୋ ମହାଭାଗ !"
ପୁଚ୍ଛିଲେ ତାହାଙ୍କୁ ତହୁଁ ପ୍ରଭୁ ନରହରି
"ଏଠାରେ ମୁଁ ଅଛି ବୋଲି ଜାଣିଲ କପରି ?"
ଉତ୍ତରେ କହିଲେ ଧୀରେ ଭୈରବୀ ରମଣୀ
କୃପାକରି କହିଦେଲେ ଜଗତ ଜନନୀ ।

ତେଣୁ ମହାପୁରୁଷଙ୍କ ସାକ୍ଷାତ ନିମିତ୍ତ
ଆଦେଶିଲେ ଦୟା ବହି ଦେବୀ ଜଗନ୍ମାତ ।
ପୂର୍ବରେ ପାଇଲି ମୁଁ ଦୁହିଙ୍କ ଦର୍ଶନ
ତବ ଅନ୍ୱେଷଣେ ଭ୍ରମୁଥିଲି ଏତେଦିନ ।
ଆଜି ମୋର ସେହି ଆଶା ହୋଇଲା ପୂରିତ
ଦିବ୍ୟ ଦର୍ଶନ ପାଇଣ ଚିତ୍ତ ପୁଲକିତ ।"
ଉପବିଷ୍ଟ ହୋଇ ପ୍ରଭୁ ବାମାଙ୍କ ପାଶରେ
କଥାବାର୍ତ୍ତା କଲେ ମାତା ପୁତ୍ର ଯେ ପ୍ରକାରେ ।
ଅନ୍ତରର ଲୋକ ପାଇ ପ୍ରଭୁ ପରମେଶ
ଆପଣା ଅନ୍ତର କଥା ଫେଡ଼ିଲେ ତା ପାଶ ।
ଅଲୌକିକ ଦର୍ଶନ ଯା କରିଥିଲେ ଯେତେ
ଏକେ ଏକେ ବଖାଣିଲେ ତାଙ୍କ ସନ୍ନିହିତେ ।
ଈଶ୍ୱର ପ୍ରସଙ୍ଗ ଶୁଣି ଚେତନା ଶୂନ୍ୟତା
ଅନିଦ୍ରା, ଅଙ୍ଗ ବିକାର, ଗାତ୍ର ଦାହ କଥା ।
ଏ ସବୁ ବିଷୟମାନ ତନ୍ନ ତନ୍ନ କରି
ତାଙ୍କ ପାଶେ ବ୍ୟକ୍ତ କଲେ ପ୍ରଭୁ ନରହରି ।
"ଏସନ ହୁଅଇ କିମ୍ପା, କି କାରଣ ତାର
ପ୍ରକୃତ କି ବାତୁଳତା ହୋଇଛି ମୋହର !
ଜଗଦମ୍ବାଙ୍କୁ ଭଜିଲି ମନପ୍ରାଣ ଦେଇ
ଦୁରୂହ ବ୍ୟାଧି କି ମୋର ହେଲା ସେଥିପାଇଁ ।"
ବାମା ଭଣିଲେ "କେ କହେ ତୁମ୍ଭଙ୍କୁ ବାତୁଳ
ମାନବର ଏ ଅବସ୍ଥା ମହୀରେ ବିରଳ ।
ବାତୁଳତା ନୁହେ ଏହା କୌଣସି ପ୍ରକାର
ମହାଭାବର ଲକ୍ଷଣ ଶରୀରେ ତୁମ୍ଭର ।
ଇତର ନରଙ୍କ ଏହା ନୁହେ ବୋଧଗମ୍ୟ
ବାତୁଳତା ବୋଲୁଛନ୍ତି ନ ଜାଣି ମରମ ।
ଆବର ଲକ୍ଷଣ କେତେ ହେବ ପ୍ରକଟିତ
ସେ ସମସ୍ତ ଅଛି ଅବା କାହାକୁ ବିଦିତ ।
ଯାହା ମୁଁ ଜାଣିଛି ଭକ୍ତି ଗ୍ରନ୍ଥାଦି ପଢ଼ିଣ
ଦୁଇସ୍ଥାନେ ଦୃଷ୍ଟ ମାତ୍ର ଏ ଦିବ୍ୟ ଲକ୍ଷଣ ।
ଦ୍ୱାପରରେ ବୃନ୍ଦାବନେ କୃଷ୍ଣ ବିରହରେ
ଶ୍ରୀରାଧାଙ୍କ ଅଙ୍ଗେ ଦୃଷ୍ଟ ହେଲା ପ୍ରଥମରେ ।
ଦ୍ୱିତୀୟରେ ତା ଦେଖାଗଲା ଘୋର କଳିଯୁଗେ
ଭବତ୍ରାତା ମହାପ୍ରଭୁ ଚୈତନ୍ୟଙ୍କ ଅଙ୍ଗେ ।
ଯେଉଁ ସବୁ ଭକ୍ତିଗ୍ରନ୍ଥ ଅଛି ମୋ ପାଶରେ
ତାହା ପଢ଼ି ଶୁଣାଇବି ବିଶଦ ଭାବରେ ।"

କଥୋପକଥନ କରୁ କରୁ ଏ ପ୍ରକାର
ବେଳ ହେଲା ଦେଖି ପ୍ରଭୁ କରୁଣାସାଗର ।
ମାଖନ ମିଶ୍ରି ଆଦି ଦେବୀ ଭୋଗ ଆଣି
ଜଳଯୋଗ କରିବାକୁ ଦେଲେକ ତକ୍ଷଣି ।
ଅପତ୍ୟ ସ୍ନେହରେ ବିପ୍ରା ହୋଇ ପ୍ରଣୋଦିତ
ପ୍ରଭୁଙ୍କୁ କହିଲେ ଅଗ୍ରେ ଖାଇବା ନିମିତ୍ତ ।
ହୃଦୟର ଭାବ ଜାଣି ଜଗତ ଗୋସାଇଁ
କିଞ୍ଚିତେ ଖାଇଲେ ତହୁଁ ଶ୍ରୀହସ୍ତରେ ନେଇ ।
ପ୍ରଥମ ଦର୍ଶନ କଥା ଏ ପ୍ରକାର ଶେଷ
ଯୋଗାଡ଼ ହୋଇଲା ଏବେ ରନ୍ଧନ ସକାଶ ।
ବିପ୍ରା କଣ୍ଠେ ବନ୍ଧା ରଘୁବୀର ଶାଳଗ୍ରାମ
ଜାଣିପାରି ଅନ୍ତର୍ଯାମୀ ପ୍ରଭୁ ଗୁଣଧାମ ।
ଘିଅ, ଅଟା, ତଣ୍ଡୁଳାଦି ଭଣ୍ଡାରୁ ଅଣାଇ
ସିଧା ଦେଲେ ତାଙ୍କୁ ପାକ କରିନେବା ପାଇଁ ।
ରନ୍ଧନସାମଗ୍ରୀ ଧରି ବ୍ରାହ୍ମଣ ନନ୍ଦିନୀ
ପଞ୍ଚବଟୀ ମୂଳେ ତାହା ପାକ କଲେ ଆଣି ।
ପାକଶେଷେ ରଘୁବୀର ସମ୍ମୁଖେ ଥୋଇଣ
ସକଳ ସାମଗ୍ରୀ ତାଙ୍କୁ କରି ନିବେଦନ,
ଏକାଗ୍ର ଚିତ୍ତରେ ଯେବେ ନିମଜ୍ଜିଲେ ଧ୍ୟାନେ
ଅଦ୍ଭୁତ ଦର୍ଶନ ଲଭି ସମାଧିସ୍ଥ କ୍ଷଣେ ।
ନେତ୍ର ନେତ୍ରୁ ବହିଯାଇ ପ୍ରେମ ଅଶ୍ରୁଧାର
ଧୀରେ ଧୀରେ ସିକ୍ତ କଲା ତଳେ ବସୁନ୍ଧରା ।
ବିପ୍ରାଙ୍କର ଧ୍ୟାନେ ପ୍ରଭୁ ଭକତବତ୍ସଳ
ଆକୃଷ୍ଟ ହୋଇଣ ପ୍ରାଣ ଅତ୍ୟନ୍ତ ଚଞ୍ଚଳ ।
ଦିବ୍ୟ ଭାବାବେଶେ ପରିତେଜିଣ ପ୍ରକୋଷ୍ଠ
ଉପସ୍ଥିତ ହେଲେ କ୍ଷଣେ ବିପ୍ରା ସନ୍ନିକଟ
ପୂର୍ଣ୍ଣ ଭାବାବିଷ୍ଟ ହୋଇ ତହିଁ ନରହରି
ଖାଇଲେ କିଞ୍ଚିତ ଭୋଗ ନେଇ କରେ ଧରି ।
ଧ୍ୟାନଭଙ୍ଗ ମାତ୍ରେ ବିପ୍ରା କଲେକ ଦର୍ଶନ
ଇଷ୍ଟଦେବ କରୁଛନ୍ତି ନୈବେଦ୍ୟ ଗ୍ରହଣ ।
ଅପୂର୍ବ ଦର୍ଶନେ ତାଙ୍କ ଚିତ୍ତ ପୁଲକିତ
କରତାଳି ଦେଇ ମହାନନ୍ଦେ କଲେ ନୃତ୍ୟ ।
ତଦନ୍ତେ ଶ୍ରୀପ୍ରଭୁ ଯେବେ ସଂଜ୍ଞାଲାଭ କଲେ
ଆପଣାର କଲା କର୍ମେ ଅତି ବ୍ୟସ୍ତ ହେଲେ ।
ଯୋଡ଼କରେ ବିପ୍ରା ପାଶେ କଲେକ ପ୍ରାର୍ଥନା
"କୃପା କରି ଅଧମକୁ ଦିଅନ୍ତୁ ଗୋ କ୍ଷମା ।"

ବ୍ରାହ୍ମଣୀ କହିଲେ ତହୁଁ ଦେଇଣ ଆଶ୍ୱାସ
"ହେ ଦେବ ! ଏଥିରେ କିଛି ନାହିଁ ତବ ଦୋଷ ।
ଯେଉଁ ପୂର୍ଣ୍ଣବ୍ରହ୍ମ ଅଛି ତୁମ୍ଭର ଶରୀରେ
ଏ କାର୍ଯ୍ୟ କରୁଛ ତୁମ୍ଭେ ତାଙ୍କ ପ୍ରେରଣାରେ ।
ଧ୍ୟାନେ ନିମଜ୍ଜିଣ ଯାହା କଲି ମୁଁ ଦର୍ଶନ
ସେଥିରୁ ହୁଅଇ ଏହା ସ୍ପଷ୍ଟ ଅନୁମାନ ।
ଏ ପ୍ରକାର କିଏ କଲା, କିସ ହେତୁ ତାର
କିଞ୍ଚିତେ ସନ୍ଦେହ ନାହିଁ ଏ ସମ୍ବନ୍ଧେ ମୋର ।
ଅଜଠାରୁ ମୋର ବାହ୍ୟ ପୂଜା ହେଲା ଶେଷ
ଏତେଦିନେ କୃପା କଲେ ପ୍ରଭୁ ପରମେଶ ।
ଯାଙ୍କ ଅନ୍ୱେଷଣେ ରତ ଥିଲି ଏତେଦିନ
ଆଉ ଯାଙ୍କ ପାଇଁ ଭାଇବନ୍ଧୁ ପରିଜନ,
ଖରା ବର୍ଷା ଶୀତ ଆଦି ସହି ନାନା କ୍ଳେଶ
ଭବ ସୁଖ ତେଜି ଭ୍ରମୁଥିଲି ଦେଶ ଦେଶ,
ଆଚରିଲି ନାନା ରୂପ ସାଧନ ଭଜନ
ଅନ୍ୱେଷିଲି କେତେ ବେଦବେଦାନ୍ତ ପୁରାଣ ।
ସେହି ଇଷ୍ଟଦେବଙ୍କର ଜୀବନ୍ତ ମୂରତି
ଦର୍ଶନ ଲଭିଣ ଆଜି ମୁହିଁ ଭାଗ୍ୟବତୀ ।"
ଏସନ ଭାଷିଣ ରଘୁବୀର ଶାଳଗ୍ରାମ
ନିକ୍ଷେପିଲେ ଗଙ୍ଗା ଗର୍ଭେ ବିପ୍ରା ତତକ୍ଷଣ ।
ଏମନ୍ତେ ଦୁହିଙ୍କ ମଧ୍ୟେ ଦିବ୍ୟ ପ୍ରେମ ଜାତ
ସେ ଶୁଭ ମୁହୂର୍ତ୍ତୁ ପରସ୍ପର ଆକର୍ଷିତ ।
ଆଧ୍ୟାତ୍ମିକ ପ୍ରସଙ୍ଗରେ ବୁଡ଼ି ଅନୁକ୍ଷଣ
ଜାଣି ନ ପାରିଲେ କାଳ ଯାଉଛି କେସନ ।
ଚୈତନ୍ୟ ଚରିତାମୃତ ଆଦି ଭକ୍ତି ଗ୍ରନ୍ଥ
ପାଠ କରି ଶୁଣାଇଲେ ବିପ୍ରା ତାଙ୍କୁ ନିତ୍ୟ ।
ଭାବ ମହାଭାବ ଆଉ ପୁଲକ କମ୍ପନ
ଶ୍ରୀଅଙ୍ଗେ ଯେମନ୍ତ ଯାହା କରନ୍ତି ଦର୍ଶନ ।
ଶାସ୍ତ୍ରବାକ୍ୟ ତନ୍ନ ତନ୍ନ ତା ସଙ୍ଗେ ମିଳାନ୍ତି
ସାତଦିନ ସାତରାତି କଟିଲା ଏମନ୍ତି ।
ଦେବରାୟେ ଆପଣାର ଅବସ୍ଥା ସମ୍ବନ୍ଧେ
ଯାହା ଯେବେ ଘଟିଥିଲା କହିଲେ ଅବାଧେ ।
କଥୋପକଥନ କାଳେ ଭାଷିଲେ ବିପ୍ରାଙ୍କୁ
"ଯାଉଥିଲି ଦିନେ ମୁହିଁ ଶିହୁଡ ଗ୍ରାମକୁ ।
ବାଟରେ ଦେଖିଲି ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର
ତଳେ ସୁଶ୍ୟାମଳ କ୍ଷେତ, ଊର୍ଦ୍ଧ୍ୱେ ନୀଳାମ୍ବର ।
ଆମ୍ବ ଅଶ୍ୱତ୍ଥ ବଟାଦି ବୃକ୍ଷ ଅଗଣନ
ପ୍ରାଣୀଙ୍କୁ ଶୀତଳ ଛାୟା କରନ୍ତି ପ୍ରଦାନ ।
କୁସୁମେ ଭୂଷିତା ଯେତେ ତରୁ ଗୁଳ୍ମଲତା
ବିହଙ୍ଗାଦି ନୃତ୍ୟଗୀତେ ତହିଁ ଉନମତ୍ତା ।
ଦର୍ଶନ ମାତ୍ରକେ ସେହି ମନୋରମ ସ୍ଥାନ
ହୃଦୟେ ହୋଇଲା ଦିବ୍ୟଭାବ-ଉଦ୍ଦୀପନ ।
କିଶୋର ବୟସ୍କ ବେନି ସୁନ୍ଦର ବାଳକ
ମୋ ଦେହରୁ ବାହାରିଲେ ତହିଁ ଅଚାନକ ।
ବନ ମଧ୍ୟେ ସୁଖେ ଭ୍ରମି ସେହି ଦିବ୍ୟଦେହୀ
କୁସୁମ ଚୟନ କଲେ ହର୍ଷୋତ୍‌ଫୁଲ୍ଲ ହୋଇ ।
କେତେବେଳେ ବହୁଦୂରେ ଧାବନ୍ତି ବହନ
ହାସ୍ୟ ପରିହାସ କେବେ ଆସି ସନ୍ନିଧାନ ।
ଏମନ୍ତେ ବିହରି ସୁଖେ ମନର ଆନନ୍ଦେ
ପୁନରପି ପ୍ରବେଶିଲେ ମୋ ଶରୀର ମଧ୍ୟେ ।
ଏପରି ଅଦ୍ଭୁତ ଦୃଶ୍ୟ ଦେଖିଲି କିପାଇଁ
ଏହାର ମରମ କିଛି ବୁଝି ନ ପାରଇ ।"
ଭୈରବୀ ବ୍ରାହ୍ମଣୀ ତହୁଁ ବୋଇଲେ ଉତ୍ତରେ
"କିଛିମାତ୍ର ମିଥ୍ୟା ନାହିଁ ତୁମ୍ଭର ବାକ୍ୟରେ ।
ନିତ୍ୟାନନ୍ଦ କଳେବର ପ୍ରଭୁ ଶ୍ରୀଚୈତନ୍ୟ
ପ୍ରାଣୀଙ୍କ ଉଦ୍ଧାର ହେତୁ ପୁଣି ଅବତୀର୍ଣ୍ଣ ।
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ ପ୍ରେମ ଅବତାର
ଏକାଧାରେ ଆସିଛନ୍ତି ମହୀରେ ଏଥର ।
ସେ କାରଣେ କଲ ତୁମ୍ଭେ ତାଦୃଶ ଦର୍ଶନ
ଏଥିକି ଶ୍ରବଣ କର ଶାସ୍ତ୍ରର ପ୍ରମାଣ ।"
ଏମନ୍ତ କହିଣ ବିପ୍ରା ଭାବପୂର୍ଣ୍ଣ କଣ୍ଠେ
ନିମଜ୍ଜିଲେ ଶ୍ରୀଚୈତନ୍ୟ ଭାଗବତ ପାଠେ ।
"ଅଦ୍ୱୈତେର ଗଲା ଧରି କହେ ବାରବାର
ପୁନଃ ଯେ କରିବ ଲୀଳା ମୋର ଚମତ୍କାର
କୀର୍ତ୍ତନେ ଆନନ୍ଦ ରୂପ ହୋଇବେ ଆମାର ।
ଅଦ୍ୟାବଧି ଗୌର ଲୀଳା କରେନ୍ ଗୋରାରାୟ
କୋନ୍ କୋନ୍ ଭାଗ୍ୟବାନ୍ ଦେଖିବାରେ ପାୟ ।"
ଅବତାରଙ୍କ ଲକ୍ଷଣ ଲେଖା ଯାହା ଶାସ୍ତ୍ରେ
ସେ ସମସ୍ତ ପରିସ୍ଫୁଟ ପ୍ରଭୁଙ୍କର ଗାତ୍ରେ ।
ତନ୍ନ ତନ୍ନ ମିଳାଇଣ ସେ ଲକ୍ଷଣମାନ
ବିପ୍ରାଙ୍କର ଚିତ୍ତ ମହୋଲ୍ଲାସେ ପରିପୂର୍ଣ୍ଣ ।

ନରଦେହ ଧରି ପୁନଃ ଆସିଛନ୍ତି ହରି
ପାପୀତାପୀ ଏ ମହୀରୁ ଯିବେ ସର୍ବେ ତରି ।
ଏମନ୍ତ ସିଦ୍ଧାନ୍ତେ ଶେଷେ ହୋଇ ଉପନୀତ
ସରବ ସମ୍ମୁଖେ ତାହା ପ୍ରସ୍ଥରେ ଉଦିତ ।
ମଥୁରଙ୍କୁ ଦିନେ ଚିହ୍ନି ଦେଖିଲେ ଯେସନ
ତାଙ୍କ ପାଖେ ସେହି କଥା କଲେ ଉତ୍‌ଥାପନ ।
ହସି ହସି ଶ୍ରୀମଥୁର କହିଲେ ଉତ୍ତର
"ଶାସ୍ତ୍ର ସମୂହରେ ଲେଖା ଦଶଅବତାର ।
ଏକାଦଶ ଅବତାର ହୋଇ ନ ପାରଇ
ଶ୍ୟାମାଙ୍କ ବିଶେଷ କୃପା ୟାଙ୍କଠି ଦେଖଇ ।"
ମଥୁରଙ୍କ ଯୁକ୍ତି ଶୁଣି କହିଲେ ବ୍ରାହ୍ମଣୀ
"ଚତୁର୍ବିଂଶ ଅବତାର ଭାଗବତେ ଭଣି ।
ଭଗବାନ ବ୍ୟାସଦେବ କହିଛନ୍ତି ସ୍ପଷ୍ଟ
ସଂଖ୍ୟାତୀତ ଅବତାର ହୋଇବେ ଭୂମିଷ୍ଠ ।
ଆଉର ଯେ ଲେଖାଅଛି ବୈଷ୍ଣବ ଗ୍ରନ୍ଥରେ
ଅବତୀର୍ଣ୍ଣ ହେବେ ଗୌର ପୁନଶ୍ଚ ମର୍ତ୍ତ୍ୟରେ ।
ଯେ ସବୁ ଲକ୍ଷଣ ଗୌର ଅଙ୍ଗେ ପ୍ରକଟିତ
ସେ ସମସ୍ତ ୟାଙ୍କଠାରେ ହୁଅଇ ଲକ୍ଷିତ ।
ଏଥିରେ ସନ୍ଦେହ ଥିଲେ ତୁମ୍ଭର ମାନସେ
ପ୍ରସିଦ୍ଧ ପଣ୍ଡିତ ଦେଖି ଡକାଅ ମୋ ପାଖେ ।
ସ୍ପର୍ଦ୍ଧା କରି କହୁଅଛି ଏତେ ଲୋକ ଥାଇ
ପ୍ରମାଣ କରିବି ଶାସ୍ତ୍ର ବଚନ ଦେଖାଇ ।"
ବ୍ରାହ୍ମଣୀଙ୍କ ଯୁକ୍ତି ଶୁଣି ମଥୁର ନୀରବ
ସ୍ଥିର କଲେ ଡକାଇବେ ପଣ୍ଡିତ ବୈଷ୍ଣବ ।
ଏସବୁ ବିଷୟ ତାଙ୍କ ପାଖେ ଉତ୍‌ଥାପିଣ
ଯଥାର୍ଥ ସିଦ୍ଧାନ୍ତ ସ୍ଥିର କରିବେ ବହନ ।
କୃପା କଲେକ ଶ୍ରୀଦେବ ବ୍ରହ୍ମାଣ୍ଡ ଠାକୁର
ଏଥି ଅନ୍ତେ ଗାଇବି ମୁଁ ବୃତ୍ତାନ୍ତ ତାହାର ।
ପ୍ରଭୁଙ୍କ ପାଖେ ରହିଲେ ବିପ୍ରା ବହୁ ଦିନ
କାମିନୀ କାଞ୍ଚନାସକ୍ତ ଯେଉଁ ପ୍ରାଣୀଗଣ ।
ବିପ୍ରାଙ୍କ ଚରିତ୍ର ପ୍ରତି ସନ୍ଦିହାନ ହୋଇ
ନାନା କୁକଥା ରଟିବେ ସେ ସମ୍ପର୍କ ନେଇ ।
ଅନ୍ତର୍ଯ୍ୟାମୀ ଦେବବସ୍ତୁ ତହୁଁ ଦିନକରେ
ଭଲରୂପେ ବିଚାରିଣ ନିଜ ମାନସରେ ।
ବ୍ରାହ୍ମଣୀଙ୍କୁ ପାଖେ ଡାକି ଦେଲେ ଉପଦେଶ
ଭଲ ହେବ ଅନ୍ୟସ୍ଥାନେ କଲେ ବସବାସ ।

ସନ୍ନିକଟେ ଦେବାଳୟ ଅଛଇ ବହୁତ
ସେ ସ୍ଥାନେ ରହିଣି ଅଟେ ଯୁକତିସଙ୍ଗତ ।
ପ୍ରଭୁଙ୍କର ହିତବାଣୀ ଶିରୋଧାର୍ଯ୍ୟ ମଣି
ନିକଟସ୍ଥ ଗ୍ରାମେ ଯାଇ ରହିଲେ ବ୍ରାହ୍ମଣୀ
ଦିବାଭାଗେ ନିତି ନିତି କରି ଆତଯାତ
ଧର୍ମ ଚର୍ଚ୍ଚାରେ ଯାପନ୍ତି ସମସ୍ତ ନିରତ ।
ଅସ୍ତାଚଳେ ଯେତେବେଳେ ଯାନ୍ତି ଦିନମଣି
ନିଜ ଆବାସେ ଫେରନ୍ତି ଭୈରବୀ ବ୍ରାହ୍ମଣୀ ।
ଘନିଷ୍ଠତା କ୍ରମେ କ୍ରମେ ବୃଦ୍ଧି ହେଲା ଯେତେ
ଗୋପାଳ ଭାବ ଜାଗ୍ରତ ହେଲା ତାଙ୍କ ଚିତ୍ତେ ।
କ୍ଷୀର ସର ଆଣି ନିତ୍ୟ ଯଶୋଦାଙ୍କ ରୂପେ
ପ୍ରଭୁଙ୍କୁ ଖୁଆନ୍ତେ ବିପ୍ରା ଅତି କୌତୂହଳେ ।
ଆସି ନ ପାରିଲେ ସେହୁ କୌଣସି କାରଣେ
ଧାଇଁଯାନ୍ତି ତାଙ୍କ ପାଖେ ଶ୍ରୀଦେବ ଆପଣେ !
ଏସନେ ବାତ୍ସଲ୍ୟ ଭାବେ ଜଗତ ଗୋସାଇଁ
ବନ୍ଧା ପଡ଼ିଲେକ ବିପ୍ରା ପାଖେ ଧରା ଦେଇ ।
ସନ୍ନିକଟେ ଥିଲେ ଯେତେ କୁଳବଧୂଗଣ
ବିପ୍ରାଙ୍କଠୁ ଶୁଣି ସର୍ବେ ପ୍ରଭୁଙ୍କ ଆଖ୍ୟାନ,
ଦର୍ଶନ ନିମିତ୍ତ ଚିତ୍ତେ ଆକାଙ୍‌କ୍ଷା ପ୍ରବଳ
ଉପାୟବିହୀନା ହୋଇ ଅତି କଳବଳ ।
ପ୍ରଭାତ ପୂର୍ବରୁ ବିପ୍ରା ଗଙ୍ଗା ସ୍ନାନ ଛଳେ
ପ୍ରତ୍ୟହ ଆଣନ୍ତି ଚିହ୍ନି ବାମା ଦଳେ ଦଳେ ।
ଏମନ୍ତେ ସେ ନାରୀବୃନ୍ଦ ପ୍ରାତେ ଆସି ନିତି
ଦର୍ଶନ ଲଭିଣ ଜନ୍ମ ସାର୍ଥକ ମଣନ୍ତି ।
ପୂର୍ବବଙ୍ଗେ ଦୁଇଶିଷ୍ୟ ଥିଲେ ବିପ୍ରାଙ୍କର
ସଂକ୍ଷେପରେ ଶୁଣ ମନ ! ଚରିତ ତାଙ୍କର
ଜଣକର ନାମ ଚନ୍ଦ୍ର, ଗିରିଜା ଆରେକ
ଉଭୟ ଅଟନ୍ତି ଅତି ବିଶିଷ୍ଟ ସାଧକ ।
ବହୁ ଶ୍ରମସାଧ୍ୟ ନାନା ସାଧନା କରିଣ
ଚନ୍ଦ୍ର ଲଭିଥିଲେ ଶକ୍ତି ଅଦ୍ଭୁତ ଏସନ ।
ବହୁଲୋକ ଦ୍ୱାରା ସେହୁ ଥିଲେ ହେଁ ବେଷ୍ଟିତ
ନିମିଷ ମଧ୍ୟରେ ତହୁଁ ହୋନ୍ତି ଅନ୍ତର୍ହିତ ।
ଏପରି ଗମିଲେ ନାନା ଗୋପନୀୟ ସ୍ଥାନ
ଯେ ସବୁ ଅତି ଦୁର୍ଗମ, ସୁରକ୍ଷିତ ଆନ ।
ଅନ୍ଦର ମହଲେ ପଶି ଆଣିଲେ ବାରତା
ତାଙ୍କୁ ଧରିବାକୁ କା'ର ନ ଥାଏ କ୍ଷମତା ।

ଶକ୍ତିର ଏମନ୍ତେ ହେଲା ଅପବ୍ୟବହାର
ଯଥା ତଥା ଗମିଲେ ସେ ନ କରି ବିଚାର ।
ଅକସ୍ମାତ କରି ଏକ ଧନୀଲୋକ ଘରେ
ପ୍ରେମାବଦ୍ଧ ହେଲେ ତାଙ୍କ କନ୍ୟା ସହିତରେ ।
ଲାଞ୍ଛିତ ହୋଇଣ ତହିଁ ହରାଇଲେ ଶକ୍ତି
ବିଭୂତି ଲଭିଲେ ଶେଷେ ଏମନ୍ତ ଦୁର୍ଗତି ।
ଅଦ୍ଭୁତ ଶକତି ଜନ୍ମେ ସାଧନ ଭଜନେ
ତହିଁରେ ମଜ୍ଜିଲେ ବାଧା ଇଷ୍ଟଙ୍କ ଦର୍ଶନେ ।
ଶକ୍ତି ପ୍ରଭାବରେ ମନେ ଅହଂକାର ଜାତ
ସାଧନ ମାର୍ଗରୁ ପ୍ରାଣୀ ହୁଅନ୍ତି ସ୍ଖଳିତ ।
କାମିନୀକାଞ୍ଚନେ ବଢ଼େ ତା ଆସକ୍ତି କ୍ରମେ
ବିଂଭିଶ୍ୱର ଅନାଶ୍ୱର ପଥେ ନିତ୍ୟ ଭ୍ରମେ ।
ସାଧକ ଭକ୍ତଙ୍କୁ ତେଣୁ କହିଲେ ଶ୍ରୀହରି
"ତେଜିବ ବିଭୂତି ଲାଭ ବିଷ୍ଠା ଜ୍ଞାନ କରି ।"
ଗିରିଜାଙ୍କ ସେହିପରି ଅସୀମ କ୍ଷମତା
ଭାଷିଲେ ଶ୍ରୀ ଦେବରାୟ ବ୍ରହ୍ମାଣ୍ଡ କରତା
ଶମ୍ଭୁ ମଲ୍ଲିକ ନାମକ ଧନାଢ଼୍ୟ ବ୍ୟକ୍ତିର
ସୁନ୍ଦର ଉଦ୍ୟାନ ଥିଲା ମନ୍ଦିର ପାଖର ।
ପ୍ରଭୁ ପାଦେ ଥିଲା ତାଙ୍କ ଅତିଶୟ ଭକ୍ତି
ମଧ୍ୟେ ମଧ୍ୟେ ପ୍ରଭୁ ତହିଁ ପଦବ୍ରଜେ ଯାନ୍ତି ।
ଗିରିଜା ସହିତେ ଦିନେ ଯାଇଥିଲେ ତଥି
ଫେରିବା ବେଳକୁ ହେଲା ଅତ୍ୟଧିକ ରାତି ।
ଅନ୍ଧକାରେ ବାଟଘାଟ କିଛି ନ ଦିଶିଲା
ପଦବ୍ରଜେ ଆସିବାକୁ ତାଙ୍କୁ କ୍ଲେଶ ହେଲା ।
ଗିରିଜା କହିଲେ ତାଙ୍କୁ ବିନୟେ ବଚନ
"ଅପେକ୍ଷା କରନ୍ତୁ ଏଠି ଅଳ୍ପକେ ଆପଣ ।
ଆଲୋକ ପାଇଁ ବ୍ୟବସ୍ଥା କରୁଅଛି ମୁହିଁ
ପଦବ୍ରଜେ ଯିବେ ସୁଖେ କଷ୍ଟ ହେବ ନାହିଁ ।"
ଏସନ ଭାଷିଣ ସେହୁ ପଛ ଲେଉଟାଇ
ବିପରୀତ ଦିଗେ ଗୃହିଁ ଠିଆ ହେଲା ତହିଁ ।
ତାହାର ପୃଷ୍ଠ ଦେଶରୁ କ୍ଷଣକ ମଧ୍ୟରେ
ଜ୍ୟୋତି ଶିଖା ବାହାରିଲା ପ୍ରକାଣ୍ଡ ଆକାରେ ।
ବହୁଦୂରବ୍ୟାପୀ ତାର ଆଲୋକ ବିସ୍ତାର
ପ୍ରଭୁଙ୍କୁ କହିଲେ ସୁଖେ ଗମନ୍ତୁ ଏଥର ।
ସେ ଆଲୋକ ସାହାଯ୍ୟରେ ପ୍ରଭୁ ଦେବରାୟେ
ବାହୁଡ଼ିଲେ ଅକ୍ଲେଶରେ ଆପଣା ଆଳୟେ ।

ଚନ୍ଦ୍ର, ଗିରିଜା ଏ ବେନି ସାଧକ ପ୍ରବର
ଏପରି କଲେକୁ ଶକ୍ତି ଅପବ୍ୟବହାର ।
ଶ୍ୟାମାଙ୍କ ଆଦେଶେ ତାଙ୍କ ମଙ୍ଗଳ ସକାଶେ
ଶକ୍ତି ହରିନେଲେ ଦେବରାୟେ ନିଜ ପାଶେ ।
ଏଥିଅନ୍ତେ ଦୁହିଁଙ୍କର ଆସିଲା ଚେତନ
ଆରମ୍ଭିଲେ ପୁନର୍ବାର ସାଧନ ଭଜନ ।
ବିଭୁଙ୍କ ଦର୍ଶନ ଲାଭ ନୋହିଲା ଜୀବନେ
ଅହଂକାରେ ନଷ୍ଟ ହେଲେ ଶକ୍ତି ପ୍ରଦର୍ଶନେ ।
ଏଭଳି ଶକତି ଲାଭେ ନାହିଁ କିଛି ଫଳ
ଗଲାଛଳେ କହିଛନ୍ତି ପ୍ରଭୁ ଆଦିମୂଳ ।
କୌଣସି ଲୋକର ଥିଲା ଦୁଇଟି ତନୟ
ଜ୍ୟେଷ୍ଠର ଯୌବନେ ହେଲା ବୈରାଗ୍ୟ ଉଦୟ ।
ଭାଇବନ୍ଧୁ ପିତାମାତା କରି ପରିତ୍ୟାଗ
ସନ୍ନ୍ୟାସ ଗ୍ରହଣ କଲେ ଧରି ଯତି ମାର୍ଗ ।
କନିଷ୍ଠ କୌଣସି ରୂପେ ଲେଖାପଢ଼ା କରି
ଜୀବନ ଯାପିଲା ସୁଖେ ଗୃହୀ ପନ୍ଥା ଧରି ।
ସନ୍ନ୍ୟାସ ଧର୍ମ୍ମର ଅଛୁ ଏପରି ବିଧାନ
ଜନ୍ମଭୂମି ପ୍ରଦର୍ଶନ କଲେକ ମନନ ।
ପଦାର୍ପଣ କଲେ ବାରବରଷ ଅନ୍ତରେ
ଦୋଷ ନ ହୁଅଇ ତହିଁ କୌଣସି ପ୍ରକାରେ ।
ସନ୍ନ୍ୟାସୀ ଜଣକ ଏହି ରୀତି ଅନୁସରି
ବାରବର୍ଷ ପରେ ଗୃହେ ଆସିଲାକ ଫେରି ।
ସ୍ୱଷବାସ କର୍ମ କରି ତାହାର ଅନୁଜ
ଠୁଳ କରିଅଛୁ ଗୃହେ ବିପୁଳ ଐଶ୍ୱର୍ଯ୍ୟ ।
ଅନୁଜଙ୍କ ନାମ ଧରି ଡାକିଲାରୁ ଦ୍ୱାରେ
ଖରତରେ ଗୃହକର୍ତ୍ତା ଆସିଲେ ବାହାରେ ।
ବହୁକାଳ ପରେ ନିଜ ଅଗ୍ରଜଙ୍କୁ ପାଇ
କନିଷ୍ଠଙ୍କ ଚିତ୍ତେ ସୁଖ ସୀମା ନ ଧରଇ ।
ନମସ୍କାର କରି ଜ୍ୟେଷ୍ଠ ସନ୍ନ୍ୟାସୀ ପଦ୍ମରେ
ଗୃହ ମଧ୍ୟେ ଘେନି ଗଲେ ଅତି ସମାଦରେ ।
ଯଥାବିଧି ଚର୍ଚ୍ଚା କରି ଭକତି ସହିତ
ଆହାରାନ୍ତେ ଦୁଃଖ ସୁଖ ପ୍ରସଙ୍ଗରେ ରତ ।
ଅଗ୍ରଜଙ୍କୁ ଗୃହୀ ଭାଇ କହିଲେ ବିନୟେ
କୌତୂହଳ ଜନମଇ ମୋହର ହୃଦୟେ ।
ସାଂସାରିକ ସୁଖଭୋଗ ସବୁ ବରଜିଣ
ଏତେ କାଳ କଟାଇଲ ସନ୍ନ୍ୟାସୀ ହୋଇଣ ।

ନିଜ ଲାଭ କରିଛନ୍ତି ନିଜର ଜୀବନେ
କହନ୍ତୁ ହେ ଦୟାବନ୍ତ ଅନୁଜ ଅଧମେ ।
ଅଗ୍ରଜ ସଦମ୍ଭେ ତହୁଁ ସ୍ପର୍ଶିଲେକ ବାଣୀ
ଦେଖିବାକୁ ଇଚ୍ଛା ଥିଲେ ହୁଅ ଅନୁଗାମୀ ।
ଏମନ୍ତ କହିଣ ସଙ୍ଗେ ଘେନି ସହୋଦର
ପ୍ରବେଶିଲେ ନିକଟସ୍ଥ ତଟିନୀ ପାଶର ।
ଦେଖ କି ଅଦ୍ଭୁତ ଶକ୍ତି ଅଗ୍ରଜଙ୍କ ମୂର୍ତ୍ତି
ସଲିଳ ଉପରେ ଚାଲିଗଲେ ଏହା କହି ।
ନିର୍ବିଘ୍ନରେ ଅନ୍ୟ ତୀରେ ହୋଇ ଉପସ୍ଥିତ
ଭ୍ରାତାଙ୍କୁ କହିଲେ ତହୁଁ ହୋଇ ଗର୍ବାନ୍ୱିତ ।
"ଦେଖିଲ ତ କି ଅଦ୍ଭୁତ କ୍ଷମତା ମୋହର
ସାଧନ ଭଜନ ମୂଳ ଅଟଇ ଏହାର ।"
ସାନଭାଇ ତହୁଁ ଏକ କାଠୁଆରେ ବସି
ଅଧଲା ମାସୁଲେ ନଦୀ ପାରି ହୋଇ ଆସି ।
ଜ୍ୟେଷ୍ଠଙ୍କୁ କହିଲେ "ବାର ବରଷ ଧରିଣ
ଆପଣେ ଆଚରି ଏତେ ସାଧନ ଭଜନ,
ଲଭିଛନ୍ତି ଭବେ ଯେଉଁ ଅଦ୍ଭୁତ ଶକତି
ଅଧଲାଏ ଖର୍ଚ୍ଚ କରି ମୋର ତା ପ୍ରାପତି ।
ଏସନ ଯୋଗ ସାଧନେ ଅଛୁ କେଉଁ ଫଳ
ଅଧଲାରୁ ବେଶୀ ନୁହେ ଯାହାର କି ମୂଲ୍ୟ ।"
କନିଷ୍ଠର ସାରଗର୍ଭ ବଚନ ଶ୍ରବଣେ
ଚୈତନ୍ୟ ଉଦିଲା ଏବେ ଜ୍ୟେଷ୍ଠଙ୍କର ମନେ ।
ଶକତି ଅର୍ଜନ ପାଇଁ ତେଜି ଅଭିଳାଷ
ବିଭୁପାଦେ କଲେ ତାଙ୍କ ଚିତ୍ତ ସନ୍ନିବେଶ ।
ଆବର ଗୋଟିଏ ଗଳ୍ପ ଶୁଣ ଏ ବିଷୟେ
ଭକ୍ତ ପାଶେ କହିଛନ୍ତି ଯାହା ଦୟାମୟେ ।
"ବହୁ ସାଧନ ଭଜନ କରି ଜଣେ ଲୋକ
କୌଣସି ସମୟେ ହୋଇଥିଲା ସିଦ୍ଧବାକ୍ୟ ।
ଯାହାକୁ କହଇ ଯାହା, ତୁରନ୍ତ ଘଟଇ
କେବେହେଁ କୌଣସି ବାକ୍ୟ ବ୍ୟର୍ଥ ନ ହୁଅଇ
କାହାକୁ କଦବା ଯଦି କହଇ ତୁ ମର
ନିମିଷ ମଧ୍ୟରେ ମୃତ୍ୟୁ ଘଟଇ ତାହାର ।
ଜୀଇ ଉଠ ପୁନର୍ବାର କହିଲେକ ତାକୁ
ମଲା ଲୋକ ଜୀଇ ଉଠେ କ୍ଷଣେ ଦେଖୁ ଦେଖୁ ।
ସେ ଯୋଗୀ ପୁରୁଷ ଦିନେ ଯାଉ ଯାଉ ବାଟେ
ଏକ ଭକତ ସାଧୁଙ୍କୁ ଭେଟିଲେ ନିକଟେ ।

ବିଭୁଙ୍କର ନାମ ଜପି ସାଧୁ ମହାଜନ
ଏକ ମନେ ରହିଛନ୍ତି ଧ୍ୟାନେ ନିମଗନ ।
ଅହଂକାରୀ ସାଧୁ ଗର୍ବେ ଆସିଣ ତା ପାଶେ
ତାହାଙ୍କୁ କହିଲେ ବାଣୀ ମୃଦୁ ମନ୍ଦ ହାସେ ।
"ଭକ୍ତବାନ ଭଗବାନ ହେଲେ ଏତେ ଦିନ
ଚିତ୍ତରେ ତୁମ୍ଭର କିସ ହୋଇଛି ଅର୍ଜ୍ଜନ ।"
ଭକ୍ତ ସାଧୁ ତହୁଁ ତାଙ୍କୁ କହିଲେ ଉତ୍ତରେ
"ବିଭୁଙ୍କୁ ମୁଁ ଭଜେ ନାହିଁ ସକାମ ଅନ୍ତରେ ।
କାମନା ଥିଲେ ତ ଫଳ ଫଳନ୍ତା ତାହାର
କାମନା ବିହୁନେ ଫଳ ହେବ କି ପ୍ରକାର ?
ଈଶ୍ୱର ଦର୍ଶନ ମାତ୍ର ଏକାନ୍ତ ବାସନା
ସାଫଲ୍ୟ ନ ଘଟଇ ତାହା ତାଙ୍କ କୃପା ବିନା ।
ସେ ନିମିତ୍ତ ଦିନରାତି ଭଜଇ ତାହାଙ୍କୁ
କେବେ ହେଲେ କୃପାକଣା ଦେବେ ଅଧମକୁ ।"
ଭକ୍ତ କଥା ଶୁଣି ଯୋଗୀ କହିଲେ ଉତ୍ତରେ
"ଫଳ ପ୍ରାପ୍ତି ଆଶା ଯଦି ନ ରଖ ଅନ୍ତରେ ।
ପରିଶ୍ରମ କରୁଅଛ ତେବେ କି କାରଣ
ବରଜିଣ ଦାରସୁତ ବନ୍ଧୁ ପରିଜନ ।
କଷ୍ଟ ସହ୍ୟ କରି ଯେବେ ହେଲ ଗୃହତ୍ୟାଗୀ
ଚେଷ୍ଟାକର ଯେ ପ୍ରକାରେ ହେବ ଫଳ-ଭୋଗୀ ।"
ଯୋଗୀଙ୍କ ବଚନ ଶୁଣି କହିଲେ ଭକତ
"ବୋଲ ଭାଇ ! ଯୋଗ ସାଧି ତୁମ୍ଭେ କି ପ୍ରାପତ ।"
ଉତ୍ତରେ କହିଲେ ଯୋଗୀ କି କହିବ ଆନ
"ଆସିଲେ ମୋ ସଙ୍ଗେ ଦେବ ପ୍ରତ୍ୟକ୍ଷ ପ୍ରମାଣ ।"
ସାଧକ ଭକତ ତାଙ୍କ ସଙ୍ଗେ ସଙ୍ଗେ ଗଲେ
ଉପନୀତ ହେଲେ ଦୁହେଁ ଏକ ବୃକ୍ଷମୂଳେ ।
ତାହାର ଗଣ୍ଡିରେ ବନ୍ଧା ଏକ ମତ୍ତ ହାତୀ
ତା ସମୀପେ ପ୍ରବେଶିଣ ଆଦେଶିଲେ ଯତି ।
"ଆରେ ଆରେ ମତ୍ତ ଗଜ ! ଆଜ୍ଞା ଦେଲି ତୋରେ
ମର୍ତ୍ତ୍ୟଧାମ ତେଜି ତ୍ୱରା ଯାଅ ଯମ ପୁରେ ।"
ନିମିଷ ମଧ୍ୟରେ ଗଜ ପଡ଼ିଲା ଭୂତଳେ
ପ୍ରାଣବାୟୁ ଗ୍ରନ୍ଥି ମରିଗଲା କଲବଲେ ।
ପୁନଶ୍ଚ କହିଲେ ତାଙ୍କୁ "ଏବେ ଉଠ ଜୀଇ
ସେ ମୃତ ହସ୍ତୀ ଉଠିଲା ବେଗେ ପ୍ରାଣ ପାଇ ।"
ଭକ୍ତଙ୍କୁ କହିଲେ ତହୁଁ ଦମ୍ଭେ ଦଣ୍ଡଧାରୀ
"ଯୋଗସାଧନାର ଫଳ ଅଟଇ ଏପରି ।"

ଭକ୍ତ ସାଧୁ ନମ୍ର ଭାବେ କହିଲେ ଉତ୍ତର
"ହାତୀ ମାରି ଶିଖାଇଲି କଲି ମୁଁ ସ୍ୱୀକାର ।
ତହିଁରେ ହୋଇଛୁ ଭାଇ ! ତୁମ୍ଭର କି ଲାଭ
ମରମ ନ ବୁଝି ପାରି ବୁଝି ପରାଭବ ।
ଚିନ୍ତାକରି ଦେଖ ଥରେ ଆହେ ଯୋଗୀବର !
ଧର୍ମମାର୍ଗେ କେତେଦୂର ତୁମ୍ଭେ ଅଗ୍ରସର ?
ବାରମ୍ବାର ଜନ୍ମ ମୃତ୍ୟୁ ଲଭି ପ୍ରାଣୀଗଣ
ଏ ସଂସାରେ ଭୋଗୁଛନ୍ତି ଅକଥ୍ୟ କଷଣ ।
ସେଥିରୁ କି ପାଇଅଛ ତୁମ୍ଭେ ଅବ୍ୟାହତି
ଜରା ରୋଗ ଶୋକରୁ କି ପାଇଛ ବିରତି ?
ଅଖଣ୍ଡ ସଚ୍ଚିଦାନନ୍ଦ ବ୍ରହ୍ମ ସନାତନ
ପାଇଛ କି ତୁମ୍ଭେ କେବେ ତାଙ୍କର ଦର୍ଶନ ?"
ଭକ୍ତଙ୍କର ପ୍ରଶ୍ନ ଶୁଣି ଯୋଗୀ ବାକ୍ୟଶୂନ୍ୟ
ତଦଣ୍ଡେ ଉଦୟ ହେଲା ତାଙ୍କର ଚୈତନ୍ୟ ।
ଭକ୍ତଙ୍କୁ କହିଲେ ପ୍ରଭୁ କରୁଣାସାଗର
"ଧର୍ମମାର୍ଗେ ଏ ସକଳ ଅକଲ୍ୟାଣକର ।
ସେ ହେତୁ ତାହାକୁ ଅତି ତୁଚ୍ଛ ବସ୍ତୁ ଜାଣି
ନିଜ ନିଜ ଧର୍ମପଥେ ହେବ ଅଗ୍ରଗାମୀ ।"
ରାମକୃଷ୍ଣ-ଲୀଳାମୃତ ସୁଧା ପାରାବାର
ଶ୍ରବଣେ କୀର୍ତ୍ତନେ ହେଲେ ଭବସିନ୍ଧୁ ପାର ।

ବୋଲ ଥାଉଁ ଭଜ ମନ ! ଅଭୟ ଚରଣ
କର୍ଣ୍ଣଧାର ରୂପେ ଯାହା ପ୍ରଭୁ ଭଗବାନ ।

---

## ନବମ ଅଧ୍ୟାୟ
## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ତନ୍ତ୍ରସାଧନ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ବିଶ୍ୱଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ଦୀନ ଉଦ୍ଧାରଣ ।
ତନ୍ତ୍ର ମତର ଦୁରୂହ ସାଧନ ନିଚୟ
କି ପ୍ରକାରେ ଆଚରିଲେ ପ୍ରଭୁ ଦୟାମୟ ।
ସାଧୁଜନେ ଶୁଣ ଏବେ ତାହାର ବିବୃତି
ଦୁଃସାଧ୍ୟ ସାଧନମାନ ଦେବେ ନ ଜାଣନ୍ତି ।
ମନୁଷ୍ୟର ଶକ୍ତି କାହିଁ ସେ ସବୁ ସାଧିବ
ପ୍ରକୃତରେ ଦୀକ୍ଷାଗୁରୁ କାହୁଁ ବା ମିଳିବ ।
ଜଗତ ଜନନୀ ଶ୍ୟାମା କରିଣ କୌଶଳ
ପ୍ରଭୁଙ୍କ ନିମନ୍ତେ ସବୁ ଆଗୁଁ କଲେ ଠିକ ।
କିଏ ଭୈରବୀ ବ୍ରାହ୍ମଣୀ, କାହିଁ ତାର ଘର
ତାଙ୍କ ପ୍ରତି ଆଜ୍ଞା ହେଲା ଭଗବତୀଙ୍କର ।
ଯେ ମହାପୁରୁଷ 'ଛନ୍ତି ଦକ୍ଷିଣେଶ୍ୱରରେ
ତାଙ୍କର ସହାୟ ହୁଅ ସାଧନ କାର୍ଯ୍ୟରେ ।
ଦେବୀ ଆଜ୍ଞା ଶିରେ ଧରି ଭୈରବୀ ବ୍ରାହ୍ମଣୀ
ପ୍ରବେଶିଲେ ଶ୍ରୀମନ୍ଦିରେ ପୀଠସ୍ଥଳ ଜାଣି ।
ଚିହ୍ନିଲେ ଦର୍ଶନମାତ୍ରେ ପ୍ରଭୁ ଗଦାଧର
ତାହୁଁ ଚିତ୍ତେ ଉପୁଜିଲା ଆନନ୍ଦ ଅପାର ।
ଘନିଷ୍ଠତା କ୍ରମେ ଯେତେ ହୋଇଲା ବର୍ଦ୍ଧିତ
ବିପ୍ରାଙ୍କ ଧାରଣାମାନ ହେଲା ଦୃଢ଼ୀଭୂତ ।
ପ୍ରଭୁଙ୍କ ସମ୍ବନ୍ଧେ ଯାର ଯାହାଥିଲା ଭ୍ରମ
ଦୂରକଲେ ଦେଖାଇଣ ଶାସ୍ତ୍ରର ପ୍ରମାଣ ।
ଶାସ୍ତ୍ରେ ଲେଖା ଯେ ସକଳ ସାଧନର ପଥ
ବହୁକାଳୁ ପ୍ରଚଳିତ ପରମ୍ପରାଗତ ।
ସେ ମାର୍ଗରେ ଦେବରାୟେ ହେଲେ ଅଗ୍ରସର
ଦିବ୍ୟ ଭାବ ବୃଦ୍ଧି ହେବ ଉତ୍ତର ଉତ୍ତର ।
ଏମନ୍ତ ବିଚାରି ତାଙ୍କୁ କହିଲେ ସ୍ନେହରେ
"ସାଧନ ଭଜନ କର ତାନ୍ତ୍ରିକ ମତରେ ।"
ତହିଁରେ ଲବ୍‌ଧ ହୁଅଇ ଯେଉଁ ଫଳାଫଳ
ଶାସ୍ତ୍ର ପଢ଼ି ଶୁଣାଇଲେ ତାଙ୍କୁ ସେ ସକଳ ।
ବିପ୍ରାଙ୍କ ବଚନ ଶୁଣି ପ୍ରଭୁ ନରହରି
ଆପଣା କର୍ତ୍ତବ୍ୟ ନ ପାରିଲେ ସ୍ଥିର କରି ।
ଶିଶୁ ସମ ଧାଇଁ ଯାଇ ପୁଚ୍ଛିଲେ ଶ୍ୟାମାଙ୍କୁ
ବ୍ରାହ୍ମଣୀ କହୁଛି ତନ୍ତ୍ରମତ ସାଧିବାକୁ ।

ଇଙ୍ଗିତେ ଉତ୍ତର ଦେଲେ ଜଗତ ଜନନୀ
ତନ୍ତ୍ରମତ ସାଧିବାରେ ନାହିଁ କିଛି ହାନି ।
ଦେବୀଙ୍କ ଆଦେଶ ପାଇ ପ୍ରଭୁ ଗଦାଧର
ବ୍ରାହ୍ମଣୀଙ୍କୁ ଜଣାଇଲେ ସମ୍ମତି ତାଙ୍କର ।
କର୍ମକୁଶଳା ବ୍ରାହ୍ମଣୀ ନାନାସ୍ଥାନେ ଯାଇ
ନିସ୍ତାର ସାମଗ୍ରୀମାନ ଆଣିଲେ ଗୋଟାଇ ।
ତନ୍ତ୍ରଶାସ୍ତ୍ର ମତେ ତିନି ପ୍ରକାର ସାଧନ
ଶିବାସନ, ମୁଣ୍ଡାସନ, ଚିତାସନ ଆନ ।
ଏଥିରୁ ଗୋଟିକେ ବସି ଯଥା ନିୟମରେ
ଏକମନେ ଧ୍ୟାନ କଲେ ଆଶୁ ଫଳ ମିଳେ ।
ମୁଣ୍ଡାସନ ଚତୁର୍ବିଧ ଶାସ୍ତ୍ରର ବଚନ
ପ୍ରତ୍ୟେକରେ ସଂଖ୍ୟା ଭିନ୍ନ ଭିନ୍ନ ଉପାଦାନ ।
ମନ୍ଦିର ସଂଲଗ୍ନ ଉଦ୍ୟାନର ଉତ୍ତରରେ
ଗଢ଼ିଲେ ଦୁଇଟି ବେଦୀ ଯଥା ନିୟମରେ ।
ଶୁଭଦିନ ଶୁଭକ୍ଷଣ କରି ନିର୍ଦ୍ଧାରଣ
ତିନିଗୋଟି ନରମୁଣ୍ଡ କଲେ ଆୟୋଜନ ।
ବିଲ୍ୱତରୁ ତଳ ଜାଣି ସୁପବିତ୍ର ଠାଇଁ
ତ୍ରିମୁଣ୍ଡୀ ବେଦିକା ସଂସ୍ଥାପନ କଲେ ତହିଁ ।
ନରାଦି ପଞ୍ଚ ପ୍ରାଣୀଙ୍କ ମସ୍ତକ କଙ୍କାଳ
ଶୁଭକ୍ଷଣେ ଆଣି ବିପ୍ରା ସେଠି କଲେ ଠୁଳ ।
ଉପଯୁକ୍ତ ସ୍ଥାନ ପାଇ ପଞ୍ଚବଟୀ ମୂଳେ
ପଞ୍ଚମୁଣ୍ଡୀ ବେଦୀ ଏକ ସେଠାରେ ସ୍ଥାପିଲେ ।
ଏସନ ଆସନେ ବସି ପ୍ରଭୁ ଏକ ମନେ
ନିମଗ୍ନ ହୋଇଲେ ଏବେ ତାନ୍ତ୍ରିକ ସାଧନେ ।
ସାଧୁଜନେ ସାବଧାନେ ଶୁଣ ସେ ବିଷୟ
ଭକ୍ତ ପାଶେ କହିଛନ୍ତି ଯାହା ଦେବରାୟ ।
ଦିବାଭାଗେ ସେ ବ୍ରାହ୍ମଣୀ ଭ୍ରମି ନାନା ସ୍ଥାନ
ସଂଗ୍ରହ କରନ୍ତି ଯତ୍ନେ ପୂଜାଦ୍ରବ୍ୟମାନ ।
ନିଶୀଥେ ଆସନ ପାଶେ ସେ ସକଳ ଥୋଇ
ପ୍ରତ୍ୟହ ସେଠାକୁ ମୋତେ ଆହ୍ୱାନ କରଇ ।
ଦେବୀପୂଜା ଯଥାବିଧି ହେଲେ ସମାପତ
ଆଦେଶନ୍ତି ମୋତେ ଧ୍ୟାନେ ବସିବା ନିମିତ୍ତ ।
ପୂଜା ଶେଷେ ଚହେ ଯେଉଁ ଭାବ ଉପୁଜଇ
ଜପତପ କରିବାକୁ କ୍ଷମତା ନ ଥାଇ ।
ଦେବୀଙ୍କଠି ମନପ୍ରାଣ ଏମନ୍ତ ତନ୍ମୟ
ଜପମାଳା ଧରୁ ଧରୁ ମନ ହୁଏ ଲୟ ।

କ୍ରମେ କ୍ରମେ ହେଲା ବହୁ ଦିବ୍ୟ ଦରଶନ
ବର୍ଣ୍ଣିବାକୁ ସେ ସମସ୍ତ ନ ସ୍ଫୁରେ ବଚନ ।
ନିତ୍ୟ ନିତ୍ୟ ହେଲା ଯେତେ ନବ ଅନୁଭୂତି
ଇୟତ୍ତା କରିବା ପାଇଁ ନ ଥାଏ ଶକତି ।
ଚୌଷଠି ତନ୍ତ୍ରର ଯେତେ ସାଧନ ପ୍ରଣାଳୀ
ବିପ୍ରାଙ୍କଠୁଁ ଏକେ ଏକେ ସବୁ ଶିକ୍ଷା କଲି ।
ଅତ୍ୟନ୍ତ ଦୁଃସାଧ୍ୟ ଅଟେ ଯେ ସବୁ ସାଧନ
ଦେବୀଙ୍କ କୃପାରୁ ହେଲି ନିର୍ବିଘ୍ନ ଉତ୍ତୀର୍ଣ୍ଣ ।
ଏମନ୍ତେ ଶ୍ରୀପ୍ରଭୁ ଯେତେ ସାଧନା ସାଧିଲେ
ବିସ୍ତାରିତ ବିବରଣ କୁହାପି ନ ମିଳେ ।
ଶ୍ରୀମୁଖୁଁ ହୋଇଛି ମାତ୍ର ଯା କିଛି ନିଃସୃତ
ତାହାହିଁ ଏ ଧରାଧାମେ ପ୍ରାଣୀ ଅବଗତ ।
ତନ୍ତ୍ରର ସାଧନ ପଥ ଅତ୍ୟନ୍ତ ପିଚ୍ଛିଳ
ମଦ୍ୟ ମାଂସ ମତ୍ସ୍ୟ ମୁଦ୍ରା ମୈଥୁନର ଖେଳ ।
ଯେ ପଞ୍ଚ 'ମ' କାରେ ପଡ଼ି ପ୍ରାଣୀ ହୁଏ ନାଶ
ସେ ପଞ୍ଚ 'ମ'କାରେ ପୁଣି ଲବ୍ଧ ହୋନ୍ତି ଈଶ ।
ପଥଭ୍ରଷ୍ଟାଶଙ୍କା ପ୍ରତି କ୍ଷଣେ ବିଦ୍ୟମାନ
ଭାଗ୍ୟବଳେ ତରିଯାନ୍ତି ଯେହୁ ପୁଣ୍ୟବାନ ।
ଖଣ୍ଡାଧାରେ ଚଳନ ବା ବ୍ୟାଘ୍ର ଆଲିଙ୍ଗନ
ତାହା ତୁଳନାରେ ଅତି ସାମାନ୍ୟ ଯେ ଜାଣ ।
କେମନ୍ତ ଦୁଃସାଧ୍ୟ ଅଟେ ସେ ସାଧନ ପଥ
ଶୁଣ ମନ ! ଯା କହିଲେ ପ୍ରଭୁ ଭବନାଥ ।
"ନିଶୀଥେ ଦେଖିଲି ଦିନେ ଭୈରବୀ ବ୍ରାହ୍ମଣୀ
କାହୁଁ ଆଣି ଏକ ସୁଶ୍ରୀ ଯୁବତୀ କାମିନୀ,
ବିବସ୍ତ୍ରା କରାଇ ସେହି ପୂର୍ଣ୍ଣ ଯୌବନାକୁ
ବୋଇଲା ଦେବୀ-ଆସନେ ତାକୁ ବସିବାକୁ ।
ପୂଜୋପକରଣମାନ ଥୋଇ ତା ଅଗ୍ରତେ
ଦେବୀଜ୍ଞାନେ ପୂଜିବାକୁ ଆଦେଶିଲେ ମୋତେ ।
ବିଧି ଅନୁସାରେ ଯେବେ ପୂଜା ହେଲା ଶେଷ
ତା ପରେ କରିଲେ ବିପ୍ରା ମୋ ପ୍ରତି ଆଦେଶ ।
'ମୂର୍ତ୍ତିମତୀ ଜଗନ୍ମାତା ଭାବି ସ୍ତ୍ରୀଙ୍କୁ ମନେ
ତାଙ୍କ କୋଡ଼େ ବସି ବତ୍ସା ମଗ୍ନ ହୁଅ ଧ୍ୟାନେ ।'
ବିପ୍ରାଙ୍କ ଆଦେଶ ଶୁଣି ମୋ ପ୍ରାଣ ଆକୁଳ
ଜଗଦମ୍ବାଙ୍କୁ ସ୍ମରି କାନ୍ଦିଲି ବହୁଳ ।
ମାତ ଜଗଦମ୍ବେ ! ତୋର ଏ କି ବିଡ଼ମ୍ବନା
ଶରଣ ଘେନିଲି ବୋଲି ଏହି ବୁଝାମଣା ?

ମୁଁ ଅଟେ ଅତି ଦୁର୍ବଳ ସନ୍ତାନ ତୋହର
ଜାଣି ଶୁଣି ଦେଉ କ୍ଷମା ଗୁରୁ ବାଞ୍ଛେଶ୍ୱର ।
କହୁ କହୁ ଦ୍ରବ୍ୟ ସବେ ହେଉ ପରିପୂର୍ଣ୍ଣ
ବିପ୍ରାଦେଶକୁ ମାନିଲି ଦେବ ଆଜ୍ଞା ସମ ।
ଶୁଭାଶୁଭ ଅଣୁମାତ୍ର ନ କରି ବିଚାର
ସ୍ଥିର ଚିତ୍ତେ ଜପକରି ମନ୍ତ୍ର ବାରମ୍ବାର,
ରମଣୀ କୋଡ଼ରେ ଯେବେ ବସିଲି ମୁଁ ଯାଇ
ବାହ୍ୟଜ୍ଞାନଶୂନ୍ୟ ହେଲି ସମାଧିସ୍ଥ ହୋଇ ।
କିଛିକ୍ଷଣ ପରେ ଯେବେ ଲଭିଲି ଚୈତନ୍ୟ
ବ୍ରାହ୍ମଣୀ ବୋଇଲେ କାର୍ଯ୍ୟ ହୋଇଛି ସମ୍ପନ୍ନ ।
ବିପ୍ରାଙ୍କ ବଚନେ ଚିତ୍ତେ ଆନନ୍ଦ ଅପାର
ପ୍ରଣମିଲି ଦେବୀପାଦେ ଭକ୍ତି ସହକାର ।
ଆଉ ଦିନେ ବିପ୍ରା ଶବ ଖପୁରି ଆଣିଣ
ମତ୍ସ୍ୟ ଏକ ଥୋଇ ତହିଁ କଲେକ ରନ୍ଧନ ।
ଜଗନ୍ମାତାଙ୍କୁ ସମର୍ପି ସେଥିରୁ କିଞ୍ଚିତ
ଆଦେଶିଲେ ମୋତେ ତାହା ସେବନ ନିମିତ୍ତ ।
ତର୍ପଣ କରିଣ ମୁହିଁ ତାଙ୍କ କଥାମତେ
ଗ୍ରହଣ କରିଲି ତାହା ନିର୍ବିକାର ଚିତ୍ତେ ।
ଅନ୍ୟ ଦିନେ ପୁଣି ସେହି ଭୈରବୀ ବ୍ରାହ୍ମଣୀ
ଖଣ୍ଡିଏ ଗଳିତ ମହାମାଂସ ପିଣ୍ଡ ଆଣି,
ତର୍ପଣ ଶେଷରେ କଲେ ମୋ ପ୍ରତି ଆଦେଶ
ଜିହ୍ୱାରେ ତାହାକୁ ସ୍ପର୍ଶ କରିବା ସକାଶ ।
ଏମନ୍ତ ଆଦେଶ ଶୁଣି କହିଲି ମୁଁ ତାଙ୍କୁ
ଅକ୍ଷମ ଅଟଇ ମୁହିଁ ଏହା କରିବାକୁ ।
ଚକିତେ ବ୍ରାହ୍ମଣୀ ତହୁଁ କହିଲେ ଉତ୍ତରେ
ଏ କି କଥା ପୁଣି ତବ ଶ୍ରୀମୁଖୁଁ ବାହାରେ ?
ଏଇ ଦେଖ ନିଃସଙ୍କୋଚେ କଲି ମୁଁ ଗ୍ରହଣ
ଲଙ୍ଘୁଛ କିମ୍ପାଇ ତୁମ୍ଭେ ଶାସ୍ତ୍ରର ବିଧାନ ।
ପୁନଶ୍ଚ ଗ୍ରହଣେ ଆଜ୍ଞା ଦେଲେ ସେ ଯେମନ୍ତ
ମୋ ହୃଦେ ପ୍ରଚଣ୍ଡ ଚଣ୍ଡୀ ମୂର୍ତ୍ତି ଆବିର୍ଭୂତ ।
'ମାଆ' 'ମାଆ' ସମ୍ବୋଧିଣ କଲି ମୁଁ ଚିତ୍କାର
ଭାବାବିଷ୍ଟ ହେଲି ଅଙ୍ଗ ନିମିଷ ମଧ୍ୟର ।
ଏସନ ସୁଯୋଗ ପାଇ ଭୈରବୀ ବ୍ରାହ୍ମଣୀ
ମହାମାଂସ ଖଣ୍ଡ ମୁଖେ ଗୁଞ୍ଜିଦେଲେ ଆଣି ।
ଚିତ୍ତେ ହେଲି ନାହିଁ ଆଉ ଘୃଣାର ସଞ୍ଚାର
ଘୃଣା ତ୍ୟାଗ କରାଇଲେ ଦେବୀ ଏପ୍ରକାର ।

ଆନନ୍ଦାସନ ସାଧନ ସାଧିବା ସମୟେ
ଦେଖିଣ ପୁରତେ ରତ ନରନାରୀ ଦ୍ୱୟେ,
ଶିବ ଶକତିର ଲୀଳା ମନେ ଉପୁଜିଣ
ସମାଧିସ୍ଥ ହୋଇଲି ଯେ ମୁହିଁ ତତକ୍ଷଣ ।
ତଦନ୍ତେ ମୁଁ ଯେତେବେଳେ ସଂଜ୍ଞାପ୍ରାପ୍ତ ହେଲି
ହରଷେ ଭାଷିଲେ ଧୀରେ ମୋତେ ବିପ୍ରବାଲୀ ।
ଆନନ୍ଦାସନରେ ବତ୍ସ ଏବେ ତୁମ୍ଭେ ସିଦ୍ଧ
ବୀରଭାବର ସର୍ବୋଚ୍ଚ ଆସନ ପ୍ରସିଦ୍ଧ ।
ଏଥିଅନ୍ତେ ପୁଣି ସେହି ଭୈରବୀ ବ୍ରାହ୍ମଣୀ
କୁଳାଗାରର ପୂଜା ପାଇଁ ମନେ ମନେ ଗୁଣି,
ଶ୍ୟାମାଙ୍କ ସମ୍ମୁଖେ ଅଛି ଯେ ନାଟମନ୍ଦିର
ପୂଜାପାଇଁ ଆୟୋଜନ କଲେ ଯେ ସେଠାର ।
ଅନ୍ୟ ଜଣେ ଭୈରବୀଙ୍କୁ ସେ ସ୍ଥାନେ ଡକାଇ
ସମସ୍ତ ସଂଗ୍ରହ କଲେ ତା ସାହାଯ୍ୟ ନେଇ ।
ସର୍ବ ସମ୍ମୁଖରେ ପୂଜା କଲି ଦିବାଭାଗେ
ବିକାରବିହୀନ ଚିତ୍ତେ ଅତି ଅନୁରାଗେ ।
ସ୍ତ୍ରୀ ଯୋନିରେ ଦୃଷ୍ଟ ଜଗନ୍ମାତା ଅଧିଷ୍ଠାନ
ଏ ପ୍ରକାରେ ପୂର୍ଣ୍ଣ ବୀରଭାବର ସାଧନ ।
ବାଲ୍ୟକାଳୁଁ ରମଣୀଠି ମାତୃଜ୍ଞାନ ମୋର
ବ୍ୟତିକ୍ରମ ନ ଘଟିଲା ତହିଁ କିଞ୍ଚିତର ।
ଯୋନି ଶବ୍ଦ କେହି କେବେ କଲେ ଉଚ୍ଚାରଣ
ବିଶ୍ୱଯୋନି କଥା ମନେ ଜାଗ୍ରତ ତକ୍ଷଣ ।
ମୋ ଚିତ୍ତେ ଭବାନୀ କଲେ ନିରତେ ବିହାର
ଭୁଞ୍ଜିଲି ସମାଧି ଯୋଗେ ଆନନ୍ଦ ଅପାର ।
କାରଣର ନାମେ ଅବା ଗନ୍ଧେ ସେହିପରି
ବିହ୍ୱଳ ଜଗଦ୍‌କାରଣ ଉପଲବ୍ଧି କରି ।
ନାରୀ ଏ ଅଟନ୍ତି ଜଗନ୍ମାତା ପ୍ରତିକୃତି
ଆଜୀବନ ବ୍ରହ୍ମଚାରୀ ତେଣୁ ଗଣପତି ।
ସାଧୁଜନେ ଶୁଣ ଏବେ ତାର ବିବରଣ
ମାତୃଭାବ ତାଙ୍କ ମନେ ଉଇଁଲା କେସନ ।
କିଶୋର ବୟସେ ଗଣପତି ଦିନକରେ
ବିରାଡ଼ିକୁ କ୍ରୀଡ଼ାରତ ଦେଖି ସମ୍ମୁଖରେ,
ବାଳକସୁଲଭ ଚପଳତା ଅନୁସରି
କ୍ଷତବିକ୍ଷତ କରିଲେ ତାହାକୁ ପ୍ରହାରି ।
ପ୍ରାଣ ଘେନି ସେ ବିରାଡ଼ି କୌଣସି ପ୍ରକାରେ
ରୁଦ୍ଧଶ୍ୱାସେ ତାଙ୍କ ପାଶୁଁ ପଳାଇଲା ଦୂରେ ।

କ୍ରୀଡ଼ା ଶେଷେ ଗୃହେ ଫେରି ପ୍ରଭୁ ଗଣପତି
ଭେଟିଲେ ଯେ କାଳେ ତାଙ୍କ ଜନନୀ ପାର୍ବତୀ ।
ତାଙ୍କ ଅଙ୍ଗେ ନାନା ସ୍ଥାନେ ଦେଖି କ୍ଷତ ଚିହ୍ନ
ବିଷାଦଗ୍ରସ୍ତଭାବେ ତାଙ୍କ ହୃଦୟ ଆଚ୍ଛନ୍ନ ।
ମାତାଙ୍କୁ ପୁଚ୍ଛିଲେ ତହୁଁ କାରଣ ତାହାର
ଜନନୀ ବିମର୍ଷ ଭାବେ ଦେଲେକ ଉତ୍ତର ।
"ତୁମ୍ଭେ ବତ୍ସ ! ମୋର ଏହି ଦୁର୍ଦ୍ଦଶା କାରଣ"
ଗଣେଶ ବିସ୍ମିତ ଶୁଣି ମାତାଙ୍କ ବଚନ ।
ମାତୃଭକ୍ତ ଗଣପତି ସଜଳ ନୟନେ
ମାତାଙ୍କୁ ପୁଚ୍ଛିଲେ ତହୁଁ କରୁଣ ବଚନେ ।
ଏ କି କଥା କହୁଛନ୍ତି ଜନନୀ ମୋହର
"କେତେବେଳେ ଆପଣଙ୍କୁ କଲି ମୁଁ ପ୍ରହାର ।
କେବେହେଁ ମୁଁ କରି ନାହିଁ ଦୁଷ୍କର୍ମ ଏସନ
ଯା ପାଇଁ ଏପରି କଷ୍ଟ ଭୋଗିବେ ଆପଣ ।"
ସୁତଙ୍କ ଉତ୍ତରେ ତହୁଁ କହିଲେ ଜନନୀ
"କାହାକୁ ମାରିଛ ଆଜ ଦେଖ ମନେ ଗୁଣି ।"
ଚିନ୍ତା କରି ଉତ୍ତରିଲେ ଧୀରେ ଗଣପତି
"ବିରାଡ଼ିକୁ ମାରିଅଛି ମୁହିଁ ମୂଢ଼ମତି ।"
ସମ୍ଭବ ହୁଅଇ ସେହି ବିରାଡ଼ି ଯାହାର
ମାତାଙ୍କୁ ନିର୍ଦ୍ଦୟ ଭାବେ କଲି ସେ ପ୍ରହାର ।
ଏମନ୍ତ ଭାଳିଣ ହେଲେ ଅତ୍ୟନ୍ତ ଦୁଃଖିତ
ରୋଦନ କରିଲେ ନିନ୍ଦି ଆପଣା ଦୁଷ୍କୃତ ।
ସୁତେ କୋଳେ ଘେନି ତହୁଁ ସ୍ନେହମୟୀ ମାତା
ଆଶ୍ୱାସନା ଦେଲେ ତାଙ୍କୁ କହି ମର୍ମ କଥା ।
ସ୍ଥିର ଚିତ୍ତେ ଶୁଣ ବତ୍ସ ! ମୋହର ବଚନ
"ତବ ସମ୍ମୁଖେ ଯେ ଦେହ ମୋର ବିଦ୍ୟମାନ ।
ତଦୁପରେ କରି ନାହିଁ କେହି ଅତ୍ୟାଚାର
ସେଥିପାଇଁ ହୁଅ ନାହିଁ କେବେହେଁ କାତର ।
ଜାଣିରଖ ଆରେ ଧନ ! ମୁହିଁ ଏ ସଂସାରେ
ଯାବତୀୟ ପ୍ରାଣୀରୂପେ ବିଚରଣ କରେ ।
ବିରାଡ଼ିକୁ ମାରିବାରୁ କ୍ଷତ ତା ଶରୀର
ସେହି କ୍ଷତ ଚିହ୍ନ ଦୃଷ୍ଟ ଅଙ୍ଗରେ ମୋହର ।
ଜ୍ଞାତସାରେ କରନାହିଁ ଏ କର୍ମ ସାଧନ
ସେ କାରଣେ କରନାହିଁ ଦୁଃଖ କଦାଚନ ।
ଆଜଠାରୁ ବାପାଧନ ! ଜାଣିବ ନିଶ୍ଚିତ
ସ୍ତ୍ରୀମୂର୍ତ୍ତିବିଶିଷ୍ଟା ପ୍ରାଣୀ ମୋ ଅଂଶେ ସମ୍ଭୂତ ।
ପୁରୁଷ ମୂରତିଧାରୀ ଜୀବ ଯେତେ ଅଛେ
ତବ ପିତୃ ଅଂଶେ ଜାତ ସେମାନେ ସରବେ ।
ଯାହା କିଛି ଏ ଜଗତେ କରୁଛ ଦର୍ଶନ
ଶିବ ଆଉ ଶକ୍ତି ବିନୁ ନାହିଁ କିଛି ଆନ ।"
ମାତାଙ୍କ ବଚନ ଶୁଣି ଗଣପତିଙ୍କର
ସେହିଦିନୁ ମାତୃଭାବ ଚିତ୍ତେ ଦୃଢ଼ତର ।
ବିବାହ ବିଷୟ ଯେବେ ହେଲା ଉପସ୍ଥିତ
ପରିଣୟ ପାଇଁ କେଭେ ନୋହିଲେ ସମ୍ମତ ।
କହିଲେ ଜଗତେ ଯେତେ ଅଛନ୍ତି ରମଣୀ
ସରବେ ଅଟନ୍ତି ମୋର ଆରାଧ୍ୟା ଜନନୀ ।
ଜନନୀଙ୍କୁ ବିଭା ହେବା ଶାସ୍ତ୍ର ଅବିହିତ
ଏ ଭାବ ନିରତ ତାଙ୍କ ହୃଦୟେ ଜାଗ୍ରତ ।
ବ୍ରହ୍ମଚର୍ଯ୍ୟ ବ୍ରତ ତେଣୁ ଧରି ଗଣପତି
ଅରଜିଲେ ଦେବ ମଧ୍ୟେ ବିଶେଷରେ ଖ୍ୟାତି ।
ଜ୍ଞାନୀ ବିଜ୍ଞାନୀଙ୍କ ମଧ୍ୟେ ହେଲେ ଅଗ୍ରଗଣ୍ୟ
ସର୍ବଦ ପ୍ରଥମେ ତାଙ୍କ ପୂଜା ସେକାରଣ ।
ଗଣପତିଙ୍କ ପାଣ୍ଡିତ୍ୟ କେମନ୍ତ ପ୍ରଖର
ସ୍ଥିର ଚିତ୍ତେ ଶୁଣ ଏକ ଦୃଷ୍ଟାନ୍ତ ତାହାର ।
ଏକଦା ପାର୍ବତୀ ଦେବୀ ହୋଇ କୌତୂହଳୀ
ହସ୍ତରେ ଧରିଣ ତାଙ୍କ ମଣିମୁକ୍ତାମାଳ,
ଗଣେଶ କାର୍ତ୍ତିକ ବେନି ସୁତଙ୍କୁ ଡାକିଣ
ସସ୍ନେହେ କହିଲେ "ବତ୍ସ ! ଶୁଣ ମୋ ବଚନ
ଦୁହିଙ୍କ ମଧ୍ୟରେ ଯେହୁ ବିଶ୍ୱ ପରିକ୍ରମି
ମୋ ପାଶେ ପ୍ରବେଶ ହେବ ହୋଇଣ ଅଗ୍ରଣୀ
ତାହାକୁ ଅର୍ପିବି ମୁହିଁ ଏହି ରତ୍ନହାର
ବେନି ଭାଇ ଯାଅ ଏବେ କରିଣ ବିଚାର ।"
ମାତାଙ୍କ ବଚନ ଶୁଣି ଦେବ କାର୍ତ୍ତିକେୟ
ଭାବିଲେ ଅଗ୍ରଜ ମୋର ଅତି ସ୍ଥୂଳକାୟ ।
ମୂଷିକ ଅଟଇ ପୁଣି ତାଙ୍କର ବାହନ
ମନ୍ଥର ଗତିରେ କେତେ କରିବ ଗମନ ।
ମୟୂର ବାହନ ମୋର ଉଡ଼େ କ୍ଷିପ୍ର ଗତି
ରତ୍ନହାର ନିଶ୍ଚେ ମୋର ହୋଇବ ପ୍ରାପତି ।
କାର୍ତ୍ତିକ ଏମନ୍ତ ଭାଳି ମୟୂରେ ବସିଣ
ବାହାର ହୋଇଲେ ବିଶ୍ୱ ଭ୍ରମଣେ ତକ୍ଷଣ ।
ଜନନୀ ବଚନ ଶୁଣି ଦେବ ଗଣପତି
ଏକା ବସି ଆପଣାର ଚିତ୍ତେ ବିଚାରନ୍ତି ।

ଶିବଶକ୍ତ୍ୟାତ୍ମକ ଅଟେ ଏ ବିଶ୍ୱ ଜଗତ
ଭ୍ରମଣରେ ବୃଥା କଷ୍ଟ ହେବ ବହୁଗତ ।
ଜନକ ଜନନୀ ମୋର ମହେଶ ପାର୍ବତୀ
ଏ ବିଶ୍ୱ ବ୍ରହ୍ମାଣ୍ଡ ତାଙ୍କ ଦେହେ ଅବସ୍ଥିତ ।
ଏସନ ସିଦ୍ଧାନ୍ତ କରି ହୋଇଲେ ବାହାର
ପ୍ରଦକ୍ଷିଣ କଲେ ମାତା ପିତାଙ୍କୁ ତାଙ୍କର ।
ବନ୍ଦନାଦି କରି ପୁଣି ଯଥା ନିୟମରେ
ନିଶ୍ଚିନ୍ତେ ବସିଲେ ମାତା ପିତାଙ୍କ ପାଖରେ ।
ତଦନ୍ତେ ଫେରି ଆଇଲେ ଦେବ କାର୍ତ୍ତିକେୟ
ହାର ପ୍ରାପ୍ତି ଆଶା ପୋଷି ପ୍ରଫୁଲ୍ଲ ହୃଦୟ ।
ଗଣେଶଙ୍କ ବ୍ୟବହାରେ ହୋଇଣ ସନ୍ତୋଷ
ଚନ୍ଦ୍ରହାର ସମର୍ପିଲେ ତାଙ୍କୁ ଆଶୁତୋଷ ।"
ଏସନେ ଉଲ୍ଲେଖି ଗଣପତିଙ୍କ ବିଷୟ
ଭାଷିଲେ ଶ୍ରୀରାମକୃଷ୍ଣ ପ୍ରଭୁ ଦୟାମୟ ।
"ଗଣେଶଙ୍କ ସମ ନାରୀ ମାତ୍ରେ ମାତୃଜ୍ଞାନ
ଜାଗ୍ରତ ରହିଲା ମୋର ହୃଦେ ଅନୁକ୍ଷଣ ।
ପରଶେଷେ-ସ୍ପୃହାବଦ୍ଧ ହେଲି ଯା ସହିତ
ତା ଠାରେ ଦେଖିଲି ଜଗଦମ୍ବା ଆବିର୍ଭୂତ ।
ସାକ୍ଷାତ୍ ବିଶ୍ୱଜନନୀ ତାହାକୁ ଜାଣିଣ
ଭକ୍ତି ସହକାରେ କଲି ଚରଣ ବନ୍ଦନ ।
ପୁରୁଷ ସର୍ବେ ଅଟନ୍ତି ଶିବଙ୍କ ମୂରତି
ହୃଦୟେ ନିରତେ ମୋର ହେଲା ଅନୁଭୂତି ।
ଶିଶୁ ଲିଙ୍ଗକୁ ଜୀବନ୍ତ ଶିବଲିଙ୍ଗ ଜ୍ଞାନେ
ପୂଜିଲି ଭକତିଭରେ କୁସୁମ ଚନ୍ଦନେ ।"
ସାଧନ ସମୟେ ଯେତେ ଅଦ୍ଭୁତ ଦର୍ଶନ
ଦେଖିଲେ ଶ୍ରୀ ଦେବରାୟ ଶୁଣ ସେ ଆଖ୍ୟାନ ।
"ଦୟା ବହି ଜଗନ୍ମାତା ଦେଖାଇଲେ ଦିନେ
ଶିବ ଆଉ ଶକ୍ତି ବିରାଜିତ ସର୍ବ ସ୍ଥାନେ ।
ଜୀବଜନ୍ତୁ ତରୁଲତା ଗୁଳ୍ମ ଆଦି କରି
ସବୁଠି ତାଙ୍କ ପ୍ରଭାବ ରହିଛି ବିସ୍ତାରି ।
ସେ ଶିବ ଶକ୍ତି ଅଟନ୍ତି ପୁରୁଷ ପ୍ରକୃତି
ତାଙ୍କ ରମଣେ ଏ ବିଶ୍ୱେ ସୃଷ୍ଟି ନିତି ନିତି ।
ଶୋଣିତ ଶୁକ୍ରରେ ଯେହ୍ନେ ନ ହୁଏ ଜନମ
ଶିବଲିଙ୍ଗ ଅର୍ଚ୍ଚନାର ଏହାହିଁ ମରମ ।"
ଏସନ ଭାଷିଲେ ପ୍ରଭୁ କରୁଣାସାଗର
ଶୁଣ ଏବେ ଅନୁଭୂତି ହେଲା କି ପ୍ରକାର ।

ଭଗବାନଙ୍କ ବିଭୂତି ଦେଖି ଶୃଗାଳରେ
ଭୁଞ୍ଜିଲେ ଉଚ୍ଛିଷ୍ଟ ତାର ବିନା ବିଚାରରେ ।
କୁକୁର କୁକୁରୀ ହୋନ୍ତି ଭୈରବ ବାହନ
ଏମନ୍ତ ଧାରଣା ମନେ ସୁଦୃଢ଼େ ପୋଷିଣ ।
କୁକୁରକୁ ପୂର ଦେଇ ଭୁଞ୍ଜିବା ନମିତ୍ତେ
ଛଡ଼ାଇ ଖାଇଲେ ତାହା ନିର୍ବିକାର ଚିତ୍ତେ ।
ଚିତା ଧୂମ ପାନ ପାଇଁ ଉନମତ୍ତ ହୋଇ
ମୁଖ ବ୍ୟାଦାନେ ଧାଇଁଲେ ଶବ ପୋଡ଼େ ଯହିଁ ।
ମଳମୂତ୍ର ଅନ୍ନ ବ୍ୟଞ୍ଜନାଦି ନାନା ଦ୍ରବ୍ୟ ।
ସମ୍ମୁଖେ ଦେଖିଲେ ଦିନେ ଶୂନ୍ୟରୁ ଉଦ୍ଭବ ।
ଜୀବାତ୍ମା ସହସା ତାଙ୍କ ଦେହରୁ ବାହାରି
ଜିହ୍ୱା ଲହଲହ କରି ଅଗ୍ନିଶିଖା ପରି ।
ମଳମୂତ୍ରେ କିଛି ମାତ୍ର ନ କରି ପ୍ରଭେଦ
ଏକେ ଏକେ ସେ ସମସ୍ତ କଲା ଯେ ଆସ୍ୱାଦ ।
କରୁଣା କରିଣ ଜଗନ୍ମାତା ଏ ପ୍ରକାରେ
ଦେଖାଇଲେ ସବୁ ଦ୍ରବ୍ୟ ଅଭେଦ ସଂସାରେ ।
ବ୍ରହ୍ମଯୋନି ଏ ସମୟେ ହେଲା ବି ଦର୍ଶନ
ଦିବ୍ୟ ଜ୍ୟୋତିର୍ମୟ ବସ୍ତୁ ଆକାର ତ୍ରିକୋଣ ।
ଅସଂଖ୍ୟ ବ୍ରହ୍ମାଣ୍ଡ ସେଥୁ ପ୍ରତି ମୁହୂର୍ତ୍ତରେ
କେବଳେ ପ୍ରସବ ହୁଏ ବିଶ୍ୱ ଚରାଚରେ ।
ତାହା ଯେ ଅଦ୍ଭୁତ କାଣ୍ଡ ନ ସ୍ଫୁରେ ବଚନ
ଦେଖାଇଲେ ତା ବି ଦେବୀ ସଦୟ ହୋଇଣ ।
ଶୁଣ ଏବେ ସାଧୁଜନେ ସାଧନ ଭଜନେ
କୁଣ୍ଡଳିନୀ ଶକ୍ତି ହୋନ୍ତି ଜାଗ୍ରତ କେସନେ ।
ଶ୍ରୀମୁଖେ ଯା କହିଛନ୍ତି କରୁଣାସାଗର
ସଂକ୍ଷେପେ କହୁଛି ସେହି ଅଦ୍ଭୁତ ବ୍ୟାପାର ।
"ମେରୁଦଣ୍ଡ ମୂଳେ ଅଛି ପଦ୍ମ ମୂଳାଧାର
ଯା ଅଟେ ଆସ୍ଥାନ କୁଣ୍ଡଳିନୀ ଶକ୍ତିଙ୍କର ।
ସୁପ୍ତ ଭୁଜଙ୍ଗ ପ୍ରାୟେ କୁଣ୍ଡଳ ଆକାରେ
ନିବସନ୍ତି କୁଣ୍ଡଳିନୀ-ଶକ୍ତି ମୂଳାଧାରେ ।
ଏ ମହାଶକ୍ତି ପ୍ରାଣୀଠି ନୋହିଲେ ଜାଗ୍ରତ
ନ ହୁଏ ଚୈତନ୍ୟ କିମ୍ବା ଈଶ୍ୱର ପ୍ରାପତ ।
ଅନ୍ୟାନ୍ୟ ଯୋଗ ଅପେକ୍ଷା ଭକତି ଯୋଗରେ
କୁଣ୍ଡଳିନୀ ଶକ୍ତି ଜାଗି ଉଠନ୍ତି ସହଜରେ ।
କାମିନୀକାଞ୍ଚନୁ ମନ ବିରତ ନୋହିଲେ
ଯୋଗ କ୍ଷମ ହୁଏ ନାହିଁ ତାହା କେତେବେଳେ ।

ସାଧାରଣ ମାନବଙ୍କ ମନ ନିରନ୍ତର
ଲିଙ୍ଗ ଗୁହ୍ୟ ନାଭିଦେଶେ ଭ୍ରମେ ବରାବର ।
ବହୁ ଶ୍ରମସାଧ୍ୟ ଯୋଗ ସାଧନ ଫଳରେ
ଜାଗନ୍ତି ସେ କୁଣ୍ଡଳିନୀ ଶକ୍ତି ମୂଳାଧାରେ ।
ଇଡ଼ା ପିଙ୍ଗଳା ସୁଷୁମ୍ନା ତିନିଗୋଟି ନାଡ଼ୀ
ମୂଳାଧାରେ ରହିଛନ୍ତି ପରସ୍ପରେ ଭିଡ଼ି ।
ସୁଷୁମ୍ନା ନାଡ଼ୀରେ ଷଷ୍ଠ ପଦ୍ମ ବିରାଜଇ
କ୍ରମେ ମୂଳାଧାର ପରେ ସ୍ୱାଧିଷ୍ଠାନ ଥାଇ ।
ତଦୂର୍ଦ୍ଧ୍ୱେ ରହଇ ମଣିପୁର, ଅନାହତ
ବିଶୁଦ୍ଧ, ଆଜ୍ଞା, ନାମରେ ଷଷ୍ଠ ଚକ୍ର ଖ୍ୟାତ ।
ମୂଳାଧାର ଚତୁର୍ଦ୍ଦଳ ପଦ୍ମର ଆକାର
ଗୁହ୍ୟଦେଶେ ଅବସ୍ଥିତ ଅଟଇ ଏହାର ।
ତଦୁପରେ ସ୍ୱାଧିଷ୍ଠାନ ଚକ୍ରର ସଂସ୍ଥିତ
ଷଷ୍ଠଦଳ ପଦ୍ମପ୍ରାୟ ତାହାର ଆକୃତି ।
ଲିଙ୍ଗଦେଶେ ଅବସ୍ଥାନ ଅଟଇ ଏହାର
ତଦୂର୍ଦ୍ଧ୍ୱେ ବିରାଜେ ନାଭିଦେଶେ ମଣିପୁର ।
ଦଶଦଳ ପଦ୍ମେ ଏହି ଚକ୍ର ସୁରକ୍ଷିତ
ଏ ତିନି ଚକ୍ରଠି ମନ ଭ୍ରମଇ ସତତ ।
କୌଣସି ପ୍ରକାରେ ଏକୁ କଲେ ଅତିକ୍ରମ
ହୃଦେ ଅନାହତ ପଦ୍ମେ ନିବସଇ ମନ ।
ଦ୍ୱାଦଶ ଦଳରେ ଏହି ପଦ୍ମ ସୁଶୋଭିତ
ଏଠାକୁ ଆସିଲେ ମନ ଚୈତନ୍ୟ ଉଦିତ ।
ନାନାବିଧ ଦିବ୍ୟ ଜ୍ୟୋତିଃ ଏଠାରେ ଦେଖିଣ
ଅତି ଆଶ୍ଚର୍ଯ୍ୟ ମଣଇ ସେ ସାଧକ ଜନ ।
ତା ପରେ ବିଶୁଦ୍ଧ ଚକ୍ର କଣ୍ଠେ ସ୍ଥାନ ଯାର
ଷୋଡ଼ଶ ଦଳ ଆକାର ପ୍ରମାଣ ତାହାର ।
ଏ ସ୍ଥାନରେ ପ୍ରବେଶଇ ମନ ଯେତେବେଳେ
ଈଶ୍ୱର ପ୍ରସଙ୍ଗେ ରତ ଥାଏ ସଦାବେଳେ ।
ବିଭୁଙ୍କର ଗୁଣଗାଥା ଶ୍ରବଣ କୀର୍ତ୍ତନେ
ଉତ୍କଣ୍ଠିତ ମନ ଧାଉଁଥାଏ ଅନୁକ୍ଷଣେ ।
ବିଷୟ ପ୍ରସଙ୍ଗ ତାକୁ ଲାଗେ ବିଷତୁଲ୍ୟ
ଶ୍ରବଣ ମାତ୍ରକେ ପ୍ରାଣେ ବିନ୍ଧିଯାଏ ଶୂଳ ।
କାମିନୀକାଞ୍ଚନ କଥା ଯେଉଁଠି ହୁଅଇ
ସେ ସ୍ଥାନ ବରଜି ଅନ୍ୟଠାକୁ ଯେ ଗମଇ ।
ତଦୂର୍ଦ୍ଧ୍ୱେ ଦ୍ୱିଦଳ ପଦ୍ମ ଆଜ୍ଞାଚକ୍ର ନାମ
ଲଲାଟ ଦେଶରେ ହୁଏ ଏହାର ଆସ୍ଥାନ ।

କୁଣ୍ଡଳିନୀ ଶକ୍ତି ଏଠି ହେଲେ ଉପସ୍ଥିତ
ବିଭୁଙ୍କ ଦର୍ଶନ ଲଭି ସାଧକ ମୋହିତ ।
ତଥାପି ଏ ଦର୍ଶନରେ ସ୍ୱଳ୍ପ ବ୍ୟବଧାନ
ଲଣ୍ଠନ ମଧ୍ୟରୁ ଯେହ୍ନେ ଆଲୋକ ଦର୍ଶନ ।
ମନେହୁଏ କରୁଛୁ ମୁଁ ଆଲୋକ ସ୍ପରଶ
କାଚ ବ୍ୟବଧାନ ଯୋଗୁଁ ବିଫଳ ପ୍ରୟାସ ।
ଶୀର୍ଷଦେଶେ ଯେ ସପ୍ତମ ଚକ୍ର ବିରାଜଇ
ସହସ୍ରା ତା ନାମ ସହସ୍ରେକ ଦଳ ଥାଇ ।
ଶ୍ରୀ ସଚ୍ଚିଦାନନ୍ଦ ଶିବ ବିଭୁ ପରାତ୍ପର
ଏ ଚକ୍ରେ ରହିଣ ନିତ୍ୟ କରନ୍ତି ବିହାର ।
ଆଦ୍ୟାଶକ୍ତି କୁଣ୍ଡଳିନୀ ଷଷ୍ଠ ଚକ୍ର ଭେଦ
ସହସ୍ରାରେ ପ୍ରବେଶିଲେ ହୁଅଇ ସମାଧି ।
ଶିବ ଶକ୍ତି ଦୁହିଁଙ୍କର ଏକତ୍ର ମିଳନେ
ଅପାର ଆନନ୍ଦ ଭୋଗ ହୁଏ ଅନୁକ୍ଷଣେ ।
ବିଭୁପାଇଁ ବ୍ୟାକୁଳତା ହେଲେ ଉପସ୍ଥିତ
କୁଣ୍ଡଳିନୀ ଶକ୍ତି ତେବେ ହୁଅନ୍ତି ଜାଗ୍ରତ ।
ଶ୍ରୀଦେବ ବୋଲନ୍ତି ବଚନେ ଦେଖି ଦଶା ବହୁ
ଦେଖାଇଲେ କୁଣ୍ଡଳିନୀ କେସନେ ଜାଗଇ ।
ଏ ସକଳ ଅଟେ ଅତି ଗୁହ୍ୟ ସମାଚାର
ସାବଧାନେ ଶୁଣ ମନ ! ଆଖ୍ୟାନ ତାହାର ।
"ମୋହର ସଦୃଶ ଏକ ଯୁବକ ପୁରୁଷ
ସୁଷୁମ୍ନା ନାଡ଼ୀ ମଧ୍ୟରେ କଲେକ ପ୍ରବେଶ ।
ଜିହ୍ୱା ଦ୍ୱାରା ଯୋନି ରୂପ ପଦ୍ମେ ଏକେ ଏକେ
ରମଣ ଆରମ୍ଭ କଲେ ତହିଁ ମହା ସୁଖେ ।
ଗୁହ୍ୟ ଲିଙ୍ଗ ନାଭିଦେଶେ ଅଛଇ ଯେ ପଦ୍ମ
ଅଧୋମୁଖୀ ହୋଇଣ ତା ଥାଏ ଅନୁକ୍ଷଣ ।
ରମଣ ସ୍ପର୍ଶରେ ତାହା ଗୋଟି ଗୋଟି ହୋଇ
ପ୍ରସ୍ଫୁଟିତ ହେଲେ କ୍ରମେ ଊର୍ଦ୍ଧ୍ୱ ଦିଗେ ଚାହିଁ ।
ଏଥିଅନ୍ତେ ଦିବ୍ୟଦେହୀ ଉଠି ଊର୍ଦ୍ଧ୍ୱ ଦିଗେ
ହୃଦସ୍ଥ ମଧ୍ୟରେ ପ୍ରବେଶିଲେ ଅତି ବେଗେ ।
ସେଠାରେ ଦ୍ୱାଦଶ ଦଳ ପଦ୍ମ ଅନାହତ
ଊର୍ଦ୍ଧ୍ୱମୁଖୀ ହୋଇ କ୍ଷଣେ ହେଲେ ପ୍ରସ୍ଫୁଟିତ ।
କଣ୍ଠ ଲଲାଟସ୍ଥ ପଦ୍ମ ବିହଶ ତା ପରେ
ବିକଶିତ କଲେ ତାକୁ କ୍ଷଣକ ମଧ୍ୟରେ ।
ସହସ୍ରା ପଦ୍ମରେ ଧୀରେ ଧୀରେ ପ୍ରବେଶିଣ
ମୁକୁଳିତ କଲେ ଶେଷେ ତା ସଙ୍ଗେ ରମିଣ ।

ଏ ପ୍ରକାରେ ପଦ୍ମରାଜ ହେଲା ମୁକୁଳିତ
ଦିବ୍ୟଦେହୀ ଦେବଭାବେ ପୂର୍ଣ୍ଣ କଲା ଚିତ୍ତ ।”
ସାଧୁଜନେ ଶୁଣ ଏବେ ମନ ସ୍ଥିର କରି
ଅନାହତ ଧ୍ୱନି ପ୍ରଭୁ ଶୁଣିଲେ ଯେପରି ।
ବ୍ରହ୍ମାଣ୍ଡର ଯାବତୀୟ ବିବିଧ ଶବଦ
ଏକତ୍ର ହୋଇଣ ତହୁଁ ଜନ୍ମେ ଦିବ୍ୟ ନାଦ ।
ଏ ନାଦ ସରବ ସ୍ଥାନୁଁ ହୋଇ ସମୁତ୍ଥିତ
ବିରାଟ ପ୍ରଣବ ଶବ୍ଦେ ତାହା ପରିଣତ ।
ଏ ମହା ବିରାଟ ଧ୍ୱନି ପ୍ରତି ମୁହୂର୍ତ୍ତିରେ
ବାହାରୁଛି ସର୍ବ ସ୍ଥାନୁଁ ଅକ୍ଲାନ୍ତ ଭାବରେ ।
ଏମନ୍ତେ କରୁଣାମୟୀ ଜଗତ ଜନନୀ
ପ୍ରତ୍ୟକ୍ଷ ଯେ କରାଇଲେ ଅନାହତ ଧ୍ୱନି ।
ଈଦୃଶ ଅଦ୍ଭୁତ ଦୃଶ୍ୟ ଦେଖିଲେ ସେ ଯେତେ
ପ୍ରାଣୀଙ୍କ ଗୋଚର ନୁହେ ସେସବୁ କହିତେ ।
ପଶୁପକ୍ଷୀ ଆଦି କରି ପ୍ରାଣିମାନଙ୍କର
ରାବ ଶ୍ରବଣ ମାତ୍ରକେ ପ୍ରଭୁ ଶ୍ରୀଠାକୁର
ତାର ମର୍ମ ବୁଝିବାକୁ ହୋଇଥିଲେ କ୍ଷମ
ନିଜ ମୁଖେ କହିଛନ୍ତି ପ୍ରଭୁ ଗୁଣଧାମ ।
ଦେବୀଙ୍କ ମୋହିନୀ ମାୟା ଦର୍ଶନ ନିମିତ୍ତ
ଇଚ୍ଛା ପ୍ରକାଶିଲେ ଦିନେ ପ୍ରଭୁ ଆଦିନାଥ ।
ଜାହ୍ନବୀ ଗର୍ଭରୁ ତହୁଁ ନିମିଷେକ କାଳେ
ଅପୂର୍ବ ସୁନ୍ଦରୀ ଏକ ନାରୀ ବିଜେ କଲେ ।
ପଞ୍ଚବଟୀ ମୂଳେ ବାମା ପ୍ରବେଶିଲା ଧୀରେ
ବୃଦ୍ଧି ବୃଦ୍ଧି ପୂର୍ଣ୍ଣ ଗର୍ଭବାସ ତଦନ୍ତରେ ।
ସୁନ୍ଦର କୁମାରଟିଏ ତହିଁ ପ୍ରସବିଣ
ସ୍ତନ ଦେଇ କଲା ତାକୁ ଲାଳନ ପାଳନ ।
ପରକ୍ଷଣେ ପୁଣି ତାକୁ କରାଳ ବଦନେ
ଦେଖୁ ଦେଖୁ ଗ୍ରାସ କଲା କଠୋର ପରାଣେ ।
ଏମନ୍ତେ ମୋହିନୀ ମାୟା ଦରଶନ ଦେଇ
ପୁନଶ୍ଚ ଜାହ୍ନବୀ ଗର୍ଭେ ନିମଜ୍ଜିଲେ ଯାଇ ।
ଦଶଭୁଜାରୁ ଆରମ୍ଭି ଦ୍ୱିଭୁଜା ପର୍ଯ୍ୟନ୍ତ
ନାନାରୂପେ ଦେବୀ ତାଙ୍କ ପାଶେ ଆବିର୍ଭୂତ ।
ବିବିଧ ଭାବରେ ଦେଇ ହିତ ଉପଦେଶ
ବାୟୁସଙ୍ଗେ ମିଶି ପୁଣି ନିମିଷେ ଅଦୃଶ୍ୟ ।
ଯେତେ ଦେବୀ ମୂର୍ତ୍ତି ଦେଖିଲେକ ଗୁଣଧାମ
ରାଜ ରାଜେଶ୍ୱରୀ ମୂର୍ତ୍ତିରୂପେ ଅନୁପମ ।
ଏ ବ୍ୟତୀତ ଭୈରବାଦି ଯେତେ ଦେବମୂର୍ତ୍ତି
ପ୍ରତ୍ୟକ୍ଷ କରିଲେ ପ୍ରଭୁ ବ୍ରହ୍ମାଣ୍ଡର ପତି ।
ସେ ସବୁ ବର୍ଣ୍ଣିବେ ନର ଶକ୍ତି ପରାହତ
ଅଲୌକିକ ଘଟଣାରେ ପୂର୍ଣ୍ଣ ଶ୍ରୀଚରିତ ।
ତନ ମନ ଶ୍ୟାମା ପଦେ ଦେଇଣ ଆହୁତି
ଆବର ଯେ ନିରେଖିଲେ ପ୍ରଭୁ ବିଶ୍ୱପତି ।
ଜ୍ଞାନାଗ୍ନି ଯେସନ ତାଙ୍କ ଅନ୍ତରେ ବାହାରେ
ଆବରି ରହିଛି ଦୃଢ଼େ ସମ୍ୟକ ଭାବରେ ।
ଅଙ୍ଗକାନ୍ତି ସମୁଜ୍ଜ୍ୱଳ ଯେହ୍ନେ ଚନ୍ଦ୍ର ଆଭା
ଦରଶକ ବୃନ୍ଦଙ୍କର ମନପ୍ରାଣ ଲୋଭା ।
ଜ୍ୟୋତିଃ ଦେଖି ଲୋକ ସମାଗମ ଆଶଙ୍କାରେ ।
ଆବୃତ ରଖିଲେ ଅଙ୍ଗ ସର୍ବଦା ବସ୍ତ୍ରରେ ।
ତଥାପି ସେ ଜ୍ୟୋତିର୍ମୟ ଆଭାଟି ତନୁର
ବସ୍ତ୍ର ଭେଦ ଉପରକୁ ହୁଅନ୍ତା ବାହାର ।
ସମୟେ ସମୟେ ତାଙ୍କ ଜଡ଼ ତନୁ ପୁଣ
ଦିବ୍ୟ ଜ୍ୟୋତିର୍ମୟ ରୂପ କରନ୍ତା ଧାରଣ ।
ଆଲୋକେ ହୁଅନ୍ତା ନାହିଁ ଗ୍ରାହ୍ୟା ନିପତିତ
ସାଧନ ଫଳେ ଅନ୍ତେ ଘଟିଲା ଏମନ୍ତ ।
ନିରତ ନିରଭିମାନ ପ୍ରଭୁ ଶ୍ରୀଠାକୁର
ବିତୃଷ୍ଣା ଜନ୍ମିଲା ତେଣୁ ତହିଁରେ ତାଙ୍କର ।
କାତରେ ପ୍ରାର୍ଥନା କଲେ ଦେବୀଙ୍କ ପଦରେ
ବାହାରର ଆଡ଼ମ୍ବର ନିରତେ ମୁଁ ଡରେଁ ।
ବାହ୍ୟ ଜ୍ୟୋତିଃ ହରିନେଇ ଆଲୋ ଜଗନ୍ମାତ !
ଅନ୍ତର ଆଲୋକ କରି ରହ ରୁ ସତତ ।
ସୁତର ପ୍ରାର୍ଥନା ଶୁଣି ଜଗତ ଜନନୀ
ବାହ୍ୟ ଜ୍ୟୋତିଃ ହରି ନେଲେ ହୃଦସ୍ଥବାସିନୀ ।
ଅତଃପର ଭଗବତୀ ତାଙ୍କୁ ଜଣାଇଲେ
କେବଳେ ଆସିଣ ଧର୍ମପିପାସୁ ସକଳେ
ଜୀବନେ କୃତାର୍ଥ ହେବେ ଧର୍ମଲାଭ କରି
ଧର୍ମରାଜ୍ୟ ପରିଣତ ହେବ ବସୁନ୍ଧରୀ ।
ଅଣିମାଦି ସିଦ୍ଧି ଯାହା ସାଧନେ ପ୍ରାପତ
ତାହାକୁ ରଖିଲେ ଦେବ ଅନ୍ତରେ ଗୁପତ ।
ପରବର୍ତ୍ତୀ କାଳେ ଯେବେ ନରେନ୍ଦ୍ର ଭେଟିଲେ
ତାହାଙ୍କୁ ଗୋପନେ ଡାକି ଶ୍ରୀଦେବ ବୋଇଲେ ।
"ଅଣିମାଦି ଅଷ୍ଟସିଦ୍ଧି ଲଭିଛି ମୁଁ ଯାହା
ମୋ କାର୍ଯ୍ୟେ ଲାଗିବ ନାହିଁ କେବେହେଲେ ତାହା ।

ଜଗତେ କରିବୁ ତୁହି ଧରମ ପ୍ରଚାର
ପ୍ରୟୋଜନ ହୋଇପାରେ ସେ ସବୁ ତୋହର ।
ଗ୍ରହଣ କରିବା ପାଇଁ ରାଜି ଥିଲେ ତୁହି
ଅବାଧେ ତୋଠାରେ ତାହା ସମର୍ପିବି ମୁହିଁ ।"

ଏହା ଶୁଣି ଶ୍ରୀ ନରେନ୍ଦ୍ର ପୁଚ୍ଛିଲେ ବିନୟେ
"ଲଭି ପାରିବି କି ବିଭୁ ଏହାର ଆଶ୍ରୟେ ।"
ସସ୍ନେହେ ବୋଇଲେ ତହୁଁ ପ୍ରଭୁ ଶ୍ରୀ ଠାକୁରେ
"ବିଭୁ ଦର୍ଶନ ନ ମିଳେ କଦାପି ଏଥିରେ ।"

ନରେନ୍ଦ୍ର ବୋଇଲେ "ତେବେ ନେଇ କିସ ଫଳ
ଈଶ୍ୱର ଦର୍ଶନ ପଥେ ନୋହିଲେ ସମ୍ବଳ ।"

ଏମନ୍ତ ଉତ୍ତର ଶୁଣି ପ୍ରଭୁ ପଦ୍ମପାଦ
ଅନ୍ତର ସହିତ ତାଙ୍କୁ କଲେ ଆଶୀର୍ବାଦ ।

ଧନ୍ୟ ଧନ୍ୟ ଶ୍ରୀ ନରେନ୍ଦ୍ର ଧନ୍ୟ ତବ ଶକ୍ତି
ନୋହିଲେ କି ଦେବ ଏତେ ଶରଧା କରନ୍ତି ।
ତନ୍ତ୍ରମତରେ ଯେ ସବୁ ସାଧନ ଭଜନ
ଅକ୍ଳେଶେ ସାଧିଲେ ତାକୁ ପ୍ରଭୁ ଭଗବାନ ।
ଗୋଟିଏ ଗୋଟିଏ କରି ଚୌଷଠି ପ୍ରକାର
ତନ୍ତ୍ରେ ସିଦ୍ଧି ଲଭିଥିଲେ ଏମନ୍ତେ ଠାକୁର ।
ଆଶ୍ଚର୍ଯ୍ୟ ବିଷୟ ପୁଣି ଶୁଣ ସ୍ଥିର ଚିତ୍ତେ
ତିନିଦିନେ ସିଦ୍ଧିଲାଭ କଲେ ସବୁମତେ ।

ସାଧନ ଫଳରେ ଏବେ ସୁଷୁମ୍ନାର ଦ୍ୱାର
ଉଦ୍‌ଘାଟିତ ରହିଲା ଯେ ସଦା ସମ୍ପୂର୍ଣ୍ଣର ।
ଆକୃର ବେଶର ପଞ୍ଚବର୍ଷ ଶିଶୁସମ
କାହିଁରେ ନ ଥାଏ ଆସ୍ଥା କଣ୍ଠିତ ପ୍ରମାଣ ।

ହସନ୍ତି କାନ୍ଦନ୍ତି କେବେ ପାଗଳ ପରାୟ
କୌଣସି କଥାରେ କିଛି ରହେ ନାହିଁ ଅସ୍ଥ ।
ବାଲୁବେଶ ଧରି କେବେ ଆନନ୍ଦେ ଭ୍ରମଣ
ଲୁଗାପଟା କାଖେ ଯାକି ନଗ୍ନ ପରକ୍ଷଣ ।

କଟୀରେ ନ ରହେ ବସ୍ତ୍ର, ପଇତା ସ୍କନ୍ଧରେ
ଯହିଁ ତହିଁ ପଡ଼େ ଖସି ଯଥା ଶିଶୁଠାରେ ।
କେତେବେଳେ ଜଡ଼ରୂପେ ନବାକ ବସନ୍ତି
କଉଣସି କାର୍ଯ୍ୟେ ଆଉ ସ୍ପୃହା ନ କରନ୍ତି ।

ଶୁଚି ଅଶୁଚି ତାଙ୍କଠି ଉଭୟ ସମାନ
ପାନ ଭୋଜନ ସମ୍ବନ୍ଧେ ବିଚାରବିହୀନ ।

ପ୍ରାଣୀ ପ୍ରକୃତି ଆଦି ଯେ ଚତୁର୍ବିଂଶ ତତ୍ତ୍ୱ
ସବୁଠି ଦେଖନ୍ତି ସେହି ବିଭୁଙ୍କ ଅସ୍ତିତ୍ୱ ।
ନଗ୍ନଶିଶୁ ଏକ ତାଙ୍କ ଦେହରୁ ବାହାରି
ହରଷେ ଭ୍ରମଇ ସଙ୍ଗେ ଦିବସ ଶର୍ବରୀ ।

କେତେ ହାସ୍ୟ ପରିହାସ ଦୁହିଁଙ୍କ ଭିତରେ
ନାନାରଙ୍ଗ କଉତୁକ ପ୍ରଫୁଲ୍ଲ ଅନ୍ତରେ ।
ପରମହଂସ ଅବସ୍ଥା ଲଭିଣ ଏସନ
ତୁଳସୀ ସଜନାଠାରେ କଲେ ସମଜ୍ଞାନ ।

ଉଦରେ ଭୀଷଣ କ୍ଷୁଧା ସାଧନ ଫଳରେ
ଯେତେ ଖାଇଲେ ସନ୍ତୋଷ ନୋହିଲା କାହିଁରେ ।

ଏଷଣି ଖାଇଲେ ଯଦି ଉଦର ପୂରାଇ
ପରକ୍ଷଣେ ମନହେଲା କିଛି ଖାଇନାହିଁ ।

ଦିନରାତି ଅନୁଭୂତ କ୍ଷୁଧା ବଳବତୀ
ଯେତେ ଭୁଞ୍ଜିଲେ ତହିଁରେ ନ ହେଲା ତୃପତି ।
ଶ୍ରୀଦେବ ବୋଲନ୍ତି ଭୟେ ବୋଇଲ ବିପ୍ରାଙ୍କୁ
"କିସ ଗୋ ଉପାୟ ଏହି ରାକ୍ଷସୀ କ୍ଷୁଧାକୁ ।"

ଆଶ୍ୱାସନା ଦେଇ ବିପ୍ରା କହିଲେ ଉତ୍ତରେ
"ଭୀତ ହୁଅ ନାହିଁ ଏଥିପାଇଁ କିଞ୍ଚିତରେ ।

ଈଶ୍ୱର ପଥରେ ଯେହୁ ପଥିକ ହୁଅଇ
ତାଙ୍କଠି ଏପରି କ୍ଷୁଧା ବିଚିତ୍ର ନୁହଇ ।

ଏ ସମ୍ବନ୍ଧେ ଶାସ୍ତ୍ରେ ଅଛି ବହୁତ ଆଖ୍ୟାନ
କଉଣସି ଚିନ୍ତାର ନାହିଁ ପ୍ରୟୋଜନ ।
ସୂକ୍ଷ୍ମ ଉପାୟରେ ଭଲ କରିଦେବି ମୁହିଁ
ବିବ୍ରତ ନ ହୁଅ ବତ୍ସ ! ତୁମ୍ଭେ ଏଥିପାଇଁ ।"

ଏମନ୍ତ ପ୍ରବୋଧ ଦେଇ ଭୈରବୀ ବ୍ରାହ୍ମଣୀ
ଆୟୋଜନ କଲେ ଯତନେ ନାନା ଖାଦ୍ୟ ଆଣି ।
ଚୂଡ଼ା, ଉଖୁଡ଼ା, ସନ୍ଦେଶ, ଲୁଚି, ରସଗୋଲା
ନାନାବିଧ ଆୟୋଜନେ ଗୃହ ପୂର୍ଣ୍ଣ ହେଲା ।

ଅତଃପର ଶ୍ରୀଦେବଙ୍କୁ ସାଦରେ ଡାକିଣ
ସସ୍ନେହେ କହିଲେ "ବତ୍ସ ! ଶୁଣ ମୋ ବଚନ ।
ତିନି ଦିନ ତିନି ରାତି ଏ ଗୃହରେ ଥାଇ
ଯେତେବେଳେ ଯାହା ଇଚ୍ଛା ଖାଅ ହସ୍ତେ ନେଇ ।"

ବ୍ରାହ୍ମଣୀଙ୍କ କଥାମତେ ପ୍ରଭୁ ଶ୍ରୀଠାକୁର
ତିନି ଦିନ ତିନିରାତି ରହିଲେ ସେଠାର ।

ଯେ କ୍ଷଣେ ବାସନା ହେଲା ଯାହା ଖାଇବାକୁ
ଆନନ୍ଦେ ଭକ୍ଷଣ କଲେ ଅବାଧେ ତାହାକୁ ।
ଛଅ ଦିନ ଛଅ ରାତି ବିତିଲା ଏମନ୍ତେ
ରାକ୍ଷସୀ କ୍ଷୁଧା ବିରାମ ହୋଇଲା ତଦନ୍ତେ ।

ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଆସ୍ୱାଦନ କଲେ ଥରେ ଭବ ବ୍ୟାଧି ଦୂର ।
ବେଳ ଥାଉଁ ଥାଉଁ ସେହି ରସେ ଯାଅ ବୁଡ଼ି
ବେଳ ଗଲେ ଭ୍ରମୁଥିବ ଭବବାଟ ହୁଡ଼ି ।

---

## ଦଶମ ଅଧ୍ୟାୟ :

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ଶାନ୍ତ ଦାସ୍ୟ ବାତ୍ସଲ୍ୟାଦି ପଞ୍ଚଭାବରେ ସାଧନ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତ ପାବନ
ଦୀନନାଥ ଦୀନସଖା ପ୍ରଭୁ ଆର୍ତ୍ତତ୍ରାଣ ।
ଶ୍ରୀରାମକୃଷ୍ଣ-ଚରିତ ଶ୍ରବଣ ମଙ୍ଗଳ
ନିରତ କୀର୍ତ୍ତନେ ଚିତ୍ତ ହୁଅଇ ନିର୍ମଳ ।
ଶାନ୍ତ ଦାସ୍ୟ ଆଦି ପଞ୍ଚଭାବର ସାଧନ
ଈଶ୍ୱର ଦର୍ଶନ ପଥ କରେ ପ୍ରଦର୍ଶନ ।
ତାହାର ମାହାତ୍ମ୍ୟ କଥା ବିଶେଷ ଭାବରେ
ବର୍ଣ୍ଣିତ ହୋଇଛି ଭକ୍ତି ଶାସ୍ତ୍ରମାନଙ୍କରେ ।
ଭାବ ରାଜ୍ୟରେ ଏ ମନ ବିଚରଣ କରି
ଈଶ୍ୱର ଦର୍ଶନେ କ୍ଷମ ହୁଅଇ ତତ୍ପର ।
ପ୍ରଥମେ ଗାଇବି ମୁହିଁ ସାରତତ୍ତ୍ୱ ତାର
ସାଧୁଜନେ ଶୁଣ ଏବେ ଭକ୍ତି ସହକାର ।
ସାଧକ ନୋହିଲେ ସାଧକର ମନୋଭାବ
କେମନ୍ତେ ବୁଝିବେ ଅବା ଇତର ମାନବ ।
ଏ ସାଧନା ଅଟେ ସୂକ୍ଷ୍ମ ଭାବ ରାଜ୍ୟ କଥା
ରୂପ ରସାଦିର ସ୍ଥୂଳ ମୂର୍ତ୍ତି ନାହିଁ ତଥା ।
ରାଗ ଦ୍ୱେଷ ଦ୍ୱନ୍ଦ୍ୱ ଆଦି ପ୍ରବୃତ୍ତିନିଚୟ
ମନକୁ କରନ୍ତି ଯେହୁ ନିରତେ ଅଥୟ ।
ବିଷୟୋନ୍ମାଦ ଅଥବା ଶରୀରତ୍ୱ ମହତ୍ତ୍ୱ
ଏ ସବୁର ସ୍ଥାନ ନାହିଁ ସେଠାରେ କଳ୍ପିତ ।
କେବଳ ବିରାଜେ ତହିଁ ଅନ୍ତରର ଭାବ
ଜନ୍ମ ଜନ୍ମାନ୍ତରର ଗତ ସଂସ୍କାର ପ୍ରଭାବ ।

ବିଶେଷ ବସ୍ତୁ ବା ବ୍ୟକ୍ତି ସଂସର୍ଗରେ ଆସି
ଉଚ୍ଚ ଭାବରେ ମନକୁ ଧରଇ ଆକର୍ଷି ।
ପ୍ରତିକୂଳ ଭାବ ଯେତେ ମାନସେ ଉଦୟ
ନିରତେ ସଂଗ୍ରାମ କରି ତାକୁ କରେ ଜୟ ।
ଏମନ୍ତେ ବିରାଗ ଜନ୍ମି ବାହ୍ୟ ବସ୍ତୁ ପ୍ରତି
ଭାବ ରାଜ୍ୟେ ଅନ୍ତର୍ମୁଖୀ ମନ କରେ ଗତି ।
ଗଭୀରୁଁ ଗଭୀରତର ରାଜ୍ୟେ ଗମେ ଯେତେ
ଭାବ କ୍ରମେ ସୂକ୍ଷ୍ମତର ହୋଇଥାଏ ତେତେ ।
ଗଭୀରତମ ପ୍ରଦେଶେ କଲେକ ପ୍ରବେଶ
ନିଜର ଅସ୍ତିତ୍ୱ ତହିଁ ସମୂଳେ ବିନାଶ ।
ଏକମେବ ଅଦ୍ୱିତୀୟ ବସ୍ତୁ ତହିଁ ପାଇ
ତା ସଙ୍ଗେ ବିହରେ ସଦା ଏକୀଭୂତ ହୋଇ ।
ଯେତେଦିନ ଏ ମନର ସଂସ୍କାରନିଚୟ
ସମ୍ପୂର୍ଣ୍ଣ ଭାବରେ ତହିଁ ନ ହୁଅଇ ଲୟ ।
ଭାବ ରାଜ୍ୟରୁ ସେ ମନ ଲେଉଟି ଆସିଣ
ବାହ୍ୟ ଜଗତରେ ପୁନଃ କରଇ ଭ୍ରମଣ ।
ସମାଧି, ବାହ୍ୟ ଅବସ୍ଥା, ଉଭୟ ମଧ୍ୟରେ
ଆତଯାତ ସାଧକର ମନ ଏ ପ୍ରକାରେ
ପାଠକଲେ ଜଗତର ଧର୍ମ୍ମ ଇତିହାସ
ତହିଁରୁ ଯା ଅବଗତ ହୁଅଇ ସନ୍ଦେଶ ।
କଦିବା କ୍ୱଚିତ ଏହି ଧରଣୀ ମଣ୍ଡଳେ
ଆସନ୍ତି ଏ ଭଳି ଦେବ ମାନବ ବିରଳେ ।
ଯାହାଙ୍କର ସାଧାରଣ ଅବସ୍ଥାନ ଭୂମି
ନିତ୍ୟ ସମାଧି ଅବସ୍ଥା ଚରାଚରେ ଜାଣି ।

ପ୍ରାଣୀଙ୍କ କଲ୍ୟାଣ ହେତୁ ସେହି ଦୟା ବଶ
ସଂସାରେ ଟାଣି ରଖନ୍ତି ମନକୁ ବଳାଇ ।
ଅତୀବ ବିରଳ ଅଟେ ଏହାଙ୍କର ସଂଖ୍ୟା
ଏ ଯୁଗେ ଆସିଲେ ରାମକୃଷ୍ଣ ଦୀନ ସଖା ।
ବାରମ୍ବାର ବଖାଣିଲେ ପ୍ରଭୁ ଦେବ ରାୟେ
"କ୍ଷୁଦ୍ର କ୍ଷୁଦ୍ର ଦୁଇ ଏକ ବାସନା ସହାୟେ ।
ସମାଧି ଭୂମିରୁ ଟାଣି ଏ ମନକୁ ମୁହିଁ
ସଂସାରେ ସ୍ଥାପଇ ଭକ୍ତଜନ ହିତ ପାଇଁ ।
ତା ନ ହେଲେ ସ୍ୱାଭାବିକ ପ୍ରବୃତ୍ତି ତାହାର
ନିରତେ ସଚ୍ଚିଦାନନ୍ଦ ସହିତ ବିହାର ।"
ଏ ସମାଧି ଅବସ୍ଥାକୁ ଆର୍ଯ୍ୟ ଋଷିଗଣ
କେହି କହନ୍ତି ଶୂନ୍ୟ, କେହି ଅବା ପୂର୍ଣ୍ଣ ।
ସ୍ୱାକୁହିଁ ଉପନିଷଦ-ବେଦାନ୍ତ ବାଗୀଶ
ଭାବାତୀତାବସ୍ଥା ବୋଲି କରନ୍ତି ନିର୍ଦ୍ଦେଶ ।
ଏଥିରେ ଯାହାର ମନ ହୁଏ ପ୍ରତିଷ୍ଠିତ
ଭାବାତୀତ ରାଜ୍ୟେ ସେହୁ ବିଚରେ ନିରତ ।
ତହିଁ ନ ଥାଏ ବିଭୁଙ୍କ ସୃଜନ ପାଳନ
କିମ୍ବା ଲୀଳା ପ୍ରକାଶର କୌଣସି ଶକୁନ ।
ଶାନ୍ତ ଦାସ୍ୟ ସଖ୍ୟ ଆଦି ଯେଉଁ ପଞ୍ଚଭାବେ
ଭାବ ରାଜ୍ୟେ ବିଭୁ ସଙ୍ଗେ କ୍ରୀଡ଼ନ୍ତି ମାନବେ ।
ତହିଁ ଗଲେ ସେ ସମ୍ବନ୍ଧ ସବୁ ଯାଏ ତୁଟି
ନିର୍ଗୁଣ ପରମ ବ୍ରହ୍ମ ସାକ୍ଷାତରେ ଭେଟି ।
ସଗୁଣ ସାକାର ବ୍ରହ୍ମ ଭାବେ ଉପଲବ୍ଧି
ସେ ଭାବର ପଞ୍ଚ ନାମ ଶାସ୍ତ୍ରରେ ପ୍ରସିଦ୍ଧି ।
ଶାନ୍ତ, ଦାସ୍ୟ, ସଖ୍ୟ, ଆଉ ବାତ୍ସଲ୍ୟ, ମଧୁର
ଏମନ୍ତ ଅଟଇ ପଞ୍ଚ ନାମ ଯେ ତାହାର ।
ଯେ ସକାମ ପଞ୍ଚଭାବ ପୋଷି ସ୍ୱଭାବରେ
ଜନମ ଲଭନ୍ତି ପ୍ରାଣୀ ଏ ଭବ ସଂସାରେ ।
ମାତା, ପିତା, ଭାଇ, ବନ୍ଧୁ, ସୁତ, ପତି, ପତ୍ନୀ,
ପ୍ରଭୁ, ଭୃତ୍ୟ ଆଦି ପଞ୍ଚଭାବେ ଟଣାଟଣି ।
ନିତ୍ୟ ଶୁଦ୍ଧ ପୂତ ହେଉ ସେ ଭାବ ନିକର
ଭକ୍ତ ସହ ସମର୍ପିଲେ ବିଭୁଙ୍କ ପୟର ।
କାମ କ୍ରୋଧ ଲୋଭାଦି ଯେ ପ୍ରବୃତ୍ତି ସକଳ
ପ୍ରାଣୀଙ୍କୁ କୁକର୍ମେ ସଦା କରେ କଳବଳ ।
ଈଶ୍ୱରେ ଅର୍ପିତ ଶୁଦ୍ଧ ସମ୍ବନ୍ଧ ବଳରେ
ଉନମତ୍ତ ନ କରନ୍ତି ଆଉ କୁକର୍ମରେ ।

ହୃଦୟେ ଆଇଣ ସେହି ଷଡ଼ରିପୁଚୟ
ଈଶ୍ୱର ଦର୍ଶନ ପଥେ ହୁଅନ୍ତି ସହାୟ ।
ରିପୁଙ୍କ ମଧ୍ୟରେ କାମ ରିପୁ ବଳବନ୍ତ
ସର୍ବ ଶୋକ ଦୁଃଖାଦିର କାରଣ ନିଶ୍ଚିତ ।
ବିଭୁଙ୍କ ଦର୍ଶନାକାଙ୍କ୍ଷା ଦୃଢ଼ ହେଲେ ଚିତ୍ତେ
କାମ ତା ପ୍ରବୃତ୍ତି ତେଜି ଗମଇ ସତ୍ପଥେ ।
ଈଶ୍ୱର ଦର୍ଶନ ମାର୍ଗେ ଯାହା ପ୍ରତିକୂଳ
କ୍ରୋଧ ସାହାଯ୍ୟେ ସେ ସବୁ କରଇ ନିର୍ମୂଳ ।
ସାଧନ ଅଭୀଷ୍ଟ ବସ୍ତୁ ପରମ-ଈଶ୍ୱର
ତାଙ୍କ ପ୍ରେମ ସୌନ୍ଦର୍ଯ୍ୟର ନାହିଁ ପଟାନ୍ତର ।
ସେ ସୌନ୍ଦର୍ଯ୍ୟ ଭୋଗ ନିତ୍ୟ ଚିତ୍ତେ କରି ଆଶ
ଲୋଭ ସଦା ସେ ଦିଗରେ କରଇ ପ୍ରୟାସ ।
ବିଭୁପ୍ରେମେ ନିରନ୍ତର ହୋଇ ବିମୋହିତ
ଈଶ୍ୱର ସାଧନ ପଥେ ନିମଗ୍ନେ ନିରତ ।
ବିଭୁଙ୍କ ପୁଣ୍ୟ ଦର୍ଶନ ଲଭିଣ ଏ ଭବେ
ଜୀବନେ କୃତାର୍ଥ ହେଲେ ଯେ ସବୁ ମାନବେ ।
ତାଙ୍କ ଅପୂର୍ବ ଧର୍ମଶ୍ରୀ ଦର୍ଶନ କରିଣ
ତାହା ଲଭିବାକୁ ମନ ଧାଏଁ ଅନୁକ୍ଷଣ ।
ଅନ୍ତର୍ଯ୍ୟାମୀ ବିଭୁ ସର୍ବ ଭାବର ଆଧାର
ଏକାଗ୍ରତା ନିଷ୍ଠା ଭକ୍ତି ଦେଖିଣ ଭକ୍ତର ।
ତାହାର ବାସନା ପୂର୍ଣ୍ଣ କରିବା ନିମନ୍ତେ
ସାକାର ଭାବରେ ଉଭା ଯା ଭାବ ଯେମନ୍ତେ ।
ପ୍ରେମମୟ ହରି ସଦା ବନ୍ଧା ପ୍ରେମ ଡୋରେ
ପ୍ରେମରେ ଡାକିଲେ ଉଭା ପ୍ରେମିକ ପାଖରେ ।
ପଞ୍ଚଭାବେ ଏହି ପ୍ରେମ ପଞ୍ଚ ଭାବାପନ୍ନ
ଶାନ୍ତ ଦାସ୍ୟ ସଖ୍ୟ ଆଦି ତାର ପଞ୍ଚ ନାମ ।
ଯୁଗେ ଯୁଗେ ଅବତରି ଏକ ଏକ ଭକ୍ତ
ଏକ ଏକ ଭାବ ଧରି ସାଧନେ ନିଯୁକ୍ତ ।
ବହୁକାଳବ୍ୟାପୀ ଚେଷ୍ଟା ସାଧନା ବଳରେ
ଇଷ୍ଟ ବସ୍ତୁ ପ୍ରାପ୍ତ ହୋଇ ଧନ୍ୟ ଏ ମହୀରେ ।
ବୈଦିକ ବୌଦ୍ଧ ଯୁଗ ସାଧକ ମଧ୍ୟରେ
ଶାନ୍ତ ଭାବର ପ୍ରାଧାନ୍ୟ ଥିଲା ଅଧିକରେ ।
ଔପନିଷଦିକ ଯୁଗେ ସେହି ଶାନ୍ତ ଭାବ
ପୁଷ୍ଟ ହୋଇ ଅଦ୍ୱୈତ ଭାବର ଉଦ୍ଭବ ।
ସେଥି ସଙ୍ଗେ ପିତୃଭାବେ ପୂଜା ବିଭୁଙ୍କର
ଏ ଭାରତେ କ୍ରମେ କ୍ରମେ ହୋଇଲା ବିସ୍ତାର ।

ଶାନ୍ତ ଆଉ କାମଶୂନ୍ୟ ଦାସ୍ୟର ସାଧନ
ଭାରତୀୟ ରାମାୟଣୀ ଯୁଗରେ ପ୍ରଧାନ ।
ତାନ୍ତ୍ରିକ ଯୁଗେ ବିଭୁଙ୍କ ମାତୃଭାବେ ପୂଜା
ମଧୁର ଭାବରୁ ତହିଁ କିଛିଦଂଶ ଖୋଜା ।
ସଖ୍ୟ ବାତ୍ସଲ୍ୟ ମଧୁର ଏହି ତିନ ଭାବ
ବୈଷ୍ଣବ ଯୁଗେ ଲଭିଲା ବିଶେଷ ପ୍ରଭାବ ।
ଯେ ସବୁ ସାଧନେ ଯୁଗ ଯୁଗ ବିତିଗଲା
ତାହାକୁ ସାଧିଲେ ହେଲେ ଚନ୍ଦ୍ରାଙ୍କର ବଳା ।
ସାବଧାନେ ଶୁଣ ମନ ସେଥିର ଚରିତ
ଅଲୌକିକ ଘଟଣାରେ ଯାହା କି ପୂରିତ ।
ବିଭୁଙ୍କର ଜପ, ତପ, ଗୁଣାନୁକୀର୍ତ୍ତନ
ବୈଧୀ ଭକ୍ତି ସାଧନର ଯାହା ଅନୁଷ୍ଠାନ ।
ତାହା ଆଚରିଲେ ହୁଏ ଭକ୍ତିର ଉଦ୍ରେକ
କ୍ରମେ କ୍ରମେ ସେହି ଭକ୍ତି ହେଲେ ପରିପାକ ।
ଭାବ ସମାଧିରେ ଚିତ୍ତ ନିମଗ୍ନ ହୋଇଣ
ଐଶ୍ୱର୍ଯ୍ୟପୂରିତ ରୂପ ହୁଅଇ ଦର୍ଶନ ।
ବୈଧୀ ଭକ୍ତିର ସୀମାକୁ ଅତିକ୍ରମ କରି
ହୃଦୟରେ ଅନୁରାଗ ବୃଦ୍ଧି ହେଲେ ଭାରି ।
ବିଭୁଙ୍କର ଶାନ୍ତ ମୂର୍ତ୍ତି ଦର୍ଶନ କରିଣ
ଭକ୍ତଗଣ ଆପଣାକୁ ମଣଇ ଯେ ଧନ୍ୟ ।
ଶାନ୍ତ ଭାବର ସାଧନ ନାମେ ଏହା ଖ୍ୟାତ
ପ୍ରଥମେ ଯା ଆଚରିଲେ ପ୍ରଭୁ ଆଦିନାଥ ।
ଜପ ତପ ଧ୍ୟାନ କରି ପଞ୍ଚବଟୀ ମୂଳେ
ବିବିଧ ରୂପ କେତେ ଦର୍ଶନ କରିଲେ ।
ମାନବର ଶକ୍ତି ନାହିଁ କରିବ ବର୍ଣ୍ଣନ
ଶାନ୍ତଭାବେ ସିଦ୍ଧକାମ ଶ୍ରୀଦେବ ଏସନ ।
ଭକ୍ତିମାର୍ଗ ସାଧନେ ଯା ହେଲା ଅନୁଭୂତ
ଶୁଣ ଏବେ ସେ ବିଷୟ ସ୍ଥିର କରି ଚିତ୍ତ ।
"ମନ ଯେତେ ବିଭୁପାଦେ ଅନୁରକ୍ତ ହେବ
ଐଶ୍ୱର୍ଯ୍ୟ ଜ୍ଞାନଟି କ୍ରମେ ତେତେ କମିଯିବ ।
ବିଭୁଙ୍କ ଐଶ୍ୱର୍ଯ୍ୟପୂର୍ଣ୍ଣ ଦଶଭୁଜା ମୂର୍ତ୍ତି
ସରବ ପ୍ରଥମେ ହୁଏ ତାର ଅନୁଭୂତି ।
ଅତଃପର ଭାବ ରାଜ୍ୟେ ହେଲେ ଅଗ୍ରସର
କ୍ରମେ କ୍ରମେ ହ୍ରାସ ପାଏ ଐଶ୍ୱର୍ଯ୍ୟ ତାଙ୍କର ।
ଦଶଭୁଜା ମୂର୍ତ୍ତି ଯାଇ ଦ୍ୱିଭୁଜା ଦର୍ଶନ
ଶାନ୍ତିପ୍ରଦ ସୌମ୍ୟ ମୂର୍ତ୍ତି ଅସ୍ତ୍ର ଶସ୍ତ୍ରହୀନ ।
ତତ୍ପରେ ଦର୍ଶନ ବାଳ ଗୋପାଳ ମୂରତି
ବିଭୂତିବିହୀନ ସ୍ନେହୀ ଶିଶୁର ପ୍ରକୃତି ।
ତଦନ୍ତେ ଦର୍ଶନ କରେ ଯାହା ଭକ୍ତବୀର
ତାହା ସଦାନନ୍ଦ ଘନ ଜ୍ୟୋତିର ଆକାର ।
ସଖାଭାବେ କି ପ୍ରକାର ଈଶ୍ୱର ସାଧନ
ତା ଆଦର୍ଶ ବୃନ୍ଦାବନେ ଗୋପବାଳଗଣ ।
କାହ୍ନୁ ପ୍ରତି ସେମାନଙ୍କ ଅତ୍ୟଧିକ ସ୍ନେହ
କାହ୍ନୁ ଧ୍ୟାନ ଜ୍ଞାନ, କାହ୍ନୁ ଚିନ୍ତା ଅହରହ ।
ଏକତ୍ରେ କାହ୍ନୁଙ୍କ ସଙ୍ଗେ ଆହାର ବିହାର
ଜୀବନସର୍ବସ୍ୱ କାହ୍ନୁ ଅଟନ୍ତି ତାଙ୍କର ।
କାହ୍ନୁ ସୁଖେ ଦୁଃଖେ, କାହ୍ନୁ ଶୟନେ ସ୍ୱପନେ
କାହ୍ନୁ ବିନୁ ଅନ୍ୟ ଚିନ୍ତା ଥାଏ ନାହିଁ ମନେ ।
ବନ ଫଳପୁଷ୍ପ ଯାହା ଆଣନ୍ତି ଗୋଟାଇ
ନିଜେ ତା ଭୁଞ୍ଜନ୍ତି ନାହିଁ କାହ୍ନୁଙ୍କୁ ନ ଦେଇ ।
ଏ ସଂସାର କ୍ରୀଡ଼ାଭୂମି ଅଟେ ବିଭୁଙ୍କର
ପ୍ରାଣୀମାନେ ତାହାଙ୍କର କ୍ରୀଡ଼ା ସହଚର ।
କେ ଅବା ହୋଇଛୁ ରାଜା, କେହି ତାଙ୍କ ପ୍ରଜା
ରଙ୍ଗାଳୟେ କ୍ରୀଡ଼ା ଯେହ୍ନେ ପିନ୍ଧି ସାଜସଜ୍ଜା ।
ସର୍ବଜୀବେ ସମଭାବ ଅହେତୁକ ପ୍ରେମ
ଶ୍ରେଷ୍ଠବଡ଼ ମଧ୍ୟେ ନାହିଁ କିଛି ତାରତମ୍ୟ ।"
ବାଲ୍ୟାବଧି ଭଗବାନ ଦେବଗୁରୁଙ୍କର
ସାର୍ବଜନୀନ ଭାବରେ ପୂରିତ ଅନ୍ତର ।
ପୁରୁଷ ବା ନାରୀ ଧନୀ ନିର୍ଦ୍ଧନ ପଣ୍ଡିତ
ଗଣ୍ଡମୂର୍ଖ ପାମର ବା ପାତକୀ ପତିତ,
ସମସ୍ତଙ୍କ ପ୍ରତି ତାଙ୍କ ସମଭାବେ ପ୍ରେମ
କାହ୍ନୁଙ୍କ ସମୀପେ ଯଥା ଶ୍ରୀଦାମ ସୁଦାମ ।
ଅହେତୁକ ପ୍ରେମେ ବିଭୁ ଦେଖିଲେ ସର୍ବତ୍ର
ଲୀଳାମୟଙ୍କର ଲୀଳା ଜଗତେ ବିଚିତ୍ର ।
ଏମନ୍ତେ ହୋଇଣ ସିଦ୍ଧକାମ ଶ୍ରୀଠାକୁର
ସାଧନ ସାଧିଲେ ଯେତେ ନାହିଁ ପଟାନ୍ତର ।
ଭକ୍ତ ସହ ସାଧୁଜନେ ସାବଧାନେ ଶୁଣ
କେବଣେ ସାଧିଲେ ଦାସ୍ୟ ଭାବର ସାଧନ ।
ତୁମ୍ଭେ ପ୍ରଭୁ, ମୁହିଁ ଦାସ ଏମନ୍ତ ଯେ ଭାବ
ଭକତ ଶାସ୍ତ୍ରେ ବୋଲାଏ ତାହା ଦାସ୍ୟ ଭାବ
ଏହାର ଆଦର୍ଶ ଭବେ ଭକ୍ତ ହନୁମନ୍ତ
ଭକ୍ତିବଳେ ଲଙ୍ଘିଲେ ଯେ ଜଳଧି ଅନନ୍ତ ।

ରାମଧ୍ୟାନ ରାମଜ୍ଞାନ ରାମହିଁ ସର୍ବସ୍ୱ
ତାଙ୍କ ପାଦପଦ୍ମ ତହିଁ ଏକମାତ୍ର ଆଶ ।
ଧନ ମାନ ଦେହ ସୁଖେ ଆଉ ନାହିଁ ଲୋଭ
ସତତ ଆକାଂକ୍ଷା ହୃଦେ ପ୍ରଭୁ ପାଦ ଲାଭ ।
ପ୍ରଭୁ ଆଜ୍ଞା ପାଳିବାକୁ ନିରତେ ତତ୍ପର
ପ୍ରାଣଗଲେହେଁ ତହିଁରେ ଟଳେ ନାହିଁ ଡର ।
ଅଟଳ ବିଶ୍ୱାସ ଭକ୍ତି ସଦା ରାମ ନାମେ
ବ୍ରହ୍ମପଦ ପର୍ଯ୍ୟନ୍ତ ବି ତୁଚ୍ଛ କଲେ ମନେ ।
ସେ ହନୁମନ୍ତଙ୍କ ଅଗ୍ରେ ଆଦର୍ଶ ରଖିଣ
ଦାସ୍ୟ ଭାବ ସାଧିଲେ ସେ ଚନ୍ଦ୍ରାଙ୍କ ନନ୍ଦନ ।
ଦିନରାତି ଚିନ୍ତା ମନେ ରାମ ରଘୁବୀର
କାହିଁଗଲେ ପାଇବି ମୁଁ ଦର୍ଶନ ତାଙ୍କର ।
ଏସନ ଚିନ୍ତାରେ ମନ ଅତ୍ୟନ୍ତ ବ୍ୟାକୁଳ
ବେନି ନେତ୍ରୁ ବହିଯାଏ ଅଶ୍ରୁ ଅବିରଳ ।
ବଦନେ ରଟନ୍ତି ରାମନାମ ଅବିରାମ
ଦଶରଥ ସୁତ ନବ ଦୂର୍ବାଦଳ ଶ୍ୟାମ ।
ନେତ୍ରେ ନାହିଁ ନିଦ୍ରା, କ୍ଷୁଧା ପେଟକୁ ଆହାର
ସତତ ଚିନ୍ତିତ କାହିଁ ରାମ ରଘୁବୀର ।
ବିରହେ ଲୋଟନ୍ତି କେବେ ପଞ୍ଚବଟୀ ମୂଳେ
ଯତ୍ର ତତ୍ର ଧାବମାନ କେବେ ବା ବ୍ୟାକୁଳେ ।
ହନୁମନ୍ତ-ଭାବ ତହିଁ ହୋଇଣ ପ୍ରଖର
ବାନର ସଦୃଶ ହେଲା ଆକୃତ ବେଭାର ।
ଲାଙ୍ଗୁଡ଼ ଆକାରେ ବଳି ପିନ୍ଧିବା ବସନ
କଟୀରେ ତା ଦୃଢ଼ଭାବେ ନିରତେ ବନ୍ଧନ ।
ଲମ୍ଫ ଦେଇ ଆତଯାତ ହନୁମନ୍ତ ରୂପେ
ବକଳ ସହିତ ଫଳମୂଳାଦି ଭୁଞ୍ଜିଲେ ।
ତୃଷା ହେଲେ ଧାଇଁଯାଇ ଭାଗୀରଥୀ ତୀରେ
ଓଷ୍ଠରେ ପିବନ୍ତି ପାଣି ହନୁ ସେ ପ୍ରକାରେ ।
ହୁଙ୍କାର ଗର୍ଜ୍ଜନ କେବେ ଉଠି ବୃକ୍ଷଡାଳେ
'ରଘୁବୀର' 'ରଘୁବୀର' ଚିତ୍କାର ବିକଳେ ।
ମହାବୀରଙ୍କ ଭାବରେ ଏମନ୍ତ ତନ୍ମୟ
ବାନର ସମ ଘୂର୍ଣ୍ଣିତ ସଦା ନେତ୍ରଦ୍ୱୟ ।
ସ୍ୱାଭାବିକ ଅତ୍ୟାଶ୍ଚର୍ଯ୍ୟ ଭବେ ଅବଗତ
ମେରୁଦଣ୍ଡ ଇଞ୍ଚେ ପ୍ରାୟ ନିମ୍ନକୁ ବର୍ଦ୍ଧିତ ।
ଏ ସମୟେ ସୀତାଦେବୀ ପାଶେ ଉଭା ହୋଇ
ହୃଦୟେ ରଞ୍ଜିଲେ ଦିବ୍ୟ ଦର୍ଶନ ସେ ଦେଇ ।

ଭରତଙ୍କ ଭାବେ ପୁନଃ ହୋଇ ପ୍ରଣୋଦିତ
କାଷ୍ଠ ପାଦୁକା ଆଣିଣ ପଲଙ୍କେ ସ୍ଥାପିତ ।
କୁସୁମ ଚନ୍ଦନେ ତାକୁ ପୂଜା ଦିବା ନିଶି
ଅନର୍ଗଳ ଅଶ୍ରୁ ଧାର ନେତ୍ରୁ ଗଳି ଭାସି ।
ପାଦୁକା ସହିତ ଖଟ ମସ୍ତକେ ଥୋଇଣ
କାହିଁ କାହିଁ ଯତ୍ରତତ୍ର କଲେକ ଭ୍ରମଣ ।
ବଦନେ ରଟିଲେ ସଦା ହେ ରାମ ! ହେ ରାମ !
ଦର୍ଶନ ପ୍ରଦାନେ କର ମୋ ପ୍ରାଣ ଆରାମ ।
ଶ୍ରବଣ କଲେକ ସେହି ବ୍ୟାକୁଳ କ୍ରନ୍ଦନ
ପାଷାଣ ହେଲେହେଁ ହୃଦ ହୋଇବ ବିଦୀର୍ଣ୍ଣ ।
ଦିନ ତିନ ରାତ୍ର ମାତ୍ର ଥାଇଣ ଏ ଭାବେ
ଅବଶେଷେ ନିମଜ୍ଜିଲେ ପ୍ରଭୁ ମହାଭାବେ ।
ନିଜର ପୃଥକ ସତ୍ତା ନ ରହିଲା ଆନ
ସମୁଦ୍ରେ ମିଶ୍ରିତ ହେଲା [illegible]ତ ଯେସନ ।
ପ୍ରତି ରକ୍ତବିନ୍ଦୁ ମଧ୍ୟେ ହେଲା ଅନୁଭୂତ
ରାଜୀବଲୋଚନ ରାମ ଯେଉଁଠି ଅଧିଷ୍ଠିତ ।
ଦାସ୍ୟ ଭାବର ସାଧନ ଏସନେ ସେ ଶେଷ
ତା ପରେ ହୃଦେ ବାତ୍ସଲ୍ୟ ଭାବର ପ୍ରକାଶ ।
ପୂର୍ବାପେକ୍ଷା ଏ ସାଧନେ ଭାବ ଉଚ୍ଚତର
ପୁତ୍ରଠାରେ ସ୍ନେହଥାଏ ଯଥା ଜନନୀର ।
ସ୍ୱାର୍ଥଶୂନ୍ୟ ସେହି ସ୍ନେହ କାମନାବିହୀନ
ପ୍ରାଣଦେଇ ସୁତ-ଶୁଭ-ଚିନ୍ତା ଅନୁକ୍ଷଣ ।
ଶ୍ରୀମତୀ ଯଶୋଦା ସେହୁ ଶ୍ରୀକୃଷ୍ଣ ଜନନୀ
ସର୍ବୋଚ୍ଚ ଆଦର୍ଶ ଯାର ତ୍ରିଭୁବନେ ଜାଣି ।
ଐଶ୍ୱର୍ଯ୍ୟ ଭାବବିହୀନ ଏକାବେଳେ ତଥି
ବାଳ ଗୋପାଳ ଭାବରେ ବିହ୍ୱଳ ନିରତ ।
ପୁତ୍ରରୂପେ ଅବତୀର୍ଣ୍ଣ ପ୍ରଭୁ ନାରାୟଣ
ଏ ଭାବ ହୃଦୟେ କେବେ ନ ପାଇଲା ସ୍ଥାନ ।
ତାହାର ଦୃଷ୍ଟାନ୍ତ ମନ ! ଶୁଣ ସାବଧାନେ
ଯା ଭାଷିଲେ ଦେବରସ୍ଥ ଭକ୍ତ ସନ୍ନିଧାନେ ।
ମଥୁରା ତେଜିଣ ଯେବେ ଗଲେ ନାରାୟଣ
ଗୋପଗୋପୀ ଖେଦକଲେ କୃଷ୍ଣ ଝୁରିଝୁରି ।
ଭଗବାନ କୃଷ୍ଣ ତାଙ୍କ ସାନ୍ତ୍ୱନା କାରଣ
ଉଦ୍ଧବଙ୍କୁ ଗୋପପୁରେ କଲେକ ପ୍ରେରଣ ।
ଉଦ୍ଧବ ଯେମନ୍ତ ତହିଁ ପଦାର୍ପଣ କଲେ
ତାଙ୍କୁ ଦେଖି ଯଶୋମତୀ ପୁଚ୍ଛିଲେ ବ୍ୟାକୁଳେ ।

"କହ କହ ମୋ ଗୋପାଳ ଅଛୁରେ କିପରି ?
ଏ ଜୀବନ ଗଲା ମୋର ତାକୁ ଝୁରି ଝୁରି ।
ଆଣିଛୁ କି ତୁହି ଶୁଭ ସଂବାଦ ତାହାର
ଶାନ୍ତିବାରି ଢାଳି ପ୍ରାଣ ସୁଶୀତଳ କର ।"
ଉଦ୍ଧବ ବୋଇଲେ "ମାତଃ ! ତୁମ୍ଭର ସନ୍ତାନ
ଶ୍ରୀକୃଷ୍ଣ ଅଟନ୍ତି ସ୍ୱୟଂ ପ୍ରଭୁ ଭଗବାନ ।
ସାମାନ୍ୟ ପୁରୁଷ ସେହୁ ନୁହନ୍ତି ଜଗତେ
ଜଗଜ୍ଜନ-ଚିନ୍ତାମଣି ଜାଣ ତାଙ୍କୁ ଚିତ୍ତେ ।"
ଯଶୋଦା କହିଲେ ତହୁଁ ଉଦ୍ଧବଙ୍କୁ ଚାହିଁ
"ଚିନ୍ତାମଣି କଥା ମୋତେ କିପାଁ କହୁ ତୁହି ?
ଗୋପାଳ କିପରି ଅଛି କହ ଆରେ ମୋତେ
ତା ବିନୁ ବଞ୍ଚିଲ ହୁଏ ମୋ ପ୍ରାଣ ନରତେ ।"
ବାତ୍ସଲ୍ୟ ଭାବ ରଚନ ମାଧୁର୍ଯ୍ୟ ଏପରି
ମଗ୍ନ ହେଲେ ଏବେ ତହିଁ ପ୍ରଭୁ ନରହରି ।
ଗୋଟିକ ଅବସ୍ଥା ପରେ ଦ୍ୱିତୀୟ ଆସଇ
ସମୁଦ୍ରର ଢେଉ ଯେହ୍ନେ ଉଠଇ ପଡ଼ଇ ।
ଶ୍ରୀଦେବଙ୍କ ଆଜ୍ଞାବହ ମଥୁର ମୋହନ
ଯେତେବେଳେ ଯେଉଁ ଆଜ୍ଞା ତଦେଣ୍ଡ ପାଳନ ।
ଅତିଥି ଆସିବେ ଯେତେ ଦକ୍ଷିଣେଶ୍ୱରକୁ
ଯଥାବିଧି ସେବିବାକୁ ଆଜ୍ଞା ମଥୁରଙ୍କୁ ।
ଅତିଥିଶାଳାରେ ତେଣୁ ସବୁ ବନ୍ଦୋବସ୍ତ
ପାନ ଭୋଜନ ପ୍ରଭୃତି ଯାହାକୁ ଯେମନ୍ତ ।
କମଣ୍ଡଳୁ କମ୍ବଳାଦି ବ୍ୟବହାର୍ଯ୍ୟ ଦ୍ରବ୍ୟ
ଆଗନ୍ତୁକ ସାଧୁଙ୍କର ଯେ ସବୁ ଅଭାବ ।
ଅକାତରେ ତାହା ତାଙ୍କୁ ବିତରଣ ପାଇଁ
ଇଚ୍ଛା କରିବାରୁ ପ୍ରଭୁ ଜଗତ ଗୋସାଇଁ,
ତାଙ୍କ ଅଭିଳାଷ ମତେ ଭକତ ମଥୁର
ଭଣ୍ଡାରେ ଖଞ୍ଜିଲେ ଦ୍ରବ୍ୟ ସକଳ ପ୍ରକାର ।
କର୍ମଚାରୀ ପ୍ରତି ହେଲା ବିହିତ ଆଦେଶ
ଶ୍ରୀପ୍ରଭୁଙ୍କ ଆଜ୍ଞାମତେ ବାଣ୍ଟିବା ସକାଶ ।
ଏମନ୍ତ ଅତିଥିଶାଳା ଲଭିଲା ପ୍ରସିଦ୍ଧି
ସାଧୁସନ୍ଥ ସମାଗମ କ୍ରମେ ହେଲା ବୃଦ୍ଧି ।
ଜଟାଧାରୀ ନାମେ ଜଣେ ପ୍ରବୀଣ ସନ୍ନ୍ୟାସୀ
ଏ ସମୟେ ପ୍ରବେଶିଲେ ଶ୍ରୀମଠରେ ଆସି ।
ଶ୍ରୀରାମଙ୍କ ପାଦେ ତାଙ୍କ ନିଷ୍ଠା ଭକ୍ତି ଅତି
ସଙ୍ଗେ ବହି ରାମଲାଲ ଅଷ୍ଟଧାତୁ ମୂର୍ତ୍ତି ।

ଶ୍ରୀରାମଙ୍କ ବାଲ୍ୟମୂର୍ତ୍ତି ମନୋମୁଗ୍ଧକର
ତହିଁରେ ଆକୃଷ୍ଟ ଚିତ୍ତ ଜଟାଧାରୀଙ୍କର ।
ସେବା ପୂଜା ଅନୁରାଗେ କରି ପ୍ରତିଦିନ
ଭାବମସ୍ତ ଚିତ୍ତ ଭାବରାଜ୍ୟେ ବିଚରଣ ।
ସେ ଭାବ କ୍ରମଶଃ ହେଲା ଯେତେ ଘନୀଭୂତ
ରାମଙ୍କର ବାଲ୍ୟ ମୂର୍ତ୍ତି ଦର୍ଶନେ ସମର୍ଥ ।
ଏମନ୍ତେ ସେ ଭାବରାଜ୍ୟେ ଯେତେ ଅଗ୍ରସର
ଅହରହ ଦର୍ଶନରେ ଆନନ୍ଦ ଅପାର ।
ସନ୍ନ୍ୟାସୀଙ୍କ ନିଷ୍ଠା ଭକ୍ତି ଦର୍ଶନ କରିଣ
ତାଙ୍କଠି ଆକୃଷ୍ଟ ହେଲା ପ୍ରଭୁଙ୍କର ମନ ।
ପୂଜା କଲାବେଳେ ନିତ୍ୟ ତାଙ୍କ ପାଶେ ବସି
ଆଗ୍ରହେ ଦେଖନ୍ତି ସବୁ ମାନସ ନିବେଶି ।
ଦିବ୍ୟ ଘନ ଜ୍ୟୋତିଃରୂପେ ରାମ ରଘୁବୀର
ଗ୍ରହଣ କରନ୍ତି ପୂଜା ଜଟାଧାରୀଙ୍କର ।
ଭାବମସ୍ତ ଚିତ୍ତେ ପ୍ରଭୁ କରି ତା ଦର୍ଶନ
ସେ ସାଧନ ସାଧିବାକୁ ହେଲା ତାଙ୍କ ମନ ।
ସିଦ୍ଧ ଯୋଗୀ ଜଟାଧାରୀ ଜାଣି ମନୋଭାବ
ପରମ ଆହ୍ଲାଦ ତାଙ୍କ ଚିତ୍ତେ ସମୁଦ୍ଭବ ।
ଶୁଭ ଦିନ ଶୁଭକ୍ଷଣ ଯୋଗାଯୋଗ ଦେଖି
ଇଷ୍ଟ ମନ୍ତ୍ର ଦୀକ୍ଷା ଦେଲେ ଶ୍ରୀଦେବଙ୍କୁ ଡାକି ।
ରାମଲାଲଙ୍କ ଅପୂର୍ବ ସୁନ୍ଦର ମୂରତି
ତହିଁରେ ଆକୃଷ୍ଟ ହେଲେ ଦେବରାୟ ଅତି ।
ଶିଶୁଠି ମାତାର ଯେଉଁ ଅହେତୁକ ସ୍ନେହ
ସେହି ସ୍ନେହ ଅନୁଭୂତ ଚିତ୍ତେ ଅହରହ ।
କ୍ରମେ କ୍ରମେ ଦିନ ଯେତେ ହେଲା ଅଗ୍ରସର
ରାମଲାଲ ପ୍ରେମେ ବନ୍ଧା ପ୍ରଭୁଙ୍କ ପାଖର ।
ଅଳପ ସମୟେ ଦେବ ହୋଇଣ ପ୍ରସନ୍ନ
ବାଳକ ରୂପରେ ତାଙ୍କୁ ଦେଲେକ ଦର୍ଶନ ।
ଦିବ୍ୟଘନ ଜ୍ୟୋତିର୍ମୟ ରୂପ ମନୋହର
ତିନ ଚାରି ବରଷର ଶିଶୁ ଯେ ପ୍ରକାର ।
ପ୍ରେମର ବନ୍ଧନୀ ଶେଷେ ଏମନ୍ତ ପ୍ରବଳ
ତାଙ୍କୁ ନ ଛାଡ଼ିଲେ ଆଉ ଦଶରଥ ବାଳ ।
ଯେ ସନ୍ନ୍ୟାସୀ ପାଶେ ସେହୁ ଏତେ ଦିନ ଥାଇ
ତାଙ୍କଠୁ ଗ୍ରହଣ କଲେ ପୂଜା ତୋଷ ହୋଇ ।
ତାଙ୍କ ପାଶେ ରହିବାକୁ ନାହିଁ ଆଉ ମନ
ପ୍ରଭୁଙ୍କ ସମୀପେ ତେଣୁ ସଦା ଧାବମାନ ।

ଦେବରାସ୍ତ ବୋଲନ୍ତି "ମୁଁ ଯେତେ କ୍ଷଣ ଯାଏ
ସାଧୁ ପାଶେ ବସି ନିତ୍ୟ ପୂଜା ଦେଖୁଥାଏଁ ।
ଶିଶୁରୂପୀ ଦେବ କ୍ରୀଡ଼ା କରୁଥାନ୍ତି ତହିଁ
ମୁଁ ଆସିଲେ ମୋ ସଙ୍ଗେ ସେ ଆସନ୍ତି ଗୋଡ଼ାଇ ।
କେତେବେଳେ ନାନା ରଙ୍ଗେ ନାଚନ୍ତି ଆଗରେ
କେବେ କେବେ ଧାଇଁଯାଇଁ ଗୋଡ଼ାଇ ପଛରେ ।
ସୋହାଗରେ କେବେ ପୁଣି ଚଢ଼ନ୍ତି ମୋ କୋଳେ
କୋଳରୁ ଓହ୍ଲାଇ କ୍ରୀଡ଼ା କେତେବେଳେ ତଳେ ।
କଣ୍ଟାବଣେ ଯାଇ କେବେ ତୋଳନ୍ତି କୁସୁମ
ଗଙ୍ଗାରେ ବୁଡ଼ନ୍ତି କେବେ ଦୁଷ୍ଟ ଶିଶୁ ସମ ।
ରୌଦ୍ରତାପେ କେତେବେଳେ ଯାଆନ୍ତି ଦଉଡ଼ି
ମହାସୁଖୀ କେବେ ପୁଣି ଧରାତଳେ ଗଡ଼ି ।
ଯେତେ ପ୍ରକାରେ ତାହାଙ୍କୁ କଲି ମୁଁ ବାରଣ
କର୍ଣ୍ଣମଧ୍ୟେ ନ ପଶିଲା ମୋର କଥାମାନ ।
ପଦ୍ମ ପଲାଶ ଲୋଚନେ ଚାହିଁଣ ମୋ ପ୍ରତି
ହସି ହସି ଚାଲିଯାନ୍ତି ଦେବ ଶିଶୁମତି ।
କେବେ ପୁଣି ନାନାରଙ୍ଗେ ମୁଖଭଙ୍ଗୀ କରି
ବିଦ୍ରୂପ କରନ୍ତି ବେନି କରକୁ ପ୍ରସାରି ।
ସକ୍ରୋଧେ ତାହାଙ୍କୁ କେତେ କଲି ତିରସ୍କାର
ଜାଣି ନାହିଁ କରେ ମୋତେ ପାଜି ଦୁଷ୍ଟାଗ୍ରୁର ।
ପୁନଶ୍ଚ କଲେକ ତୁହି ଦୁଷ୍ଟାମି ଏପରି
ହାତ ଗୋଡ଼ ଭାଙ୍ଗି ତୋର ଦେବି ଚୂନାକରି ।
ତଥାପି ଆସ୍ଥା ନ ଦେଲେ ମୋହର ବଚନେ
ଟାଣି ଆଣି ବନ୍ଦ କରି ରଖଇଁ ସଦନେ ।
କ୍ରୀଡ଼ାର ସାମଗ୍ରୀ କିଛି ଦେଇ ତାର ହାତେ
ଭୁଲାଇ ରଖଇଁ ତାଙ୍କୁ ଘରେ ନାନାମତେ ।
ଦୁଷ୍ଟାମି କଲେକ ପୁନଃ ଗୃହରୁ ବାହାରି
ମୁଥିଟିଏ ଗୁପୁଡ଼ାଏ ପୃଷ୍ଠେ ଦିଏଁ ମାରି ।
ମାଡ଼ ଖାଇ ଯେତେବେଳେ ସଜଳ ଲୋଚନେ
ଚାହିଁ ରହଇ ମୋ ପ୍ରତି କାତର ପରାଣେ ।
ସେ ଦୃଶ୍ୟ ଦେଖିଣ ଆଉ ନ ପାରଇ ସହି
ସାନ୍ତ୍ୱନା ଦିଅଇ ତାଙ୍କୁ କୋଳେ ଟେକି ନେଇ ।"
ଗଙ୍ଗାସ୍ନାନେ ଯେତେବେଳେ ଶ୍ରୀଦେବ ବାହାର
ରାମଲାଲ ଧାଇଁ ଯାନ୍ତି ପଶ୍ଚାତେ ତାଙ୍କର ।
ଗାଧୋଇ ଦେଇଣ ତାଙ୍କୁ ପ୍ରଭୁ ସଯତନେ
ସସ୍ନେହେ କହନ୍ତି କଥା ଜନନୀ ସମାନେ ।

"ପାଣିରେ ବୁଡ଼ନା ଆଉ କଥା ଶୁଣ ମୋର
ଉଠିଆରେ ପୋଛିଦିଏଁ ଦେହ ମୁଣ୍ଡ ତୋର ।
ଯାଆନା ବେଶି ପାଣିକୁ ବୁଡ଼ିଯିବୁ ତୁହି
ପାଣିରୁ ଉଠିଆ, କଥା ଶୁଣନା କପାଇଁ ।"
ବୃଷ୍ଟିହେଲେ ରାମଲାଲ ବାଳକ ସ୍ୱଭାବେ
ବରଷାରେ ଭିଜିବାକୁ ଧାଇଁଯାନ୍ତି ଯେବେ ।
ସୁତର ମଙ୍ଗଳାକାଂକ୍ଷୀ ଜନନୀ ସମାନ
କହନ୍ତି ଶ୍ରୀ ପ୍ରଭୁ ତାଙ୍କୁ ନିଷେଧ ବଚନ ।
"ବରଷା ହେଉଛି ବାପୁ ! ଯାଆନା ବାହାରେ
ଜାଣୁଥ ହୋଇଛୁ ଜ୍ୱର ଲାଗିବ ପଛରେ ।
ବରଷା ପାଣିରେ ଦେହ ମୁଣ୍ଡ [illegible]
ଜ୍ୱର କାଶ ଶରଦିରେ [illegible] ତୁହି ।
କଥା ଶୁଣୁନାହୁଁ ଯେତେ [illegible] କହେ ତୋତେ
ମାରି ଗୁଣ୍ଡା କରିଦେବି [illegible] ନାହିଁ ମୋତେ ।"
ଏପରି କରନ୍ତି [illegible] ଗଞ୍ଜନା ତାଡ଼ନା
କେବେ ପୁଣି ମଧୁରଭାଷେ ଦିଅନ୍ତି ଆଶ୍ୱାସନା ।
ଶ୍ରୀପ୍ରଭୁ ବୋଲନ୍ତି "ଦିନେ ସ୍ନାନେ ଯାଉଥିଲି
ରାମଲାଲ ଅଳି କଲା ସଙ୍ଗେ ଯିବ ବୋଲି ।
ମୁହିଁ ହାତ ଧରି ତାକୁ ବୁଝାଇଲି ଯେତେ
ନ ଶୁଣିଲା ମୋର କଥା କଉଣସିମତେ ।
ବାଧ୍ୟ ହୋଇ ଶେଷେ ତାକୁ ନେଇଗଲି ସଙ୍ଗେ ;
ପ୍ରବେଶ ମାତ୍ରକେ ଜଳେ କ୍ରୀଡ଼ା କଲା ରଙ୍ଗେ ।
ଯେତେ କହିଲି ପାଣିରୁ ଉଠିଯିବା ପାଇଁ
କଥା ନ ଶୁଣିଣ ତହିଁ ଅଧିକ ବୁଡ଼ଇ ।
କ୍ରୋଧାନ୍ୱିତ ହୋଇ ତାକୁ ଭିଡ଼ି ଆଣି ଯୋରେ
କହିଲି ଦେଖୁଛି କେତେ ବଳ ତୋ ଦେହରେ ।
ବୁଡ଼ ଏବେ କେତେକ୍ଷଣ ବୁଡ଼ିବୁରେ ତୁହି
ପାଣିରେ ଧରିଲି ମାଡ଼ି ଏ ପ୍ରକାର କହି ।
ପାଣିପିଇ ଶିଶୁ ମୋର ହେଲା କଲବଲ
ସେ ଦୃଶ୍ୟ ଦେଖିଣ ପ୍ରାଣ ଅତ୍ୟନ୍ତ ବିକଳ ।
ସସ୍ନେହେ କୋଡ଼ରେ ତହୁଁ ତାକୁ ଟେକିନେଇ
ପ୍ରବୋଧିଲି ମଧୁରଭାଷେ ଆଶ୍ୱାସନା ଦେଇ ।
ଆଉଦିନେ ଏହିପରି ଲଗାଇଲା ନାଟ
ବୁଝାଇ କହିଲି ଯେତେ ନ ଛାଡ଼ିଲା ହଟ ।
ଭୁଲାଇବା ଭଳି କିଛି ଦରବ ନ ପାଇ
ଆଣି ଦେଲି ତାର ହସ୍ତେ ଧାନମିଶା ଖଇ ।

ଯେମନ୍ତ ଖାଇଲା ତାକୁ ସେ ଅବୋଧ ବାଳ
ସୁକୋମଳ ଜିହ୍ୱା ଛିଣ୍ଡି ଅତି କଳବଳ ।
ବସ୍ତ୍ରର ଯନ୍ତ୍ରଣା ଦେଖି ବିକଳ ମୋ ପ୍ରାଣ
କହିବାର ନୁହେ ଯେତେ କଲି ମୁଁ ରୋଦନ ।
ଆପଣାର କଲା କର୍ମ ନିନ୍ଦି ମନେ ମନେ
ବସ୍ତ୍ରକୁ ଧଇଲି କୋଳେ ସସ୍ନେହ ଚୁମ୍ବନେ ।
ଅନୁତାପେ ପ୍ରାଣ ମୋର ଅତୀବ ଅଧୀର
ନୟନୁ ଝରିଲା ଅବିରାମ ଅଶ୍ରୁଧାର ।
ହାତ ମୁହିଁ ଓଷ୍ଠ ଧରି ସ୍ନେହ ସହକାରେ
ପ୍ରବୋଧି କହିଲି କଥା ନାନା ପରକାରେ ।
"ଆହା ! ଯେ ମୁହଁକୁ ଅତି ସୁକୋମଳ ଜାଣି
କ୍ଷୀର ସର ଖୁଆଇଲେ କୌଶଲ୍ୟା ଜନନୀ ।
ନରାଧମ ମୁହିଁ ଏଡ଼େ ହୀନମତି ହେଲି
ସେ ମୁହଁରେ ଏ ଜଘନ୍ୟ କୁଖାଦ୍ୟ ମୁଁ ଦେଲି ।"
କହୁ କହୁ କଥାମାନ ପ୍ରଭୁ ଭାବାବେଶେ
ପୂର୍ବସ୍ମୃତି ଜାଗି ଉଠି ଉଦ୍ବେଳେ ହୃଦୟେ,
କ୍ରନ୍ଦନ କରିଲେ ଶୋକେ ହୋଇଣ ଅଧୀର
ଅବିରଳ ବହିଗଲା ନେତ୍ରୁ ଅଶ୍ରୁଧାର ।
ଭକତମଣ୍ଡଳୀ ମଧ୍ୟେ ଥିଲେ ଯେହୁ ପାଶେ
ଶୋକେ ଅଭିଭୂତ ସେହୁ ମର୍ମସ୍ପର୍ଶୀ ଦୃଶ୍ୟେ ।
ଧାତୁ ମୂର୍ତ୍ତି ରାମଲାଲା ଭକତି ବଳରେ
ପରିଣତ ହେଲେ ଶେଷେ ଚିନ୍ମୟ ରୂପରେ ।
ସାଧନେ ପ୍ରସନ୍ନ ହୋଇ ପ୍ରଭୁ ରଘୁନାଥ
ବିହରିଲେ ଶିଶୁରୂପେ ସଙ୍ଗତେ ନିରତ ।
ଜଟାଧାରୀ ଯେହୁ ତାଙ୍କୁ ପୂଜି ଏତେକାଳ
କରିଥିଲେ ଆପଣାର ହୃଦୟ ସମ୍ବଳ ।
ତାଙ୍କ ପାଶେ ରହିବାକୁ ଆଉ ନାହିଁ ମନ
କେମନ୍ତେ ଆସିଲେ ଛାଡ଼ି ଶୁଣ ସେ ଆଖ୍ୟାନ ।
ଶ୍ରୀଦେବ ଭଣନ୍ତି "ଜଟାଧାରୀ ବେଳେବେଳେ
ରନ୍ଧାବଢ଼ା ଆଦି ନିତ୍ୟଚେଷ୍ଟା ବଢ଼ିଗଲେ
ଠାକୁରଙ୍କ ପାଶେ ଯେବେ ଭୋଗ ନିବେଦନ୍ତି
ରାମଲାଲାଙ୍କୁ ସେଠାରେ ଆଉ ନ ଦେଖନ୍ତି ।
ବ୍ୟାପାର ଦେଖିଣ ଯତି ଅତ୍ୟନ୍ତ ବ୍ୟଥିତ
ମୋ ପାଶେ ଆସନ୍ତି ଧାଇଁ ଖୋଜିବା ନିମିତ୍ତ ।
ଦେବଙ୍କୁ ସେ କ୍ରୀଡ଼ାରତ ଦେଖି ମୋ ସଦନେ
ଖେଦେ କହନ୍ତି ବଚନ କେତେ ଅଭିମାନେ ।

ତୋ ପାଇଁ ଯତନେ ଏତେ ରାନ୍ଧିବାଢ଼ି ମୁହିଁ
ଭୁଞ୍ଜିବା ସକାଶେ ନାନାସ୍ଥାନେ ଖୋଜୁଥାଇଁ ।
କ୍ରୀଡ଼ା କରୁଛୁ ଏଠାରେ ନିଶ୍ଚିନ୍ତ ହୋଇଣ
ତୋ ହୃଦୟ ହେଲା ପୁଣି ଏସନ କଠିନ ।
ନୋହିଲେ କି ତୋର ଚିତ୍ତ ପାଷାଣେ ନିର୍ମିତ
ମାତାପିତାଙ୍କୁ ଦିଅନ୍ତୁ କଷଣ ଏମନ୍ତ ।
ତାଙ୍କୁ ଛାଡ଼ି ଚାଲିଗଲୁ ଗହନ କାନନେ
ନ ଭାବିଲୁ ଥରେ ତାଙ୍କ ଦୁଃଖ ତୋ ବିହନେ ।
ତୋତେ ଝୁରି ଝୁରି ପିତା ତେଜିଲେ ଜୀବନ
ତେବେ ସୁଦ୍ଧା ନ ଦେଲୁ ତୁ ତାହାଙ୍କୁ ଦର୍ଶନ ।
ଏପରି ଖେଦ କରିଣ ଯତି ଜଟାଧାରୀ
ଦେବଙ୍କୁ ନିଅନ୍ତି ଟାଣି ଶ୍ରୀକରକୁ ଧରି ।"
ଏ ଭାବେ କେତେକ ଦିନ ଗଲା ଅତିବାହି
ସାଧୁ ଏବେ ବ୍ୟଗ୍ର ଅନ୍ୟସ୍ଥାନେ ଯିବା ପାଇଁ ।
ଦେବ ରାମଲାଲା ତହିଁ ନୋହିଲେ ସମ୍ମତ
ତାଙ୍କ ଇଚ୍ଛା ରହିବାକୁ ପ୍ରଭୁ ସନ୍ନିହିତ ।
ଜଟାଧାରୀ ପ୍ରଭୁ ପାଶେ ଆସି ଦିନକରେ
ହୃଦଭାବ ଜଣାଇଲେ ଗଦଗଦ ସ୍ୱରେ ।
ରାମଲାଲାଙ୍କ ଯେ ରୂପ ଦର୍ଶନ ନିମିତ୍ତ
ଏତେଦିନଯାଏ ମୁହିଁ ଥିଲି ଆକାଙ୍କ୍ଷିତ ।
କରୁଣାସାଗର ରାମ ରାଜୀବଲୋଚନ
କୃପା କରି ଦେଇଛନ୍ତି ସେ ରୂପେ ଦର୍ଶନ ।
ସାଧନ ଭଜନ ମୋର ହୋଇଛି ସଫଳ
ସ୍ଥାନାନ୍ତରେ ଯିବା ପାଇଁ ହୃଦୟ ଚଞ୍ଚଳ ।
ତୁମ୍ଭଙ୍କୁ ଛାଡ଼ିଣ ଅନ୍ୟ ସ୍ଥଳେ ଯିବା ପାଇଁ
ରାମଲାଲା ମୋଟେ ଆଉ ରାଜି ଯେ ନୁହଇ ।
ସୁଖରେ ରହିଲେ ସେହୁ ତୁମ୍ଭ ସମୀପରେ
ସେ ନିମନ୍ତେ ଦୁଃଖ ନାହିଁ ମୋର କିଞ୍ଚିତରେ ।"
ଏହା କହି ପ୍ରଭୁ ପାଶେ ମୂର୍ତ୍ତି ସମର୍ପଣ
ସ୍ଥାନାନ୍ତରେ ଚାଲିଗଲେ ସାଧୁ ମହାଜନ ।
ବାତ୍ସଲ୍ୟ ଭାବେ ତନ୍ମୟ ହୋଇଣ ଏପରି
ଅନୁଭବ କଲେ ଦେବ ଦିବସ ଶର୍ବରୀ—

"ଜୋ ରାମ ଦଶରଥକା ବେଟା
ବହୀ ରାମ ଘଟ ଘଟ ମେ ଲେଟା ।
ବହୀ ରାମ ଜଗତ ପସେରା
ବହୀ ରାମ ସବ୍‌ସେ ନେହ୍ୟାରା ।"

"ପ୍ରଭୁ ରାମଚନ୍ଦ୍ର ଯେହ୍ନେ ଦଶରଥ ସୁତ
ସର୍ବ ଘଟେ ସେହି ରାମ ଛନ୍ତି ବିରାଜିତ ।
ସର୍ବଜ୍ଞ ସେ ରାମଙ୍କର ନିତ୍ୟ ପରକାଶ
କାହିଁରେ ନୁହନ୍ତି ଲିପ୍ତ ସେ ରାମ ଭବେଶ ।
ମାୟାବିବର୍ଜିତ ବିଭୁ ସ୍ୱରୂପେ ନିର୍ଗୁଣ
ସର୍ବସ୍ଥାନେ ରହିଛନ୍ତି ନିତ୍ୟ ବିଦ୍ୟମାନ ।"

ବାତ୍ସଲ୍ୟ ଭାବ ସାଧିଲେ ପ୍ରଭୁ ଏ ପ୍ରକାରେ
ପଟାନ୍ତର ନାହିଁ ଯାର ଏ ସାରା ସଂସାରେ ।
ମଧୁର ଭାବ ସାଧନ ଅଦ୍ଭୁତ କଥନ
ଅନ୍ୟ ଅଧ୍ୟାୟେ ଗାଇବି ତାହାର ଆଖ୍ୟାନ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ କୀର୍ତ୍ତନେ ହେବେ ଭବସିନ୍ଧୁ ପାର ।

ବେଳ ଥାଉଁ ଥାଉଁ ମନ ! ଯାଅ ରସେ ବୁଡ଼ି
ବେଳ ଗଲେ ଝୁରୁଥିବୁ ଭାବ ନାହିଁ ହୁଡ଼ି ।

---

# ଏକାଦଶ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କ ମଧୁର ଭାବ ସାଧନ

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅନାଦିକାରଣ ବିଭୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ବ୍ରହ୍ମ ସନାତନ ।
ଶ୍ରୀ ରାମକୃଷ୍ଣ ଚରିତ ଅମୃତ ଆଖ୍ୟାନ
ପାଇବୁ ପରମାନନ୍ଦ ମଜ୍ଜି ତହିଁ ମନ !
ଏଥିଅନ୍ତେ ଦେବରାୟ ଜଗତ ଗୋସାଇଁ
ସାଧିଲେ ମଧୁର ଭାବ ଅନୁରାଗୀ ହୋଇ ।
ଅତି ଗୂଢ଼ ଭାବାପନ୍ନ ଏ ସାଧନ ପଥ
ସାଧୁଜନେ ସରବାରେ ଶୁଣ ତାର ତଥ୍ୟ ।
ଶାନ୍ତ ଦାସ୍ୟ ଆଦି ଯେଉଁ ପଞ୍ଚଭାବ ଥାଇ
ତା ମଧ୍ୟେ ମଧୁର ଭାବ ଅଗ୍ରଣୀ ଅଟଇ ।
ଆବର ଗୁଣଭାବର ସାର ବସ୍ତୁମାନ
ଏ ମଧୁର ଭାବ ସଙ୍ଗେ ମିଶିଥାଏ ପୁଣ ।
ପ୍ରେମିକା ନାୟିକା ଏଥେ ଜୀତଦାସ ରୂପେ
ପ୍ରିୟତମଙ୍କ ସେବାରେ ରତ ସଦାବେଳେ ।
ସଖାସମ ତା ସଙ୍ଗତେ ରହି ନିରନ୍ତର
ସମଭାଗୀ ହୁଏ ସୁଖ ଦୁଃଖରେ ତାହାର ।
ସାଧୁ ପରାମର୍ଶ ଦେଇ ଚଳେ ଯଥା ପ୍ରୀତି
ଦୁଃଖ ଦର୍ଶନରେ ତଥା ବ୍ୟଥା ପାଏ ଅତି ।
ସ୍ନେହମୟୀ ମାତା ଯଥା ସୁତର କଲ୍ୟାଣ
ଆପଣା ହୃଦୟେ କରେ ନିରତ ପୋଷଣ ।

ପ୍ରିୟା ମଧ୍ୟ ତେହ୍ନେ ତାର ସର୍ବାନ୍ତଃକରଣେ
ପ୍ରାଣ ସମର୍ପଇ ପ୍ରିୟତମର କଲ୍ୟାଣେ ।
ଯେ କାର୍ଯ୍ୟେ ହୁଅଇ ତାର ଚିତ୍ତ ବିନୋଦନ
ତାହାକରିବାକୁ ତତପର ଅନୁକ୍ଷଣ ।
ପ୍ରେମିକା ତା ପ୍ରେମିକର କଲ୍ୟାଣ ନିମିତ୍ତ
କାୟମନୋବାକ୍ୟେ ଚେଷ୍ଟା କରେ ଅବିରତ ।
ଶରୀର ମନକୁ ପ୍ରିୟ ପାଦେ ସମର୍ପିଣ
ଆପଣାର ସୁଖ ଦୁଃଖ କରେ ବିସ୍ମରଣ ।
ସର୍ବଶ୍ରେଷ୍ଠ ପ୍ରେମାଦର୍ଶ ଏହା ଯେ ଅଟଇ
ଯାହାକୁ ସମର୍ଥା ପ୍ରେମ ଶାସ୍ତ୍ର ନିର୍ଦ୍ଦେଶଇ ।
ଏ ପ୍ରେମ ହୁଅଇ ନୀଚଗାମୀ ଯେତେବେଳେ
ନିକୃଷ୍ଟ ପର୍ଯ୍ୟାୟେ ପ୍ରାଣୀ ଭ୍ରମଇ ଭୂତଳେ ।
ଦୈହିକ ସୁଖ ସମ୍ଭୋଗେ ହୋଇ ନିମଗନ
ଭୁଞ୍ଜଇ ଅଶେଷ କ୍ଲେଶ ହରାଇଣ ଜ୍ଞାନ ।
ପୁନଶ୍ଚ ହୋଇଲେ ତାହା ଈଶ୍ୱରାଭିମୁଖୀ
ପବିତ୍ର ପ୍ରେମେ କରଇ ମାନବଙ୍କୁ ସୁଖୀ ।
କାମ କ୍ରୋଧ ଆଦି ଯେଉଁ ଷଡ଼ରିପୁଚୟ
ତାଙ୍କ କୁପ୍ରଭାବମାନ କ୍ଷଣେ ପାଇ କ୍ଷୟ ।
ପବିତ୍ର ମାର୍ଗରେ ସଦା ହୁଏ ପ୍ରଧାବିତ
ଏମନ୍ତେ ପ୍ରାଣୀଙ୍କୁ କରେ ଦେବେ ପରିଣତ ।
ନିତ୍ୟ ସୁଖେ ପ୍ରାଣୀଗଣ ହୋଇ ଅଧିକାରୀ
ଭୁଞ୍ଜନ୍ତି ବିମଳାନନ୍ଦ ଦିବା ବିଭାବରୀ ।

ଏହାର ଆଦର୍ଶ ମନ ! ଦେଖ ବ୍ରଜପୁରରେ
ଗୋପବାଳୀ ପାଗଳିନୀ କୃଷ୍ଣ ବିରହରେ ।
ଭବତାରା ରାମକୃଷ୍ଣ ପ୍ରଭୁ ଭଗବାନ
ଏ ସମ୍ବନ୍ଧେ ଯା କହିଲେ ସ୍ଥିର ଚିତ୍ତେ ଶୁଣ ।
"ପ୍ରେମୋନ୍ମାଦେ ମତ୍ତ ହୋଇ ବ୍ରଜେ ଗୋପନାରୀ
ଲଜ୍ଜା ଭୟ କୁଳମାନ ଗଲେ ଯେ ପାସୋରି ।
ଘରଦ୍ୱାର ପତି ପୁତ୍ର କରି ପରିତ୍ୟାଗ
'ହା କୃଷ୍ଣ' 'ହା କୃଷ୍ଣ' ବୋଲି ଧାଇଁଲେ ଚୌଦିଗ
କୃଷ୍ଣ ଧ୍ୟାନ, କୃଷ୍ଣ ଜ୍ଞାନ, କୃଷ୍ଣେ ତନ୍ମୟ
କୃଷ୍ଣ ବିନୁ ନ ଜାଣିଲେ ଆଉ ବିଷୟ ।
ନେତ୍ରପଥେ ଯାହା କିଛି କଲେକ ଦର୍ଶନ
ବୋଇଲେ ସେ ସବୁଥିରେ କୃଷ୍ଣ ବିଦ୍ୟମାନ ।
ବୃକ୍ଷଟିଏ ଯେଉଁସ୍ଥାନେ ଦର୍ଶନ କରିଲେ
'କୃଷ୍ଣ ଧ୍ୟାନେ ମଗ୍ନ ଋଷି' ଏମନ୍ତ ଭାଳିଲେ ।
ତୃଣ ଦର୍ଶନେ ହୋଇଲା ଚିତ୍ତେ ଅନୁଭୂତ
କୃଷ୍ଣପାଦ ସ୍ପର୍ଶେ ରୋମାଞ୍ଚିତ ବସୁମତୀ ।
ପ୍ରେମୋନ୍ମାଦ ଯେତେବେଳେ ଉଠିଲା ମରମେ
ରାସମଣ୍ଡଳେ ବିହ୍ୱଳ ଆପେ କୃଷ୍ଣଜ୍ଞାନେ ।
ଗୋପାଙ୍ଗନା ମଧ୍ୟେ ଶ୍ରେଷ୍ଠ ବୃନ୍ଦାବନେଶ୍ୱରୀ
ଶୁଦ୍ଧ ସତ୍ତ୍ୱ ପ୍ରେମମୟୀ ରାଧିକା ସୁନ୍ଦରୀ ।
ବିଭୁ ପାଦେ କି ପ୍ରକାର ପ୍ରୀତି ବାଞ୍ଛାମୟ
ଆଦର୍ଶ ଶ୍ରୀମତୀ ତାର ଭବେ ଅଦ୍ୱିତୀୟ ।
ପ୍ରେମ ରସ ଆସ୍ୱାଦନ କରିବା ନିମିତ୍ତ
ସଚ୍ଚିଦାନନ୍ଦଙ୍କ ଅଙ୍ଗୁ ରାଧିକା ସମ୍ଭୂତ ।
ଯେଉଁ କୃଷ୍ଣ ସତ୍ ଚିତ୍ ଆନନ୍ଦ ଆଧାର
ରାଧିକା ରୂପେ ଆଧେୟ ସେହି ନଟବର ।
ନିଜ ପ୍ରେମସୁଧା ନିଜେ ଆସ୍ୱାଦନ ପାଇଁ
ଆସିଲେ ରାଧିକା ରୂପେ ଭବେ ବିଶ୍ୱସାଇଁ ।
ସଚ୍ଚିଦାନନ୍ଦ ପ୍ରୀତିରେ କି ସୂକ୍ଷ୍ମ ସମ୍ଭୋଗ
ଆସିଥିଲେ ଭୁଞ୍ଜିବାକୁ ପ୍ରଭୁ ମହାଭାଗ ।
ଅତୁଳନୀୟ ଅଟଇ ଭବେ ତାଙ୍କ ପ୍ରେମ
ସେ ଭାବେ ଭାବ ନୋହିଲେ କେ ବୁଝିବ ମର୍ମ ।
କୃଷ୍ଣ ଅନୁରାଗେ ସଦା ପ୍ରାଣ ମନ ଭରି
ତମାଳକୁ କୃଷ୍ଣ ଭାବ ଉନମତ୍ତ ପରି ।
ସୁନୀଳ ଅମ୍ବର ଊର୍ଦ୍ଧ୍ୱେ ଦର୍ଶନ କରିଣ
ମୁହୁର୍ମୁହୁଃ ଅଙ୍ଗେ କୃଷ୍ଣ ଭାବ ଉଦ୍ଦୀପନ ।
ନୀଳ ବସ୍ତ୍ର ନେତ୍ରପଥେ ହୋଇଲେ ଗୋଚର
ଶ୍ରୀକୃଷ୍ଣଙ୍କ ଭାବେ ତନୁ ହୁଏ ଜରଜର ।
ମଧ୍ୟେ ମଧ୍ୟେ ହୁଅଇ ତା ଏଡ଼େ ବଳବତୀ
'କାହିଁ' 'କାହିଁ' କୃଷ୍ଣ ବୋଲି ବ୍ୟାକୁଳେ ଧାବନ୍ତି ।
କୃଷ୍ଣ ଅନୁରାଗେ ତନୁ ସଦା ଗରଗର
ମହାଭାବେ ମଗ୍ନ ଥାନ୍ତି ତେଣୁ ନିରନ୍ତର ।
ସଂଜ୍ଞାଶୂନ୍ୟ ହୋଇ ଯେବେ ପଡ଼ନ୍ତି ଭୂତଳେ
ସଖୀମାନେ କେହି ତାଙ୍କୁ ଧରିବାକୁ ଗଲେ ।
ଅନ୍ୟ ସଖୀ ଆସି ତାକୁ କରଇ ବାରଣ
ଏ ସମୟେ ଅଙ୍ଗ ସ୍ପର୍ଶ ନୁହଇ ବିଧାନ ।
ପ୍ରେମମୟ କୃଷ୍ଣଚନ୍ଦ୍ର ପ୍ରେମର ଆଧାର
ବିଳାସ କରନ୍ତି ଦେଖ ଶ୍ରୀଅଙ୍ଗେ ତାଙ୍କର ।
ସମୟେ ସମୟେ କୃଷ୍ଣ-ବିରହର ବହ୍ନି
ଏମନ୍ତ ପ୍ରଖର ହୁଏ ହୃଦମଧ୍ୟେ ପୁଣି,
ନୟନାଶ୍ରୁ ସେ ତାପରେ ବିଶୁଷ୍କ ହୋଇଣ
ବାୟୁସଙ୍ଗେ ବାଷ୍ପାକାରେ ହୁଅଇ ବିଲୀନ ।
ଭାବେ ଭୃଙ୍ଗି କେତେବେଳେ କହନ୍ତି ଶ୍ରୀମତୀ
'ଦେଖ ସଖି ! ଚତୁର୍ଦ୍ଦିଗେ କୃଷ୍ଣ ବ୍ୟାପିଛନ୍ତି ।'
ଉତ୍ତରେ କହନ୍ତି ତହୁଁ ସଖୀମାନେ ତାଙ୍କୁ
'ଆମ୍ଭେ ପାଉ ନାହୁଁ ରାଧେ ! କିଛି ଦେଖିବାକୁ ।'
ଶ୍ରୀମତୀ ବୋଲନ୍ତି ତହୁଁ ଉତ୍ତରେ ବଚନ
"ନେତ୍ରେ ମାରିନଅ ତୁମ୍ଭେ ଅନୁରାଗାଞ୍ଜନ ।
ତା ହେଲେ ଦେଖିବ ସର୍ବେ ମୋହର ସଦୃଶ
କୃଷ୍ଣଚନ୍ଦ୍ରଙ୍କର ସର୍ବସ୍ଥାନେ ସୁପ୍ରକାଶ ।
କାମନା ବିହୀନ ଚିତ୍ତେ ସାଧୁ ଭକ୍ତଗଣ
ବ୍ରଜାଙ୍ଗନା ତୁଲେ କଲେ ବିଭୁଙ୍କ ଭଜନ ।
ସକଳ ପ୍ରକାର ଶକ୍ତି-ସିଦ୍ଧିଲାଭ ଆଶ
ହୃଦୟ ମଧ୍ୟରୁ ଲଭେ ସମୂଳେ ବିନାଶ ।
ନିରନ୍ତର ବିଭୁଙ୍କର ଭାବେ ନିମଜ୍ଜିଣ
ସର୍ବତ୍ର ବିଭୁଙ୍କ ରୂପ କରନ୍ତି ଦର୍ଶନ ।"
ଏମନ୍ତ ଅଟଇ ଶୁଦ୍ଧ ପ୍ରେମର ପ୍ରକୃତି
ଦେବରାୟେ ଭକ୍ତପାଶେ ଯାହା କହିଛନ୍ତି ।
ପ୍ରଥମେ ଦ୍ୱାପର ଯୁଗେ ଏ ପ୍ରେମ ପ୍ରଚାର
ଦ୍ୱିତୀୟତେ କଳିଯୁଗେ ପ୍ରକଟ ତାହାର ।
ବୌଦ୍ଧଧର୍ମ ଏ ଭାରତେ ହୋଇଣ ବିକୃତ
ଅତ୍ୟନ୍ତ କଦର୍ଯ୍ୟଭାବେ ଯେବେ ପରିଣତ ।

ତନ୍ତ୍ର ମତ ବାମାଚାର ତେଜି ଶୁଦ୍ଧ ଭାବ
ନାନା ବ୍ୟଭିଚାର ଦେଖେ କଲ ସମ୍ଭବ ।
ଜଗଦମ୍ବାଙ୍କ ସକାମ ପୂଜା ଉପାସନା
ଐହିକ ସୁଖ ସମ୍ଭୋଗ କଲ ସମର୍ଚ୍ଚନା ।
ଯେଉଁ ସାଧୁ ସନ୍ଥମାନେ ସତ୍ୟ ଅନ୍ୱେଷଣେ
ନିଯୁକ୍ତ ରହିଲେ ସଦା କାୟ ବାକ୍ୟ ମନେ ।
ପ୍ରକୃତ ମାର୍ଗଟି ଯାହା ତାକୁ ହୁଡ଼ିଯାଇ
ଅତ୍ୟନ୍ତ ବ୍ୟାକୁଳ ହେଲେ ବିଭୁଲାଭ ପାଇଁ ।
ସେ ବିଶୁଦ୍ଧ ପୂତ ପ୍ରେମ ପ୍ରଚାର କାରଣ
ଶ୍ରୀଚୈତନ୍ୟ ରୂପେ ବିଭୁ ଅବତୀର୍ଣ୍ଣ ପୁଣ ।
ରାଧା ପ୍ରେମେ ମାତୁଆଲ ହୋଇ ଗୌରହରି
ଧରାତଳେ ବିଲୁଣ୍ଠିତ କୃଷ୍ଣ ଝୁରି ଝୁରି ।
କୃଷ୍ଣ ଅଦର୍ଶନେ ନେତ୍ରୁ ବହି ବାରିଧାର
ସିକ୍ତ କଲ କେତେ ଠାଇଁ ଏହି ବସୁନ୍ଧରା ।
ଶ୍ରୀକୃଷ୍ଣ ବିରହେ ହେଲେ ଏମନ୍ତ ଅଧୀର
ବକ୍ଷକୁ କ୍ଷତ ବିକ୍ଷତ ନଖେ ଆପଣାର ।
ବୃକ୍ଷଲତା ଆଦି ଯାହା କଲେକ ଦର୍ଶନ
କୃଷ୍ଣଜ୍ଞାନେ ସେ ସବୁକୁ ଭାବେ ଆଲିଙ୍ଗନ ।
କୃଷ୍ଣାନୁରାଗ ଅନ୍ତରେ ଏପରି ବଢ଼ିଲା
ଲୋମକୂପୁଁ ବିନ୍ଦୁ ବିନ୍ଦୁ ଶୋଣିତ ଝରିଲା ।
ପ୍ରାଣୀଙ୍କ କଲ୍ୟାଣ ହେତୁ ପ୍ରଭୁ ଭଗବାନ
ଭୁଞ୍ଜିଲେ ମର୍ତ୍ତ୍ୟରେ ଆହା ଅକଥ୍ୟ କଷଣ ।
କାମନା ବର୍ଜନ ତୀବ୍ର ବୈରାଗ୍ୟ ଆଚରି
ବିଭୁ-ଭଜନ ଧରାରେ ସମ୍ଭବ କପରି ।
ସତ୍ୟାନ୍ୱେଷୀ ସାଧକଙ୍କୁ ତାହା ଦେଖାଇଣ
ପ୍ରଚାରିଲେ ନବ ପନ୍ଥା ନାମ ସଙ୍କୀର୍ତ୍ତନ ।
ଶ୍ରୀପ୍ରଭୁ କହନ୍ତି "ଯଥା ହସ୍ତୀମାନଙ୍କର
ଛୋଟ ବଡ଼ ଥାଏ ଦନ୍ତ ଦୁଇ ପରକାର ।
ବେନି ବଡ଼ ଦନ୍ତ ଶତ୍ରୁ ଆକ୍ରମଣ ପାଇଁ
ଛୋଟ ଦନ୍ତେ ଖାଦ୍ୟ ଖାଇ ଶରୀର ପୋଷଇ ।
ଚୈତନ୍ୟ ଦେବଙ୍କ ତଥା ଅନ୍ତରେ ବାହାରେ
ଦ୍ୱିବିଧ ଭାବର କ୍ରୀଡ଼ା ଦୃଷ୍ଟ ନିରନ୍ତରେ ।
ବାହାରେ ମଧୁର ଭାବ ଧରି ପ୍ରାଣୀ ହିତେ
ଅନ୍ତରେ ଅଦ୍ୱୈତ ଭାବ ପୋଷିଲେ ଗୁପତେ ।
ବ୍ରହ୍ମପଦେ ପ୍ରାଣମନ ପ୍ରତିଷ୍ଠିତ ଥାଇ
ଭୂମାନନ୍ଦ ଅନୁଭୂତ ନିରତ କଲଇଁ ।

ମଧୁର ଭାବ ସାଧନ ସାଧିବା ନିମିତ୍ତ
ପ୍ରକୃତି ଭାବ ଆଶ୍ରୟ ଅଟଇ ବିହିତ ।
ଏକମାତ୍ର ପରମାତ୍ମା ପ୍ରଭୁ ଭଗବାନ
ଏ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟେ ପୁରୁଷ ପ୍ରଧାନ ।
ଆଉର ପଦାର୍ଥ ଯେତେ ଜୀବାଦି ସହିତ
ସରବେ ଅଟନ୍ତି ତାଙ୍କ ପ୍ରକୃତି ସମ୍ଭୂତ ।
ଶୁଦ୍ଧପୂତ ଭାବେ ସଦା ସର୍ବାନ୍ତଃକରଣେ
ପତିରୂପେ ବିଭୁଙ୍କୁ ଯେ ଭଜେ ଅନୁକ୍ଷଣେ ।
ନିରବଚ୍ଛିନ୍ନ ଆନନ୍ଦ ଭୁଞ୍ଜି ସେ ଅନ୍ତରେ
ମୁକ୍ତି ଧନେ ଅଧିକାରୀ ହୁଅଇ ଶେଷରେ ।"
ମଧୁର ଭାବର ସ୍ଥୂଳ କଥାଟି ଏମନ୍ତ
ଶୁଣ ଏବେ ପ୍ରଭୁ ତାହା ସାଧିଲେ କେମନ୍ତ ।
ଦେବରାୟ ନ ଜାଣନ୍ତି ଭାବ-ଘରେ ଚୋରି
ଲୋକଲଜ୍ଜା ପ୍ରତି ଭୟ ନ ଥିଲା ତାଙ୍କରି ।
ବାରମ୍ବାର କହିଛନ୍ତି ପ୍ରଭୁ ଭଗବାନ
"ଅଷ୍ଟ ପାଶ ପ୍ରାଣୀଙ୍କୁ ଯା କରଇ ବନ୍ଧନ ।
ସେ ସବୁ ମନରୁ ଦୂର ନୋହିଲେ ସମୂଳେ
ସମ୍ଭବ ନୁହଇ ବିଭୁ-ଲାଭ କେତେବେଳେ ।"
ଯେ କାଳେ ତାଙ୍କ ହୃଦୟେ ଯେ ଭାବ ପ୍ରବଳ
ଆଚାର ବେଶର ସେହି ରୂପ ଅବିକଳ ।
ତନ୍ତ୍ର ମତର ସାଧନ ଯେବେ ଆଚରିଲେ
ସେହିପରି ବେଶଭୂଷା ପିନ୍ଧିଲେ ସେକାଳେ
ରକ୍ତ ବସ୍ତ୍ର ଆଭରଣ, ବିଭୂତି ଭୂଷଣ,
ଲଲାଟେ ସିନ୍ଦୂର ଟୋପା, ରୁଦ୍ରାକ୍ଷ ଧାରଣ ।
ବୈଷ୍ଣବ ମତରେ ତଥା ସାଧନ ସମୟେ
ପିନ୍ଧିଲେ ତଦନୁରୂପ ବେଶ ଦେବରାୟେ ।
ଶୁକ୍ଳବସ୍ତ୍ରେ ଶ୍ରୀଅଙ୍ଗଟି ସଦା ସମାବୃତ
ତହିଁରେ ଚନ୍ଦନ ରେଖାମାନ ସୁଶୋଭିତ ।
ତଦୁପରେ ସାତ ସାର ତୁଳସୀର ମାଳା
ଶ୍ରୀଅଙ୍ଗର ଶୋଭା ଅଧିକରେ ବିସ୍ତାରିଲା ।
ବେଦାନ୍ତ ମତେ ତ.ଦୁଗ ପ୍ରଭୁ ଯେତେବେଳେ
ଅଦ୍ୱୈତଭାବ ସାଧନେ ପ୍ରବୃତ୍ତ ହୋଇଲେ ।
ଶିଖା ଉପବୀତ ଆଦି କରିଣ ବର୍ଜନ
କଷାୟ ଚୀରାଦି କଲେ ଶ୍ରୀଅଙ୍ଗେ ଧାରଣ ।
ପୁଂଭାବ ସାଧନ ବେଳେ ଦେବରାୟ ଯଥା
ବିବିଧ ପୁରୁଷ ବେଶ ଧରିଲେ ସର୍ବଥା ।

ସ୍ତ୍ରୀଭାବ ସାଧନ କାଳେ ତଥା ତାହାଙ୍କର
ନାରୀରୂପେ ବେଶଭୂଷା ଆଚାର ବେଭାର ।
ଏମନ୍ତେ ଶ୍ରୀପ୍ରଭୁଙ୍କଠି ପ୍ରକୃତ ପୁରୁଷ
ଚେତନ ଭାବର ଏକତ୍ର ଥିଲା ସମାବେଶ ।
ମଧୁର ଭାବ ସାଧନେ ଯେବେ ଶ୍ରୀଠାକୁର
ପ୍ରବୃତ୍ତ ହୋଇଲେ ଅନୁରାଗ ସହକର ।
ଲଳିତା ପ୍ରବୃତ୍ତି ଶ୍ରୀମତୀଙ୍କ ସହଚରୀ
ତାଙ୍କ ରୂପେ ସଖୀଭାବ ଚରିତ୍ର ଦୃଢ଼େ ଧରି ।
ମନୋହର ନାରୀବେଶେ ହୋଇଲେ ମଣ୍ଡିତ
ଲୋକ ଲଜ୍ଜାକୁ ନ କରି ଭ୍ରୂକ୍ଷେପ କିଞ୍ଚିତ ।
କାର୍ଯ୍ୟକଳାପାଦି ସବୁ ନାରୀଙ୍କ ସଦୃଶ
ସାଧ୍ୟ କାର କେ କହିବ ତାହାଙ୍କୁ ପୁରୁଷ ।
ଏ ସମୟେ ମଥୁରଙ୍କ ଗୃହେ ବଜେକରି
ପୁରାଙ୍ଗନା ସହ ବାସ କଲେ ନରହରି ।
ଭକତ ପ୍ରଧାନ ଯଥା ମଥୁର ମୋହନ
ଭକ୍ତିଗୁଣେ ପତ୍ନୀ ତଥା ତାଙ୍କର ସମାନ ।
କାମଗନ୍ଧ ଶୂନ୍ୟ ଶୁଦ୍ଧ ଚେତା ଦେବରାୟେ
ଆଚର୍ଣ୍ଣ ଏ ଭାବ ପୁରନାରୀଙ୍କ ହୃଦୟେ ।
ତହିଁସଙ୍ଗେ ଏବେ ନାରୀ ସମ ବ୍ୟବହାର
ଚାହେଁ ଅକୃତ୍ରିମ ସ୍ନେହ ନାରୀର ଆଚାର ।
ଲଜ୍ଜା ସଙ୍କୋଚାଦି ଭାବ ଅଣୁ ପରମିତେ ।
ଲକ୍ଷିତ ହୁଅନ୍ତା ନାହିଁ କେବେହେଲେ ଚିତ୍ତେ ।
ଏମନ୍ତ କି ମଥୁରଙ୍କ କନ୍ୟାମାନଙ୍କର
ପତିମାନେ ଆଗମିଲେ ଶ୍ୱଶୁର ଆଗାର ।
ଶ୍ରୀ ଦେବରାୟେ କନ୍ୟାଙ୍କୁ ଡାକି ସମାଦରେ
ଯୋହାଗେ ଦିଅନ୍ତି ବାନ୍ଧି ବେଣୀ ସ୍ୱହସ୍ତରେ ।
ସ୍ୱାମୀ ଚିତ୍ତ ରଞ୍ଜିବାକୁ ବେଶ କରିଦେଇ
ଶିକ୍ଷା ଦ୍ୟନ୍ତି ନାନା ମତେ ସ୍ୱାମୀ ସେବାପାଇଁ ।
ସଖୀ ରୂପେ ତାଙ୍କ କରେ ଶ୍ରୀକର ସ୍ଥାପିଣ
ଯେକଯାନ୍ତେ ସମାଜରେ ପତି ସନ୍ନିଧାନ
ତାଙ୍କଠି ପୁରୁଷଜ୍ଞାନ ନ ହୁଏ କାହାରି
ଅକ୍ଷରେ ଅକ୍ଷରେ ଯେହ୍ନେ ପ୍ରକୃତରେ ନାରୀ ।
ହୃଦୟ ମୁଖୁର୍ଯ୍ୟା ନାମେ ପ୍ରଭୁଙ୍କ ଭଣଜା
ସତତ ଯେ କରୁଥିଲେ ତାଙ୍କ ପରିଚର୍ଯ୍ୟା ।
ତାହାଙ୍କୁ ଡକାଇ ଦିନେ ଅନ୍ଦର ମହଲେ
କୌତୂହଳେ ଶ୍ରୀମଥୁର ସହାସ୍ୟେ ଭାଷିଲେ ।

କହ ଦେଖି ଭଲ ଏହି ନାରୀଙ୍କ ମଧ୍ୟର
କିଏ ଅଟନ୍ତି ମାତୁଳ ଗଦାଇ ତୁମ୍ଭର ।
ଏତେଦିନ ଯାପିଲେହେଁ ଦୁହେଁ ଏକମେଳେ
ବହୁ କଷ୍ଟେ ଚିହ୍ନିବାକୁ ହୃଦୁ କ୍ଷମ ହେଲେ ।
ଭାବାବେଶେ ଥାଇ ପ୍ରଭୁ ଏକାଳେ ନିରତ
ଅଲକ୍ଷେ ସଙ୍କଟ ହରାଇ ଭୂମେ ନିପତିତ ।
ଯତନ ବନ୍ଧନେ ଅମଙ୍ଗଳ ଅନୁମାନ
ସତତ ସତର୍କ ଶ୍ରୀମଥୁର, ତାଙ୍କ ପତ୍ନୀ ।
ତାଙ୍କଠାରେ ଲକ୍ଷ୍ୟ ରଖି ଚେଷ୍ଟା ଅହରହ
ଆପଣା ସଂସାର କାର୍ଯ୍ୟ କରନ୍ତି ନିର୍ବାହ ।
ଏଥିମଧ୍ୟେ ଘଟିଲା ଯେ ଅଦ୍ଭୁତ ବ୍ୟାପାର
ହୃଦୟ ବଦନରେ ଶୁଣି ସେହି ସମାଚାର ।
ଦିନକରେ ଦେବରାୟ ଅନ୍ଦରୁ ବାହାରି
ସଦରକୁ ବଜେ କଲେ ଲକ୍ଷ୍ୟ ନାହିଁ କାରି ।
ଭାବାବସ୍ଥ ଚିତ୍ତେ ପ୍ରଭୁ ଆସି ଧୀରେ ଧୀରେ
ବସିଲେ କୌଣସି ଏକ ନିଭୃତ ସ୍ଥାନରେ ।
ଗୃହାଗ୍ନି ଚଲମେ ନିଆଁ ଯେନ ଜଣେ ଦାସ
ଦ୍ରୁତବେଗେ ଗଲାବେଳେ ମଥୁରଙ୍କ ପାଶ ।
ଚିଲମ୍ବୁଁ ଖସିଣ ନିଆଁ ଅଜ୍ଞାତେ ତାହାର
ନିପତିତ ହେଲା ପୃଷ୍ଠେ ପ୍ରଭୁ ଦେବଙ୍କର ।
ପିଠି ପୋଡ଼ି ଚର୍ମ ପୋଡ଼ା ଗନ୍ଧ ବାହାରିଲା
ତଥାପି ତାଙ୍କର କିଛି ଚେତା ନ ଆସିଲା ।
ଏକ ଆରେକ ପୁଚ୍ଛଇ ଆଚମ୍ବିତ ହୋଇ
ଚର୍ମ ପୋଡ଼ା ଗନ୍ଧ ଏଠି କେଉଁଠୁ ଆସଇ ।
ଅନ୍ୱେଷିଲେ ଯେତେ ଯହିଁ ନ ପାଇ ସନ୍ଧାନ
ଭକ୍ତ ମଥୁରଙ୍କ ମନ ହେଲା ଛନ୍ନ ଛନ୍ନ ।
ଘରଆଡ଼େ ଶ୍ରୀ ଦେବଙ୍କୁ ଅନ୍ୱେଷଣ କରି
ଦେଖିଲେ ଗୋଟିଏ ସ୍ଥାନେ ଭାବେ ମଗ୍ନ ହରି ।
ଚେତା ଆଣିବା ନିମନ୍ତେ ମଥୁର ମୋହନ
କର୍ଣ୍ଣମୂଳେ ଶ୍ୟାମା ନାମ କଲେ ଉଚ୍ଚାରଣ ।
ସେ ନାମ ଶ୍ରବଣ ମଧ୍ୟେ ପ୍ରବେଶିଲାମାତେ
ବାହ୍ୟ ଜ୍ଞାନ ଧୀରେ ଧୀରେ ଆସିଲାକ ଗାତ୍ରେ ।
କ୍ଷଣେ ଚେତା ଆସି ପୁଣି ତତ୍କ୍ଷଣେ ଲୁପତ
ଏମନ୍ତେ କିଞ୍ଚିତ କାଳ ହୋଇଲା ଅତୀତ ।
କାତର ହୋଇଣ ତହୁଁ ମଥୁର ଅଧୀରେ
ଅବିରାମ କାଳୀ ନାମ କଲେ ଉଚ୍ଚସ୍ୱରେ ।

ଉତ୍ସବରେ ସଙ୍ଗୀ ଲଭି ପ୍ରଭୁ ଗୁଣମଣି
ମଥୁରେ ଭାଷିଲେ ଅତି ସକରୁଣ ବାଣୀ ।
ଅତ୍ୟନ୍ତ ଯନ୍ତ୍ରଣା ହୁଏ ପୃଷ୍ଠ ଦେଶେ ମୋର
ଜାଣି ନ ପାରଇ କିସ କାରଣ ତାହାର ।
ପୃଷ୍ଠ ଦେଖି ମଥୁରଙ୍କ ହୃଦୟ ଆକୁଳ
ପ୍ରବେଶିଛି ଅଗ୍ନି ଖଣ୍ଡ ରକ୍ତିମ ଉଜ୍ଜ୍ୱଳ ।
ବୁଝିହେଲ ଦେଖିଣ ଏ ନୃଶଂସ ବ୍ୟାପାର
ଜିଆଁକୁ ତକ୍ଷଣେ କାଢ଼ି କଲେକ ବାହାର ।
ଭଲ ଯତ୍ନେ ରଖିଲ ମୁଁ ପ୍ରଭୁଙ୍କୁ ଭବନେ
ନିଜକୁ ଧିକ୍କାର କଲେ ବାରମ୍ବାର ମନେ ।
କାତରେ ପ୍ରାର୍ଥନା କଲେ ଦେବୀଙ୍କ ପଦରେ
ରକ୍ଷାକର ଜଗନ୍ମାତା ଅଧମ ପାମରେ ।
ଅହରହ ପତ୍ନୀ ସହ ସେବାରେ ନିଯୁକ୍ତ
ଘାଆ ନ ଶୁଖିଲ ସେତେ ଦିବସ ପର୍ଯ୍ୟନ୍ତ ।
ଏସନେ ପାଇଲେ ବହୁ କଷ୍ଟ ଜଗଦୀଶ
ତଥାପି ନୋହିଲ ତାଙ୍କ ଯନ୍ତ୍ରଣାର ଶେଷ ।
ଆଉ ଦିନକରେ ପୁଣି ଘଟିଲକ ଯାହା
ଅତି ହୃଦବିଦାରକ ଅଟଇ ସେ ତାହା ।
ଚନ୍ଦ୍ର ହଳଧର ନାମେ ଜନୈକ ବ୍ୟକତି
କାଳୀଘାଟ ସନ୍ନିକଟ ଯାହାର ବସତି ।
ମଥୁରଙ୍କ ପାଶେ ସେହୁ ଆତଯାତ କରେ
ଚଢ଼େ ଆଶା ପ୍ରିୟପାତ୍ର ହୋଇବ କିପରେ ।
ଭାବାବେଶେ ସଙ୍ଗୀହୀନ ଦେବ ବେଳେ ବେଳେ
ବିଶ୍ୱାସ ନକରେ ଚନ୍ଦ୍ର ତାହା କେବେହେଲେ ।
ମଥୁରଙ୍କୁ କାନେ କାନେ କହେ ନିରନ୍ତର
ଭାବାବେଶ ଆଦି ସବୁ ଭଣ୍ଡାମି ମାତର ।
ଦିନକରେ ପ୍ରଭୁ ଯେବେ ଭାବାବିଷ୍ଟ ଥାଇ
ଭୂତଳରେ ପଡ଼ିଥିଲେ ଚେତନା ହରାଇ ।
ଚନ୍ଦ୍ରନାଥ ଆସି ପାଶେ ଏହି ଅବସରେ
ବହୁତ ପ୍ରହାର କଲା ତା ବୁଟ ଯୋତାରେ ।
ଯା ପ୍ରଭାବେ ଶ୍ରୀ ଅଙ୍ଗରେ ଚିହ୍ନ ନାନା ସ୍ଥାନେ
ତା ନିରେଖି ଭୃତ୍ୟଙ୍କର ଅତି ବ୍ୟଥା ମନେ ।
ମୁନିବଙ୍କ ପାଖେ ଦେବେ ଏଥିର ଖବର
ଏକ ମେଳ ହୋଇ ସର୍ବେ କଲେ ଏହା ସ୍ଥିର ।
ଶ୍ରୀଦେବ ଜାଣିଣ ଏହା କଲେ ନିବାରଣ
ଅଜ୍ଞାନେ କରିଛି ଚନ୍ଦ୍ର କରମ ଏସନ ।

ଏ ଅଜ୍ଞାନ ବଶବର୍ତ୍ତୀ ଯେତେଦିନ ନର
ଏ ଭଳି ଦୁଷ୍କର୍ମେ ଆଏ ପ୍ରବୃତ୍ତି ତାହାର ।
କରୁଣା ସାଗର ପ୍ରଭୁ ପତିତ ପାବନ
ଏମନ୍ତେ ପାଷଣ୍ଡ ଚନ୍ଦ୍ରେ କଲେ କ୍ଷମାଦାନ ।
କେତେକ ଦିବସ ଯାପି ମଥୁର ଆଳୟେ
ଶ୍ରୀମନ୍ଦିରେ ବିଜେ କଲେ ପୁଣି ଦେବରାୟେ ।
ତାଙ୍କ ମନୋଭାବ ଜାଣି ମଥୁର ମୋହନ
ସଖୀ ସାଜିବାକୁ ଆଣି ଦେଲେ ଆଭରଣ ।
ସୁବର୍ଣ୍ଣ ବଳୟ ଝଡ଼ୁ କଙ୍କିଣ୍ୟାଦି କରି
ପରଚୁଲ ବସ୍ତ୍ର ଯାହା ଯହିଁ ଦରକାରୀ ।
ଏମନ୍ତେ ପ୍ରାପତ ହୋଇ ବିବିଧ ଭୂଷଣ
ମହାନନ୍ଦେ ଦେବରାୟ ହେଲେ ଭାସମାନ ।
ଶିରେ ଦେଲେ ପରଚୁଲ ବେସର ନାସାରେ
ଲଲାଟେ ସିନ୍ଦୂର ବିନ୍ଦୁ ଅଞ୍ଜନ ନେତ୍ରରେ ।
ଅଧରେ ତାମ୍ବୁଲ ରାଗ, କର୍ଣ୍ଣେ ଝୁଁପା ଫୁଲ
କଣ୍ଠରେ ସୁବର୍ଣ୍ଣ ହାର ଦିଶେ ଝଲମଲ ।
ଝଡ଼ୁ ବଳା କଙ୍କିଣ୍ୟାଦି ନାନା ଅଳଙ୍କାର
ବାହୁଯୁଗେ ସୁଶୋଭିତ ହୋଇଲା ତାଙ୍କର ।
କଟୀ ଦେଶେ ଚନ୍ଦ୍ରହାର, ନୂପୁର ଚରଣେ
ସୁନ୍ଦର ଘାଗରା ପିନ୍ଧା ପଶ୍ଚିମେ ଯେସନେ ।
ବକ୍ଷରେ କାଞ୍ଚୁଲି ଭିଡ଼ା, ମସ୍ତକେ ଓଢ଼ଣା
ବ୍ରଜଧାମେ ପିନ୍ଧୁଥିଲେ ଯଥା ଗୋପାଙ୍ଗନା ।
ଭୁଲି, ବୋଲି ଆଦି ସବୁ ଯେମନ୍ତ ରମଣୀ
ବର୍ଣ୍ଣିବାକୁ ପରାହତ ଏ କ୍ଷୁଦ୍ର ଲେଖନୀ ।
ଏସନେ ସଜ ହୋଇଣ ପ୍ରଭୁ ପରମେଶେ
ଆରମ୍ଭିଲେ ଦାସୀ ସେବା ଶ୍ରୀମତୀ ଉଦ୍ଦେଶ୍ୟେ ।
ଅତି ପ୍ରାତଃକାଳୁଁ ନିତ୍ୟ କରି ଗାତ୍ରୋତ୍‌ଥାନ
ଉଦ୍ୟାନୁ ସୁଗନ୍ଧ ପୁଷ୍ପ ଆଣନ୍ତି ତୋଳିଣ ।
ଅନୁରାଗେ ଗୁନ୍ଥି ତହିଁ ମନୋହର ମାଳ
ରାଧାକାନ୍ତେ ପିନ୍ଧାଇଣ ଆନନ୍ଦେ ବିହ୍ୱଳ ।
କେବେ ପୁଣି ଅମ୍ବିକାଙ୍କୁ କାତ୍ୟାୟନୀ ଜ୍ଞାନେ
ପୂଜନ୍ତି ଭକତି ସହ ପଙ୍କଜ ଚରଣେ ।
ଶ୍ରୀକୃଷ୍ଣଙ୍କୁ ପତିରୂପେ ପାଇବା ନିମନ୍ତେ
କରୁଣ ପ୍ରାର୍ଥନା କଲେ କେତେ ପଦପ୍ରାନ୍ତେ ।
ଗୋପୀଗଣ ସାଇ ଯଥା କାଳିନ୍ଦୀ ତଟରେ
କୃଷ୍ଣପ୍ରାପ୍ତି ପାଇଁ ଦେବୀ ପୂଜିଲେ ଭକ୍ତିରେ ।

ଯୁଗଳ ଚରଣ ପ୍ରାର୍ଥୀ ହୋଇ ଆଉ ନାଥ
ଶ୍ୟାମ ଶ୍ୟାମାଙ୍କୁ ସେବିଲେ ତଥା ଅବିରତ ।
ସମସ୍ତ କ୍ରମଶଃ ଯେତେ ହେଲୁ ଅଗ୍ରସର
ଶ୍ରୀମତୀଙ୍କ ଅଦର୍ଶନେ ପରାଣ ଅସ୍ଥିର ।
କାତରେ ପ୍ରାର୍ଥନା କରି କହନ୍ତି ଶ୍ରୀହରି
"ଦୟା କର ଅରେ ମୋତେ ରାଈ ବ୍ରଜେଶ୍ୱରି ।
ତବ କୃପା ବିନୁ ରାଧେ ! କେହି କଦାଚନ
ପାଇ ନ ପାରନ୍ତି ଭବେ ଶ୍ୟାମଙ୍କ ଦର୍ଶନ ।
ଶ୍ୟାମ-ହୃଦ ବିଳାସିନୀ ଆସ ଗୋ ଶ୍ରୀମତି !
କରୁଣା କଟାକ୍ଷପାତ କର ଦୀନ ପ୍ରତି ।
ଗୋପୀ-ଶିରୋମଣି ତୁମ୍ଭେ ଶ୍ୟାମ ସୋହାଗିନୀ
ମହାଭାବମୟୀ ମହାଭାବ ପ୍ରସବିନୀ ।
କୃଷ୍ଣ ହୃଦ ବିହାରିଣୀ ପ୍ରେମମୟୀ ରାଈ
ତୁମ୍ଭେ ଅଟ କାହ୍ନୁଙ୍କର, ତୁମ୍ଭର କହ୍ନାଇ ।
ଥରୁଟି ଦେଖାଅ ମୋତେ ଶ୍ୟାମ ପ୍ରାଣ ଧନ
ଯେଣିଯିବ ନାହିଁ ମାତ୍ର କରିବ ଦର୍ଶନ ।
ଶ୍ୟାମଙ୍କୁ ନ ଦେଖି ମୋର ପରାଣ ବ୍ୟାକୁଳ
ବାରେ ଦେଖାଇଣ କର ଏ ପ୍ରାଣ ଶୀତଳ ।
ପ୍ରବୋଧ ନ ମାନେ ପ୍ରାଣ, ନ ଦେଖି ଗୋବିନ୍ଦ
ଶ୍ୟାମ ସହ ଦିଅ ରାଧେ ! ଚରଣାରବିନ୍ଦ ।
ବାରମ୍ବାର ଭିକ୍ଷାମାଗେ କାତରି କିଙ୍କରୀ
ଶ୍ୟାମଙ୍କୁ ଦେଖାଅ ବାରେ ବୃନ୍ଦାବନେଶ୍ୱରି !
ଏ ଦେହରେ ପ୍ରାଣ ମୋର ଆଉ ନ ରହିବ
କୃପା ନ କରିଲେ ନରହତ୍ୟା ପାପ ନେବ ।"
କରୁଣ ପ୍ରାର୍ଥନା କରୁଁ କରୁଁ ଏ ପ୍ରକାରେ
ବାହ୍ୟଜ୍ଞାନଶୂନ୍ୟ ହୋଇ ପଡ଼ନ୍ତି ଭୂମିରେ ।
କେବେ କେବେ ଆପଣାକୁ ଭାବି ଶ୍ରୀରାଧିକା
ବିକଳେ ରୋଦନ୍ତି ଶ୍ୟାମ ବିରହରେ ଏକା ।
ସତତ ଉଦ୍‌ବିଗ୍ନ ଚିତ୍ତ ଅଧୀର ପରାଣ
ଗାଆନ୍ତି ବିରହ ଗୀତ କ୍ରନ୍ଦନ କରିଣ ।
କେବେ ପୁଣି ସଖୀବୃନ୍ଦେ ସମ୍ବୋଧନ କରି
ଗୀତେ ପ୍ରକାଶନ୍ତି ହୃଦ ବ୍ୟଥା ନରହରି ।
"ଶ୍ୟାମଙ୍କର ଭେଟ ଯେବେ ନ ପାଇବି ସହି !
ଏ ଜୀବନ ତେବେ ଆଉ ରଖିବି କପାଇଁ ?
ଶ୍ୟାମ ଯେ ଅଟନ୍ତି ମୋର ନୟନର ତାରା
ଦଣ୍ଡେ ନ ଦେଖିଲେ ତାଙ୍କୁ ହୁଏ ଦିଶହରା ।
ଶ୍ୟାମ ସହ ହୁଅନ୍ତେ ଗୋ ମୋ ଶିର କୁନ୍ତଳ
ଯତନେ ବାନ୍ଧନ୍ତି ତହିଁ ବୌଳ ଫୁଲମାଳ ।
ଶ୍ୟାମଙ୍କ ଦର୍ଶନ ପାଇଁ ଚିରଭିଖାରୁଣୀ
କହ କହ ସଖି ! କାହିଁ ଶ୍ୟାମ ଗୁଣମଣି ।"
ଏ ପ୍ରକାରେ ଗାଇ ଗାଇ ବିରହ ସଙ୍ଗୀତ
ବାହ୍ୟଜ୍ଞାନ ଲୋପ ପ୍ରାପ୍ତ ହୁଅନ୍ତି ନିରତ ।
ଦିନ ଅନ୍ତେ ଦିନ ଗଲା ମାସ ଅନ୍ତେ ମାସ
ବେଳକୁ ବେଳ ବଢ଼ିଲା ବିରହ ବିଶେଷ ।
ଶୟନ ଭୋଜନ ପାନ କଲେ ପରିହାର
ଭୂମିରେ ଉନ୍ମତ୍ତ ପ୍ରାୟ ଜଗତ ଠାକୁର ।
ବିରହର ବହ୍ନି ଶେଷେ ଏମନ୍ତ ପ୍ରବଳ
ଅସହ୍ୟ ଉତ୍ତାପ ପ୍ରାଣ କଲା କଲବଲ ।
ଲୋମକୂପୁଁ ବିନ୍ଦୁ ବିନ୍ଦୁ କ୍ଷରିଲା ଶୋଣିତ
ଗ୍ରନ୍ଥିମାନ ଭଗ୍ନପ୍ରାୟ ଶିଥିଳ ଲକ୍ଷିତ ।
ଦାରୁଣ ଯନ୍ତ୍ରଣା ଅନ୍ତେ ହେଲା ଏ ପ୍ରକାର
କାର୍ଯ୍ୟରୁ ବିରତ ହେଲେ ଇନ୍ଦ୍ରିୟ ନିକର ।
ନିଶ୍ଚେଷ୍ଟ ହୋଇଣ ଅଙ୍ଗ ପ୍ରତ୍ୟଙ୍ଗ ସମୂହ
ମୃତପ୍ରାୟ ନିପତିତ ସଂଜ୍ଞାଶୂନ୍ୟ ଦେହ ।
ଅବଶେଷେ ବ୍ରଜେଶ୍ୱରୀ ହୋଇଣ ପ୍ରସନ୍ନ
ଦୟାବହି ଦେଲେ ତାଙ୍କୁ ଧନ୍ୟ ଦରଶନ ।
ଶ୍ରୀପ୍ରଭୁ କହନ୍ତି "ସେହି ମୂର୍ତ୍ତିର ମାଧୁର୍ଯ୍ୟ
ମୁଖେ କହି ବୁଝାଇବା ଅସମ୍ଭବ କାର୍ଯ୍ୟ ।
କୃଷ୍ଣ ପ୍ରେମେ ବିଗଳିତ ମଧୁର ମୂରତି
ନିରୁପମ ପବିତ୍ରତା ଦିବ୍ୟ ଅଙ୍ଗକାନ୍ତି ।
ନାଗେଶ୍ୱର କୁସୁମର କେଶର ଯେସନ
ଅଙ୍ଗକାନ୍ତି ଅତ୍ୟୁଜ୍ଜ୍ୱଳ ଗଉର ତେସନ ।"
ବ୍ରଜେଶ୍ୱରୀ ଏ ପ୍ରକାରେ ଉଭା ହୋଇ ପାଶେ
ଶ୍ରୀ ପ୍ରଭୁଙ୍କ ଶ୍ରୀଅଙ୍ଗରେ ବିଲୀନ ନିମିଷେ ।
ଏଥୁଅନ୍ତେ ଦେବରାଜ୍ଞ କରୁଣାସାଗର
ଶ୍ରୀକୃଷ୍ଣ ଦର୍ଶନ ପାଇଁ ହୋଇଲେ ଅଧୀର ।
ଆପଣାକୁ ବ୍ରଜେଶ୍ୱରୀ ମଣି ମନେ ମନେ
ତନ୍ମୟ ରହିଲେ କୃଷ୍ଣଭାବେ ଅନୁକ୍ଷଣେ ।
ଆପଣା ଅସ୍ତିତ୍ୱ ଏକାବେଳେ ଭୁଲି ଯାଇ
ମହାଭାବେ ମଗ୍ନ ଯେହ୍ନେ ବ୍ରଜେଶ୍ୱରୀ ରାଈ ।
ସେ ଭାବର ଯେ ସକଳ ସୂଚନା ଲକ୍ଷଣ
ଲିପିବଦ୍ଧ କରିଛନ୍ତି ଶାସ୍ତ୍ରକାର ଗଣ ।

ସେ ସବୁ ଲକ୍ଷଣମାନ ଅଙ୍ଗେ ପ୍ରକଟିତ
ଶାସ୍ତ୍ରଙ୍କେ ସାଧନ ଦେଖି ହେଲେ ପ୍ରମାଣୀଭୂତ ।
ରାଧାରାଣୀଙ୍କ ଶ୍ରୀଅଙ୍ଗେ ଦ୍ୱାପର ଯୁଗରେ
ଏ ଭାବ ପ୍ରକଟ ହେଲା ସର୍ବ ପ୍ରଥମରେ ।
କଳିଯୁଗେ ଭଗବାନ ପ୍ରଭୁ ଶ୍ରୀଚୈତନ୍ୟ
ପତିତ ଉଦ୍ଧାର ହେତୁ ଯଦା ଅବତୀର୍ଣ୍ଣ ।
ତାଙ୍କଠି ସେ ମହାଭାବ ପୁନଶ୍ଚ ପ୍ରକାଶ
ଶାସ୍ତ୍ରେ ଏହି ଦୁଇସ୍ଥାନେ ହୋଇଛି ନିର୍ଦ୍ଦେଶ ।
ସର୍ବ ଧର୍ମ ସମନ୍ୱୟ ସକାଶେ ଶ୍ରୀହରି
ପୁନଃ ଅବତୀର୍ଣ୍ଣ ରାମକୃଷ୍ଣ ରୂପ ଧରି ।
ସାଧନ ଭଜନ କରି ଦେଖାଇଲେ ଭବେ
ଶାସ୍ତ୍ରରେ ବର୍ଣ୍ଣିତ କଥା ମିଥ୍ୟା ନୁହେ କେବେ ।
ପୂର୍ଣ୍ଣବ୍ରହ୍ମ ଦେବରାୟ କରୁଣା ସାଗର
ଭକ୍ତଙ୍କ ସମୀପେ କହିଛନ୍ତି ବାରମ୍ବାର ।
"ଊନବିଂଶ ପରକାର ଭାବ ଏକାଧାରେ
ପ୍ରକଟ ହୋଇଲେ ମହାଭାବ ନାମ ଧରେ ।
ସେହି ଊନବିଂଶ ଭାବ ହୋଇ ଘନୀଭୂତ
ଏ ଶରୀର ମଧ୍ୟେ ଅଛି ପୂର୍ଣ୍ଣ ପ୍ରକାଶିତ ।"
ରାଧାଭାବେ ଦେବରାୟ ଏମନ୍ତ ତନ୍ମୟ
ନିଜଠୁଁ ପୁରୁଷଜ୍ଞାନ ପାଇଲା ଯେ ଲୟ ।
ଏମନ୍ତ କି କେତେବେଳେ ସ୍ୱପ୍ନେ ହେଲେ ତିଳେ
ନିଜକୁ ପୁରୁଷ ବୋଲି କେବେ ନ ଭାବିଲେ ।
ନାରୀଜନୋଚିତ କାର୍ଯ୍ୟେ ତାଙ୍କର ହୃଦୟ
ସମ୍ୟକ ଆବୃତ ଥାଇ ସରବ ସମୟ ।
ସ୍ୱାଧିଷ୍ଠାନ ଚକ୍ର ଦେହେ ଯହିଁ ଅବସ୍ଥିତ
ସେ ସ୍ଥାନର ଲୋମକୂପୁଁ କ୍ଷରିଲା ଶୋଣିତ ।
ରମଣୀଙ୍କ ଋତୁ ପ୍ରାୟ ପ୍ରତ୍ୟେକ ମାସରେ
ତିନି ଦିବସ ପର୍ଯ୍ୟନ୍ତ ଦୃଷ୍ଟ ଏ ପ୍ରକାରେ ।
ହୃଦୟ ମୁଖାର୍ଜ୍ଜୀ ତାଙ୍କ ଭଣଜା କହନ୍ତି
"ସ୍ୱନେତ୍ରରେ ଏ ଶୋଣିତ ନିଜେ ଦେଖିଛନ୍ତି ।
ପିନ୍ଧିଥିବା ବସ୍ତ୍ର ନଷ୍ଟ ହେବା ଆଶଙ୍କାରେ
ଦେବରାୟ ପିନ୍ଧୁଥିଲେ କୌପୀନ ଭିତରେ ।"
ଆରେ ମନ ! କିପାଁ ହେଉ ତୁହି ସନ୍ଦିହାନ
ବେଦାନ୍ତ ଶାସ୍ତ୍ରରେ ଅଛି ଏଥିର ପ୍ରମାଣ ।
ମାନବ ଶରୀରେ ଯେଉଁ ମନର ବସତି
ନିତ୍ୟ ଗଢ଼େ ସେହି ତାର ଗଠନ ଆକୃତି ।

ଯେତେବେଳେ ହୁଏ ଯେଉଁ ଭାବର ପ୍ରବଳ
କଳେବରେ ଫୁଟିଉଠେ ତେମନ୍ତ ତା ଫଳ ।
ପ୍ରଭୁଙ୍କ କାର୍ଯ୍ୟକଳାପ କଲେକ ଦର୍ଶନ
ବେଦାନ୍ତ ବାକ୍ୟ ଅଭ୍ରାନ୍ତ ହୁଅଇ ପ୍ରମାଣ ।
ଆଧ୍ୟାତ୍ମିକ ରାଜ୍ୟେ ତାଙ୍କ ଉପଲବ୍ଧି ଯେତେ
ବୈଷ୍ଣବଚରଣ ଆଦି ପ୍ରସିଦ୍ଧ ପଣ୍ଡିତେ
ବେଦପୁରାଣାଦି ସଙ୍ଗେ ସେ ସବୁ ମିଳାଇ
ପଣ୍ଡିତ ସମାଜେ ତାଙ୍କ ସିଦ୍ଧାନ୍ତ ବୋଲାଇ ।
ପୂର୍ବ ଯୁଗମାନଙ୍କରେ ଆର୍ଯ୍ୟ ଋଷିଗଣ
ଲଭିଲେ ଯେ ତତ୍ତ୍ୱ ସାରା ଜୀବନେ ସାଧିଣ ।
ସେ ସକଳ ଉପଲବ୍ଧି ଦେବ ଅତିକ୍ରମି
ଶାସ୍ତ୍ରାତୀତ ମାର୍ଗେ ବହୁ ଦୂର ଅଗ୍ରଗାମୀ ।
ଶ୍ରୀକୃଷ୍ଣଙ୍କ ପ୍ରେମେ ପ୍ରଭୁ ବିହ୍ୱଳ ଏପରି
ମହାଭାବେ ମଗ୍ନ ଥାନ୍ତି ଦିବା ବିଭାବରୀ ।
କୃଷ୍ଣଧ୍ୟାନ କୃଷ୍ଣଜ୍ଞାନ କୃଷ୍ଣହିଁ ସର୍ବସ୍ୱ
କୃଷ୍ଣ ବିନୁ ଅନ୍ୟ କାହିଁ ନ ରହିଲା ଆଶ ।
ପ୍ରେମମୟ ହରି ପ୍ରଭୁ ଗୋଲୋକବିହାରୀ
ତୁଟି ନ ପାରନ୍ତି ତାଙ୍କ ଭକ୍ତ-ପ୍ରେମ-ଡୋରି ।
ସତ୍‌ଚିତ୍‌ ଆନନ୍ଦର ଦିବ୍ୟ ଘନ ମୂର୍ତ୍ତି
କୃଷ୍ଣରୂପେ ଉଭା ହୋଇ ବ୍ରହ୍ମାଣ୍ଡର ପତି,
ପୂର୍ଣ୍ଣ କଲେ ପ୍ରଭୁଙ୍କର ଚିର ଅଭିଲାଷ
ଧନ୍ୟ ତୁମ୍ଭର ମହିମା ପ୍ରଭୁ ପରମେଶ ।
ଅନ୍ୟାନ୍ୟ ଦେବତାମାନେ ପୂର୍ବେ ଯେ ପ୍ରକାର
ଦର୍ଶନ ଦେଇଣ ଲୀନ ଶରୀରେ ତାଙ୍କର ।
ଏ ସାଧନ ବେଳେ ମଧ୍ୟ ସେହି ପରକାରେ
ଶ୍ରୀକୃଷ୍ଣ ଦର୍ଶନ ଦେଇ ଲୀନ ଶ୍ରୀଅଙ୍ଗରେ ।
କହିଛନ୍ତି ଦେବରାୟେ କୃଷ୍ଣ-ଅଙ୍ଗ-କାନ୍ତି
"ନୀଳବର୍ଣ୍ଣ ବଲଘାସେ କୁସୁମ ଯେମନ୍ତ ।"
କୃଷ୍ଣଭାବେ ନିରତେ ସେ ଏମନ୍ତ ତନ୍ମୟ
ଦେଖିଲେ ଜଗତେ ସର୍ବବସ୍ତୁ କୃଷ୍ଣମୟ ।
କେବେ ପୁଣି ଆପଣାକୁ କୃଷ୍ଣଜ୍ଞାନ କରି
ଆରମ୍ଭିଲେ ଲୀଳାଖେଳା ବୃନ୍ଦାବନ ସ୍ମରି ।
ଯୋଗେଶ୍ୱରୀ ନାମ୍ନୀ ସେହି ଭୈରବୀ ବ୍ରାହ୍ମଣୀ
ଭକତି ଶାସ୍ତ୍ରରେ ଥିଲେ ସୁଧୀ ଶିରୋମଣି ।
ପ୍ରଭୁଙ୍କର କୃଷ୍ଣଭାବ ଦର୍ଶନ କରିଣ
ବାତ୍ସଲ୍ୟ ଭାବ ତାଙ୍କର ହୃଦେ ଉଦ୍ଦୀପନ ।

ଭାବେ ଗଦ ଗଦ ସଦା ଯଥା ନନ୍ଦରାଣୀ
ପ୍ରଭୁଙ୍କୁ ଖୁଆନ୍ତେ ସ୍ନେହେ କ୍ଷୀର ସର ଆଣି ।
ପ୍ରାଣର ଆବେଗ ବହେ ଏମନ୍ତ ପ୍ରକାର
ଥାଳୀରେ ଯେମନ ଲବଣୀ ଆଉ କ୍ଷୀର ସର ।
ପ୍ରଭୁଙ୍କ ଦର୍ଶନ ଆଶେ ହେଲେ ବହିର୍ଗତ
ଗାଉ ଗାଉ ପରସର ବଙ୍ଗଛନ୍ଦ ସଙ୍ଗୀତ ।
ଯେ ତାଙ୍କୁ ଦେଖିଲା ଦାଣ୍ଡେ ତାଙ୍କ ଭାବେ ମଜ୍ଜି
ତାଙ୍କ ଅନୁଗାମୀ ହେଲା କୃଷ୍ଣ ନାମ ଭଜି ।
ଏମନ୍ତେ ମିଳିଲେ ସଙ୍ଗେ ରମଣୀ ବହୁତ
ତାଙ୍କ ସହ ପୁଷ୍ପ ଦ୍ୱାରେ ବିପ୍ରା ଉପନୀତ ।
ଭାବରେ ଆବିଷ୍ଟ ବିପ୍ରା ନେତ୍ରୁ ଝରେ ନୀର
ବଦନେ ମରମ-ସ୍ପର୍ଶୀ ସଙ୍ଗୀତ ମଧୁର ।
"ଦୁଆରେ ଦଣ୍ଡାୟମାନ ମାତା ନନ୍ଦରାଣୀ
ଦେଖିବ ତୋ ଚନ୍ଦ୍ରମୁଖ ନ ଯିବରେ ଯେଣି ।
ଆଆରେ ଆଆରେ କାହ୍ନୁ, ମୋ ହୃଦୟ ମଣି
କ୍ଷୀର ସର ଖୋଇ ଦବି ତୋତେ କୋଳେ ଯେଣି ।"
ବିରହ ସଙ୍ଗୀତ ଗାଉ ଗାଉ ଏ ପ୍ରକାରେ
ପ୍ରବେଶିଲେ ଦଳ ସହ ବିପ୍ରା ଶ୍ରୀମନ୍ଦିରେ ।
ପ୍ରଭାସେ ଚଳନ୍ତି ଯଥା ଗୋପାଙ୍ଗନାଗଣ
ଦୃଶ୍ୟଟି ଦେଖିଲେ ତଥା ହେଲା ଅନୁମାନ ।
ବିପ୍ରା ହୃଦଭାବ ଜାଣି ପ୍ରଭୁ ଭାବଗ୍ରାହୀ
ରହିଲେ ଶ୍ରୀକୃଷ୍ଣଭାବେ ସମାଧିସ୍ଥ ହୋଇ ।
ସମୀପେ ଆସିଣ ବିପ୍ରା କଲେ ନିରୀକ୍ଷଣ
ଭାବରେ ପୂର୍ଣ୍ଣ ଆବିଷ୍ଟ ପ୍ରଭୁ ନାରାୟଣ ।
ଭାବେ ଗଦଗଦ ବିପ୍ରା ଥାଳୀ ଧରି ହାତେ
ଭୂମେ ନପଡ଼ନ୍ତ ପାଦ ସଂଜ୍ଞାଶୂନ୍ୟ ଚିତ୍ତେ
ଏକାଳେ ପ୍ରବିଷ୍ଟ ହୋଇ ହୃଦୟ ଠାକୁର
ଥାଳୀ ସହ ବ୍ରାହ୍ମଣୀଙ୍କୁ ଧରିଲେ ସତ୍ୱର ।
କିଛୁକାଳ ପରେ ବିପ୍ରା ଲଭିଲେ ଚେତନ
ଦେବରାଜଙ୍କର ଭାବ ବୋଧିଲା ଭଗନ ।
ପ୍ରେମପୂର୍ଣ୍ଣ ଚିତ୍ତେ ବିପ୍ରା ବସିଲେ ସମୀପେ
ବେନି ନେତ୍ରୁ ଅଶ୍ରୁ ଧାରା ବହିଲା ଅମାପେ ।
ଭାବାବିଷ୍ଟ ପ୍ରଭୁ ତହୁଁ କ୍ଷୁଦ୍ର ଶିଶୁ ରୂପେ
ସସ୍ନେହେ ବସିଲେ ଯାଇ ବିପ୍ରାଙ୍କର କୋଳେ ।
କ୍ଷୀରସର ଲବଣୀରୁ ଅଳ୍ପ ଅଳ୍ପ କରି
ହୃଦୟ ଠାକୁର ଦେଲେ ଶ୍ରୀମୁଖେ ତାଙ୍କରି ।

ବ୍ରାହ୍ମଣୀର କୋଳେ ବସି ପ୍ରଭୁ ଗୁଣଧାମ
ଖାଆନ୍ତି କ୍ଷୀର ସସ୍ୱାଦ କ୍ଷୁଦ୍ର ଶିଶୁ ସମ ।
କିବା ରମଣୀୟ ଦୃଶ୍ୟ ଦେଖ ଆରେ ମନ !
ବୈକୁଣ୍ଠରେ ପରିଣତ ଆଜ ଏ ଭୁବନ ।
କେତେବେଳେ ପୁଣି ବିପ୍ରା ଗୋପନାରୀ ବେଶେ
ଉନ୍ମତ୍ତ ହୋଇଣ ଗାନ୍ତି ଗୀତ ମନ ତୋଷେ ।
"ଆସ ଆସ ଯିବା ସଖି ! ଗୋଷ୍ଠେ ଗୋଚାରଣେ
ଶୁଣିଅଛୁ ରାଜା ହେବେ ରାଇ ନିଧୁବନେ ।
ଅଙ୍ଗେ ମଣ୍ଡି ପୀତବସ୍ତ୍ର ଶିଖୀପୁଚ୍ଛ ଶିରେ
ମୋହନ ମୁରଲୀ କାହ୍ନୁ ଦେବେ ତାଙ୍କ କରେ ।
ରାଇଙ୍କୁ ଗୋପାଳରାଜ ଏମନ୍ତେ ସଜାଇ
ଦ୍ୱାରପାଳ ହେବେ ନିଜେ ମୋ ପ୍ରାଣ କହ୍ନାଇ ।
ଲଳିତା ବିଶାଖା ଆଦି ଅଷ୍ଟସଖୀଗଣ
ଗୋପାଳ ବେଶରେ ସଜ ହୋଇଣ ଆପଣ ।
କରେ କର-ତାଳି ଦେଇ ଭ୍ରମି ବନେ ବନେ
ଧବଳି ଶ୍ୟାମଳି ଚରାଇବେ ଫୁଲ୍ଲମନେ ।"
କେବେ ସଜ ହୋଇ ପୁଣି ପୁରୁଷ ପରାୟେ
ବାଉଲ ସଙ୍ଗୀତ ଗା'ନ୍ତି ଆନନ୍ଦ ହୃଦୟେ ।
କଟୀଦେଶେ ବନ୍ଧା ଡୁଗୀ ବାଜେ ତାଳେ ତାଳେ
ଗୋରା ଗୁଣ ଗା'ନ୍ତି ନାଚି ପ୍ରେମର ହିଲ୍ଲୋଳେ ।
ଗୌର-ପ୍ରେମ-ଢେଉ ବହିଯାଉଛି ରେ ଭାଇ !
ପାଷାଣ୍ଡ ଦଳି ବ୍ରହ୍ମାଣ୍ଡ ଦେଇଣ ବୁଡ଼ାଇ ।
ବୁଡ଼ି ରହିବାକୁ ମୋର ମନ ହୁଏ ଯେତେ
ରହି ପାରୁନାହିଁ ଭାଇ ! ନିଜଣସିମନ୍ତେ ।
ପ୍ରେମଜଳେ ଛନ୍ତି ଯେଉଁ ପ୍ରେମିକ କୁମ୍ଭୀର
ତନୁ ଉଡ଼ିଆସି ଗ୍ରାସ କରିବା ଉପର ।
ଏ ବ୍ୟଥାର ବ୍ୟଥୀ ମାତ୍ର ଏ ମହୀରେ ଭାଇ !
ଜଗଦ୍ଧାତା ବେନି ଭ୍ରାତା ଗଉର ନିତାଇ ।
ବିପ୍ରାଙ୍କ ସଙ୍ଗୀତ ଶୁଣି ପ୍ରଭୁ ଭଗବାନ
ସଂଜ୍ଞାଶୂନ୍ୟ ହୋଇ ତଳେ ପଡ଼ନ୍ତି ତକ୍ଷଣ ।
ଭକ୍ତିଭାବେ ପରିପୂର୍ଣ୍ଣ ବିପ୍ରାଙ୍କ ଅନ୍ତର
ମହାମାୟା ଅଂଶୀଭୂତା ମାନବୀ ଆକାର ।
ଅଦ୍ଭୁତ ଅଦ୍ଭୁତ ନରନାରୀ ଅଗଣନ
କାହୁଁ କାହୁଁ ଆସି ରୁଣ୍ଡ ପ୍ରଭୁ ସନ୍ନିଧାନ ।
ଭକ୍ତ ସହକାରେ ମନ ! ଶୁଣ ସ୍ଥିର ଚିତ୍ତେ
ପ୍ରଭୁ ଅବତାରେ କଳି ପାଲଟିଲା ସତ୍ୟେ ।

ହରିଙ୍କ ଦର୍ଶନ ଲାଗି ନରଦେହ ଧରି
ଧରାରେ ଆସିଲେ ଦେବଦେବୀ ଅସୁମାରି ।
ଅପାର ମହିମାର୍ଣ୍ଣବ ପ୍ରଭୁ ନାରାୟଣ
ଜଗତ ତାରଣ ହେତୁ ଭବେ ଅବତୀର୍ଣ୍ଣ ।
ଏ ଭାବରେ କିୟତ୍କାଳ ନିମଜ୍ଜିତ ଥାଇ
ଅଦ୍ଭୁତ ଦର୍ଶନ ଏକ ଅନ୍ତେ ଲଭିଲଇଁ ।
ରାଧାକାନ୍ତ ଜୀଉଙ୍କର ମନ୍ଦିର ସମ୍ମୁଖେ ।
ଭାଗବତ ଶୁଣୁଥିଲେ ଦେବ ଦିନେ ସୁଖେ ।
ଶ୍ରୀକୃଷ୍ଣଙ୍କ ଭାବେ ହେଲେ ତନ୍ମୟ ଏମନ୍ତ
ସ୍ଥାଣୁ ରୂପେ ସ୍ଥିର ତନୁ ଭାବାବିଷ୍ଟ ବାଢ଼ ।
ସହସା ଶ୍ରୀକୃଷ୍ଣ ଜ୍ୟୋତିର୍ମୟ ମୂର୍ତ୍ତି ଧରି
ପାଶେ ଉଭା ହେଲେ ଦିବ୍ୟ-ଆଲୋକ ବିସ୍ତାରି ।
ପାଦପଦ୍ମୁଁ ଏକ ଜ୍ୟୋତିଃ ଶିଖା ବାହାରି
ଭାଗବତ ଗ୍ରନ୍ଥକୁ ସେ ସ୍ପର୍ଶିଲା ପ୍ରଥମ ।

ତଦନ୍ତେ ସେ ଜ୍ୟୋତିଃ ବେଗେ ହୋଇ ଅଗ୍ରସର
ସ୍ପର୍ଶିଲା ବକ୍ଷସ୍ଥଳ ଦେବରାୟଙ୍କର ।
ଏ ପ୍ରକାରେ ବସ୍ତୁତ୍ରୟେ ସଂଲଗ୍ନ ଆଭରି
କ୍ଷଣ ପରେ ହେଲା ପୁଣି ତାହା ଅନ୍ତର୍ଦ୍ଧାନ ।
ଶୁଣ ଆରେ ବାୟାମନ ! ଏଥିର ମରମ
ଭକ୍ତପାଶେ ଯା କହିଲେ ପ୍ରଭୁ ଗୁଣଧାମ ।
ଭାଗବତ, ଭକ୍ତ ଆଉ ପ୍ରଭୁ ଭଗବାନ
ଏକ ପଦାର୍ଥ ଏ ତିନି, ନୁହଇ ସେ ଭିନ୍ନ ।
ପ୍ରାଚୀନ କାଳରୁ ଯାହା ଶାସ୍ତ୍ର ବଖାଣିଲେ
ତାହାର ସତ୍ୟତା ହରି ନିଜେ ଦେଖାଇଲେ ।
ରାମକୃଷ୍ଣ-ଲୀଳାମୃତ ଅମିୟ ଲହରୀ
ପାନ କର ସୁଖେ ମନ ! ଦିନା ବିଭାବରୀ ।
ଏଡ଼ିବୁ ତୁ ହେଲେ ତେବେ ଶମନର ଡର
ମାୟାଜାଲେ ପଡ଼ି କମ୍ପା ହେବୁ ହରବର ।

---

## ଦ୍ୱାଦଶ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ବେଦାନ୍ତ ସାଧନ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅନାଦି କାରଣ ବିଭୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ପ୍ରଭୁ ନିରଞ୍ଜନ ।
ରାମକୃଷ୍ଣ-ଗୁଣଗାଥା ଶ୍ରବଣ ମଙ୍ଗଳ
ଗାଇଲେ ଶୁଣିଲେ ଚିତ୍ତ ହୁଅଇ ନିର୍ମଳ ।
ଚନ୍ଦ୍ରାଦେବୀ ପ୍ରଭୁଙ୍କର ସ୍ନେହମୟୀ ମାତା
ସାପାରିକ ଶୋକଦୁଃଖେ ହୋଇ ପ୍ରପୀଡ଼ିତା ;
କନିଷ୍ଠ ସନ୍ତାନ ପାଶେ ରହି ଗଙ୍ଗାତୀରେ
ଯାପିବେ ଅନ୍ତିମ କାଳ କଣ୍ଥିତ ସୁଖରେ ।
ଏମନ୍ତ ବିଚାରି ମନେ ଗୃହ ବରଜିଣ
ଗଙ୍ଗାତୀରେ ସୁତପାଶେ କଲେ ଆଗମନ ।
ଦ୍ୱାଦଶ ବରଷ ତହିଁ ଅବସ୍ଥାନ କରି
ସ୍ୱର୍ଗଧାମେ ଚାଲିଗଲେ ଛାଡ଼ି ମର୍ତ୍ତ୍ୟପୁରୀ ।
ଯଥା ତ୍ୟାଗୀ ସୁତ, ମାତା ତ୍ୟାଗଶୀଳା ତଥା
ସ୍ଥିର ଚିତ୍ତେ ଶୁଣ ତାଙ୍କ ତ୍ୟାଗ ଗୁଣଗାଥା ।

ସତ୍କାର୍ଯ୍ୟରେ ମୁକ୍ତହସ୍ତ ମଥୁର ମୋହନ
ଜୀବନେ ଯେ କଲେ ବହୁ ସାଧୁ ଅନୁଷ୍ଠାନ ।
ତାଙ୍କ ଅତି ଦୃଢ଼ ଭକ୍ତି ପ୍ରଭୁଙ୍କ ଚରଣେ
ସେ ହେତୁ ସେବନ୍ତି ତାଙ୍କୁ ସର୍ବାନ୍ତଃକରଣେ ।
ଆରମ୍ଭୁଁ ତାଙ୍କର ମନେ ଥିଲା ଅଭିଳାଷ
ପ୍ରଭୁ ପାଇଁ ଖଞ୍ଜିଦେବେ ପାଟଣା ବିଶେଷ ।
ଦେବଙ୍କ ଅଶ୍ରୁତପୂର୍ବ ତ୍ୟାଗ ନିରେଖିଣ
ପ୍ରସ୍ତାବ ଆଣିବା ପାଇଁ ସଶଙ୍କିତ ମନ ।
ଦିନକରେ ଶ୍ରୀମଥୁର ହୃଦୟ ସହିତ
ସେ ସମ୍ବନ୍ଧେ କରୁଥିଲେ କଥା ଉତ୍ଥାପିତ ।
ପଭୁଙ୍କ କର୍ଣ୍ଣରେ ତାହା ଯେମନ୍ତ ପ୍ରବେଶ
ତତକ୍ଷଣେ ଉଦ୍ରେକ ଚିତ୍ତେ ଭୟଙ୍କର ରୋଷ ।
ରେ ମୂଢ଼ ! ବିଷୟେ ମୋତେ ଛନ୍ଦିବା କାରଣେ
ମନ୍ତ୍ରଣା କରୁଛୁ ଦୁହ ବସିଣ ଏ ସ୍ଥାନେ !
ଏହା କହି ମଥୁରଙ୍କୁ ମାରିବା ନିମିତ୍ତ
ଧାଇଁଲେ ଶ୍ରୀଦେବରାୟ ଯେମନ୍ତ ଉନ୍ମତ୍ତ ।

ଭକ୍ତ ମଥୁର ନିରଖି ହୋଇଣ ଏପରି
ସେ କଥା ନ ଉଚ୍ଚାରିଲେ ଆଉ କଦାଚନ ।
ଅଭିଲାଷ ମନେ ମନେ ରହିଲା ଜାଗ୍ରତ
ଉପାୟ ଖୋଜିଲେ କାର୍ଯ୍ୟ ସାଧନ ନିମିତ୍ତ ।
ଚନ୍ଦ୍ରାଙ୍କର ଆଗମନେ ଲଭିଣ ସୁଯୋଗ
କାର୍ଯ୍ୟସିଦ୍ଧି ପାଇଁ ପୁନଃ କଲେ ସେ ଉଦ୍ୟୋଗ ।
ପ୍ରତିଦିନ ଚନ୍ଦ୍ରାପାଶେ କରି ଆତଯାତ
ରଞ୍ଜିଲେ ପ୍ରିୟ ବଚନେ ତାହାଙ୍କର ଚିତ୍ତ ।
କଥା ପ୍ରସଙ୍ଗରେ ଦିନେ କହିଲେ ତାହାଙ୍କୁ
ବହୁଦିନୁ ଇଚ୍ଛା କିଛି ଦେବାକୁ ତୁମ୍ଭଙ୍କୁ ।
କି ଅବା ବାସନା ତବ କରନ୍ତୁ ପ୍ରକାଶ
କିଙ୍କର ମାଗଇ ଭିକ୍ଷା, ନ କର ନିରାଶ ।
ସରଳତା ମୂର୍ତ୍ତିମତୀ ଦେବୀ ଚନ୍ଦ୍ରମଣି
ବିପଦେ ପଡ଼ିଲେ ଶୁଣି ମଥୁରଙ୍କ ବାଣୀ ।
ମାଗିବେ ତାହାଙ୍କୁ କିସ ଚିନ୍ତାରେ ମଗନ
ସ୍ଥିରକରି ନ ପାରିଣ କହିଲେ ବଚନ ।
"ତୁମ୍ଭର କଲ୍ୟାଣେ ବତ୍ସ ! ସୁଖେ ଅଛି ମୁହିଁ
କୌଣସି ବିଷୟେ ମୋର ଅଭାବ ତ ନାହିଁ ।
ଆବଶ୍ୟକ ମୋର ଯାହା ହେବ ଯେତେବେଳେ
ପ୍ରେରିବି ବାରତା ମୁହିଁ ତୁମ୍ଭଠି ସେକାଳେ ।"
ଏମନ୍ତ ଭାଷିଣ ଚନ୍ଦ୍ରା ଗମିଣ ତ୍ୱରିତେ
ପେଟରା ଆଣି ଖୋଲିଲେ ମଥୁର ଅଗ୍ରତେ ।
"ପିନ୍ଧିବା ବସନ ଦେଖ ଅଛଇ ଯଥେଷ୍ଟ
ତୁମ୍ଭ କୃପାରୁ ନ ଥାଏ ମୋର ଅନ୍ନକଷ୍ଟ ।
କୌଣସି ବିଷୟେ ନାହିଁ କିଞ୍ଚିତ ଅଭାବ
ଯାହା ଯେବେ ଆବଶ୍ୟକ ଦେଉଛ ସରବ ।"
ସନ୍ତୁଷ୍ଟ ନୋହିଣ ଏଥେ ଭକତ ମଥୁର
ବୃଦ୍ଧା ପାଶେ କରିଲେରୁ ବିଶେଷ ଜଗର ।
ହସି ହସି ଚନ୍ଦ୍ରାଦେବୀ କହିଲେ ଉତ୍ତରେ,
"ନିତାନ୍ତ ଆଗ୍ରହ ଯଦି ତୁମ୍ଭର ଚିତ୍ତରେ ।
ଦାନ୍ତ ଘଷିବା ଗୁଣ୍ଡାଖି ଆସି ପ୍ରାୟ ଶେଷ
ଅଣାକର କିଣିଦିଅ ସେଥିରୁ ମୋ ବତ୍ସ !"
ନୋହିଲେ କି ଏପ୍ରକାର ତ୍ୟାଗଶୀଳା ମାତା
ଉଦରେ ଧରନ୍ତ ତୁମ୍ଭେ ବ୍ରହ୍ମାଣ୍ଡ କରତା ।
ଏହା କହି ଚନ୍ଦ୍ରାଙ୍କର ଚରଣ ପୂଜିଣ
ଆପଣା କାର୍ଯ୍ୟରେ ଚଳେ ମଥୁର ମୋହନ ।

ଗୃହେ ବାହୁଡ଼ି ଗୁଣ୍ଡାଖି କିଣି ଅଣାକର
ତାଙ୍କ ସମୀପେ ପ୍ରେରିଲେ ତାହା ଖରତର ।
ଚିତ୍ତ ସ୍ଥିର କରି ଏବେ ଶୁଣ ସାଧୁଜନେ
ବେଦାନ୍ତ ସାଧନ କଲେ ଶ୍ରୀଦେବ କେସନେ ।
ସାକାର ସାଧନେ ଯେତେ ମତ ପ୍ରଚଳିତ
ଶୈବ ଶାକ୍ତ ରାମାଇତ ବୈଷ୍ଣବ ସହିତ ।
ଏକ ଏକ ସାଧିଣ ତା ପ୍ରଭୁ ଗୁଣଧାମେ
ଉପନୀତ ହୋଇ ସେହି ସବୁର ଚରମେ,
ପ୍ରବଳ ଆକାଂକ୍ଷା ଏବେ ହେଲା ତାଙ୍କ ମନେ—
ଭାବାତୀତାବସ୍ଥା ଯାହା ବେଦାନ୍ତ ବଖାଣେ,
ନିରାକାର ନିର୍ଗୁଣ ସେ ବ୍ରହ୍ମ ସନାତନ
ଅଦ୍ୱୈତ ମତର ଯାହା ଅଟେ ଲକ୍ଷ୍ୟସ୍ଥାନ ।
ଉପଲବ୍ଧି ହେବ ତାହା କେବଣେ ଜୀବନେ
କାୟମନୋବାକ୍ୟେ ଏହା ଚିନ୍ତା ଅନୁକ୍ଷଣେ ।
ଗୁରୁ ଏକ ଶିକ୍ଷାଦାନ କରିବା ନିମିତ୍ତ
ଅଯତନକେ ପାଶେ ଆସି ହେଲେ ଉପନୀତ ।
ସାଧୁଜନେ ଶୁଣ ଏବେ ବିବୃତ ତାହାର
ଅମାନୁଷ ସମାଚାର ଦେବେ ଅଗୋଚର ।
ଶ୍ରୀଦେବ ବୋଲନ୍ତି "ଯେହ୍ନେ ସବୁ ସମୟରେ
ବସବାସ କରିଥାଏ ରତ୍ନାକର ତୀରେ ।
ତା ଗର୍ଭେ ରହଇ କେତେ ଅମୂଲ୍ୟ ରତନ
ଇଚ୍ଛାକରେ ମଧ୍ୟେ ମଧ୍ୟେ ଜାଣିବା କାରଣ ।
ମୋ ପାଶେ ଥାଇଣ ଶ୍ୟାମା ନିତ୍ୟ ବର୍ତ୍ତିମାନ
ଅବାଧ ଦର୍ଶନ ଦାନେ କଲେହେଁ କଲ୍ୟାଣ ।
ବେଳେ ବେଳେ ହୁଏ ମୋର ଇଚ୍ଛା ବଳବତୀ
ଦେବୀଙ୍କ ଅନନ୍ତ ଭାବ ଦେଖିବି କେମନ୍ତ ।
ଅନନ୍ତରୂପିଣୀ ଶ୍ୟାମା ଶଙ୍କରୀ ଭବାନୀ
ଅନନ୍ତ ଭାବରାଶିର ଚିର ପ୍ରସ୍ରବଣୀ ।
ଯେତେବେଳେ ଯେଉଁ ଭାବେ ଦର୍ଶନ ନିମିତ୍ତ
ବାସନା ହୁଅଇ ମୋର ଚିତ୍ତେ ଉଦ୍ଦୀପିତ ।
ତାହା ପୂର୍ଣ୍ଣ କରିବାକୁ ଶ୍ୟାମାଙ୍କ ପଦରେ
ଶିଶୁ ତୁଲେ ଅଳି କରେଁ ବ୍ୟାକୁଳ ଅନ୍ତରେ ।
କୃପାମୟୀ ଜଗନ୍ମାତା ପ୍ରସନ୍ନା ହୋଇଣ
ଉପଲବ୍ଧି ବା ଦର୍ଶନେ ଯାହା ପ୍ରୟୋଜନ ।
ସେ ସବୁ ଯୋଗାଡ଼ କରି ଆଗହୁଁ ଆପଣେ
ମୋ ଦ୍ୱାରା କରନ୍ତି କାର୍ଯ୍ୟ ସମ୍ପନ୍ନ ଏସନେ ।

କାର୍ଯ୍ୟ ଅନ୍ତେ ସେହି ଭାବେ ଦେଖାଦେଇ ମୋତେ
ଧନ୍ୟ କଲେ ମୋ ଜୀବନ ଏ ମର ଜଗତେ ।
ଶିରେ ଧରି ଦେବୀଙ୍କର କୃପା ଅନୁକ୍ଷଣ
ଏମନ୍ତେ ସାଧିଲି ନାନା ଭାବର ସାଧନ ।
ବେଦାନ୍ତ ସାଧନେ ଯେବେ ହେଲା ଅଭିଳାଷ
ମୋ ପାଶେ ପ୍ରବେଶି ଜଣେ ସନ୍ନ୍ୟାସୀ ପୁରୁଷ ।
ତେଜଃପୁଞ୍ଜ କଳେବର ସୁଦୀର୍ଘ ଆକାର
ପରିଧାନ ମାତ୍ର ତାଙ୍କ ଅଟଇ ଅମ୍ବର ।
ପ୍ରବୀଣ ବୟସ ଶିରେ ଜଟାଜୁଟଧାରୀ
ଯୋଗିଗଣ ଅଗ୍ରଗଣ୍ୟ ନାମ ତୋତାପୁରୀ ।"
ନାଗା ସମ୍ପ୍ରଦାୟଭୁକ୍ତ ଥିଲେ ଯୋଗୀବର
ସେ କାରଣେ ଅଗ୍ନି ସେବା କରନ୍ତେ ତାଙ୍କର ।
କୁରୁକ୍ଷେତ୍ର ପାଶେ ଗ୍ରାମ ଲୁଧିୟାନା ନାମ
ତନ୍ନିକଟେ ଥିଲା ତାଙ୍କ ଗୁରୁଙ୍କ ଆଶ୍ରମ ।
ସାତ ଶହ ଶିଷ୍ୟ ଥିଲେ ତାଙ୍କ ମଣ୍ଡଳୀରେ
ସର୍ବେ ଥିଲେ ଧୁରନ୍ଧର ଧରମ ପନ୍ଥାରେ ।
ଆହାର ବିହାର ଆଦି ଧର୍ମ ଶିକ୍ଷା ଦାନ
ସର୍ବ ବିଷୟେ ବ୍ୟବସ୍ଥା ଶାସ୍ତ୍ରରେ ଯେସନ ।
ଲଜ୍ଜା ଘୃଣା ଭୟ ଜାତି କୁଳ ଶୀଳ ମାନ
ଇତ୍ୟାଦି ଯେ ଅଷ୍ଟ ପାଶ ପ୍ରାଣୀର ବନ୍ଧନ ।
କି ଉପାୟେ ସେ ସକଳ ହେବ ଦୂରୀଭୂତ
ପ୍ରଥମରେ ଶିକ୍ଷାଦାନ ମଠରେ ତେମନ୍ତ ।
ଅତଃପର ଧ୍ୟାନାଦିରେ ମନ ଦୃଢ଼ ହେଲେ
ସାଧୁସଙ୍ଗ ତୀର୍ଥଯାତ୍ରା ଶିଷ୍ୟେ ଆଜ୍ଞା ମିଳେ ।
ମହନ୍ତ ନିଯୁକ୍ତ ପ୍ରଥା ମଠରେ ସୁନ୍ଦର
ଗୁରୁଙ୍କ ଉପରେ ତାହା ନ ଥିଲା ନିର୍ଭର ।
ଯଥାବିଧି ଜପତପ ଆଚରି ସମସ୍ତ
ଶିଷ୍ୟଙ୍କ ମଧ୍ୟରେ ଯେହୁ ଶ୍ରେଷ୍ଠ ସ୍ଥାନ ପ୍ରାପ୍ତ ।
ପରମହଂସ ଅବସ୍ଥା ଯାହାର ଆୟତ୍ତ
ସର୍ବ ସମ୍ମତେ ମହନ୍ତ ସେହୁ ନିର୍ବାଚିତ ।
ତା ନ ହେଲେ ଧନମାନ କ୍ଷମତା ଲଭିଣ
କାମିନୀ କାଞ୍ଚନେ ଲିପ୍ତ ହେବ କ୍ଷଣେ ମନ ।
ସାଧୁସେବା ଦେବାର୍ଚ୍ଚନ ସାଧୁକାର୍ଯ୍ୟ ଯେତେ
ତାକୁ ଛାଡ଼ି ଅର୍ଥବ୍ୟୟ କରିଦେବେ ସ୍ୱାର୍ଥେ ।
ନାନାବିଧି ଅସତ୍‌କାର୍ଯ୍ୟେ ଏ ପ୍ରକାରେ ମାତି
ନାଶ କରି ଦେବେ ସବୁ ମଠର ସମ୍ପତ୍ତି ।
ଆସକ୍ତ ନ ଥାଏ ଯା'ର କାମିନୀ କାଞ୍ଚନେ
ଏଭଳି ଲୋକର ଲୋଡ଼ା ତେଣୁ ଶୀର୍ଷସ୍ଥାନେ ।
ଏମନ୍ତେ ମଠ ଉଦ୍ଦେଶ୍ୟ ସାଧିତ ହୋଇଣ
ସତ୍କାର୍ଯ୍ୟରେ ବ୍ୟୟ ହେବ ତେବେ ଦତ୍ତ ଧନ ।
ଆଶ୍ରମର ପରମ୍ପରା ରୀତି ଅନୁସରି
ତୀର୍ଥ ପର୍ଯ୍ୟଟନେ ବାହାରିଲେ ତୋତାପୁରୀ ।
ଏକାନ୍ତରେ ବାସକରି ନର୍ମଦା ତଟରେ
ଚାଳିଶ ବରଷ ନିମଜ୍ଜିଲେ ସାଧନରେ ।
ଅନ୍ତିମେ ଲଭିଣ ନିର୍ବିକଳପ ସମାଧି
ନିର୍ଗୁଣ ପରମବ୍ରହ୍ମ କଲେ ଉପଲବ୍ଧି ।
ଅତଃପର ଜାତ ହେଲା ବାସନା ପ୍ରବଳ
ତୀର୍ଥ ପର୍ଯ୍ୟଟନେ କଟାଇବେ ଶେଷ କାଳ ।
ପଦବ୍ରଜେ ପରିଭ୍ରମି ତେଣୁ ନାନା ସ୍ଥାନ
ଅବଶେଷେ ବଙ୍ଗଦେଶେ କଲେ ପଦାର୍ପଣ ।
ଗଙ୍ଗାସାଗର ପବିତ୍ର ଜଳେ ସ୍ନାନ କରି
ଶ୍ରୀକ୍ଷେତ୍ରେ ଦେଖିବେ ଯାଇ ଦାରୁବ୍ରହ୍ମ ହରି ।
ଏମନ୍ତ କାମନା ତାଙ୍କ ହୃଦ ମଧ୍ୟେ ପୋଷି
ଏକାଳେ ଦକ୍ଷିଣେଶ୍ୱରେ ପ୍ରବେଶିଲେ ଆସି ।
ମନ୍ଦିରର ବନ୍ଧା ଘାଟ ଭାଗୀରଥୀ ତୀରେ
ଦେବଭାବେ ମଗ୍ନ ଥିଲେ ଯହିଁ ସମାଧିରେ ।
ସେ ସମୟେ ତୋତାପୁରୀ ହୋଇ ଉପସ୍ଥିତ
ଦର୍ଶନ ମାତ୍ରକେ ରୂପ ହେଲେ ବିମୋହିତ ।
କିଏ ଏ ଯୁବକ ତପୋଦୀପ୍ତ କଳେବର
ଭାବର ଉଜ୍ଜ୍ୱଳ ଛଟା ବଦନେ ବିସ୍ତାର ।
ଏ ନୁହନ୍ତି କେତେବେଳେ ସାମାନ୍ୟ ପୁରୁଷ
ମର୍ତ୍ତ୍ୟରେ ବିରଳ ନର ଏହାଙ୍କ ସଦୃଶ ।
ସାଧନାର ଉପଯୁକ୍ତ ପାତ୍ର ତାଙ୍କୁ ଜାଣି
ବିନୟେ ପୁଚ୍ଛିଲେ ତୋତା କୌତୂହଳେ ବାଣୀ ।
"ଉତ୍ତମ ଆଧାର ତୁମ୍ଭେ ପୁରୁଷ ପୁଙ୍ଗବ
ବେଦାନ୍ତ ସାଧନେ ଯଦି ଅଭିଳାଷ ତବ ।
ସେ ମାର୍ଗରେ ତୁମ୍ଭଙ୍କୁ ମୁଁ ଦୀକ୍ଷିତ କରାଇ
ଅନ୍ୟସ୍ଥାନେ ଚାଲିଯିବି ଦିନତ୍ରୟ ଥାଇଁ ।"
ଯତିଙ୍କର ପ୍ରଶ୍ନ ଶୁଣି ଚନ୍ଦ୍ରାଙ୍କ ନନ୍ଦନ
ଉତ୍ତରେ ସରଳ ଭାବେ କଲେ ନିବେଦନ ।
"ମୋ ଇଚ୍ଛାରେ କରେ ନାହିଁ କଉଣସି କଥା
କାର୍ଯ୍ୟ ଆଚରଇ ମାତା ଆଦେଶନ୍ତି ଯଥା ।

ମୋ ପ୍ରତି ସେ ଜନନୀଙ୍କ ହୋଇଲେ ଆଦେଶ
ଦୀକ୍ଷା ନେବାକୁ ନୋହିବ ମୋର ଦ୍ୱିଧା ଲେଶ ।”
ପ୍ରତ୍ୟୁତ୍ତରେ ଯୋଗୀବର କହିଲେ ତାହାଙ୍କୁ
“ଯାଅ ତେବେ ପୃଚ୍ଛି ଆସ ତୁମ୍ଭର ମାତାଙ୍କୁ ।”
ମନ୍ଦିରେ ପ୍ରବେଶି ତହୁଁ ପ୍ରଭୁ ଶ୍ରୀ ଠାକୁରେ
ସବୁ କଥା ନିବେଦିଲେ ଦେବୀଙ୍କ ପଦ୍ମରେ ।
ପ୍ରସନ୍ନା ହୋଇଣ ତହୁଁ ଜଗତ ଜନନୀ
ଆଦେଶ ପ୍ରଦାନ କଲେ କହି ଶୂନ୍ୟେ ବାଣୀ ।
“ଯାଅ ବତ୍ସ ! ସନ୍ନ୍ୟାସୀଙ୍କ ପାଶୁ ଦୀକ୍ଷା ଘେନ
ତୁମ୍ଭ ନିମିତ୍ତ ଏ ସ୍ଥାନେ ତାଙ୍କ ଆଗମନ ।”
ହର୍ଷୋତ୍ଫୁଲ୍ଲ ବଦନରେ ପ୍ରଭୁ ପରମେଶ
ଖରତରେ ପ୍ରବେଶିଣ ଯୋଗୀବର ପାଶ,
ଦେବୀ ଭଗବତୀ ଯାହା ତାଙ୍କୁ ଆଦେଶିଲେ
ନିବେଦିଲେ ସେ କଥା ସେ କ୍ଷୁଦ୍ର ଶିଶୁ ତୁଲେ ।
ଯେ ପାଷାଣ ମୂର୍ତ୍ତି ମନ୍ଦିରରେ ବିରାଜନ୍ତି
ମାତା ବୋଲି ଦେବରାୟ ତାଙ୍କୁ ସମ୍ବୋଧନ୍ତି ।
ଏପରି ସରଳ ଭାବ ଦେଖି ଦେବଙ୍କର
ଅତ୍ୟନ୍ତ ବିମୁଗ୍ଧ ହେଲେ ତୋତା ଯତିବର ।
ନିରାକାରବାଦୀ ଯୋଗୀ ଭାଳିଲେ ଅନ୍ତରେ
ନିମଗନ ’ଛନ୍ତି ଏହି ଅତି କୁସଂସ୍କାରେ ।
ଯେ ବ୍ରହ୍ମ ଅଟନ୍ତି ନିରାକାର ନିରଞ୍ଜନ
ମାନସର ଭ୍ରମ ତାଙ୍କୁ ସାକାରେ ଭଜନ ।
ଏମନ୍ତ ଭାଳିଣ ତୋତା ବ୍ୟଙ୍ଗେ ମୃଦୁହାସେ
ଅନ୍ତରେ ରଖିଲେ ଗୁପି ଭାବ ଏତାଦୃଶେ ।
ମନେ ମନେ ବିଚାରିଣ କରିଲେ ଯେ ସ୍ଥିର
ଦୀକ୍ଷାନେଲେ ଦୂର ହେବ ଏହି କୁସଂସ୍କାର ।
ଏସନ ସିଦ୍ଧାନ୍ତେ ତୋତା ହୋଇ ଉପନୀତ
ପ୍ରଭୁଙ୍କୁ ବୋଇଲେ “ତେବେ ହୁଅ ହେ ପ୍ରସ୍ତୁତ ।
ଶିଖା ଉପବୀତ ଆଦି କରି ବର୍ଜ୍ଜନ
ଉଦ୍ୟୋଗୀ ହୁଅ ସନ୍ନ୍ୟାସ ଗ୍ରହଣ କାରଣ ।”
ଆଦେଶ ଶୁଣିଣ ପ୍ରଭୁ କହିଲେ ଉତ୍ତରେ
“ଗର୍ଭ-ଧାରିଣୀ ଜନନୀ ’ଛନ୍ତି ମୋ ପାଶରେ ।
ସନ୍ନ୍ୟାସ ଗ୍ରହଣ କଥା କଲେ ସେ ଶ୍ରବଣ
ତାଙ୍କ ପ୍ରାଣେ ବ୍ୟଥା ହେବ ବଜ୍ରାଘାତ ସମ ।
ଏ ବୃଦ୍ଧ ବୟସେ ଶୋକସନ୍ତପ୍ତ ହୃଦୟେ
ତାଙ୍କୁ କଷ୍ଟ ଦେଲେ ପାପ ଅର୍ଜ୍ଜିବି ନିଶ୍ଚୟେ ।
ଏଥିପାଇଁ ପ୍ରକାଶ୍ୟରେ ସନ୍ନ୍ୟାସ ଗ୍ରହଣ
କରିବା ନିମିତ୍ତ ମୋର ବଳୁନାହିଁ ମନ ।”
ପ୍ରଭୁଙ୍କର ମନୋଭାବ ଯତିବର ଜାଣି
ଗୋପନେ ସନ୍ନ୍ୟାସଦାନେ ରାଜିହେଲେ ପୁଣି ।
ସନ୍ନ୍ୟାସ ଗ୍ରହଣ ବାର୍ତ୍ତା ପାଇ ଯୋଗେଶ୍ୱରୀ
ନିବାରିଲେ ତାଙ୍କୁ ନାନା ତର୍କ ଯୁକ୍ତି କରି ।
“ବୈଦିକ ସାଧନେ ବତ୍ସ ! କେଉଁ ପ୍ରୟୋଜନ
ତହିଁରେ କପାଇଁ ତୁମ୍ଭେ ବଳାଉଛ ମନ ।
ଏ ପଥେ ଗମନ ପାଇଁ କର ନାହିଁ ଆଶ
ଏ ସାଧନ ମାର୍ଗ ଅଟେ ଅତ୍ୟନ୍ତ ନୀରସ ।
ସଦାବେଳେ ଯୋଗୀ ପାଶେ ଯାତାୟାତ କଲେ
ଭାବ-ଭକ୍ତି-ପ୍ରେମ ନାଶ ପାଇବ ସମୂଳେ ।”
ଏ ଭାବେ କହିଲେ ବିପ୍ରା ଯେତେ ପରକାର
ଶ୍ରବଣ ନ କଲେ ତାହା ପ୍ରଭୁ ଗଦାଧର ।
ଦୀକ୍ଷା ପାଇଁ ଶୁଭଦିନ ହେଲା ନିର୍ଦ୍ଧାରିତ
ପଞ୍ଚବଟୀ ମୂଳେ ତାର ସ୍ଥାନ ସ୍ଥିରୀକୃତ ।
ଯେ ସମସ୍ତ ଦ୍ରବ୍ୟ ଲୋଡ଼ା କାର୍ଯ୍ୟ ସମ୍ପାଦନେ
ସେ ସବୁ ଯୋଗାଡ଼ କଲେ ଶ୍ରୀଦେବ ଆପଣେ ।
ମଙ୍ଗଳ ମୁହୂର୍ତ୍ତେ ଗୁରୁ ଶିଷ୍ୟଙ୍କୁ ଧରିଣ
ଉପସ୍ଥିତ ହେଲେ ଧୀରେ ଦେବୀ ସନ୍ନିଧାନ ।
ଏକାଗ୍ର ଚିତ୍ତରେ ପ୍ରଭୁ କରୁଣାସାଗର
ଶୁଭକର୍ମ ଆରମ୍ଭିଲେ ବିଧି ସହକାର ।
ଅଗ୍ରେ ପିତୃ ପୁରୁଷଙ୍କ ତୃପତି କାରଣ
ପିଣ୍ଡଦାନ ଆଦେଶିଲେ ଗୁରୁ ମହାଜନ ।
ତଦନ୍ତେ ଆପଣା ଆତ୍ମା କୁଶଳ ନିମିତ୍ତେ
ଆପଣାକୁ ପ୍ରେତପିଣ୍ଡ ଦେଲେ ବିଧିମତେ ।
ଏମନ୍ତେ ସମାପ୍ତ ହେଲେ ଶ୍ରାଦ୍ଧକ୍ରିୟା କର୍ମ
ରହିଲେ ସଂଯତ ଭାବେ ପ୍ରଭୁ ଗୁଣଧାମ ।
ରାତିଶେଷେ ଶୁଭ ବ୍ରାହ୍ମ ମୁହୂର୍ତ୍ତ ଉଦୟେ
ପୁନଃ ସମାଗତ ତହିଁ ଗୁରୁ ଶିଷ୍ୟ ଦ୍ୱୟେ ।
ଯଥାବିଧି ପୂଜା ଆଦି ହେଲେ ସମାପନ
ହୋମ ପାଇଁ ପ୍ରଜ୍ୱଳିତ ପୂତ ହୁତାଶନ ।
ବହୁ ଯୁଗ ପରେ ଆଜ ପ୍ରାଣୀ ହିତପାଇଁ
ତ୍ୟାଗ ବ୍ରତ ଆଚରନ୍ତି ଜଗତ ଗୋସାଇଁ ।
ଦର୍ଶନ ନିମନ୍ତେ ଦେବଦେବୀ ଅଗଣନ
କୌତୂହଳେ ପଞ୍ଚବଟୀ ମୂଳେ ଆଗମନ ।

ହୋମାଗ୍ନିର ପୂତ-ମନ୍ତ୍ର ଗମ୍ଭୀର ନିଃସ୍ୱନେ
ଧରାଧାମ ମୁଖରିତ ଦେଖ ହେ କେସନେ ।
କଳନାଦିନୀ ଗଙ୍ଗା ତା ବକ୍ଷ ଫୁଲାଇ
ପ୍ରାଚୀନ ଋଷିଙ୍କ ଗୀତ ଶ୍ରବଣେ ନାଚଇ ।
ବହୁକାଳ ପରେ ଆଜ ତାର ପୁଣ୍ୟ ତୀରେ
ରଚିତ ବୈଦିକ ହୋମ ସ୍ୱାମୀଙ୍କ ହାତରେ ।
କେମନ୍ତେ ସେ ପୂତ ହୋମ ହେଲା ସମ୍ପାଦନ
ସଂକ୍ଷେପରେ ଶୁଣ ମନ ! ତାର ବିବରଣ ।
ଗୁରୁଙ୍କ ଆସନେ ତୋତା ହୋଇ ପ୍ରତିଷ୍ଠିତ
ଧୀର ସ୍ୱରେ ମନ୍ତ୍ରପାଠେ ହୋଇଲେ ପ୍ରବୃତ୍ତ ।
ଏକ ଚିତ୍ତେ ଦେବରାୟ ତାଙ୍କ ଅନୁସରି
ହୋମରେ ଆହୁତି ଦେଲେ ମନ୍ତ୍ରପାଠ କରି ।
ପ୍ରଥମେ ପରମବ୍ରହ୍ମ ଚିତ୍ତେ କରି ଧ୍ୟାନ
ଶ୍ରୀ ଠାକୁରେ ଯେଉଁ ମନ୍ତ୍ର କଲେ ଉଚ୍ଚାରଣ ।
ତାର ସାରମର୍ମ ଏଠି ଗାଇବି କିଞ୍ଚିତ
ସାବଧାନେ ଶୁଣ ସର୍ବେ ସ୍ଥିର କରି ଚିତ୍ତ ।
"ମୋର କରାୟତ୍ତ ହେଉ ପରଂବ୍ରହ୍ମ ତତ୍ତ୍ୱ
ଦିବ୍ୟ ବ୍ରହ୍ମ ବସ୍ତୁ ମୋଠି ହେଉ ଉଦ୍ଭାସିତ ।
ହେ ପରମାତ୍ମନ୍ ଶୁଦ୍ଧ ବ୍ରହ୍ମ ସନାତନ !
ଦେବ, ନର ଆଦି ଯେତେ ତୁମ୍ଭର ସନ୍ତାନ,
ତାଙ୍କ ମଧ୍ୟେ କୃପାପାତ୍ର ମୁହିଁ ଯେ ଅଟଇ
ବାଳକ ସେବକ ପ୍ରତି କୃପା କର ସାଇଁ !
ହେ ସଂସାର-ଦୁଃଖହର ପ୍ରଭୁ ପରାତ୍ପର
ଯାବତୀୟ ଦ୍ୱୈତ ଭାବ ମୋଠୁଁ କର ଦୂର ।
ହେ ପରମାତ୍ମନ ! ଆଜ ସମ୍ୟକ ଭାବରେ
ମୋ ପ୍ରାଣ ବୃତ୍ତିକୁ ଦେଲି ଆହୁତି ଏଠାରେ ।
ଇନ୍ଦ୍ରିୟଗଣଙ୍କୁ ଦୃଢ଼େ ନିରୁଦ୍ଧ କରିଣ
ହୃଦେକ ଚିତ୍ତ ହୋଇଣ କଲି ଅବସ୍ଥାନ ।
ବାଧାବିଘ୍ନ ମଳିନତା ଯେତେ ଜ୍ଞାନ ଦ୍ୱାରେ
ହେ ଦେବ ! ସେ ସବୁ ମୋଠୁଁ ଘେନିଯାଅ ଦୂରେ ।
ତତ୍ତ୍ୱଜ୍ଞାନ ଚିତ୍ତେ ଯେସନ୍ତେ ହୁଏ ଉଦ୍ଭାସିତ
ଉପାୟ କରନ୍ତୁ ତାର ପ୍ରଭୋ ! ଆଦିନାଥ ।
ବାୟୁ, ସୂର୍ଯ୍ୟ, ନଦ, ନଦୀ ସ୍ନିଗ୍ଧ ମୁକ୍ତ ବାରି
ବନସ୍ପତି, ବ୍ରୀହି, ଯବ, ଶସ୍ୟ ଆଦି କରି ।
ଜଗତେ ଯେତେକ ଦ୍ରବ୍ୟ ତୁମ୍ଭର ଆଦେଶେ
ଅନୁକୂଳେ ବିରାଜିଣ ମର୍ତ୍ତ୍ୟେ ନାନା ଦେଶେ ।
ତତ୍ତ୍ୱଜ୍ଞାନ ଅର୍ଜନେ ସାହାଯ୍ୟ ଦେଇଣ
ଧନ୍ୟ କରନ୍ତୁ ହେ ଦେବ ! ଅଧମ ଜୀବନ ।
ସର୍ବଶକ୍ତିମାନ ପ୍ରଭୋ ବ୍ରହ୍ମ ସନାତନ
ନାନାରୂପେ ଏ ଜଗତେ ଅଛ ବର୍ତ୍ତମାନ ।
ପରିଶୁଦ୍ଧି କରିଣ ମୋ ଏ ଶରୀର ମନ
କ୍ଷମ କରନ୍ତୁ ଅର୍ଜନେ ପରା ତତ୍ତ୍ୱଜ୍ଞାନ ।
ଏ ନିମନ୍ତେ ତୁମ୍ଭଠି ମୁଁ ଦେଉଛି ଆହୁତି
ହେ ଦେବ ପ୍ରସନ୍ନ ହୁଅ ତୁମ୍ଭେ ମୋହ ପ୍ରତି ।"
ଆଦିବ୍ରହ୍ମଙ୍କର ଧ୍ୟାନ କରିଣ ଏମନ୍ତେ
ବିରଜା ହୋମ ଆରମ୍ଭ କଲେ ଏଥିଅନ୍ତେ ।
କ୍ଷିତି, ଅପ, ତେଜ, ବାୟୁ, ବ୍ୟୋମ, ପଞ୍ଚଭୂତ
ମର କଳେବର ମୋର ଯହିଁରୁ ସମ୍ଭୂତ ।
ପୂତ ହୋମାଗ୍ନିରେ ପୂର୍ଣ୍ଣ ଆହୁତି ଫଳରେ
ବିଶୁଦ୍ଧତା ଲଭନ୍ତୁ ସର୍ବତୋଭାବରେ ।
ରଜୋଗୁଣରୁ ଉଦ୍ଭୂତ ଚିତ୍ତ ମଳିନତା
ଆହୁତି ପ୍ରଭାବେ ଦୂର ହୋଇଣ ସର୍ବଥା,
ଯେ ଜ୍ୟୋତିଃ ସ୍ୱରୂପ ମୋର ଲବ୍ଧ ହେଉ ତାହା
—ଇତି ସ୍ୱାହା ।
ପ୍ରାଣ, ଅପାନ, ସମାନ, ଉଦାନ ବ୍ୟାନାଦି
ଯେଉଁ ବାୟୁ ସ୍ଥିତି ମୋଠି ଲଭୁ ପରିଶୁଦ୍ଧି ।
ରଜୋଗୁଣରୁ ଉଦ୍ଭୂତ ଚିତ୍ତ ମଳିନତା
ଆହୁତି ପ୍ରଭାବେ ଦୂର ହୋଇଣ ସର୍ବଥା,
ଯେ ଜ୍ୟୋତିଃ ସ୍ୱରୂପ ମୋର ଲବ୍ଧ ହେଉ ତାହା
—ଇତି ସ୍ୱାହା ।
ଅନ୍ନ ପ୍ରାଣ, ମନ ଆଉ ବିଜ୍ଞାନ, ଆନନ୍ଦ,
ଏମନ୍ତ ଯେ ପଞ୍ଚକୋଷ ହେଉ ପରିଶୁଦ୍ଧ ।
ରଜୋଗୁଣରୁ ଉଦ୍ଭୂତ ଚିତ୍ତ ମଳିନତା
ଆହୁତି ପ୍ରଭାବେ ଦୂର ହୋଇଣ ସର୍ବଥା,
ଯେ ଜ୍ୟୋତିଃ ସ୍ୱରୂପ ମୋର ଲବ୍ଧ ହେଉ ତାହା
—ଇତି ସ୍ୱାହା ।
ହେ ଅଜ୍ଞାନ ତମୋହାରୀ ଲୋହିତାକ୍ଷ ଦେବ !
ହେ ଅଭୀଷ୍ଟ ପୂର୍ତ୍ତିକାରୀ ମଙ୍ଗଳ ବିଭବ !
ଜାଗ୍ରତ ହୋଇଣ ପ୍ରଭୋ ! ହୃଦାସନେ ମୋର
ଜ୍ଞାନପଥେ ସର୍ବ ବାଧାବିଘ୍ନ ଦୂର କର ।
ଯେତେ ପ୍ରକାରେ ସଂସ୍କାର ଚିତ୍ତେ ମୋର ଅଛି
ସମ୍ପୂର୍ଣ୍ଣ ଭାବରେ ତାହା ପରିଶୁଦ୍ଧ ହୋଇ ।

ଶ୍ରୀଗୁରୁ ମୁଖ-ନିଃସୃତ ଜ୍ଞାନେ ମୋର ଚିତ୍ତ
ହେ ଦେବ ! ସମ୍ୟକ ରୂପେ ହେଉ ଉଦ୍ଭାସିତ ।
ରଜୋଗୁଣରୁ ଉଦ୍ଭୂତ ଚିତ୍ତ ମଳିନତା
ଆହୁତି ପ୍ରଭାବେ ଦୂର ହୋଇଣ ସର୍ବଥା
ଯେ ଜ୍ୟୋତିଃ ସ୍ୱରୂପ ମୋର ଲବ୍ଧ ହେଉ ତାହା
— ଇତି ସ୍ୱାହା ।

ଚିଦାନନ୍ଦ ବ୍ରହ୍ମ ଅଟେ ସ୍ୱରୂପ ମୋହର
ବିଭବେ ସମ୍ପଦେ ନାହିଁ ପ୍ରୟୋଜନ ମୋର ।
ଦାରା, ସୁତ, ଧନ, ମାନ ବିଷୟାଭିଲାଷ
ହୋମରେ ଆହୁତି ଦେଇ କଲି ମୁଁ ବିନାଶ ।
-- ଇତି ସ୍ୱାହା ।

ଏମନ୍ତେ ଆହୁତିଦାନ ହେଲେ ସମାପତ
କରଯୋଡ଼ି ଧ୍ୟାନ କଲେ ପ୍ରଭୁ ଆଦିନାଥ ।
ଭୂରାଦି ସକଳ ଲୋକ ଲାଭ ଆଶା ମୋର
ଏ ମୁହୂର୍ତ୍ତୁଁ ଆଜି ମନୁଁ କଲି ସବୁ ଦୂର ।
ସର୍ବଭୂତେ କରୁଛି ମୁଁ ଅଭୟ ପ୍ରଦାନ
ଏମନ୍ତେ ହୋଇଲା ପୂତ ହୋମ ସମାପନ ।

ଏଥୁଅନ୍ତେ ଶିଖା ସୂତ୍ର ଅଙ୍ଗ ଉପବୀତ
ସକଳ ଆହୁତି ଦେଲେ ହୋମେ ବିଧିମତ ।
ସ୍ନାନକରି ଅତଃପର ପୂତ ଗଙ୍ଗାଜଳେ
ଗୁରୁଦତ୍ତ କଉପୀନ କଷାୟ ପିନ୍ଧିଲେ ।
ଏସନେ ସନ୍ନ୍ୟାସୀ ବେଶେ ପ୍ରଭୁ ବିଶ୍ୱସାଇଁ
ବସିଲେ ଗୁରୁଙ୍କ ପାଶେ ଦୀକ୍ଷା ନେବାପାଇଁ ।

ଦୀକ୍ଷା ଶେଷେ ଗୁରୁଦେବ ହୋଇ ଅତି ତୋଷ
ନାମ ଦେଲେ ଶ୍ରୀରାମକୃଷ୍ଣ ପରମହଂସ ।
ଏଥୁଅନ୍ତେ ତୋତାପୁରୀ ଯୋଗୀଙ୍କ ଅଗ୍ରଣୀ
ପ୍ରଭୁଙ୍କୁ କହିଲେ ନାନା ଉପଦେଶ ବାଣୀ ।
"ନିତ୍ୟ ସତ୍ୟ ଏକମାତ୍ର ବ୍ରହ୍ମ ବସ୍ତୁ ଭବେ
ଦେଶକାଳେ ସୀମାବଦ୍ଧ ନୁହନ୍ତି ସେ କେବେ ।
ସ୍ୱଭାବରେ ନିତ୍ୟ ଶୁଦ୍ଧ ମୁକ୍ତ ସେହି ବ୍ରହ୍ମ
ଚରାଚର ଏ ବ୍ରହ୍ମାଣ୍ଡ ତାଙ୍କଠୁଁ ଜନମ ।
ତାଙ୍କଠି ନାନାଦି ରୂପ ମାୟାରେ ଆରୋପ
ଅଖଣ୍ଡ ଅଟଇ କିନ୍ତୁ ତାଙ୍କର ସ୍ୱରୂପ ।
ସମାଧି ସମୟେ ଯାହା ହୁଅଇ ଦର୍ଶନ
ଦେଶ କାଳ ଗଣ୍ଡି ମଧ୍ୟେ ନୁହେ ତା ବନ୍ଧନ ।

ନାମରୂପ ସୀମା ମଧ୍ୟେ ଯାର ସ୍ଥିତି ଥାଇ
ନିତ୍ୟ ସାର ବସ୍ତୁ ତାହା କଦାପି ନୁହଇ ।
ସେକାରଣେ ଚେଷ୍ଟା କର ତୁମ୍ଭେ ନିରନ୍ତର
କରିବାକୁ ସେ ଅନିତ୍ୟ ବସ୍ତୁ ପରିହାର ।
ମାୟାରୂପୀ ପିଞ୍ଜରାରେ ପ୍ରାଣୀଗଣ ଥାଇ
ଅଖଣ୍ଡ ବ୍ରହ୍ମଙ୍କୁ ଖଣ୍ଡରୂପେ ବିଚାରଇ ।
ସେ ପଞ୍ଜୁରୀ ଛିନ୍ନକରି ଛିନ୍ନ ବନ୍ଧନରେ
ଉଡ଼ିଯାଅ ଆକାଶରେ ପକ୍ଷୀ ଯେ ପ୍ରକାରେ ।
ଅନ୍ତରେ କରିତ ଆତ୍ମତତ୍ତ୍ୱ ଅନ୍ୱେଷଣେ
ନିମଜ୍ଜିତ ହୁଅ ତୁମ୍ଭେ କାୟ ବାକ୍ୟ ମନେ ।
ସମାଧି ସହାୟେ ତହିଁ ହେଲେ ଅବସ୍ଥିତ
ନାମରୂପ ଏ ଜଗତ ହେବ ଅନ୍ତର୍ହିତ ।
ମୁହିଁ ମୋହର ଇତ୍ୟାଦି ଯେତେ କ୍ଷୁଦ୍ର ଜ୍ଞାନ
ବିରାଟ ଜ୍ଞାନରେ ସର୍ବେ ଅନ୍ତିମେ ମିଳନ ।
ଅଖଣ୍ଡ ସଚ୍ଚିଦାନନ୍ଦ ତୁମ୍ଭର ସ୍ୱରୂପ
ଆଦିବ୍ରହ୍ମଙ୍କ ଦର୍ଶନେ ପ୍ରତ୍ୟକ୍ଷ ଏ ରୂପ ।
ଆମ୍ଭେ ତୁମ୍ଭେ ଆଦି ଯେତେ ଭିନ୍ନାଭିନ୍ନ ଭାବ
ଅଜ୍ଞାନରୁ ସେ ସରବ ହୁଅଇ ଉଦ୍ଭବ ।
ଭେଦାଭେଦ ଜ୍ଞାନ ଚିତ୍ତେ ଥିବ ଯେତେଦିନ
ପରମାନନ୍ଦ ନୋହିବ ପ୍ରାପ୍ତି କଦାଚନ ।
ଯେ ଜ୍ଞାନ ରାଜ୍ୟରେ ମନ କଲେ ଅବସ୍ଥିତ
ବ୍ରହ୍ମାଣ୍ଡେ ସମସ୍ତ ବସ୍ତୁ ଏକ ଅନୁଭୂତ ।
ଭୂମା ଜ୍ଞାନ ନାମ ତାର ଶାସ୍ତ୍ରରେ କଥିତ
ଏଠାରେ ପରମାନନ୍ଦ ହୁଏ ଅନୁଭୂତ ।"
ତୋତା ସାଧନ ଭଜନ କରି ଆଜୀବନ
ଉପଲବ୍ଧି କରିଥିଲେ ଯେଉଁ ତତ୍ତ୍ୱମାନ ।
ସେ ସବୁ ପ୍ରଭୁଙ୍କୁ କହି ଉପଦେଶ ଛଳେ
ଅଦ୍ୱୈତ ଭାବରେ ତାଙ୍କ ମନକୁ ସ୍ଥାପିଲେ ।
ଅତଃପର ମାନସକୁ ନିର୍ବିକଳ୍ପ କରି
ଆତ୍ମଧ୍ୟାନେ ମଗ୍ନିବାକୁ ଆଦେଶିଲେ ପୁରୀ ।
ଶ୍ରୀଦେବ ବୋଲନ୍ତି "ମୁହିଁ ଗୁରୁ ଆଜ୍ଞା ମତେ
ନିର୍ବିକଳ୍ପ କରିବାକୁ ଚେଷ୍ଟା କଲି ଯେତେ ।
କୌଣସି ପ୍ରକାରେ ତହିଁ ନୋହିଲି ସକ୍ଷମ
ଏମନ୍ତେ ବିଫଳ ହେଲା ସବୁ ପରିଶ୍ରମ ।
ମନକୁ ଗୋଟାଇ ଆଣି ସର୍ବତୋଭାବରେ
ଆତ୍ମଧ୍ୟାନେ ବସିବାକୁ ଯଦା ଚେଷ୍ଟା କରେଁ ।

ଜଗଦମ୍ବାଙ୍କ ଚିଦ୍‌ଘନ ଉଜ୍ଜ୍ୱଳ ମୂରତି
ଜ୍ୱଳନ୍ତ ଜୀବନ୍ତ ଭାବେ ଚିତ୍ତେ ଅନୁଭୂତ ।
ବାରମ୍ବାର ଚେଷ୍ଟା କଲି ସାଧମତେ ଯେତେ
ସିଦ୍ଧି ଲଭି ନ ପାରିଲି କହୁଣସିମତେ ।
ହତୋତ୍ସାହ ହୋଇ ଶେଷେ କହିଲି ତୋତାଙ୍କୁ
ନିର୍ବିକଳ୍ପ କରି ନ ପାରିଲି ମୋ ମନକୁ ।"
ଏସନ ନୈରାଶ୍ୟ ବାଣୀ ଶୁଣିଣ ମୋହର
ଉତ୍ତେଜିତ ହୋଇ ଯତି କଲେ ତିରସ୍କାର ।
"କି ଆଶ୍ଚର୍ଯ୍ୟ କଥା ତୁମ୍ଭେ କହୁଅଛ ମୋତେ
ଦେଖିବି କିପରି ମନ ନ ଆସେ ଆୟତ୍ତେ ।"
ଏମନ୍ତ ଭାଷିଣ ତୋତା ତେଜିଲେ ଆସନ
ଭଙ୍ଗା କାଚ ଖଣ୍ଡେ କାହୁଁ ଆଣିଲେ ଖୋଜିଣ ।
କାଚର ସୂତୀକ୍ଷ୍ଣ ଅଗ୍ରଭାଗ ସାହାଯ୍ୟରେ
ଖୋଦିଲେ ଗୋଟିଏ ବିନ୍ଦୁ ଭ୍ରୂଯୁଗ ମଧ୍ୟରେ ।
ଅତଃପର ଆଦେଶିଲେ "ଏ କ୍ଷୁଦ୍ର ବିନ୍ଦୁଟି
ମନକୁ ଏକାଗ୍ର କର ଗୋଟାଇ ଏକାଠି ।"
ଗୁରୁଙ୍କ ଆଦେଶ ମୂର୍ଦ୍ଧ୍ନି ଶିରୋଧାର୍ଯ୍ୟ କରି
ଧ୍ୟାନରେ ବସିଲି ପୁନଃ ଚିତ୍ତେ ଆଶା ଧରି ।
ପୂର୍ବ ପ୍ରାପ୍ତ ଦେବୀଙ୍କର ସମୁଜ୍ଜ୍ୱଳ ମୂର୍ତ୍ତି
ମାନସ ଆକାଶେ ହେଲା ଉଦୟ ଯେମନ୍ତି ।
ଜ୍ଞାନ ଅସି କଳପନା କରି ମନେ ମନେ
ବେନିଖଣ୍ଡ କଲି ସେହି ମୂର୍ତ୍ତିକୁ ତକ୍ଷଣେ ।
ଏମନ୍ତେ ହେଲାରୁ ମନ ବିକଳ୍ପବିହୀନ
ନାମରାଜ୍ୟ ତେଜି ଉର୍ଦ୍ଧ୍ୱେ ଗମିଲା ବହନ ।"
ତଦନ୍ତେ ଶ୍ରୀ ଦେବରାୟ ବ୍ରହ୍ମାଣ୍ଡ ଠାକୁର
ନିର୍ବିକଳ୍ପ ସମାଧିରେ ମଗ୍ନ ଗାଢ଼ତର ।
ସମାଧିସ୍ଥ ଦେଖି ତାଙ୍କୁ ଯତି ତୋତାପୁରୀ
ବହୁକ୍ଷଣ ନିବସିଲେ ସମୀପେ ତାଙ୍କରି ।
ସମାଧି ଭଗ୍ନ ନୋହିବା ଦର୍ଶନ କରିଣ
କାଳେ କେ କରିବ ଯଦି ବିଘ୍ନ ଉତ୍ପାଦନ,
ଏହି ଶଙ୍କାରେ ସାଧନ କୁଟୀରର ଦ୍ୱାରେ
କୋଳପ ଲଗାଇ ଦେଇ ବସିଲେ ଅଦୂରେ ।
ଦିବା ଅବସାନ ହୋଇ ରାତି ସମାଗତ ।
ରାତି ଯାଇ ପୁନଃ ଦିବା ହେଲା ଉପଗତ ।
ତଥାପି ନୋହିଲା ତାଙ୍କ ସମାଧି ଭଗନ
ଏମନ୍ତେ ଅତୀତ ତିନି ରାତି ତିନି ଦିନ ।

ପ୍ରଭୁ ନ ଡାକିଲେ ଦ୍ୱାର ଖୋଲିବା ନିମିତ୍ତ
ଏହା ଦେଖି ଯତିବର ଅତୀବ ବିସ୍ମିତ ।
କୌତୂହଳାକ୍ରାନ୍ତ ହୋଇ ଶେଷେ ଯୋଗୀବର
ବ୍ୟାପାର ଜାଣିବା ପାଇଁ ଖୋଲିଦେଲେ ଦ୍ୱାର ।
କୁଟୀର ଭିତରେ ପଶି କଲେକ ଦର୍ଶନ
ଗମ୍ଭୀର ସମାଧି ଜଳେ ପ୍ରଭୁ ନିମଗନ ।
ଯେ ଭାବେ ବସାଇ ଥିଲେ ସେହିଭାବେ'ଛନ୍ତି
ପ୍ରାଣର ବିକାଶ କିଛି ଦେଖି ନ ପାରନ୍ତି ।
ପ୍ରଶାନ୍ତ ଗମ୍ଭୀର ଦିଶେ ଶ୍ରୀମୁଖମଣ୍ଡଳ
ତହିଁ ବିନିର୍ଗତ ଜ୍ୟୋତିଃ ଅତ୍ୟନ୍ତ ଉଜ୍ଜ୍ୱଳ ।
ଲେଶମାତ୍ର ବାହ୍ୟଜ୍ଞାନ ଚିତ୍ତେ ଦେଖା ନାହିଁ
କାଷ୍ଠାଟି ଯେସନ ପ୍ରାଣବିହୀନ ଅଟଇ ।
ନିବାତ ନିଷ୍କମ୍ପ ଦୀପ ପ୍ରାୟ ତାଙ୍କ ମନ
ଅବସ୍ଥିତ କରୁଅଛି ବ୍ରହ୍ମେ ହୋଇ ଲୀନ ।
ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହେଲେ ଯତିବର
ସତ୍ୟ କି ଅଲୀକ ଏହା ଭାଳନ୍ତି ମନର ।
ଚାଳିଶ ବରଷ ବ୍ୟାପୀ କଠୋର ସାଧନେ
ଉପଲବ୍ଧି କଲି ଯାହା ମୋହର ଜୀବନେ ।
ସେ ସାଧନ ଏ ଯୁବକ ଦିନେ ମାତ୍ର କରି
ତାହାକୁ ଆୟତ୍ତ କଲେ ସହଜେ କିପରି ।
ଏସନ ଚିନ୍ତିଣ ତୋତା ହେଲେ ସନ୍ଦିହାନ
ପୁନଶ୍ଚ ପୁଙ୍ଖାନୁପୁଙ୍ଖ କଲେ ନିରୀକ୍ଷଣ ।
ଅଙ୍ଗେ ପ୍ରକାଶିତ ଯେଉଁ ଲକ୍ଷଣନିଚୟ
ତନ୍ନ ତନ୍ନ ନିରେଖିଲେ ଯୋଗୀ ମହୋଦୟ ।
ପ୍ରଥମେ ପରୀକ୍ଷା କଲେ ହୃଦୟ ସ୍ପନ୍ଦନ
ପରେ ନାସିକାରେ ବାୟୁ ଗମନାଗମନ ।
କାଷ୍ଠସମ ଧୀରସ୍ଥିର ଅଟଇ ଶରୀର
କରଦେଇ ସ୍ପର୍ଶକଲେ ତାକୁ ବାରମ୍ବାର ।
ତଥାପି ନୋହିଲା କିଛି ବିକାର ଦର୍ଶନ
କିମ୍ବା କଳେବରେ ଦୃଷ୍ଟ ଚେତନାର ଲକ୍ଷଣ ।
ଅତ୍ୟନ୍ତ ବିସ୍ମୟାନନ୍ଦେ ଅଭିଭୂତ ହୋଇ
ଆପଣାକୁ ଆପେ ତୋତା ପ୍ରକାଶ୍ୟେ ବୋଲଇ,
କି ହେଲା ଏ ଦୈବୀମାୟା ନ ପାରଇ ବୁଝି
ପ୍ରକୃତ କି ସମାଧିରେ ରହିଛନ୍ତି ମଜ୍ଜି ।
ବେଦାନ୍ତ କଥିତ ଜ୍ଞାନ ମାର୍ଗର ଯା ଲକ୍ଷ୍ୟ
ସେ ନିର୍ବିକଳ୍ପ ସମାଧି ଦିନକେ ପ୍ରତ୍ୟକ୍ଷ ।

ଦେବତାଙ୍କ ମାୟା କିବା ଅଟଇ ଅଦ୍ଭୁତ
ଭେଦିବାକୁ ଏ ରହସ୍ୟ ବୁଦ୍ଧି ପରାଭୂତ ।
ଧନ୍ୟ ଧନ୍ୟ ଯୋଗୀବର ଧନ୍ୟ ତୁମ୍ଭେ ଭବେ
କେ ତୁମ୍ଭର ଶିଷ୍ୟ ଅଛେ ଭାବ ଦେଖ ଏବେ ।
ଯୋଗେଶ ମହେଶ ଯାଙ୍କ ଅନ୍ତକୁ ନ ପାନ୍ତି
ତାଙ୍କ ଅନ୍ତ ପାଇବାକୁ ତୁମ୍ଭର କି ଶକ୍ତି ।
ଅନାଦି କାରଣ ବିଭୁ ପ୍ରାଣୀ ହିତ ପାଇଁ
ଛଦ୍ମ ବେଶେ ଆସି ତବ ଶିଷ୍ୟତ୍ୱ ବୋଲାଇ ।
ମାୟା ଜାଲେ ବେନି ନେତ୍ର ଏମନ୍ତ ଆଚ୍ଛନ୍ନ
ଭ୍ରମ ହୁଏ ସ୍ୱୟଂ ବ୍ରହ୍ମ ସମୀପେ ଆଇଣ ।
ତତ୍ପର ହୋଇଲେ ଗୁରୁଦେବ ଅତଃପର
ସହଜାବସ୍ଥା ଆସିବ ଉପରି ଶିଷ୍ୟର ।
ସମାଧିରେ ବହୁଦିନ କଲେ ଅବସ୍ଥିତ
ଶଙ୍କା ଥାଏ ମରଣାନ୍ତ ନାଶର ବିପତ୍ତି ।
ହରିଓମ୍ ହରିଓମ୍ ମନ୍ତ୍ର ଉଚ୍ଚାରଣ
ପ୍ରକ୍ରିୟା ଆରମ୍ଭ କଲେ ତୋତା ତତକ୍ଷଣ ।
ଏମନ୍ତେ ଶ୍ରୀ ପ୍ରଭୁଦେବ ଜଗତଗୋସାଇଁ
ସମାଧିରୁ କ୍ରମେ କ୍ରମେ ଆସିଲେ ଓହ୍ଲାଇ ।
ଶିଷ୍ୟର ଅଦ୍ଭୁତ ଶକ୍ତି ନିରୀକ୍ଷଣ କରି
ତହିଁରେ ମୋହିତ ହେଲେ ଯତି ତୋତାପୁରୀ ।
ପରସ୍ପରେ ପ୍ରେମ ଡୋରେ ଆବଦ୍ଧ ଏମନ୍ତ
ବେଦାନ୍ତ ଚର୍ଚ୍ଚାରେ କାଳ କାଟିଲେ ନିରତ ।
ଲଙ୍ଗୁଳି ବାବାଜୀ ପ୍ରାୟେ ତୋତା ମହାମୁନି
ନିବସନ୍ତି ପଞ୍ଚବଟୀ ତଳେ ଜାଳି ଧୂନି ।
ସମ୍ପତ୍ତି କେବଳ ମାତ୍ର ଖଣ୍ଡିଏ ଚିମୁଟା
ବସିବାକୁ ମୃଗଛାଲ, ପାନ ପାତ୍ର ଲୋଟା ।
ନିଶୀଥରେ ଯେତେବେଳେ ଶୂନ୍ୟ ଚରାଚର
ଅଧିକ ଜାଳନ୍ତି ଧୂନି ସାଧୁ ମହାଭାଗ ।
ଅଚଳ ସୁମେରୁ ତୁଲେ ତା ସମ୍ମୁଖେ ବସି
ଧ୍ୟାନେ ନିତ୍ୟ ନିମଗନ ହୁଅନ୍ତି ତପସ୍ୱୀ ।
ଏଭଳି ଦେଖିଣ ତାଙ୍କୁ ପ୍ରଭୁ ବିଶ୍ୱସାଇଁ
ପଚାରିଲେ ଦିନକରେ କୌତୂହଳୀ ହୋଇ ।
"ଯୋଗେ ସିଦ୍ଧ ହୋଇ ବ୍ରହ୍ମ କରିଲ ଦର୍ଶନ
ନିତ୍ୟ ନିତ୍ୟ ଧ୍ୟାନକର ତେବେ କି କାରଣ ?"
ଧୀରେ ଧୀରେ ତୋତାପୁରୀ କହିଲେ ଉତ୍ତରେ
ଅଙ୍ଗୁଳି ନିର୍ଦ୍ଦେଶ କରି ଜଳପାତ୍ରଟିରେ ।
"ପିତ୍ତଳର ଥାଳ କେଡ଼େ ଉଜ୍ଜ୍ୱଳ ଦିଶଇ
ନ ମାଜିଲେ ଦିନେ କିନ୍ତୁ କଳଙ୍କି ଧରଇ ।
ତେମନ୍ତ ଜାଣିବ ବତ୍ସ ! ମାନବର ମନ
ଧ୍ୟାନାଭ୍ୟାସ ନ କରିଲେ ହୋଇବ ମଳିନ ।"
ସୂକ୍ଷ୍ମଦୃଷ୍ଟି ସୁଧୀମାନ୍ ପ୍ରଭୁ ଭାବଗ୍ରାହୀ
ଉତ୍ତରେ କହିଲେ ତହୁଁ ଶ୍ରୀଗୁରୁଙ୍କୁ ଗୃହିଁ ।
"ଥାଳଟି ହୁଅଇ ଯଦି ସୁବର୍ଣ୍ଣେ ନିର୍ମିତ
ମଇଳା ନୋହିବ କେବେଁ ନ ମାଜିଲେ ନିତ୍ୟ ।"
ଶିଷ୍ୟଙ୍କ ବଚନ ଶୁଣି ସହାସ୍ୟ ବଦନେ
ସନ୍ନ୍ୟାସୀ ବୋଇଲେ ତବ କଥା ସତ୍ୟ ମଣେ ।
ଏମନ୍ତେ ସେ ଗୁରୁଶିଷ୍ୟ ମଧ୍ୟେ ପ୍ରତିଦିନ
କଥାଛଳେ ଉପଦେଶ ଆଦାନ ପ୍ରଦାନ ।
ଦିନକରେ ତୋତାପୁରୀ ଗମ୍ଭୀର ନିଶୀଥେ
ଯେମନ୍ତ ବସିଲେ ଧ୍ୟାନେ ଏକାଗ୍ର ଚିତ୍ତେ ।
ବିନା ବାୟୁ ପ୍ରବାହରେ ସହସା ତକ୍ଷଣ
ଆନ୍ଦୋଳିତ ହେଲା ପଞ୍ଚବଟୀ ବୃକ୍ଷମାନ ।
ସେଥିରୁ ଓହ୍ଲାଇ ଏକ ଦୀର୍ଘାକାର ପ୍ରାଣୀ
ଦର୍ଶନେ ମାନବାକୃତି ଯେହ୍ନେ ଅନୁମାନି ।
ଧୀରେ ଧୀରେ ଅଗ୍ରସର ହୋଇ ସେ ପୁରୁଷ
ତୋତାଙ୍କ ଅଗତେ ନିବସିଲା ଧୂନି ପାଶ ।
ନିଜ ରୂପେ ସେ ପୁରୁଷ ଅଟେ ଦିଗମ୍ବର
ବିସ୍ମୟେ ପୁଚ୍ଛିଲେ ତହୁଁ ତାକୁ ଯତିବର ।
"କିଏ ତୁମ୍ଭେ, କି ନିମନ୍ତେ ଆସିଲ ଏଠାରେ"
ଅଦ୍ଭୁତ ପୁରୁଷ ତହୁଁ କହିଲେ ଉତ୍ତରେ ।
"ଦେବଦୂତ ଭଇରବ ଅଟଇ ଯେ ମୁହିଁ
ବୃକ୍ଷେ ନିବସଇ ଏହି ସ୍ଥାନ ରକ୍ଷା ପାଇଁ ।"
ନିର୍ଭୟେ କହିଲେ ତୋତା ତାହାଙ୍କୁ ବଚନ
"ମୋହର ସୌଭାଗ୍ୟ ଆଜ ଲଭିଲି ଦର୍ଶନ ।
ତୁମ୍ଭେ ଆମ୍ଭେ ଏହି ବେନି ପ୍ରାଣୀଙ୍କ ମଧ୍ୟରେ
ପାରଥକ୍ୟ ଦେଖୁ ନାହିଁ ଅଣୁ ପ୍ରମାଣରେ ।
ଯେଉଁ ବ୍ରହ୍ମଙ୍କ ସ୍ୱରୂପ ତୁମ୍ଭଠି ପ୍ରକାଶ
ମୁଁ ମଧ୍ୟ ଅଟଇ ସେହି ବ୍ରହ୍ମଙ୍କର ଅଂଶ ।
ଆସ ଆମ୍ଭେ ବେନି ଭାଇ ବସି ଏକତ୍ରରେ
ନିମଜ୍ଜିବା ବିଭୁ ଧ୍ୟାନେ ଆଜ ଏ ସ୍ଥାନରେ ।"
ଅଦ୍ଭୁତ ପୁରୁଷ ତହୁଁ ମନ୍ଦ ମନ୍ଦ ହସି
ନିମିଷ ମଧ୍ୟରେ ବାୟୁ ସଙ୍ଗେ ଗଲା ମିଶି ।

ଏଥିରେ କହୁଛେ ତୋତା ନୋହୁ ବିଚଳିତ
ପୂର୍ବ ପ୍ରାୟେ ପୁଣି ଧ୍ୟାନେ ହେଲେ ନିମଜ୍ଜିତ ।
ପରଦିନ ପ୍ରାତଃକାଳେ ପ୍ରଭୁଙ୍କ ଅଗ୍ରତେ
ଫେଡ଼ିଲେ ସମସ୍ତ କଥା ତୋତା ବିସ୍ତାରତେ ।
ଶ୍ରୀଗୁରୁଙ୍କ ମୁଖୁଁ ଶୁଣି ସକଳ ବିଷୟ
ଘଟଣାଟି ସତ୍ୟ ବୋଇଲେକ ଦେବରାୟ ।
ବହୁଦିନୁ ନିବସଇ ଏଠି ସେ ଭୈରବ
ଅବଗତ ମୁହିଁ ତାର କ୍ଷମତା ପ୍ରଭାବ ।
ଏଥି ପୂର୍ବେ କେତେବାର ଦେଖାଦେଇ ମୋତେ
କହୁଅଛୁ ଭବିଷ୍ୟତ ବିଷୟ ଯେ କେତେ ।
ଦୃଷ୍ଟାନ୍ତ ସ୍ୱରୂପ ଶୁଣ ଗୋଟିଏ ଘଟଣା
କେମନ୍ତ ଭବିଷ୍ୟ ବାଣୀ କହେ ଉଚ୍ଚମନା ।
"ପଞ୍ଚବଟୀ ସନ୍ନିକଟେ ସରକାରୀ ଘର
ଯହିଁ ବହୁ ସୈନ୍ୟଙ୍କର ଆବାସ ମନ୍ଦିର ।
ଗୋଲା ଗୁଳି ଆଦି ଯେତେ ଯୁଦ୍ଧ ସରଞ୍ଜାମ
ତା ନିମନ୍ତେ ଆଉ ଗୃହ ହେଲା ପ୍ରୟୋଜନ ।
ମନ୍ଦିରର ଯେଉଁ ଅଂଶେ ପଞ୍ଚବଟୀ ଥାଇ
ରାଜ ଆଜ୍ଞା ହେଲା ସେହି ଯାଗା ନେବା ପାଇଁ ।
ଏ ବାରତା ପାଇ ମୁହିଁ ଅତ୍ୟନ୍ତ ଦୁଃଖିତ
ସାଧନ ଭଜନ ସ୍ଥାନୁଁ ହୋଇବି ବଞ୍ଚିତ ।
ସଂସାରର କୋଳାହଳ ବରଜିଣ ମୁହିଁ
ରଚିଲି ଏ ପଞ୍ଚବଟୀ କେତେ କ୍ଲେଶ ସହି
ନିର୍ଜନେ କରିବି ତହିଁ ଦେବୀଙ୍କର ଧ୍ୟାନ
ମନେ ମନେ କେତେ ଆଶା କରିଛି ପୋଷଣ ।
ଯୋର କରି କାଢ଼ିନେବେ ସରକାର ଯେବେ
ଏପରି ସ୍ଥାନ କି ଆଉ ପାଇବି ମୁଁ କେବେ ।
ରାସମଣିଙ୍କ ଜାମାତା ଭକତ ମଥୁର
ମୋ ଦୁଃଖ ଦେଖିଣ ଅଣ୍ଟା ଭିଡ଼ିଲେ ସତ୍ୱର ।
ସ୍ଥାନଟିକୁ ଯେ ପ୍ରକାର ସର୍କାର ନ ନିଏ
ତା ପାଇଁ ଲଢ଼ିଲେ ସେହୁ ବହୁକାଳଯାଏ ।
ଏ ସମୟେ ଦିନକରେ ପଞ୍ଚବଟୀ ମୂଳେ
ଦେଖିଲି ସେ ଭୈରବକୁ ବସି ବୃକ୍ଷଡାଳେ ।
ମୋର ପ୍ରତି ଆଦେଶିଲା "ଶୁଣ ମୋ ବଚନ
ଜାଗା ପାଇଁ କର ନାହିଁ ଚିନ୍ତା କଦାଚନ ।
ଜାଗା ନେଇ ନ ପାରିବେ କୋମ୍ପାନୀ ସର୍କାର
ମାମଲାରେ ପରାଜୟ ନିଶ୍ଚୟ ତାଙ୍କର ।"
ସତ୍ୟ ସତ୍ୟ ସରକାର ହେଲେ ପରାଜିତ
ଏସନେ ବଚନ ତାର ସତ୍ୟେ ପରିଣତ ।"
ଅଦ୍ୱୈତ ମନ୍ତ୍ରରେ ଅଜ୍ଞ ଯେମନ୍ତ ବ୍ରାହ୍ମଣୀ
ଭକ୍ତିମାର୍ଗେ ତେମନ୍ତ ସେ ଅଜ୍ଞ ତୋତା ମୁନି ।
ଭକ୍ତିର ଚରମେ ଭକ୍ତ ହେଲେ ଉପନୀତ
ଶୁଦ୍ଧାଦ୍ୱୈତଜ୍ଞାନ ତାର ହୁଏ କରଗତ ।
ସାଧନେ ହୁଅଇ ଯାହା ଭଜନ କୀର୍ତ୍ତନ
ଉପେକ୍ଷା ବିଷୟ ନୁହେ ଏହା କଦାଚନ ।
ଏଥିର ମରମ ତୋତା ନ ବୁଝିଣ ଭଲେ
ବିଦ୍ରୂପ କରନ୍ତି ପ୍ରଭୁ ଭଜନାଦି କଲେ ।
ପତି-ପତ୍ନୀ ଅପତ୍ୟ ବା ସଖ୍ୟଭାବାରୋପେ
ବ୍ରହ୍ମାଣ୍ଡ କର୍ତ୍ତାଙ୍କୁ ଯେହୁ ଭକ୍ତିଭାବେ ଜପେ ।
ବିଭୁପ୍ରାପ୍ତି ମାର୍ଗେ ସେହୁ ହୁଏ ଅଗ୍ରସର
ବୁଝି ନ ପାରନ୍ତି ଏହା ତୋତା ଯତିବର ।
ବିରହ ବା ବ୍ୟାକୁଳତା ବିଭୁଙ୍କ ସକାଶେ
ହାସ୍ୟ ନୃତ୍ୟ କ୍ରନ୍ଦନାଦି ଭାବର ଉଚ୍ଛ୍ୱାସେ ।
ଏହାର ଆଶ୍ରୟେ ଭାବ ରାଜ୍ୟେ ଯେ ଗମଇ
ଅବଲମ୍ବେ ତାର ଇଷ୍ଟ ପ୍ରାପତି ହୁଅଇ ।
ଏ ବିଷୟ ତୋତାଙ୍କର କଳ୍ପନା ଅଜ୍ଞାତ
ଭାବୋଚ୍ଛ୍ୱାସ ବାତୁଳତା ତାଙ୍କ ଅଭିମତ ।
ଜ୍ଞାନ ଭକ୍ତ ଯେବେ ଗୁରୁ ଶିଷ୍ୟଙ୍କ ମଧ୍ୟରେ
ବାଦାନୁବାଦ ହୁଅଇ ନିତ୍ୟ ଏ ପ୍ରକାରେ ।
ଲବ୍ଧ ହେଲେହେଁ ନିର୍ବିକଳ୍ପ ସମାଧି
ଭଜନ କୀର୍ତ୍ତନେ ସୁଖ ପାଆନ୍ତି ଗୁଣନିଧି ।
ସନ୍ଧ୍ୟା ସକାଳରେ ନିତ୍ୟ କରତାଳି ଦେଇ
ନୃତ୍ୟଗୀତେ ଉନମତ୍ତ ଥାନ୍ତି ବିଶ୍ୱସାଇଁ ।
ତୋତାଙ୍କ ସମୀପେ ବସି ପ୍ରଭୁ ଦିନକରେ
ମତ୍ତ ଥିଲେ ଅପରାହ୍ଣେ ବେଦାନ୍ତ ଚର୍ଚ୍ଚାରେ ।
କ୍ରମଶଃ ଯେମନ୍ତ ସନ୍ଧ୍ୟା ହେଲା ସମାଗତ
ବାକ୍ୟାଳାପୁଁ ଦେବରାୟ ହୋଇଲେ ବିରତ ।
ହରିନାମ କରୁ କରୁ ଉନମତ୍ତ ହୋଇ
ଆରମ୍ଭିଲେ ତହିଁ ନୃତ୍ୟ କରତାଳି ଦେଇ ।
ଅତ୍ୟାଶ୍ଚର୍ଯ୍ୟେ କହିଲେକ ତୋତା ବ୍ୟଙ୍ଗ କରି
"ତାଳମାରି ରୁଟି କଲ ଦେଉଛି କିପରି ।"
ବିରକ୍ତ ହୋଇଣ ପ୍ରଭୁ ଦେଲେ ପ୍ରତ୍ୟୁତ୍ତର
"ଚକ୍ଷୁହୀନ ହେଲ କି ହେ ତୁମ୍ଭେ ଯୋଗୀବର !

ହରିନାମ ରସାସ୍ୱାଦ କରି ନାହିଁ କେବେ
ବିଦ୍ରୂପ କରୁଛ ମୋତେ ସେହେତୁ ଏ ଭାବେ ।
ଲଭିଅଛ ସତ୍ୟ ତୁମ୍ଭେ ବ୍ରହ୍ମଙ୍କ ଦର୍ଶନ
ତଥି କିନ୍ତୁ ଅନୁଦାର ଭାବେ ପରିପୂର୍ଣ୍ଣ ।"
ଶିଷ୍ୟଙ୍କ ଅମୋଘ ବାଣୀ ଶୁଣି ଗୁରୁବର
ଦ୍ୱିରୁକ୍ତି ନ କଲେ ଆଉ କହିବ ମାତର ।
ମନେ ମନେ ଭାବିଲେ ସେ ନିଶ୍ଚୟ ଏଥିରେ
କୌଣସି ପ୍ରକାର ଗୂଢ଼ତତ୍ତ୍ୱ ଥାଇପାରେ ।
ଆଉ ଦିନେ ଗୁରୁଶିଷ୍ୟ ବସି ଧୂନି ପାଶେ
ଗଳ୍ପ କରୁ କରୁ ମଗ୍ନ ଯଦା ବ୍ରହ୍ମରସେ ।
ଏମନ୍ତ ସମୟେ ଜଣେ ଉଦ୍ୟାନର ମାଲୀ
ଗୁଡ଼ାଖୁ ଚିଲମେ ନିଆଁ ନେଲା ଧୂନି ଖୋଳି ।
ଯେମନ୍ତ ପଡ଼ିଲା ତାଠି ତୋତାଙ୍କ ନଜର
ଅତ୍ୟନ୍ତ ବିରକ୍ତ ହୋଇ କ୍ରୋଧେ ଜରଜର ।
ଗାଲି ଗୁଲଜ ତାହାକୁ ଦେଇଣ ଯାବତ
ଚିମୁଟା ଧରିଣ ଶେଷେ ପ୍ରହାରେ ଉଦ୍ୟତ ।
ଗୁରୁଙ୍କ ବେଭାର ଦେଖି କରୁଣା ନିଧାନ
କରି ନ ପାରିଲେ ଆଉ ହାସ୍ୟ ସମ୍ବରଣ ।
ଏ କି କଲେ ପୁଣି ଏହି ବ୍ରହ୍ମଜ୍ଞପୁରୁଷ
ଏପରି ଭାଷିଣ ଦେବ କଲେ ଉଚ୍ଚହାସ୍ୟ ।
ଶିଷ୍ୟଙ୍କ ବେଭାର ଦେଖି ଗୁରୁ ଆଚମ୍ବିତ
ତଦନ୍ତେ କହିଲେ, ''ଦେଖ ଲୋକର ହେମତ ।
ନ କହି ନ ବୋଲି ଧୂନି ସ୍ପର୍ଶ କରିଣ
ଅପବିତ୍ର କଲା ମୂଢ଼ ପୂତ ହୁତାଶନ ।"
ଉତ୍ତରେ କହିଲେ ତାଙ୍କୁ ପ୍ରଭୁ ନରହରି
''ସତ୍ୟ ମଣିଲି ହେ ଦେବ ! ବଚନ ତୁମ୍ଭରି ।
ପରମାପି ତବ ଚିତ୍ତେ ବ୍ରହ୍ମଜ୍ଞାନରାଶି
ରହି ନ ପାରିଲି ମୁହିଁ ଆଜି ଯେ ନ ହସି ।
ମୁହୂର୍ତ୍ତିକ ପୂର୍ବେ ପ୍ରଭୋ ! କଲେଟି ବିଚାର
ଏ ଜଗତେ ବ୍ରହ୍ମବସ୍ତୁ ଏକମାତ୍ର ସାର ।
ବ୍ରହ୍ମାଣ୍ଡରେ ଯେତେ ପ୍ରାଣୀ ବସ୍ତୁ ଅବା ଆଉ
ସକଳ ପଦାର୍ଥେ ଏକ ବ୍ରହ୍ମ ବିରାଜଇ ।
ମୁଖେ କହିଣ ଏପରି ବ୍ରହ୍ମଙ୍କ ବଚନ
କ୍ରୋଧେ ପ୍ରହାରେ ଉଦ୍ୟତ ପୁଣି ପରକ୍ଷଣ ।
ମାୟାର ପ୍ରଭାବ ଭବେ କେଡ଼େ ବଳଆର
ଏହା ଭାବି ହାସ୍ୟୋଦ୍ରେକ ହୋଇଲା ମୋହର ।"

ଉତ୍ତର ଶ୍ରବଣ କରି ଯତି ତୋତାପୁରୀ
ଗମ୍ଭୀର ଭାବରେ ତାଙ୍କ ମୁହଁ କଲେ ଖରି ।
କିୟତ୍କାଳ ପରେ ପୁଣି ଡାକ ପ୍ରଭୁ ଦେବେ
ତାହାଙ୍କୁ କହିଲେ ''ଭ୍ରମ ଭାଙ୍ଗିଅଛୁ ଏବେ ।
ବାସ୍ତବିକ କ୍ରୋଧବଶେ ହରାଇଣ ଜ୍ଞାନ
ଆଚରିଲି ନିନ୍ଦନୀୟ କରମ ଏସନ ।
ମନୁଷ୍ୟ ଶରୀରେ କ୍ରୋଧ ଶତ୍ରୁ ବଳବନ୍ତ
ତାହାକୁ ଏଥାନେ ଆଜ କଲି ମୁଁ ନିହତ ।"
ମାୟାର ପ୍ରଭାବ କେଡ଼େ ଶୁଣ ଆରେ ମନ !
ସେ ସମ୍ବନ୍ଧେ ଯା କହିଲେ ଦେବ ନାରାୟଣ ।
"ମନକୁ ବୁଝାଅ ତୁମ୍ଭେ ଯେତେ ପରକାର
ଜନ୍ମମୃତ୍ୟୁ ଶୋକ ଦୁଃଖ ନ ଥାଏ ଆତ୍ମାର ।
ପାପପୁଣ୍ୟ କ୍ଷୁଧା ତୃଷା ଜରା ଯଉବନ
ମାନସର ଭ୍ରମ ବିନୁ ନୁହଇ ଯେ ଆନ ।
ଜନ୍ମମୃତ୍ୟୁ ପର ଶୂନ୍ୟ ଆତ୍ମା ନିର୍ବିକାର
ସତ୍ ଚିଦାନନ୍ଦମୟ ସ୍ୱରୂପ ତାଙ୍କର ।
ରୋଗଶୋକ ଅସୁଖାଦ ଯାବତୀୟ କ୍ଲେଶ
ଉପସ୍ଥିତ ମାତ୍ରେ ସବୁ ଜ୍ଞାନ ଯାଏ ନାଶ ।
ଭଗବାନ କୃପାକରି ମାୟା ନ ଏଡ଼ିଲେ
ମାୟା କବଳୁଁ କାହାର ତ୍ରାହି ନାହିଁ ଭଲେ ।"
ଦୃଷ୍ଟାନ୍ତରେ କହିଛନ୍ତି ପ୍ରଭୁ ଦେବରାୟେ
ମଧୁର ଆଖ୍ୟାନ ଏକ ଶୁଣ ସେ ବିଷୟେ ।
"ଶ୍ରୀରାମ, ଲକ୍ଷ୍ମଣ, ସୀତା ବନବାସକାଳେ
ଏକ ଦିନ ଅପ୍ରଶସ୍ତ ମାର୍ଗେ ଯାଉଥିଲେ ।
ଅଗ୍ରେ ଯାଉଥିଲେ ରାମ ଧନୁର୍ବାଣ ଧରି
ସୀତାଦେବୀ ଚାଲୁଥିଲେ ପଶ୍ଚାତେ ତାଙ୍କରି ।
ତାଙ୍କ ପଛେ ଯାଉଥିଲେ ଅନୁଜ ଲକ୍ଷ୍ମଣ
ଏ ପ୍ରକାରେ ଚାଲୁଥିଲେ ସୁଖେ ତିନି ଜଣ ।
ରାମ ପ୍ରତି ଲକ୍ଷ୍ମଣଙ୍କ ଏତାଦୃଶ ସ୍ନେହ
ଦର୍ଶନ ନ ପାଇ ତାଙ୍କ ଚିତ୍ତ ଦୁଃଖାବହ ।
ଲକ୍ଷ୍ମଣଙ୍କ ହୃଦଭାବ ସୀତାଦେବୀ ଜାଣି
ମଧ୍ୟେ ମଧ୍ୟେ ବାଟ କାଟି ଛିଡ଼ା ହୋନ୍ତି ପୁଣି ।
ଲକ୍ଷ୍ମଣେ କହନ୍ତେ ତାଙ୍କ ସ୍ନେହ ସହକାରେ
ପ୍ରାଣ ଭରି ଦେଖ ତବ ଜ୍ୟେଷ୍ଠ ସହୋଦରେ ।
ମଧ୍ୟେ ମଧ୍ୟେ ଏ ପ୍ରକାରେ ପାଇଣ ଦର୍ଶନ
ହୃଦ ତୃଷ୍ଣା ନିବାରିଲେ ଅନୁଜ ଲକ୍ଷ୍ମଣ ।

ତେମନ୍ତ ଯେ ଜୀବ ଆଉ ଈଶ୍ୱର ମଧ୍ୟରେ
ମାୟାରୂପୀ ସୀତା ବିରାଜନ୍ତି ନିରନ୍ତରେ ।
ଜୀବରୂପୀ ଲକ୍ଷ୍ମଣଙ୍କ ଶୋକ ଦୁଃଖ ଦେଖି
ମଧ୍ୟସ୍ଥାନୁ ନ ଗମିଲେ ମାୟାରୂପୀ ସଖୀ
ଏ ଜଗତେ ବିଭୁଙ୍କର ଦରଶନ ଲାଭ
ପ୍ରାଣୀଙ୍କ ପକ୍ଷରେ କେବେ ନୁହଇ ସମ୍ଭବ ।
ହଜାରେ ବିଚାର କର ତହିଁ ନାହିଁ ଫଳ
ଦୟା ନ କଲେକ ଥରେ ପ୍ରଭୁ ଆଦିମୂଳ ।”
ଏଥିଅନ୍ତେ ଶୁଣ ମନ ! ତୋତା କି ପ୍ରକାରେ
ବିଶ୍ୱାସ ସ୍ଥାପନ କଲେ ସାକାର ଈଶ୍ୱରେ ।
ଏକାଦଶ ମାସ କାଳ ବଙ୍ଗେ ବାସ କରି
ରକ୍ତ ଆମାଶୟ ରୋଗ ଭୋଗିଲେ ଯେ ଭାରି ।
ଉଦରେ ହୋଇଲା ଏଡ଼େ ଅସହ୍ୟ ଯନ୍ତ୍ରଣା
ତହିଁ ଲାଗି ଛଟପଟ ଯୋଗୀ ମହାମନା ।
ଧ୍ୟାନ କରି ନ ପାରନ୍ତି ସୁସ୍ଥିର ଚିତ୍ତରେ
ତେଣୁ ସେ ବିଷଣ୍ଣ ଅତି ସର୍ବ ସମୟରେ ।
ସ୍ଥାନ ଛାଡ଼ି ଯିବା ପାଇଁ ବିଚାରନ୍ତି ଯେତେ
ଛାଡ଼ିଯାଇ ନ ପାରନ୍ତି କଉଣସିମତେ ।
ପ୍ରତ୍ୟହ ଭାଳନ୍ତି ଆଜି ନେବି ବିଦାୟ
କହିବାକୁ ଚଳେ ମାତ୍ର ନ ପାନ୍ତି ସମୟ ।
ବ୍ରହ୍ମକଥା ଆଲାପନେ ଗୁରୁ ଶିଷ୍ୟ ମତ୍ତ
ଯାବତ ବିଷୟ କର୍ମ ହୁଅନ୍ତେ ବିସ୍ମୃତ ।
ଶ୍ରୀପ୍ରଭୁଙ୍କ ଆଗମନ ପୂର୍ବରୁ ଆରଦିନ
ପୂର୍ବପରି ଭାଳଥାନ୍ତି କହିବା କାରଣ ।
ଶ୍ରୀଦେବ ସମୀପେ ଆସି ହୁଅନ୍ତେ ପ୍ରବେଶ
ମନରୁ ବିସ୍ମୃତ ହୁଏ ସେ ସବୁ ସନ୍ଦେଶ ।
ଏ ପ୍ରକାରେ କିୟତ୍କାଳ ହୋଇଲା ଅତୀତ
ବ୍ୟାଧି ହ୍ରାସ ନ ପାଇଣ କ୍ରମଶଃ ବର୍ଦ୍ଧିତ ।
ପୀଡ଼ାଗ୍ରସ୍ତ ହୋଇ ଏବେ ତନୁ କ୍ରମେ କ୍ଷୀଣ
ଗୁରୁଙ୍କ ସକାଶେ ପ୍ରଭୁ ଚିନ୍ତାକୁଳ ମନ ।
ମଥୁରଙ୍କୁ ଡାକି ଦିନେ କଲେକ ଆଦେଶ
ବନ୍ଦୋବସ୍ତ କରିବାକୁ ଚିକିତ୍ସା ବିଶେଷ ।
ଗୁରୁଙ୍କ ସେବାରେ ରତ ଆଉ ଦେବାଶ୍ରୟ
ଜନେ ବୁଝିଲେ ଔଷଧ ପଥ୍ୟାଦି ବିଷୟ ।
ଯେତେ ଚେଷ୍ଟା କଲେ ବ୍ୟାଧି ନୋହିଲା ଲାଘବ
ସାଙ୍ଘାତିକାବସ୍ଥା ଶେଷେ ହୋଇଲା ଉଦ୍ଭବ ।
ନିଶାକାଳେ ପୀଡ଼ା ଦିନେ ବଢ଼ିଲା ଏସନ
ଶୋଇ ବସି ନ ପାରିଲେ ଯତି ମହାଜନ ।
ଯେତେ ଚେଷ୍ଟା କଲେ ଦେହୁଁ ମନକୁ ଗୋଟାଇ
ପରମାତ୍ମାଙ୍କଠିଁ ତାକୁ ନିବେଶିବା ପାଇଁ ।
ସକଳ ପ୍ରକାର ଚେଷ୍ଟା ହୋଇଲା ବିଫଳ
ଏଣିକି ଏ ଦେହ ଯୋଗୁଁ ମୋର ଅମଙ୍ଗଳ ।
ଏସନ ଭାଳିଣ ପୁଣି କଲେ ଦୃଢ଼ପଣ
ଜାହ୍ନବୀରେ କରିବି ମୁଁ କାୟା ବିସର୍ଜନ ।
ବିଶେଷ ଯତନେ ମନ ପରଂବ୍ରହ୍ମେ ରଖି
ବାହାରିଲେ ଯୋଗୀବର ଆସନ ଉପେକ୍ଷି ।
ଘୋର ନିଶା ଚଉଦିଗ କୋଳାହଳଶୂନ୍ୟ
ଏକଛତ୍ରେ ଶାନ୍ତିରାଜ କରନ୍ତି ଶାସନ ।
ଏମନ୍ତ ସମୟେ ତୋତା ଦେହତ୍ୟାଗ ପାଇଁ
ଧୀରେ ଧୀରେ ପ୍ରବେଶିଲେ ଗଙ୍ଗା ଗର୍ଭେ ଯାଇ ।
ଭିତରକୁ ଯେତେ ଯେତେ ହେଲେ ଅଗ୍ରସର
ନ ଦେଖନ୍ତି ପାଣି କାହିଁ ଅଣ୍ଟୁକ ଉପର ।
ଚାଲି ଚାଲି ଆରପଟେ ହେଲେ ଉପନୀତ
ତରୁଲତା ଗୁଳ୍ମ ଦେଖି ହେଲେ ଚମକିତ ।
ପ୍ରବେଶ ହେଲଣି ଅନ୍ୟ ପାରେ ଆସି ମୁହିଁ
ବୁଡ଼ିଯିବା ଭଳି ପାଣି ନ ଦେଖିଲି କାହିଁ ।
ଏ କି ମାୟା ବିଭୁଙ୍କର ନ ପାରଇ ବୁଝି
ଜଳଶୂନ୍ୟ ହୋଇଲେ କି ଗଙ୍ଗାଦେବୀ ଆଜି ?
ବିଫଳପ୍ରୟାସ ହୋଇ ସିଦ୍ଧ ଯୋଗିବର
ନୈରାଶ୍ୟ ସାଗରେ ମଗ୍ନ ଚିତ୍ତ ତାହାଙ୍କର ।
ସହସା ଦେଖିଲେ ଏକ ଉଜ୍ଜ୍ୱଳ ଆଲୋକ
ଯାହାର କିରଣେ ଉଦ୍ଭାସିତ ଚଉଦିକ ।
ତଦନ୍ତେ ମା ଜଗଦ୍ଧାତ୍ରୀ ଅଭୟଦାୟିନୀ
ଉଭା ହେଲେ ଯତିଙ୍କର ସମୀପେ ତକ୍ଷଣି ।
ଜଳ, ସ୍ଥଳ, ତନ, ମନ, ଜୀବନ, ମରଣ,
ସ୍ୱାସ୍ଥ୍ୟ, ଅସୁସ୍ଥତା, ପୀଡ଼ା ଆଉ ଜ୍ଞାନାଜ୍ଞାନ
ଦର୍ଶନ ଶ୍ରବଣ କିମ୍ବା କଳ୍ପନା, ମନନ
ସର୍ବତ୍ର ଦେଖିଲେ ଜଗଦ୍ଧାତ୍ରୀ ବିଦ୍ୟମାନ ।
ତାଙ୍କର ଇଚ୍ଛାରେ ହୁଏ ସୃଷ୍ଟି ସ୍ଥିତି ଲୟ
ଇଙ୍ଗିତେ ପ୍ରସୃତ ବିଶ୍ୱ ଇଙ୍ଗିତେ ପ୍ରଳୟ ।
ଅସମ୍ଭବକୁ ସମ୍ଭବ କରୁଛନ୍ତି ନିତ
ସମ୍ଭବକୁ ଅସମ୍ଭବ ପୁନଶ୍ଚ ତେମନ୍ତ ।

ସାକାର ଯେ ଆଦ୍ୟମାତା ସେହି ନିରାକାର
ସଗୁଣ ନିର୍ଗୁଣ ସବୁ ତାଙ୍କଠି ବିକାର ।
ଯେ ବ୍ରହ୍ମଙ୍କ ଉପାସନା କଲେ ଏତେ କାଳ
ଶିବ ଶକ୍ତି ଏକତ୍ରରେ ତାଙ୍କଠାରେ ଠୁଳ ।
ହରଗୌରୀ ରୂପେ ସେହି ବ୍ରହ୍ମ ବିଦ୍ୟମାନ
ବ୍ରହ୍ମ ଆଉ ଶକ୍ତି ମଧ୍ୟେ ନାହିଁ ବ୍ୟବଧାନ ।
ଦର୍ଶନ ଲଭିଣ ଏହି ବିରାଟ ମୂର୍ତ୍ତିର
ଆନନ୍ଦେ ଉତ୍ଫୁଲ୍ଲ ତୋତାପୁରୀ ଯତିବର ।
ଆତ୍ମବଳ ଦାନ କରି ତାଙ୍କର ପଦ୍ମରେ
ଲେଉଟି ଆସିଲେ ପଦବ୍ରଜେ ଧୀରେ ଧୀରେ ।
ପୀଡ଼ାର ଯନ୍ତ୍ରଣା ଦୂର ହୋଇଣ କ୍ଷଣକେ
ହୃଦୟ କନ୍ଦର ତାଙ୍କ ନାଚଇ ପୁଲକେ ।
ବାହୁଡ଼ିଣ ତୋତାପୁରୀ ପଞ୍ଚବଟୀ ମୂଳେ
ଜଗଦମ୍ବାଙ୍କ ଧ୍ୟାନରେ ନିଶୀଥ ଯାପିଲେ ।
ପ୍ରାତଃକାଳେ ଶ୍ରୀପ୍ରଭୁଙ୍କୁ ଦେଖିଲେ ଯେମନ୍ତ
ତାଙ୍କପାଶେ ବଖାଣିଲେ ସକଳ ବୃତ୍ତାନ୍ତ ।
"ବ୍ୟାଧି ତୁହେଁ ସେ ତ ମୋର ବନ୍ଧୁଙ୍କ ଅଗ୍ରଣୀ
ଯା ଯୋଗୁଁ ଦର୍ଶନ ଦେଲେ ଜଗତ ଜନନୀ ।
ତାଙ୍କର କୃପାରୁ ଏବେ ମୁହିଁ ବ୍ୟାଧିମୁକ୍ତ
ଅଜ୍ଞାନ-ତମିସ୍ରରାଶି ମୋର ଦୂରୀଭୂତ ।
ତିନି ଦିବସୁଁ ଅଧିକ ନ ରହଇ କାହିଁ
ଏକାଦଶ ମାସ ଏଠି ଗଲା ଅତିବାହି ।
ଏ ସ୍ଥାନ ତେଜିବା ପାଇଁ ପୂର୍ବେ ଯେତେଥର
ବିଦାୟ ନେବାକୁ ପାଶେ ଆଇଲି ତୁମ୍ଭର ।
ଅନ୍ୟାନ୍ୟ ପ୍ରସଙ୍ଗେ ମନ ନିବିଷ୍ଟ ରହିଣ
ବିଦାୟ ଗ୍ରହଣ କଥା ହେଲା ବିସ୍ମରଣ ।
ଏମନ୍ତେ ମା ଜଗଦ୍ଧାତ୍ରୀ ହୋଇଣ ସଦୟ
ଭୁଲାଇ ରଖିଲେ ମୋତେ ଏତେକ ସମୟ ।
ଏବେ ତବ ଜନନୀଙ୍କୁ କୃପାବୋଲି କରି
ଏଠାରୁ ବିଦାୟ ଦିଅ ମୋତେ କୃପାକରି ।"
ତୋତାଙ୍କ ବିନତି ଶୁଣି ପ୍ରଭୁ ନାରାୟଣ
ମନ୍ଦେ ମନ୍ଦେ ହସି ତାଙ୍କୁ କହିଲେ ବଚନ ।
"ବ୍ରହ୍ମ ସତ୍ୟ, ଶକ୍ତି ମିଥ୍ୟା ଏ ପ୍ରସଙ୍ଗ ଘେନି
ତର୍କ ଯୁକ୍ତି କରିଥିଲେ କେତେ ଯେ କେଜାଣି ।
ତାଙ୍କର ସ୍ୱରୂପ ଏବେ ପ୍ରତ୍ୟକ୍ଷ ଦେଖିଣ
ଚକ୍ଷୁ କର୍ଣ୍ଣର ବିବାଦ ହୋଇଲା ଭଞ୍ଜନ ।
ଜଗତ ଜନନୀ ବହୁ ପୂର୍ବେ ଦୟାବହି
ଏ ଗୂଢ଼ ତତ୍ତ୍ୱଟି ମୋତେ ଦେଇଥିଲେ କହି ।
ଯେହି ବ୍ରହ୍ମ, ସେହି ଶକ୍ତି, ନାହିଁ ଭେଦାଭେଦ
ଅଗ୍ନି ତା ଦାହିକା ଶକ୍ତି ଯେମନ୍ତ ଅଭେଦ ।"
'ନହବତେ' ଏ ସମୟେ ବାଜିଲା ବାଜଣା
ହୋଇବ ମଙ୍ଗଳାରତି ସେବା ବନ୍ଦାପନା ।
ଭକ୍ତ ଗଦଗଦ ଚିତ୍ତେ ଗୁରୁଶିଷ୍ୟ ଦ୍ୱୟେ
ବାହାରିଲେ ଭବାନୀଙ୍କ ଦର୍ଶନାଭିପ୍ରାୟେ ।
ଆରତି ଶେଷରେ ଦୁହେଁ ଭକ୍ତି ସହକାରେ
ସାଷ୍ଟାଙ୍ଗ ପ୍ରଣାମ କଲେ ଦେବୀଙ୍କ ପଦ୍ମରେ ।
ତଦନ୍ତେ ଯେ ଯୋଗିବର ମେଲାଣି ମାଗିଣ
ଫୁଲ୍ଲମନେ ସ୍ଥାନାନ୍ତରେ କଲେକ ଗମନ ।
ଏ ପ୍ରକାରେ ତୋତାପୁରୀ ପ୍ରଭୁଙ୍କ ସଂସର୍ଗେ
ପୂର୍ଣ୍ଣତା ଲଭିଲେ ସ୍ୱୀୟ ଗନ୍ତବ୍ୟ ମାର୍ଗେ ।
ଅତଃପର ପ୍ରଭୁ କଲେ ସୁଦୃଢ଼ ସଂକଳ୍ପ
ମନକୁ କରିବେ ପୂର୍ଣ୍ଣଭାବେ ନିର୍ବିକଳ୍ପ ।
ଏମନ୍ତେ ସ୍ଥାପିଣ ମନ ଅଦ୍ୱୈତ ଭୂମିରେ
ସନ୍ତରିବେ ନିରନ୍ତର ବ୍ରହ୍ମ ପାରାବାରେ ।
କାର୍ଯ୍ୟକଳାପ ସମସ୍ତ ହେଲା ଯେ ତଦ୍‌ବତ
ଏଥିର ଆଖ୍ୟାନ ଅଟେ ଅତ୍ୟନ୍ତ ଅଦ୍ଭୁତ ।
ପଞ୍ଚଭୂତରୁ ମନକୁ ଆଣିଲେ ଗୋଟାଇ
ଦେହର ଅସ୍ତିତ୍ୱ ଜ୍ଞାନ କିଛିତ ନ ଥାଇ ।
ଶୌଚାଦି କରମ କିମ୍ବା ଶୟନ ଭୋଜନ
ମାନସରୁ ଏକାବେଳେ ହେଲା ଅନ୍ତର୍ଦ୍ଧାନ ।
ମୁହିଁ ମୋହର ଏ ଭାବ ଶୂନ୍ୟେ ଗଲା ଉଡ଼ି
ତୁମ୍ଭେ ତୁମ୍ଭର ରହିଲା ରସାତଳେ ପଡ଼ି ।
ଦ୍ୱୈତାଦ୍ୱୈତ ଭେଦଭାବ ଚାଲିଯାଇ ଦୂରେ
ବିମଳ ଆନନ୍ଦ ଶାନ୍ତି ଭୁଞ୍ଜିଲେ ଅନ୍ତରେ ।
ଆନନ୍ଦ ଆନନ୍ଦ ମାତ୍ର ଆନନ୍ଦ କେବଳ
ନାହିଁ ନାମ, ରୂପ କିମ୍ବା ଦିନ, ଦେଶ, କାଳ ।
ନିରନ୍ତେ ବିମଳାନନ୍ଦେ ହୋଇ ପରିପ୍ଳୁତ
ଅଶରୀରୀ ଆତ୍ମା ନ୍ୟାୟେ କଲେ ଅବସ୍ଥିତ ।
ଯେ ଭାବ ସନାଦ ମନ ବୁଦ୍ଧିର ଗୋଚର
ତାକୁ ଅତିକ୍ରମି ଚାଲିଗଲେ ବହୁଦୂର ।
ଭାବର ଅତୀତାବସ୍ଥା ତୁଙ୍ଗସ୍ଥାନେ ଥାଇ
ଭୁଞ୍ଜିଲେ ପରମାନନ୍ଦ ଜଗତ ଗୋସାଇଁ ।

ଶାସ୍ତ୍ରାଦିରେ ଏ ଅବସ୍ଥା ହୋଇଛୁ ବର୍ଣ୍ଣିତ
ଆତ୍ମାର ସହିତେ ସଦା ଆତ୍ମାର ରମଣ ।
ଏମନ୍ତେ ଏକାଦିକ୍ରମେ ଛଅମାସ ଧରି
ରହିଲେ ଏକାନ୍ତେ ମଗ୍ନ ପ୍ରଭୁ ନରହରି ।
ସାଧାରଣ ଜୀବେ ଏଠି ହେଲେ ଉପନୀତ
ତାଙ୍କ ଶରୀର ନ ଥାଏ ଫେରିବା ନିମିତ୍ତ ।
ଅବତାର ପୁରୁଷେ ବି ଆସିଲେ ଏ ସ୍ଥଳେ
ମହା ସମାଧିରେ ଲୀନ ଅତି ଅଳ୍ପକାଳେ ।
ଘୋର ଅଦ୍ୱୈତାବସ୍ଥାରେ ଏତେ ଦିନ ଥାଇ
କେମନ୍ତେ ଶରୀର ଧରି ରହିଲେ ଗୋସାଇଁ ।
ସାବଧାନେ ଶୁଣ ମନ ! ଶ୍ରୀମୁଖ ବଚନ
ଶ୍ରୀରାମକୃଷ୍ଣ ଚରିତ ଅପୂର୍ବ କଥନ ।
"କି ଭାବରେ ଗତ ହେଲା ଦିବସ ରଜନୀ
ସେ କଥା କହିବେ ମୁହିଁ ନ ପାରିଲି ଜାଣି ।
ମୃତ ବ୍ୟକ୍ତି ପ୍ରାୟେ ସଦା ପଡ଼ିଥାଏଁ ତଳେ
ମୁହେଁ ନାକେ ପଶିଯାନ୍ତି ମାଛି ଦଳେ ଦଳେ ।
ଧୂଳିଧୂସରିତ କେଶ ବାନ୍ଧିଗଲା ଜଟା
ଶୌଚାଦି କ୍ରିୟାରେ ନଷ୍ଟ ସବୁ ଲୁଗାପଟା ।
ପକ୍ଷୀମାନେ ବସି ଶିରେ ନିର୍ଭୀକ ଅନ୍ତରେ
ଖାଦ୍ୟ ପଦାର୍ଥ ଖୋଜନ୍ତି ଚଞ୍ଚୁ ସାହାଯ୍ୟରେ ।
କୌଣସି ବିଷୟେ ମୋର ନ ରହିଲା ଜ୍ଞାନ
ଏ ଦେହର ହୋଇଥାନ୍ତା ନିଶ୍ଚୟ ପତନ ।
ଦୟାମୟୀ ଦେବୀ ଜଗଦ୍ଧାତ୍ରୀଙ୍କ କୃପାରେ
ଏ ସମୟେ ସାଧୁ ଜଣେ ଆସିଲେ ଏଠାରେ ।
ଦର୍ଶନ ମାତ୍ରକେ ସେହୁ ଜାଣିଲେ ସତ୍ୱର
ଜଗତ କଲ୍ୟାଣକର ଅଟେ ଏ ଶରୀର ।
ପ୍ରାଣୀଙ୍କ ମଙ୍ଗଳ ଏଥେ ହୋଇବ ସାଧିତ
ଏମନ୍ତ ଭାଳିଣ କଲେ ଯତ୍ନେ ସୁରକ୍ଷିତ ।
ତାଙ୍କ ପାଖେ ଥିଲା ଗୋଟେ ମୋଟା ଭୁଲବାଡ଼ି
ମୋ ଶରୀରେ ଜୋରେ ତାକୁ ଦିଅନ୍ତି କରୁଡ଼ି ।
କେତେ କ୍ଷଣ ପରେ ଯଦି କୌଣସି ସମୟ
ଦେଖନ୍ତେ ସ୍ୱଳ୍ପକେ ଜ୍ଞାନ ହୋଇଛି ଉଦୟ ।
କ୍ଷୀର କିମ୍ବା ବାର୍ଲି ଭଳି ତରଳ ପଦାର୍ଥ
ମୁହେଁ ଢାଳି ଦେବାପାଇଁ ହୁଅନ୍ତେ ସମର୍ଥ ।
ସେଥିରୁ କିଞ୍ଚିତ ମାତ୍ର ଉଦରକୁ ଯାଇ
ବହୁତ ସାହାଯ୍ୟ କଲା ଦେହ ରକ୍ଷା ପାଇଁ ।

କେବେ ପୁଣି କିଛିମାତ୍ର ନ ଯାଇ ଉଦରେ
ହେଲା ମାତ୍ରେ ଗଡ଼ିପଡ଼େ ସବୁହିଁ ବାହାରେ ।
ଏ ଭାବେ ଅଜ୍ଞାନ ହେଲି କ୍ରମେ ଛଅ ମାସ
ତା ପରେ ମୋ ପ୍ରତି ହେଲା ଦେବୀଙ୍କ ଆଦେଶ ।
'ଲୋକ-ଶିକ୍ଷା ହେତୁ ଭବେ ତବ ଆଗମନ
ଭାବ ଘେନିଥାଅ ତୁମ୍ଭେ ତେଣୁ ଅନୁକ୍ଷଣ ।' "
ଅନନ୍ତର ଜଗଦମ୍ବା ମଥୁର ଗୃହିଣୀ
ରକ୍ତ ଆମାଶୟେ ହେଲେ ଶଯ୍ୟାରେ ଶାୟିନୀ ।
ଡାକ୍ତର କବିରାଜ ଦେଖିଲେକ ଯେତେ
ପ୍ରାଣ ଆଶା ଛାଡ଼ି ଦେଇ ଅଲଗା ସମସ୍ତେ ।
ହତାଶ ହୋଇଣ ତହୁଁ ଭକତ ମଥୁର
ଊର୍ଦ୍ଧ୍ୱଶ୍ୱାସେ ଧାବମାନ କାଳୀଙ୍କ ମନ୍ଦିର ।
ଦେବୀଙ୍କ ପଦ୍ମରେ ତାଙ୍କ ଦୁଃଖ ଜଣାଇଣ
ବାହୁଡ଼ି ପରାଏ ପ୍ରଭୁ ପାଖେ ଆଗମନ ।
କାରଣ ପୁଚ୍ଛନ୍ତେ ତାଙ୍କୁ କରୁଣାସାଗର
କାନ୍ଦି କାନ୍ଦି ସବୁ କଥା ଫେଡ଼ିଲେ ମଥୁର ।
ସକରୁଣ ବାକ୍ୟ ଶୁଣି ପ୍ରଭୁ ଭଗବାନ
ଦୟାର୍ଦ୍ର ଚିତ୍ତରେ କଲେ ଅଭୟ ପ୍ରଦାନ ।
ଚିନ୍ତା ହୁଅ ନାହିଁ ତୁମ୍ଭେ କହୁଛନ୍ତି ମାତର
ଆରୋଗ୍ୟ ଲଭିବ ନିଶ୍ଚେ ଗୃହିଣୀ ତୁମ୍ଭର ।
ପ୍ରଭୁଙ୍କ ଅଭୟ ବାଣୀ ଶିରୋଧାର୍ଯ୍ୟ କରି
ମଥୁର ଆପଣା ଗୃହେ ଅଇଲେକ ଫେରି ।
ସେହିଦିନୁଁ ତାଙ୍କ ପତ୍ନୀ ହେଲେ ବ୍ୟାଧିମୁକ୍ତ
ଆମାଶୟ ରୋଗେ ଦେବ ହୋଇଲେ ଆକ୍ରାନ୍ତ ।
ଛଅ ମାସଯାଏ ଭୋଗି ବହୁତ ଯନ୍ତ୍ରଣା
ଆରୋଗ୍ୟ ଲଭିଲେ ଶେଷେ ପ୍ରଭୁ ଜଗବାନା ।
ଶ୍ରୀ ପ୍ରଭୁ କୋଲନ୍ତି "ଏହି ପୀଡ଼ାଦ୍ୱାରା ମୋର
ସାଧିତ ହୋଇଲା ବିଶେଷରେ ଉପକାର ।
ଯନ୍ତ୍ରଣା ହେତୁରୁ ମନ ସମାଧିରୁ ଖସି
ସାଧାରଣ ଅବସ୍ଥାରେ ପ୍ରବେଶିଲା ଆସି ।
ମାନବ ସଦୃଶ କାର୍ଯ୍ୟ କର୍ମ ଆଚରଣେ
ସକ୍ଷମ ହୋଇଲି ପୁଣି ତାର କିଛିଦିନେ ।"
ବାରମ୍ବାର କହୁଛନ୍ତି ପ୍ରଭୁ ଜଗପତି
"ମନ ମୋର ସଦା ରହେ ନିର୍ବିକଳ୍ପେ ସ୍ଥିତି ।
କେବଳ ଭକ୍ତଜନଙ୍କ ମଙ୍ଗଳ ସକାଶେ
ବଳାତ୍କାରେ ରଖିଥାଏଁ ତାକୁ ନିମ୍ନଦେଶେ ।

ବାସନାବିହୀନ ମନେ ପାଏ ନାହିଁ ବଳ
ହୃଦେ ପୋଷେ ତେଣୁ ସ୍ୱଳ୍ପ ବାସନା କେବଳ ।
ଜଳପାନ କରିବି ବା ଗୁଡ଼ାଖୁ ଟାଣିବି
ଅମୁକକୁ ଦେଖିବି ବା ଆଳାପ କରିବି ।
ଏମନ୍ତେ କେତେକ କ୍ଷୁଦ୍ର ବାସନା ପ୍ରବୃତ୍ତି
ପୋଷିଛୁ ହୃଦସ୍ଥ କୋଣେ ସଯତନେ ଅତି ।
ଯେ ବାସନା ବଳେ ମନ ଆସି ନିମ୍ନଦେଶେ
ପୁନଃ ପୁନଃ ଧାଇଁଯାଏ କ୍ଷଣେ ଊର୍ଦ୍ଧ୍ୱଦେଶେ ।
ପୁନଶ୍ଚ ତାହାକୁ ସେହି ବାସନା ସାହାଯ୍ୟେ
ବଳାତ୍କାରେ ଟାଣିରଖେ ଏ ମରତ ରାଜ୍ୟେ ।”
ପ୍ରାଣୀଙ୍କ କଲ୍ୟାଣ ହେତୁ କରୁଣାସାଗର
କେତେ ଯେ ବ୍ୟାକୁଳ ତାର ନାହିଁ ପଟାନ୍ତର ।
ଅଯାଚିତ ଭାବେ କୃପା ହୁଏ ବିତରଣ
ଗ୍ରହଣେ ଅଶ୍ରଦ୍ଧା କିପାଁ ଆରେ ବାପୁଡ଼ା ମନ !
ସାଧନ ଭଜନହୀନ କଳିକାଳ ଏବେ
କାମିନୀ କାଞ୍ଚନାଦିର କିଙ୍କର ସରବେ ।
ଧରିକି ଦେଖନ୍ତି ସବୁ ଯେ ଅଟେ ମାତର
ଆହ୍ନିକ କରଣେ କ୍ଷମ କୌଣସି ପ୍ରକାର ।
କିମ୍ବା ବିଲ୍ୱପତ୍ର ପୁଷ୍ପ ତୁଳସୀ ଧରିଣ
ଅହଂପୂର୍ଣ୍ଣ ଚିତ୍ତେ କରେ ଇଷ୍ଟ ଆରାଧନ ।
କିମ୍ବା ବ୍ରତାଦି ଆଚରି କାମନା ଉଦ୍ଦେଶ୍ୟେ
ବିପ୍ରଙ୍କୁ ଭୋଜନ ଦେଇ ପାରଣା ଦିବସେ ।
କିମ୍ବା ପର୍ଯ୍ୟଟନ କରି କାଶୀ ବୃନ୍ଦାବନ
ଦୀନ ଦୁଃଖୀଜନେ ବିତରିଲା କିଛି ଧନ ।
କି ଅବା ଶରୀରେ ମାରି ହରିନାମ ଛାପ
ଜପମାଳା ଧରି କଲା କ୍ଷଣକାଳ ଜପ ।
ନେଇ ନାଲି ଶୁକ୍ଳପାଟ ଉତ୍ତମକେ ପିନ୍ଧିଣ
ରେଶମର ନାମାବଳୀ ଶରୀରେ ମଣ୍ଡିଣ ।
ଭାଗବତ, ଚଣ୍ଡୀପାଠ କରି ଆଡ଼ମ୍ବରେ
ଭକ୍ତି-ଦୁନ୍ଦୁଭି ପିଟିଲା ଜନସମାଜରେ ।
ବଦନେ ରଟଇ ହରି, ଚିତ୍ତେ ହରି ନାହିଁ
ଏ ଭାବେ ଭଜିଲେ ହରି ପାଇବେ ବା କାହିଁ ।
ଉଦ୍ଦେଶ୍ୟ ନ ଥାଇ ହରି ବୃଥା ଆଡ଼ମ୍ବର
କଳିଯୁଗ ପ୍ରାଣୀଙ୍କର ଏମନ୍ତ ବେଭାର ।
ଯେତେ ’ଛନ୍ତି ତ୍ୟାଗୀ ସାଧୁ ସନ୍ନ୍ୟାସୀ ପୁରୁଷ
ବାହାରେ ବୈରାଗ୍ୟ ମାତ୍ର, ଚିତ୍ତେ ସୁଖ ଆଶ ।
ଶିରେ ଜଟା ଭାର ଅଙ୍ଗେ ଗୈରିକ ବସନ
ହରିଙ୍କୁ ନ ସେବି, ସେବା କାମିନୀ କାଞ୍ଚନ ।
ସଦା ରତ ଆତ୍ମସୁଖେ, ଧର୍ମଜ୍ଞାନହୀନ
ନାମେ ଧର୍ମ ଆଚରଣ ନାରକୀ ପ୍ରଧାନ ।
ଧର୍ମହୀନ ଲକ୍ଷ୍ୟହୀନ ପ୍ରାଣୀଗଣ ଏବେ
କିଏ ହରି, କାହିଁ ହରି, ମିଳନ୍ତି କି ଭାବେ,
ସେ ସମ୍ବନ୍ଧେ ଚିନ୍ତା ନାହିଁ ହୃଦୟେ କିଞ୍ଚିତ
ଏମାନେ ବୁଝିବେ କିସ ସାଧନର ତତ୍ତ୍ୱ ।
ଯେ ସାଧନ କଲେ ପ୍ରଭୁ ପଞ୍ଚବଟୀ ମୂଳେ
ମହେଶ କଥିତ କାହୁଁ ସେ ସବୁ ଶିଖିଲେ ।
ସାଧନର ଫଳ ଯାହା ଯାଇଛନ୍ତି ରଖି
ଅନିତ୍ୟ ମାୟାରୁ ମନ ! କିମ୍ପା ତା ଉପେକ୍ଷି ।
ଗାଅ ମନ ! ଭଜ ମନ ! ରାମକୃଷ୍ଣ ନାମ
ଅବହେଳେ ତୁଟିଯିବ ଏ ଭବ ବନ୍ଧନ ।
ନିତ୍ୟ ସୁଖେ ସୁଖୀ ହୋଇ ହେବୁ ରେ ଅମର
ନେଇ ଥାଉଁ ଥାଉଁ ଏବେ ହୁଅ ଅଗ୍ରସର ।

---

# ତ୍ରୟୋଦଶ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ଇସ୍‌ଲାମ ସାଧନ

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅନାଦି କାରଣ ବିଭୁ ବିଶ୍ୱଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ପ୍ରଭୁ ନିରଞ୍ଜନ ।
ସାଧୁଜନେ ଶୁଣ ରାମକୃଷ୍ଣ-ଲୀଳା ଗାଥା
ନିର୍ବାପିତ ହୁଏ ଯହିଁ ତ୍ରିତାପ ସର୍ବଥା ।
ତେଜ ମନ ! ଏ ଅଳୀକ ଭବ-ସୁଖ-ଆଶା
ରାମକୃଷ୍ଣ-କଳ୍ପତରୁ ତଳେ କର ବସା ।

ନିତ୍ୟ ସ୍ୱାଦ କରିଣ ତା ସୁରସାଳ ଫଳ
ମହାନନ୍ଦେ ନୃତ୍ୟ କରି ଗାଇ ହରିବୋଲ ।
ଜ୍ଞାନରାଜ୍ୟ ଅତିକ୍ରମି ପ୍ରଭୁ ପରମେଶ
ବିଜ୍ଞାନ ରାଜ୍ୟରେ ଏବେ ନିରନ୍ତର ବାସ ।
ଶାସ୍ତ୍ରଗତ ଅମାନୁଷ ଅସାଧ୍ୟ ସାଧନା
ଯେତେ ଆଚରିଲେ ତାର ନ ହୁଏ କଳନା ।
ବୈଦିକ ଯୁଗୁଁ ଆରମ୍ଭି ଏ ପୁଣ୍ୟ ଭାରତେ
ଯେତେ ମତ ପ୍ରଚଳିତ ଥିଲା ଧର୍ମପଥେ ।
ବେଦବେଦାନ୍ତ ତନ୍ତ୍ରାଦି ଦର୍ଶନ ପୁରାଣ
ସେ ସବୁ ମତରେ ଯେତେ ପନ୍ଥା ପ୍ରଚଳନ ।
ଏକେ ଏକେ ସାଧି ପ୍ରଭୁ ଆପଣା ଜୀବନେ
ପ୍ରବେଶିଲେ ସେ ସବୁର ଗୂଢ଼ ଲକ୍ଷ୍ୟ ସ୍ଥାନେ ।
ପ୍ରତ୍ୟକ୍ଷ ପ୍ରମାଣେ ଏବେ ଚିତ୍ତ ଦୃଢ଼ୀଭୂତ
ଯେହୁ କରୁଛନ୍ତି ଲୀଳା, ସେହୁ ପୁଣି ନିତ୍ୟ ।
ଯେ ପ୍ରଭୁ ସାକାରେ ଦୃଷ୍ଟ, ସେହୁ ନିରାକାର
ଅନନ୍ତ ରୂପର ସେହୁ ଅନନ୍ତ ଆଧାର ।
ବେଦ ଯାହାଙ୍କ ବିଷୟ କରଇ ବର୍ଣ୍ଣନ
ପୁରାଣ ତାଙ୍କରି କଥା କରଇ କୀର୍ତ୍ତନ ।
ବେଦାନ୍ତ ପ୍ରଚାର କରେ ଯେଉଁ ବିଭୁ କଥା
ତନ୍ତ୍ର ମଧ୍ୟ ଭଣଇ ଯେ ତାଙ୍କ ଗୁଣଗାଥା ।
ବିଭିନ୍ନ ପନ୍ଥା ନିର୍ଦ୍ଦେଶ କଲେ ହେଁ ପ୍ରତ୍ୟେକ
ସଚ୍ଚିଦାନନ୍ଦ ବିଭୁହିଁ ଲକ୍ଷ୍ୟ ଅଟେ ଏକ ।
ଯେଉଁ ମତ ଅନୁସରି ଯାକ୍ତି ଯେ ଭଜିଲ
ତାହାଙ୍କୁ ସେ ଶ୍ରେଷ୍ଠ ମଣି ଅନ୍ୟକୁ ନିନ୍ଦିଲ ।
ବିରୋଧ ଭାବର ସୃଷ୍ଟି ହୋଇଣ ଏସନ
ଧର୍ମ ଜଗତକୁ କରିଦେଲା ଛିନ୍ନ ଭିନ୍ନ ।
ସେଥିମଧ୍ୟେ ସାମଞ୍ଜସ୍ୟ ସ୍ଥାପନାଭିପ୍ରାୟେ
ମର୍ତ୍ତ୍ୟଧାମେ ଅବତୀର୍ଣ୍ଣ ପ୍ରଭୁ ନରକାୟେ ।
ନିଜେ ସାଧି ଦେଖାଇଲେ ବିଶ୍ୱଜନ ପାଶ
ସଚ୍ଚିଦାନନ୍ଦ ବିଭୁ ହିଁ ସବୁରି ଉଦ୍ଦେଶ୍ୟ ।
ତଦନ୍ତେ ବାସନା ହେଲା ତାଙ୍କ ହୃଦୟରେ
କି ତତ୍ତ୍ୱ ନିହିତ ଅଛି ଅନ୍ୟାନ୍ୟ ଧର୍ମରେ ।
ସେ ସକଳ ତତ୍ତ୍ୱମାନ ଜାଣିବା କାରଣ
ଯେ ସାଧନ ଆରମ୍ଭିଲେ ତାର କଥା ଶୁଣ ।
ଗୋବିନ୍ଦରାୟ ନାମରେ ଥିଲେ ଏକ ବ୍ୟକ୍ତି
ଧର୍ମପଥେ ଯାହାଙ୍କର ଅତି ଅନୁରକ୍ତି ।

ଜନମ ଲଭିଣ ସେହୁ କ୍ଷତ୍ରିୟ କୁଳରେ
ପାରଦର୍ଶୀ ଥିଲେ ପାର୍ସି ଆରବୀ ଭାଷାରେ ।
ନାନାବିଧ ଧର୍ମ ମତ ଆଲୋଚନା କରି
ଇସ୍‌ଲାମ ଧର୍ମରେ ତାଙ୍କ ଶ୍ରଦ୍ଧା ହେଲା ଭାରି ।
ଏଥିରେ ଗୋବିନ୍ଦ ଦୀକ୍ଷା ଘେନି ଯଥାରୀତି
ସାଧନାରେ ମଗ୍ନ ଯଥା ଇସ୍‌ଲାମ ପଦ୍ଧତି ।
ସୁଫି ସମ୍ପ୍ରଦାୟ ଭୁକ୍ତ ପ୍ରେମିକ ଗୋବିନ୍ଦ
କୋରାନ ପଢ଼ିଣ ନିତ୍ୟ ଲଭିଲେ ଆନନ୍ଦ ।
ନାନାଦେଶ ପରିଭ୍ରମି ସାଧକ ଦରବେଶ
ଦକ୍ଷିଣେଶ୍ୱରରେ ଆସି ଏକାଳେ ପ୍ରବେଶ ।
ସାଧନାନୁକୂଳ ସ୍ଥାନ ପଞ୍ଚବଟୀ ମୂଳ
ଦର୍ଶନ କରିଣ ଚିତ୍ତେ ଆନନ୍ଦ ବହୁଳ ।
ଆସନ ବିସ୍ତାରି ତହିଁ ଗୋବିନ୍ଦ ଦରବେଶ
ଆଲ୍ଲାଙ୍କ ଧ୍ୟାନରେ ମନ କଲେ ସନ୍ନିବେଶ ।
ଇଷ୍ଟପ୍ରତି ତାହାଙ୍କର ବିଶ୍ୱାସ ଭକତି
ଦର୍ଶନ କରିଣ ପ୍ରଭୁ ମୁଗ୍ଧ ହେଲେ ଅତି ।
ଅନେକ ସାଧକ ଏହି ପଥ ଅନୁସରି
ଦିବାନିଶି ଯାପୁଛନ୍ତି ଆଲ୍ଲା ଜପ କରି ।
ଈଶ୍ୱର ଦର୍ଶନ ପାଇଁ ଏହା ଏକ ପଥ
ଏଭାବେ ମଗନ ହେଲେ ବିଭୁ ଭବନାଥ ।
ସେଥିର ନିଗୂଢ଼ ତତ୍ତ୍ୱ ଜାଣିବା କାରଣ
ଦରବେଶଠାରୁ ଦୀକ୍ଷା କଲେକ ଗ୍ରହଣ ।
ଯେକାଳେ ସାଧିଲେ ପ୍ରଭୁ ଯେଉଁ ଧର୍ମମତ
ତା ନିୟମ ଅନୁସରି କାର୍ଯ୍ୟେ ହୋନ୍ତି ରତ ।
ଆଲ୍ଲାମନ୍ତ୍ର ଦୀକ୍ଷା ନେଇ ପ୍ରଭୁ ଦେବରାୟେ
ଆଚରିଣ ଇସଲାମୀ ଦରବେଶ ପରାୟେ ।
ଆଲ୍ଲାଙ୍କ ଭାବରେ ମଗ୍ନ ଥାଇ ନିରନ୍ତର
ହିନ୍ଦୁୟାନି ଭାବ ମନୁଁ ଏକାବେଳେ ଦୂର ।
ଦେବଦେବୀଙ୍କୁ ପ୍ରଣାମ କଥା ଥାଉ ଦୂରେ
ଦର୍ଶନେ ନ ବଳେ ମନ ଅଣୁ ପ୍ରମାଣରେ ।
କଚ୍ଛ ଖୋଲିଣ ସର୍ବଦା ବସ୍ତ୍ର ପରିଧାନ
ପ୍ରାତଃ ସନ୍ଧ୍ୟା ମଧ୍ୟାହ୍ନରେ ନମାଜ ପଠନ ।
ହିନ୍ଦୁୟାନି ଭୋଜନରେ ନୋହିଲା ପ୍ରବୃତ୍ତି
ଯବନ ପାକ ଭୋଜନେ ଇଚ୍ଛା ବଳବତୀ ।
ହୃଦୟର ଭାବ ଜାଣି ଭକତ ମଥୁର
ବୁଝାଇଲେ ଶ୍ରୀଦେବଙ୍କୁ ନାନା ପରକାର ।

ଦେବରାୟେ ଅବଶେଷେ ହୋଇଲେ ସମ୍ମତ
ମୁସଲ୍‌ମାନୀ ଖାନା ବସ୍ତ୍ର କରିବ ପ୍ରସ୍ତୁତ ।
ଏମନ୍ତ ଆଦେଶ ଲଭି ମଥୁର ମୋହନ
ମୁସଲ୍‌ମାନ ସୂପକାର କଲେ ନିୟୋଜନ ।
ତାହାର ନିର୍ଦ୍ଦେଶମତେ ବ୍ରାହ୍ମଣ ପାଚକ
ରାନ୍ଧିଲା ଯେ ନାନାବିଧ ଖାଦ୍ୟ ଯାବନିକ ।
ପାଚକର ହିନ୍ଦୁଭଳି ଲୁଗାପିନ୍ଧା ଦେଖି
ଗୋପନେ କହିଲେ ପ୍ରଭୁ ମଥୁରଙ୍କୁ ଡାକି ।
ଏ ଭାବେ ବସ୍ତ୍ର ପିନ୍ଧିବା ଅବିଧି ଅଟଇ
କଚ୍ଛ ଖୋଲି ରାନ୍ଧିବାକୁ କହ ତୁରା ଯାଇ ।
ଖାଦ୍ୟେ ପିଆଜ ରସୁଣ ଗନ୍ଧର ସମ୍ଭାର
ଆହାର କରିଣ ଚିତ୍ତେ ଆନନ୍ଦ ଅପାର ।
ଯାବନିକ ଭାବ ଭରି ପ୍ରବଳ ଅନ୍ତରେ
ତା ଦେଖି ଭଣଜା ହୃଦୁ କହିଲେ କ୍ରୋଧରେ ।
"ଏକି ଦେଖେଁ ମାମୁଁ ! ତବ ଅନ୍ୟାଯ୍ୟାଚରଣ
ଯବନ ବେଶର କର୍ମ୍ମ ବ୍ରାହ୍ମଣ ହୋଇଣ ?
ଜନ୍ମ ତବ ଶୁଦ୍ଧ ନିଷ୍ଠାଚାରୀ ବିପ୍ରକୁଳେ
ଲୋକେ କି କହିବେ ଭାଳ ଏମନ୍ତ ଦେଖିଲେ ।
କଚ୍ଛ ଖୋଲି ବସ୍ତ୍ର ପିନ୍ଧି କହିବାକୁ ଲାଜ
ଯଜ୍ଞସୂତ୍ର ଫିଙ୍ଗି ପଢ଼ ତ୍ରିସନ୍ଧ୍ୟା ନମାଜ ।"
ସକାତରେ ଦେବରାୟେ କହିଲେ ଉତ୍ତରେ
କୌଣସି ଭାର ନାହିଁ ମୋହର ଏଥିରେ ।
କିଏ ଯେହ୍ନେ ସଦାବେଳେ ହୃଦମଧ୍ୟେ ଥାଇ
ଏପରି କାର୍ଯ୍ୟରେ ମୋତେ ପ୍ରବୃତ୍ତ କରଇ ।"
ବୁଝାଇଲେ ହୃଦୁ ତାଙ୍କୁ ଯେତେ ପରକାର
ବୁଝି ନ ବୁଝିଲେ ପ୍ରଭୁ କରୁଣାସାଗର ।
ମସ୍‌ଜିଦେ ନମାଜ ପାଠ ଇଚ୍ଛା ବଳବତୀ
କାର ଶକ୍ତି ଅଛି ରୋଧିବାକୁ ତାର ଗତି ।
ବାଧାବିଘ୍ନ ନ ମାନିଲା ସେ ଇଚ୍ଛା କଳ୍ପିତ
ମସ୍‌ଜିଦେ ଧାଇଁଲେ ଦେବ ଗୋପନେ ନିରତ ।
ମାମୁଁଙ୍କୁ ନ ଦେଖି ହୃଦୁ ଆପଣା ମନ୍ଦିରେ
ଚତୁର୍ଦ୍ଦିଗେ ଅନ୍ୱେଷିଲେ କାତର ଅନ୍ତରେ ।
ନିକଟସ୍ଥ ମସ୍‌ଜିଦରେ କଲାରୁ ସନ୍ଧାନ
ଦେଖିଲେ ନମାଜେ ମଗ୍ନ ପ୍ରଭୁ ଭଗବାନ ।
କିଏ ସେହି ଭାଗ୍ୟବାନ ମସ୍‌ଜିଦ କାହାର
ନମାଜ ପଢ଼ନ୍ତି ଯହିଁ ବ୍ରହ୍ମାଣ୍ଡଠାକୁର ।

ନିନ୍ଦିତ କାର୍ଯ୍ୟରେ ରତ ବାଳକ ଅଗ୍ରତେ
ଗୁରୁଜନ ଭେଟିଲେକ କେହୁ ଅକସ୍ମାତେ ।
ସଶଙ୍କିତ ଯଥା ସେହୁ ତାହାଙ୍କ ଦର୍ଶନେ
ହୃଦୁଙ୍କୁ ଦେଖିଣ ତଥା ପ୍ରଭୁ ଭଗବାନେ ।
ହୃଦସ୍ଥ ତାହାଙ୍କୁ କିଛି କହିବା ଆଗରୁ
ବିନୟେ କହିଲେ ତାଙ୍କୁ ପ୍ରଭୁ ଜଗଦ୍‌ଗୁରୁ ।
"ନ ଦେନ ମୋହର ଦୋଷ କହୁଅଛୁ ସତେ
କେ ଯେହ୍ନେ ଆଣିଲା ଏଠି ବଳାତ୍କାରେ ମୋତେ ।"
କହିଲେ ଏ କଥାମାନ କରୁଣେ ଏମନ୍ତ
ପାଷାଣ ହେଲେହେଁ ଚିତ୍ତ ହେବ ଦ୍ରବୀଭୂତ ।
ଶେଷ ପରିବର୍ତ୍ତେ ହୃଦୁ ସମାଦର ସହ
ଫେରାଇ ଆଣିଲେ ତାଙ୍କୁ ଆପଣାର ଗୃହ ।
ଏ ଭାବରେ ତିନି ଦିନ ଥାଇ ଗୁଣଧାମ
ଇସ୍‌ଲାମୀ ଧର୍ମମତେ ହେଲେ ସିଦ୍ଧକାମ ।
ପ୍ରଥମେ ଏକ ଗମ୍ଭୀର ଦୀର୍ଘ ଶ୍ମଶ୍ରୁଧାରୀ
ପୁରୁଷପ୍ରବର ଜ୍ୟୋତିର୍ମୟ ରୂପ ଧରି,
ଉଭା ହେଲେ ଶୂନ୍ୟ ପଥେ ପ୍ରଭୁ ଦେବ ପାଶେ
ଦର୍ଶନେ ବୁଡ଼ିଲା ଚେତା ଭାବର ଆବେଶେ ।
ସଗୁଣ ବିରାଟ ରୂପ ଦର୍ଶନ କରିଣ
ତୁରିତେ ନିର୍ଗୁଣ ବ୍ରହ୍ମେ ମନ ହେଲା ଲୀନ ।
ହିନ୍ଦୁ ଆଉ ମୁସଲମାନ ଏହି ଦୁଇ ଜାତି
ଭାରତରେ ବହୁକାଳୁଁ କଲେହେଁ ବସତି ।
ଚିନ୍ତାର ପ୍ରବାହ କିମ୍ବା ଆଚାର ବେଭାର
ପରସ୍ପରଠୁ ଦୁହିଁଙ୍କେହୁ ଅଟେ ବରାବର ।
ଫଳେ ଏକ ଆରେକକୁ ଈର୍ଷା ଘୃଣା ନେତ୍ରେ
ନିରତେ ଯେ ନିରେଖଇ କି ଆଶ୍ଚର୍ଯ୍ୟ ଏଥେ ।
ସର୍ବଶକ୍ତିମାନ ବିଭୁ ପ୍ରଭୁ ଅବତାରେ
ନିଜେ ସାଧି ଦେଖାଇଲେ ଜନ ସମାଜରେ ।
ଈର୍ଷାଘୃଣା ଆଦି ସବୁ ଅଜ୍ଞାନୁଁ ସମ୍ଭୂତ
ଏକହିଁ ଗନ୍ତବ୍ୟ ସ୍ଥାନ, ଭିନ୍ନ ମାତ୍ର ପଥ ।
ବୃଥା କଳହ ତେଜିଣ ଆସ ଆସ ଭାଇ !
ଅନନ୍ତେ ଭଜିବା କଳ୍ପତରୁ ମୂଳେ ଥାଇଁ ।
ଶ୍ରୀପ୍ରଭୁ ଅଟନ୍ତି ଭବେ ମହାକଳ୍ପଦ୍ରୁମ
ଯେ ଯା ଗୃହେଁ, ତାହା ପାଏ, ପୂର୍ଣ୍ଣ ମନସ୍କାମ ।
ଯୁଗେ ଯୁଗେ ଅବତୀର୍ଣ୍ଣ ଯେତେ ଅବତାର
ସମ୍ଭବିଲେ ଏକ ଏକ ଭାବ ବିଭୁଙ୍କର ।

ଏ ଅବତାରରେ ଦୃଷ୍ଟ ତାର ବୈଲକ୍ଷଣ
ସର୍ବଭାବ ସମୀଭୂତ ଏଠାରେ ମିଶିଣ ।
ସାମାନ୍ୟ ବସ୍ତୁ ବା ବ୍ୟକ୍ତି ଦର୍ଶନ ମାତ୍ରକେ
ଚିତ୍ତରେ ଈଶ୍ୱର ଭାବ ଜାଗ୍ରତ କ୍ଷଣକେ ।
ଦ୍ୱୈତ ଭୂମିରେ ମନ କେବେ ବିଚରଣ
କେବେ ବା ଅଦ୍ୱୈତ ଭାବେ ରହନ୍ତି ମଗନ ।
ମନ ମଧ୍ୟେ ନ କଲେ ହେଁ କୌଣସି ସଙ୍କଳ୍ପ
ସ୍ୱତଃ ଦୀପ୍ତିମାନ ଚିତ୍ତେ ଅଦ୍ୱୈତ ପ୍ରଦୀପ ।
ଚରାଚର ପ୍ରାଣୀ ଅବା ବସ୍ତୁ ମାତ୍ରକେ
ଚିଦାନନ୍ଦ ବ୍ରହ୍ମଙ୍କର ଅଂଶ ହିଁ ପ୍ରତ୍ୟେକେ ।
ସମଭାବେ 'ଛନ୍ତି ବିଭୁ ସମସ୍ତଙ୍କଠାରେ
ପ୍ରକଟ ବା ଅପ୍ରକଟ ଆଧାର ଭେଦରେ ।
ସାର୍ବଭୌମ ଭାବ ଏବେ ପ୍ରବଳ ଏପରି
ସଂକ୍ଷେପେ ଶୁଣ କେତେକ ଦୃଷ୍ଟାନ୍ତ ତାହାରି ।
ମନ୍ଦିର-ଉଦ୍ୟାନେ ଥରେ ଘାସ ବୃଦ୍ଧି ହେତୁ
ବିନାମୂଲ୍ୟେ ଘାସ ନେବା ଆଜ୍ଞା ହେଲା ସେଥୁ ।
ଲୋଭ ପରବଶେ ନିଃସ୍ୱ ଘାସିଆ ଜଣେକ
ସାରାଦିନ ଲାଗି ଘାସ କାଟିଲା ଅନେକ ।
ଦିନମଣି ଅସ୍ତାଚଳେ ବୁଡ଼ିବାର ଦେଖି
ବାନ୍ଧିଲା ପ୍ରକାଣ୍ଡ ଗୋଛା ଦାଣ୍ଡେ ନେବ ବିକି ।
ଗୁରୁଭାର ଟେକିବାକୁ ଦେହେ ନାହିଁ ବଳ
ବାରମ୍ବାର ଚେଷ୍ଟା କରି ହୋଇଲା ବିଫଳ ।
ଦୂରରୁ ବ୍ୟାପାର ଦେଖି ଜଗତ ଗୋସାଇଁ
ମହାଭାବ କ୍ଷଣେ ତାଙ୍କ ଚିତ୍ତେ ଉଠିଲାହିଁ ।
ଜ୍ଞାନରୂପୀ ଆତ୍ମା ଯାର ହୃଦେ ବିଦ୍ୟମାନ
ସେ କପଟ କରଇ କର୍ମ ଅଜ୍ଞାନ ସମାନ ।
ହେ ରାମ ! ବିଚିତ୍ର ଲୀଳା ଅଟଇ ତୁମ୍ଭର
ସମାଧିସ୍ଥ ହେଲେ କ୍ଷଣେ ଭାଳି ଏ ପ୍ରକାର ।
ଆରେକ ଦିବସ ଅତି ସାମାନ୍ୟ ବିଷୟେ
ମହାଭାବ ଉଦ୍ଦୀପନ ତାଙ୍କର ହୃଦୟେ ।
କୌଣସି ବାଳକ ତାର ଚପଳତା ବଶେ
ଗୁଞ୍ଜିଥିଲା କାଠି ଖଣ୍ଡେ କଙ୍କି ଗୁହ୍ୟ ଦେଶେ ।
ଉଡ଼ିଗଲା ଯେମନ୍ତ ସେ ସମ୍ମୁଖେ ତାଙ୍କର
ଦର୍ଶନେ ବ୍ୟଥିତ ଚିତ୍ତ କରୁଣାସାଗର ।
ନିମିଷକେ ମହାଭାବ ହୋଇ ଉଦ୍ଦୀପିତ
ତହିଁରେ ଶ୍ରୀ ଦେବରାୟ ହେଲେ ନିମଜ୍ଜିତ ।

ତଦନ୍ତେ ଭାଷିଲେ ପ୍ରଭୁ ଉଚ୍ଚହାସ୍ୟ କରି
"କେ ବୁଝିବ ଈଶ୍ୱର ! ମହିମା ତୁମ୍ଭର ।
ଆପଣା ଦୁର୍ଦ୍ଦଶା ଆପେ କରିଲ ଏସନ"
କହୁଁ କହୁଁ ହାସ୍ୟରୋଳେ ଭାଙ୍ଗିଲା ଗଗନ ।
ଆରେକ ଦିନ ମନ୍ଦିର ଉଦ୍ୟାନ ମଧ୍ୟର
ନବ ଦୂର୍ବାଦଳେ ଥିଲା ଶୋଭିତ ଯେଠାର ।
ଦେବଙ୍କର ଦୃଷ୍ଟି ତହିଁ ପଡ଼ିଲା ଯେମନ୍ତ
ପ୍ରାଣ, ମନ ଏକାବେଳେ ଆକୃଷ୍ଟ ଏମନ୍ତ ।
ସଙ୍ଗେ ସଙ୍ଗେ ମହାଭାବ ହୋଇଣ ଉଦୟ
ସ୍ଥାନଟିକୁ ମନେ କଲେ ସେହୁ ନିଜ କାୟ ।
ସହସା କୌଣସି ଲୋକ ତା ଉପରେ ଦେଇ
ପାଦେ ଦଳି ଚାଲିଗଲା କାର୍ଯ୍ୟେ ଅନ୍ୟ ଠାଇଁ ।
ଏମନ୍ତ ଯନ୍ତ୍ରଣା ତହିଁ କଲେ ଅନୁଭବ
କି ବୁଝିବେ ତାର ମର୍ମ ମାୟା-ମୁଗ୍ଧ ଜୀବ ।
ଏ ସମ୍ବନ୍ଧେ ଯା କହିଲେ ପ୍ରଭୁ ଦେବରାୟ
ଶୁଣ ଆରେ ବାପା ମନ ଚିତ୍ତ କରି ଥୟ ।
"କେହି ଚାଲିଗଲେ କା'ର ବକ୍ଷୋପରେ ଦେଇ
ଯେପରି ତୀବ୍ର ଯନ୍ତ୍ରଣା ତାହାର ହୁଅଇ ।
ସେହିପରି କଷ୍ଟ ଯେ ମୁଁ କଲି ଅନୁଭବ
ପ୍ରକାଶ କରି ନ ହୁଏ ବାକ୍ୟେ ସେ ସରବ ।"
ଛଅଘଣ୍ଟା କାଳ ଏହି ଭାବାବେଶେ ଥାଇ
ଭୋଗିଲେ ଯେ କଷ୍ଟ ତାହା କହି ନ ହୁଅଇ ।
ଗଙ୍ଗାତୀରେ ଛିଡ଼ା ହୋଇ ପ୍ରଭୁ ଆଉ ଦିନେ
ଭାବେ ଗଦ ଗଦ ତାର ଶୋଭା ଦରଶନେ ।
ଏକାଳେ ଲାଗିଲା ଘାଟେ ନାବ ଦୁଇଖଣ୍ଡ
ମାଝିମାନ ଉତ୍ତରଣ କଳହରେ ଚଣ୍ଡ ।
ସେ କଳହ କ୍ରମେ କ୍ରମେ ବଢ଼ିଲା ଏମନ୍ତ
କ୍ରୋଧବଶେ ସେମାନଙ୍କ ଜ୍ଞାନ ହେଲା ଲୁପ୍ତ ।
କୌଣସି ବଳିଷ୍ଠ ବ୍ୟକ୍ତି ଦୁର୍ବଳ ପୃଷ୍ଠରେ
ମାରିଦେଲା ଚାପୁଡ଼ାଏ ନିର୍ଦ୍ଦୟ ଭାବରେ ।
ଏ ଦୃଶ୍ୟଟି ନିରେଖିଣ ଦେବରାୟଙ୍କର
ଅନ୍ତରେ ହୋଇଲା ଗୁରୁ ବ୍ୟଥା ଏ ପ୍ରକାର ।
ସହି ନ ପାରିଣ ତାହା କାନ୍ଦିଲେ ଏସନ
ନିଜେ ମାଡ଼ ଖାଇଛନ୍ତି ସତେ କି ଯେସନ ।
ମାମୁଙ୍କ କ୍ରନ୍ଦନ ଶୁଣି ଭଣଜା ହୃଦୟ
ଘଟଣା ଜାଣିବା ପାଇଁ ବ୍ୟଗ୍ର ଅତିଶୟ ।

ମାମୁଙ୍କ ସମୀପେ ତ୍ୱରା ହୋଇ ଉପସ୍ଥିତ
ପୃଷ୍ଠଦେଶ ନିରେଖିଣ ହେଲେ ଚମକିତ ।
"କେ ଅଟେ ସେ ନରାଧମ ପାମର ବର୍ବର
ଯେ କଲା ତୁମ୍ଭଙ୍କୁ ମାମୁଁ ! ଏପରି ପ୍ରହାର ।
ପୃଷ୍ଠଦେଶ ଦିଶୁଅଛି ଆରକ୍ତ ଅତ୍ୟନ୍ତ
ମନେ ହୁଏ ଚାବୁଡ଼ାରୁ ଆଘାତ ଯେମନ୍ତ ।
ଅଙ୍ଗୁଳିର ଚିହ୍ନମାନ ଦିଶେ ଜଳ ଜଳ
ନିର୍ଦ୍ଦୟେ ଆଘାତ କଲା କିଏ ସେ ବାତୁଳ ।
ଦେଖାଇ ଦିଅନ୍ତୁ ମୋତେ ସେହି ପାମରକୁ
ଦ୍ୱିଧା ନ କରିବି ତାର ଶିର ଛେଦିବାକୁ ।"
ଧୀର ଭାବେ ପ୍ରଭୁ ତହୁଁ କହିଲେ ହୃଦୟେ
"ମାରି ନାହାନ୍ତି ତ ମୋତେ ଏ ମାଝୀ ନିଚୟେ ।
ବିବାଦେ ନାବିକ ଦଳ ହେଲେ ମାରାମାରି
ତାହାର ଆଘାତ ଚିହ୍ନ ପୃଷ୍ଠରେ ମୋହରି ।"
ଶ୍ରୀମୁଖ ବଚନ ଶୁଣି ହୃଦୟ ସ୍ତମ୍ଭିତ
କେ ବୁଝିବ ତବ ଲୀଳା ପ୍ରଭୋ ଜଗନ୍ନାଥ !
ଏ ବିଶ୍ୱଜନୀନ ଭାବ ଦେଖିଛୁ କି ମନ !
ଗୋବିନ୍ଦ ପଦାରବିନ୍ଦେ ରହ ତୁ ମଗନ ।
ଦୟାବନ୍ତ ଦେବରାୟ ଦେଲେ ଦିବ୍ୟ ନେତ୍ର
ଅକ୍ଳେଶେ ଦେଖିବୁ ତେବେ ଦିବ୍ୟ ଲୀଳା ଚିତ୍ର ।
ରାମକୃଷ୍ଣ ଲୀଳାମୃତ ସୁଧାର ଭଣ୍ଡାର
ପାନ କଲେ ତରିଯିବୁ ଭବ ପାରାବାର ।
ବିମୁଖ କମ୍ପାଇ ତୁହି ସେହି ସୁଧାପାନେ
ଏତେ ଭୋଗି ସୁଦ୍ଧା ଚେତା ନ ଆସିଲା ମନେ ।

ବେଳ ଥାଉଁ ଥାଉଁ ଯେନ ଶ୍ରୀପାଦେ ଆଶ୍ରୟ
କରୁଣା କରିବେ ନିଶ୍ଚେ ପ୍ରଭୁ ଦୟାମୟ ।

---

# ଚତୁର୍ଦ୍ଦଶ ଅଧ୍ୟାୟ

## ସାଧନ ଭଜନ ସମୟରେ କେତେ ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କ ସହିତ ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ମିଳନ ଏବଂ ତାଙ୍କ ଅବସ୍ଥା ସମ୍ବନ୍ଧରେ ସେମାନଙ୍କ ମତାମତ

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମ ସନାତନ
ଅନାଦି କାରଣ ବିଭୁ ଦୀନ ଉଦ୍ଧାରଣ ।
ସାଧନ କରିଣ ପ୍ରଭୁ ଯେ ଅବସ୍ଥା ଲବ୍ଧ
ସେ ସମ୍ବନ୍ଧେ ଶାସ୍ତ୍ରେ ଯାହା ଅଛି ଲିପିବଦ୍ଧ ।
ତାଙ୍କ ପାଶେ ଆସି କେତେ ପ୍ରସିଦ୍ଧ ପଣ୍ଡିତ
ପ୍ରକାଶିଲେ ସେ ସମ୍ବନ୍ଧେ ତାଙ୍କ ମତାମତ ।
କିଏ ସେ ପଣ୍ଡିତ କିବା ମତବ୍ୟକ୍ତ କଲେ
ସାଧୁଜନେ ସାବଧାନେ ଶୁଣ କୁତୂହଳେ ।
ଶ୍ରୀ ପ୍ରଭୁଙ୍କ ଦିବ୍ୟୋନ୍ମାଦ କରିଣ ଦର୍ଶନ
କେ କହିଲା ବ୍ୟାଧି, କିଏ ପ୍ରେତ ଆକ୍ରମଣ ।
ଈଶ୍ୱର ନିମନ୍ତେ ହୁଏ ବ୍ୟାକୁଳତା ଏତେ
ତାହା ଦେଖି ନ ଥିଲେକ କେହି ଜଗତେ ।
ନାନା ଲୋକେ ନାନା କଥା ତେଣୁ ଯେ କହିଲେ
ବାୟୁବ୍ୟାଧି ବୋଲି କରି ମଥୁର ଭାବିଲେ ।
ଉପଶମ ପାଇଁ ତେଣୁ ହୋଇ ଯତ୍ନବାନ
ଯଥାଯଥ କଲେ ତାର ଚିକିତ୍ସା ବିଧାନ ।
ଭୈରବୀ ବ୍ରାହ୍ମଣୀ ଯେବେ ପ୍ରଭୁ ପାଶେ ଥିଲେ
ମଥୁରଙ୍କ କଥା ଏଡ଼ି ସଦମ୍ଭେ ବୋଇଲେ ।
ଭାବ ମହାଭାବ ଆଦି ଶାସ୍ତ୍ରେ ଯା ଲିଖିତ
ଶ୍ରୀଅଙ୍ଗେ ଲକ୍ଷଣ ତାର ସବୁ ପ୍ରକଟିତ ।
ବିରହର ଜ୍ୱାଳା ଏହା ଶାସ୍ତ୍ରବାକ୍ୟ ମତେ
ଚନ୍ଦନ ଘୋରିଣ ତେଣୁ ଲେପିଦେଲେ ନିରତେ ।
ଯହିଁରେ କି ଅଙ୍ଗଜ୍ୱାଳା ହୋଇଲା ନିବୃତ୍ତି
ଚିକିତ୍ସାଦି ବ୍ୟର୍ଥ ଯାର ଆରୋଗ୍ୟ ନିମିତ୍ତି ।
ଶାସ୍ତ୍ରବାକ୍ୟ ମତେ ବିଜ୍ଞା ମଥୁରେ ଭାଷିଲେ
ନିଶ୍ଚୟ ଗୌରାଙ୍ଗ ପୁନଃ ବିଜେ ଧରାତଳେ ।

ବିଶିଷ୍ଟ ପଣ୍ଡିତ ଦେଖି ଆମନ୍ତ୍ରଣ କର
ପ୍ରମାଣ କରିବ ତାଙ୍କ ପାଶେ ମତ ମୋର ।
ବ୍ରାହ୍ମଣୀଙ୍କ କଥା ଶୁଣି ମଥୁର ମୋହନ
ଆସ୍ଥା ନ ଦେଲେ ତହିଁରେ କିଞ୍ଚିତ ପ୍ରମାଣ ।
ଭିକ୍ଷାବ୍ରତ ଆଚରଣୀ ନଗଣ୍ୟା ବ୍ରାହ୍ମଣୀ
ବିଶ୍ୱାସ କରିବ କିଏ ତାଙ୍କ କଥା ଶୁଣି ।
ଏ ପ୍ରକାରେ ବିତିଗଲା କେତେକ ସମୟ
ମଥୁରେ କହିଲେ ଦିନେ ପ୍ରଭୁ ଦୟାମୟ ।
ବିପ୍ରା କଥା ସତ୍ୟାସତ୍ୟ ନିର୍ଦ୍ଧାରଣ ପାଇଁ
ଡାକ ସୁଧୀ ସୁପଣ୍ଡିତେ ନିମନ୍ତ୍ରଣ ଦେଇ ।
ପ୍ରଭୁଙ୍କ ଆଗ୍ରହ ଦେଖି ଭକତ ମଥୁର
ସଭା ବସାଇବା ପାଇଁ କଲା ସବୁ ସ୍ଥିର ।
ବାଳକ ସ୍ୱଭାବାପନ୍ନ ପୂଜକ ଠାକୁର
ପଣ୍ଡିତ କଥାରେ ହେବ ବିଶ୍ୱାସ ତାଙ୍କର ।
ଭାବମହାଭାବ ଆଦି ବିପ୍ରା ଯାହା କହେ
କପୋଳକଳ୍ପିତ କଥା ଗ୍ରନ୍ଥାଦି ସମୂହେ ।
ଅଳୀକ ଭାବନାମାନ ଚୂର୍ଣ୍ଣ ହୋଇ ଦୂର
ଔଷଧେ ବିଶ୍ୱାସୀ ହେବେ ଜଗତ ଠାକୁର ।
ଏମନ୍ତ ପାର୍ଷଦ ଭକ୍ତ ମଥୁର ମୋହନ
ଗୋଟିଏ ପଣ୍ଡିତ ସଭା କଲେ ଆବାହନ ।
କଲିକତା ସହରସ୍ଥ ପଣ୍ଡିତ ମଧ୍ୟରେ
ଶ୍ରୀ ବୈଷ୍ଣବ ଚରଣଙ୍କ ଖ୍ୟାତ ସବୁଠାରେ ।
ଭାଗବତ ଦର୍ଶନାଦି ଯେତେ ଗ୍ରନ୍ଥମାନ
ତାର ବ୍ୟାଖ୍ୟା କରିବାକୁ ବିଶେଷ ନିପୁଣ ।
ପଣ୍ଡିତମାନଙ୍କ ସଭା ହୁଏ ଯେଉଁଠାରେ
ପ୍ରଥମ ଆସନ ପାନ୍ତି ବୈଷ୍ଣବ ସେଠାରେ ।
ଭକତି ଗ୍ରନ୍ଥରେ ଥିଲା ବିଶେଷ ବ୍ୟୁତ୍ପତ୍ତି
ବୈଷ୍ଣବ ସମାଜେ ତେଣୁ ଥିଲେ ଅଧିପତି ।
କୌଣସି ବିଷୟେ କାର ସନ୍ଦେହ ଜନ୍ମିଲେ
ମୀମାଂସାର୍ଥେ ତାଙ୍କ ପାଶେ ଧାବନ୍ତି ସକଳେ ।
ବୈଷ୍ଣବଚରଣ ଆଦି ପ୍ରସିଦ୍ଧ ପଣ୍ଡିତ
ସଭା ପାଇଁ ସେ କାରଣେ ହେଲେ ମନୋନୀତ ।
ନିର୍ଦ୍ଧାରିତ ଦିବସରେ ବୈଷ୍ଣବ ଚରଣ
ଅନ୍ୟାନ୍ୟ ପଣ୍ଡିତ, ଭକ୍ତ ସଙ୍ଗତେ ଘେନିଣ ।
ଦକ୍ଷିଣେଶ୍ୱରରେ ଆସି ହେଲେ ଉପସ୍ଥିତ
ପ୍ରଭୁଙ୍କ ଅବସ୍ଥା କଥା ମୀମାଂସା ନିମିତ୍ତ ।

ମଥୁର ମୋହନ ତାଙ୍କ ଦଳ ବଳ ଘେନି
ସଭାସ୍ଥଳେ ପ୍ରବେଶିଲେ ବେଳକାଳ ଜାଣି ।
ପ୍ରଭୁଙ୍କୁ ଘେନିଣ ସାଥେ ବିପ୍ରା ଯୋଗେଶ୍ୱରୀ
ସଭାସ୍ଥଳେ ପ୍ରବେଶିଲେ ପୋଥିପତ୍ର ଧରି ।
ବିଚାରାଳୟେ ଓକିଲ ମହକିଲ ପାଇଁ
ଦମ୍ଭ ସହକାରେ ଯଥା ବକ୍ତୃତା କରଇ ।
ବିପ୍ରା ତଥା ବୀରଦର୍ପେ ଅଣ୍ଟା ଦୃଢ଼େ ଭିଡ଼ି
ଶ୍ରୀଦେବଙ୍କ ପକ୍ଷ ଧରି ହୁଙ୍କାରିଲେ ରଡ଼ି ।
ସ୍ୱନେତ୍ରରେ ଦେଖିଥିଲେ ଯେ ଅବସ୍ଥାମାନ
ଅଥବା ଯା କରିଥିଲେ ଶ୍ରୀମୁଖୁଁ ଶ୍ରବଣ ।
ଗୋଟିଏ ଗୋଟିଏ କରି ସେହି ସମୁଦାୟ
ସଭାସ୍ଥଳେ ବଖାଣିଲେ ଦୃଢ଼େ ଅତିଶୟ ।
ତଦନ୍ତେ ଭକତି ଶାସ୍ତ୍ର ବାହାର କରିଣ
ପୂର୍ବ ପୂର୍ବ ଯୁଗେ ଆସି ଭକ୍ତାଗ୍ରଣୀଗଣ,
ପବିତ୍ର ଜୀବନେ କଲେ ଯାହା ଅନୁଭୂତ
ଭକ୍ତଶାସ୍ତ୍ରେ ଲିପିବଦ୍ଧ ଯେ ସବୁ ବିବୃତ,
ତହିଁ ସଙ୍ଗେ ପ୍ରଭୁଙ୍କର ଅବସ୍ଥା ସକଳ
ଗୋଟିଏ ଗୋଟିଏ କରି ମିଳାଇ ତତ୍କାଳ,
ସୁଧୀଙ୍କ ସମୀପେ କଲେ ସ୍ୱମତ ପ୍ରକାଶ—
ସେହି ଶ୍ରେଣୀଭୁକ୍ତ ମଧ୍ୟ ଏ ମହାପୁରୁଷ ।
ଏ ସମ୍ବନ୍ଧେ ଯଦି କାର ଅନ୍ୟ ମତ ଅଛି
ପ୍ରମାଣ କରିବା ପାଇଁ ବିନତି କରୁଛି ।
ପଣ୍ଡିତଙ୍କ ଶିରୋମଣି ବୈଷ୍ଣବଚରଣ
ଶ୍ରୀଦେବଙ୍କୁ ଯେମନ୍ତ ସେ କଲେକ ଦର୍ଶନ
ଅଛି ଯେ ଲକ୍ଷଣମାନ ଶ୍ରୀଅଙ୍ଗେ ପ୍ରକାଶ
ସେଥିରୁ ଜାଣିଲେ ତାଙ୍କୁ ଏ ମହାପୁରୁଷ ।
ତାଙ୍କ ସମ୍ବନ୍ଧେ ଆଉ ଯା ବ୍ରାହ୍ମଣୀ ଭାଷିଲେ
ତାହା ଶୁଣି ଅନୁମାନ ଦୃଢ଼ୀଭୂତ କଲେ ।
ଆଦ୍ୟପ୍ରାନ୍ତ ସବୁ କଥା କରିଣ ଶ୍ରବଣ
ଅନ୍ତର ସହିତେ କଲେ ତାଙ୍କୁ ସମର୍ଥନ ।
କହିଲେ ଯେ ଊନବିଂଶ ଭାବ ସମ୍ମିଳନେ
ମହାଭାବ ବୋଲିଅଛି ଶାସ୍ତ୍ରର ବଚନେ ।
ଯାହା କି କେବଳ ମାତ୍ର ରାଧିକାଙ୍କଠାରେ
କିମ୍ବା ଦୃଷ୍ଟ ହୋଇଥିଲା ଚୈତନ୍ୟାବତାରେ ।
ଏ ବେନି ଦୃଷ୍ଟାନ୍ତ ଯାହା ଶାସ୍ତ୍ରରେ ଲିଖିତ,
ଏଙ୍କଠାରେ ସେ ସକଳ ପୂର୍ଣ୍ଣ ପ୍ରକାଶିତ ।

ଷ୍ଟର୍ଯ୍ୟକ୍ରମେ ଯାହା କାର ଜପତପ ବଳେ
ମହାଭାବ ଅନୁଭୂତ ହୁଏ କେତେବେଳେ ।
ତେବେ ସେହି ଊଣାଇଶ ଅବସ୍ଥା ମଧ୍ୟରେ
ଦୁଇ ବା ତ୍ରୟ ପ୍ରକାଶ ପାଏ ତାହାଠାରେ ।
ଊଣାଇଶ ପରକାରେ ଭାବର ପ୍ରବାହ
ଧାରଣ ଅକ୍ଷମ ଅଟେ ମନୁଷ୍ୟର ଦେହ ।
ଶାସ୍ତ୍ରକାରମାନେ ସର୍ବେ ଏଥି ଏକମତ
ବୈଷ୍ଣବ ଚରଣ ଧୀରେ ଭାଷିଲେ ଏମନ୍ତ ।
ମଥୁର ପ୍ରଭୃତ ଯେତେ ଥିଲେ ସଭାସ୍ଥଳେ
ବୈଷ୍ଣବଙ୍କ ମତ ଶୁଣି ଆଚମ୍ଭିତ ହେଲେ ।
କରୁଣାସାଗର ପ୍ରଭୁ ଅନାଦି କାରଣ
ଯାଙ୍କ ପାଇଁ ଏହି ସଭା ହୋଇଛି ଆହ୍ୱାନ,
ସଭାସ୍ଥଳେ ବସିଣ ସେ ନିର୍ବିକାର ଚିତ୍ତେ
ଶୁଣିଲେ ସମସ୍ତ କଥା ଦର୍ଶକ ଯେମନ୍ତେ ।
ମଧ୍ୟେ ମଧ୍ୟେ ବଟୁଆରୁ ମସଲା କାଢ଼ିଣ
ବାଳକ ପରାୟେ ତାହା କରନ୍ତି ଚର୍ବଣ ।
ଅନ୍ତେ ଶ୍ରବଣ କରି ବୈଷ୍ଣବଙ୍କ ମତ
ମଥୁରେ କହିଲେ ବାଣୀ ହୋଇ ହରଷିତ ।
ଯାହା ହେଉ ବ୍ୟାଧିଗ୍ରସ୍ତ ନୁହେ ମୋ ଶରୀର
ଆନନ୍ଦିତ ହେଲି ଶୁଣି ଏହି ସମାଚାର ।
ପ୍ରଭୁଙ୍କୁ ଦର୍ଶନ କରି ବୈଷ୍ଣବ ଚରଣ
ସାର୍ଥକ ମଣିଲେ ତାଙ୍କ ମାନବ ଜୀବନ ।
ଏସନେ ଶ୍ରୀପାଦେ ଭକ୍ତ ହୋଇଣ ବର୍ଦ୍ଧିତ
ଦିବ୍ୟ ସଙ୍ଗ ଲଭ ପାଇଁ ହେଲେ ଲାଳାୟିତ ।
ମଧ୍ୟେ ମଧ୍ୟେ ତାଙ୍କ ପାଶେ କରି ଆଗମନ
ଈଶ୍ୱର ପ୍ରସଙ୍ଗେ କାଳ କରିଲେ ଯାପନ ।
ବୈଷ୍ଣବ ସମ୍ପ୍ରଦାୟେ 'କର୍ତ୍ତାଭଜା' ଦଳ *
ତାନ୍ତ୍ରିକ ମତର ଯାହା କେତେକ ନକଲ ।
ଏହି ଦଳଭୁକ୍ତ ଥିଲେ ବୈଷ୍ଣବ ଚରଣ
କଲିକତାରେ ତାଙ୍କର ବହୁତ ସମ୍ମାନ ।
କେତେବେଳେ ନିଜେ ଏକା ପ୍ରଭୁ ପାଶେ ଆସି
ଶୁଣନ୍ତି ସାଧନ ତତ୍ତ୍ୱ ପଦ ପ୍ରାନ୍ତେ ବସି ।
ଦଳବଳ ସଙ୍ଗେ ଆଣି ପୁଣି କେତେବେଳେ
ଶୁଣନ୍ତି ମଙ୍ଗଳ ବାଣୀ ବସି ଏକମେଳେ ।

ଶ୍ରୀଦେବ ଭାଷିଲେ ବନ୍ଧୁ ଲଭିବା ନିମିତ୍ତ
ଅତି କଦର୍ଯ୍ୟ ଅଟଇ ଜାଣିବ ଏ ମତ ।
ଗୃହେ ପ୍ରବେଶିବା ପାଇଁ କୌଣସି ଲୋକର
ନାନା ବିଧେ ଖଞ୍ଜାଥାଏ ଦ୍ୱାର ଯେ ପ୍ରକାର ।
ସଦର ଫାଟକ ଦେଇ କେହି ପ୍ରବେଶଇ
କେହି ପୁଣି ଆତଯାତ କଲି ଦ୍ୱାର ଦେଇ ।
ମଳମୂତ୍ର ପରିଷ୍କାର କରିବା ନିମନ୍ତେ
ମେହେନ୍ତର ପାଇଁ ମଧ୍ୟ ଦ୍ୱାର ଥାଏ ସେଥେ ।
ଯାହାର ଯେମନ୍ତ ଇଚ୍ଛା ସେହି ବାଟ ଦେଇ
ଗୃହଟିର ଅଭ୍ୟନ୍ତରେ ପ୍ରବେଶ କରଇ ।
ପାଇଖାନା ବାଟେ ଗୃହେ ପ୍ରବେଶ ସମାନ
ଈଶ୍ୱର ପ୍ରାପ୍ତିର ଏହି ଘୃଣ୍ୟ ପଥ ଜାଣ ।
ପ୍ରାଣୀଏ ହୋଇ କାମିନୀ କାଞ୍ଚନେ ଆସକ୍ତ
କାମିନୀ ଯେଣୁ ଏଥିରେ ସାଧନେ ନିଯୁକ୍ତ ।
ଏ ମାର୍ଗ ଅଟଇ ତେଣୁ ଅତ୍ୟନ୍ତ ପିଚ୍ଛିଳ
ପଦସ୍ଖଳନ ଆଶଙ୍କା ରହିଛି ବହୁଳ ।
ଏ ମତବାଦୀଙ୍କ ଆଡ୍ଡା କଲିକତାଠାରେ
କାଞ୍ଚ ବାଗାନ ନାମକ ନିଭୃତ ସ୍ଥାନରେ ।
ସାଧନେ ପ୍ରବୃତ୍ତ ତହିଁ ବହୁ ନରନାରୀ
ବୈଷ୍ଣବ ଦିଅନ୍ତି ଦୀକ୍ଷା ଯାହାକୁ ଯେପରି ।
ସେଠାରେ କି ଭାବେ ହୁଏ ସାଧନ ଭଜନ
କେମନ୍ତେ ଲଭିବେ ଭକ୍ତେ ମହତ କଲ୍ୟାଣ ।
ବୈଷ୍ଣବ ଚରଣ ଦିନେ ଏମନ୍ତ ବିଚାରି
ଶ୍ରୀପ୍ରଭୁଙ୍କୁ ଘେନିଗଲେ ସଙ୍ଗେ ଯାନ ଧରି ।
ସାଧନ ଭଜନ ପନ୍ଥା ଦେଖିଣ ସେଠାର
କହିଲେ ଶ୍ରୀଦେବରାୟ କରୁଣାସାଗର ।
"ନାରୀ ହୋଇବ ହିଞ୍ଜଡ଼ୀ, ନର ନପୁଂସକ
ତେବେ ହେବ 'କର୍ତ୍ତାଭଜା' ମତର ସାଧକ ।"
ଅତଃପର ଭକ୍ତବର ବୈଷ୍ଣବ ଚରଣ
ଶ୍ରୀପ୍ରଭୁଙ୍କ ଦେବ ଭାବେ ବିମୁଗ୍ଧ ହୋଇଣ,
ନିର୍ଭୀକ ହୃଦୟେ ଆସି ସର୍ବ ସମକ୍ଷର
ଈଶ୍ୱରାବତାର ବୋଲି କଲେ ପ୍ରଚାର ।
ବୈଷ୍ଣବଙ୍କ ମତାମତ ଶ୍ରବଣ କରିଣ
ନୋହିଲା ଶ୍ରୀ ମଥୁରଙ୍କ ସନ୍ଦେହ ଭଞ୍ଜନ ।

* କର୍ତ୍ତାଭଜା—ତାନ୍ତ୍ରିକ ସାଧନ ଭଳି ନାରୀ ଘେନି ବୈଷ୍ଣବ ମତର ଏକ ପ୍ରକାର ସାଧନବିଶେଷ ।

ପୁଣି ସଭା ବସାଇଲେ କିଛୁ ଦିନ ପରେ
ବୀରଭୂମୁଁ ଡକାଇଣ ପଣ୍ଡିତ ପ୍ରବରେ ।
ଗଉରୀ ନାମେ ସେଠାରେ ବିଖ୍ୟାତ ପଣ୍ଡିତ
ଅଗାଧ ପାଣ୍ଡିତ୍ୟ ଯାର ଦେଶେ ଦେଶେ ଖ୍ୟାତ ।
ତାନ୍ତ୍ରିକ ମତରେ ସିଦ୍ଧ ତେଜସ୍ୱୀ ବ୍ରାହ୍ମଣ
ହୋମ ପଦ୍ଧତି ତାଙ୍କର ଅତି ବିଚକ୍ଷଣ ।
ଭୂତଳେ ନ ରଚନ୍ତି ସେ ବେଦୀ କେତେବେଳେ
ବାମ ହସ୍ତେ ସେହି କାର୍ଯ୍ୟ ସମ୍ପାଦନ୍ତି ହେଳେ ।
ମହଣ ମହଣ କାଷ୍ଠ ବାମେ ସଂସ୍ଥାପିଣ
ଦକ୍ଷିଣେ କରନ୍ତି ତହିଁ ଆହୁତି ପ୍ରଦାନ ।
ଏ ପ୍ରକାରେ ବିତିଯାଏ ପ୍ରହର ପ୍ରହର
ଅନୁଭବ ନ କରନ୍ତି କ୍ଲାନ୍ତି କଷ୍ଟତର ।
ସିଦ୍ଧି ବଳେ ଲଭିଥିଲେ ଏପରି ଶକତି
ତା ନ ଜାଣି ସର୍ବେ ହୋନ୍ତି ଆଶ୍ଚର୍ଯ୍ୟ ଯେ ଅତି ।
ଆବର ଶକତି ଏକ ଥିଲା ବି ତାଙ୍କର
ଯା' ବଳେ ହରନ୍ତି ଶକ୍ତି ପ୍ରତିଦ୍ୱନ୍ଦୀଙ୍କର ।
ସଭାସ୍ଥଳେ ଯେତେବେଳେ ହୁଏ ତର୍କ ଯୁକ୍ତି
ପ୍ରୟୋଗ କରନ୍ତି ଗୌରୀ ଏହି ଦୈବୀ ଶକ୍ତି ।
କେସନେ କରନ୍ତି ସେହୁ ଶକତି ହରଣ
ସାଧୁଜନେ ସାବଧାନେ ଶୃଣ ବିବରଣ ।
ଶାସ୍ତ୍ରୀୟ ବିଷୟରେ ସେହୁ ହୋଇଲେ ଆହୂତ
ସଭାସ୍ଥଳେ ଯେମନ୍ତ ସେ ହୋନ୍ତି ଉପନୀତ ।
ହା ରେ ରେ ରେ ବୋଲି ଏତେ କରନ୍ତି ସେ ପାଟି
ଗମ୍ଭୀର ନିନାଦେ ଚଉଦିଗ ଯାଏ ଫାଟି ।
ତଦନ୍ତେ ଗୋଟିଏ ଦେବୀସ୍ତୋତ୍ର ପାଠକରି
ପ୍ରବେଶନ୍ତି ମଣ୍ଡପରେ ସୁଧୀବର ଗୌରୀ ।
ହା ରେ ରେ ରେ ଶବ୍ଦଟିର ଶକ୍ତି ବଳିଆର
ଗୌରୀ ହୃଦେ କରି ଦୈବୀ ଶକ୍ତିର ସଞ୍ଚାର ।
ପ୍ରତିପକ୍ଷ ଚିତ୍ତେ ମହାତ୍ରାସ ଉପୁଜାଇ
ନିସ୍ୟୁକ୍ତ କରଇ ଯେ ତାଙ୍କୁ ସବୁଠାଇଁ ।
ପଣ୍ଡିତଙ୍କଠାରେ ଥିଲା ଏପରି କ୍ଷମତା
ଆଗୁଁ ଜାଣି ନ ଥିଲେ ତା ବ୍ରହ୍ମାଣ୍ଡ ହରତା ।
ମନ୍ଦିର ପ୍ରାଙ୍ଗଣେ ଗୌରୀ ପଦାର୍ପଣ କରି
ହା ରେ ରେ ରେ ଶବ୍ଦ ଯଦା ଛାଡ଼ିଲେ ହୁଙ୍କାରି ।
ଶ୍ରବଣ ମାତ୍ରକେ ତାହା ପ୍ରଭୁ ପଦ୍ମପାଦ
ତାଙ୍କୁ ବଳି ହୁଙ୍କାରିଲେ ହା ରେ ରେ ଶବଦ ।

ତାହା ଶୁଣି ଗୌରୀ କଲେ ତହୁଁ ଉଚ୍ଚେ ରଡ଼ି
ଦେବରାୟ ଉଚ୍ଚନାଦ କଲେ ତାଙ୍କୁ ବଢ଼ି ।
ଦୁହିଙ୍କର ଏ ପ୍ରକାର ହା ରେ ରେ ଶବ୍ଦରେ
ଚହଲି ପଡ଼ିଲା ସାରା ମନ୍ଦିର ଭିତରେ ।
ସ୍ୱୈର ବା ତସ୍କର ଶଙ୍କାକରି ଦ୍ୱାରିଗଣ
ଠେଙ୍ଗା ବାଡ଼ି ଧରିଣ ଯେ ହେଲେ ଧାବମାନ ।
ଦେବରାୟ ଆଉ ସେହି ସୁଧୀ ଶିରୋମଣି
ଏ ପ୍ରକାର ଘୋର ରଡ଼ି କରୁଛନ୍ତି ଜାଣି ;
ହାସ୍ୟ ସମ୍ବରଣ କରି ନ ପାରି ସେମାନେ
ଠେଙ୍ଗାଧରି ବାହୁଡ଼ିଲେ ଯେ ଯାହାର ସ୍ଥାନେ ।
ଶ୍ରୀଦେବ ବୋଲନ୍ତି "ଦେବୀ ମୋତେ ଜଣାଇଲେ
କେଉଁଶକ୍ତି ଅର୍ଜିଥିଲେ ଗୌରୀ ସିଦ୍ଧି ବଳେ ।
ସେ ଶକ୍ତି ତାହାଠୁ ହରି ଜଗତ ଜନନୀ
ତା କଲ୍ୟାଣ ହେତୁ ମୋଠି ଅରପିଲେ ଆଣି ।"
ତର୍କରେ ଅଜେୟ ବୋଲି ତାର ଅହଂକାର
ଚୂର୍ଣ୍ଣୀଭୂତ ହେଲା ଗୌରୀ ପାଶେ ଏ ପ୍ରକାର ।
ପ୍ରଭୁଙ୍କର ଅକପଟ ଦେବ ଭାବ ଦେଖି
ଉନ୍ମୁକ୍ତ ଏବେ ଗୌରୀଙ୍କର ଦିବ୍ୟ ଆଖି ।
ସମ୍ୟକ ଭାବରେ ତହିଁ ହୋଇ ବିମୋହିତ
କିଛୁକାଳ ତାଙ୍କ ପାଶେ ସୁଖେ ଅବସ୍ଥିତ ।
ଏଥିମଧ୍ୟେ ଭକ୍ତବର ମଥୁର ମୋହନ
ଗୌରୀଙ୍କର ଆଗମନ ବାରତା ପାଇଣ,
ବୈଷ୍ଣବଚରଣ ଆଦି ପଣ୍ଡିତ କେତୋଟି
ସାଧନ ଭଜନ ଯାଙ୍କ ଥିଲା ଅନ୍ତର୍ଦୃଷ୍ଟି
ଦକ୍ଷିଣେଶ୍ୱରକୁ ତାଙ୍କୁ ନିମନ୍ତ୍ରି ଆଣିଣ
ପୁନଶ୍ଚ କରିଲେ ଏକ ସଭା ଆୟୋଜନ ।
ଅନ୍ୟ କିଛୁ ନୁହଇ ଯେ ଉଦ୍ଦେଶ୍ୟ ଏହାର
ଦେବଙ୍କ ଅବସ୍ଥା ଘେନି ବିଶେଷ ବିଚାର ।
ନିର୍ଦ୍ଧାରିତ ଦିବସରେ ପଣ୍ଡିତ ମଣ୍ଡଳୀ
ଏକେ ଏକେ ପ୍ରବେଶିଲେ ଆସି ସଭାସ୍ଥଳୀ ।
ଯଥା ସମୟେ ଭକତ ମଥୁର ମୋହନ
ତାଙ୍କ ଦଳବଳ ସହ କଲେ ଆଗମନ ।
ବୈଷ୍ଣବ ନ ଆସିଲାରୁ ନିର୍ଦ୍ଧାରିତ ବେଳେ
ଗୌରୀ ସହ ବିଜେ କଲେ ଦେବ ସଭାସ୍ଥଳେ ।
ପ୍ରଥମରେ ଦେବରାୟେ ଗଲେ ଦେବୀ ପାଶ
ଶ୍ରୀମୂର୍ତ୍ତି ଦର୍ଶନ ପାଇ ବନ୍ଦିବା ସକାଶ ।

ମନ୍ଦିର ଭିତରୁ ଯଦା ହୋଇଲେ ବାହାର
ଭାବାବେଶେ କଳେବର ହେଲା ଜର ଜର ।
ଟଳମଳ ସାରା ଅଙ୍ଗ ଭାବର ପ୍ରାବଲ୍ୟେ
ଶରୀରର ଭାର ଯେହ୍ନେ ପାଦ ନ ସମ୍ଭାଳେ ।
ଏ ସମୟେ ପ୍ରବେଶିଣ ବୈଷ୍ଣବ ଚରଣ
ପଙ୍କଜ ଚରଣେ କଲେ ପଣାମ ଯେସନ ।
ଦେବରାଜ ହୁଙ୍କାରିଣ ଚଢ଼ି ତା ସ୍କନ୍ଧରେ
କ୍ଷଣମଧ୍ୟେ ସମାଧିସ୍ଥ ସେହି ଅବସ୍ଥାରେ ।
ତାନ୍ତ୍ରିକ ପଣ୍ଡିତ ଗୌରୀ ଦେଖିଲେ ସାକ୍ଷାତ
ଆରୋହଣ କଲେ ଯେହ୍ନେ ଦେବୀ ଜଗନ୍ମାତ ।
ସାରା ସୃଷ୍ଟି ସଚୈତନ୍ୟ ଯାଙ୍କ ଚୈତନ୍ୟରେ
ତାଙ୍କୁ ଦେଖି ବଇଷ୍ଣବ ଆପଣା ସ୍କନ୍ଧରେ ।
ହୃଦୟ ଚୈତନ୍ୟମୟ ହୋଇଲା ତକ୍ଷଣ
ଭାବୋଚ୍ଛ୍ୱାସେ ଗାଇଲେ ଯେ ସ୍ତୋତ୍ରେକ ରଚଣ ।
ଆହା କି ବିଚିତ୍ର ଦୃଶ୍ୟ କିବା ମନୋହର
ମହାଭାବେ ସମାଧିସ୍ଥ ଜଗତ ଠାକୁର ।
ପ୍ରଶାନ୍ତ ପ୍ରସନ୍ନ ଦିବ୍ୟ ବଦନମଣ୍ଡଳ
ବାହାରଇ ତହିଁ ଜ୍ୟୋତି ଅତୀବ ଉଜ୍ଜ୍ୱଳ ।
ଶ୍ରୀପ୍ରଭୁଙ୍କୁ ସ୍କନ୍ଧେ ଧରି ବୈଷ୍ଣବ ଚରଣ
ଆନନ୍ଦ ଉଚ୍ଛ୍ୱାସେ ତାଙ୍କ ହୃଦ ପରିପୂର୍ଣ୍ଣ ।
ହୃଦୟର କୃତଜ୍ଞତା ଜ୍ଞାପନ ନିମିତ୍ତ
ସ୍ତବଟିଏ ଅନର୍ଗଳ ମୁଖୁ ବହିର୍ଗତ ।
ମଥୁର ପ୍ରମୁଖ ଗୌରୀ ପଣ୍ଡିତ ନିକରେ
ଯେଉଁମାନେ ଉପସ୍ଥିତ ଥିଲେ ସେ ସଭାରେ ।
ସ୍ଥିର ନେତ୍ରେ ପାଇଣ ସେ ଅପୂର୍ବ ଦର୍ଶନ
ଭକତି ଭାବରେ ତାଙ୍କ ଚିତ୍ତ ପରିପୂର୍ଣ୍ଣ ।
କରଯୋଡ଼ି ଶ୍ରୀପ୍ରଭୁଙ୍କୁ ଚତୁର୍ଦ୍ଦିଗେ ଘେରି
ଶୁଣିଲେ ଭକତିଭରେ ସ୍ତବର ମାଧୁରୀ ।
ଅତଃପର କ୍ରମେ କ୍ରମେ ଭାଙ୍ଗିଲା ସମାଧି
ବାହ୍ୟଜ୍ଞାନ ପ୍ରାପ୍ତ ହେଲେ ପ୍ରଭୁ କୃପାନିଧି ।
ଶ୍ରୀପ୍ରଭୁଙ୍କୁ ସଙ୍ଗେ ଧରି ପଣ୍ଡିତ ସକଳେ
କାର୍ଯ୍ୟାରମ୍ଭ ହେତୁ ଏବେ ଗଲେ ସଭାସ୍ଥଳେ ।
ଗଉରୀ ପଣ୍ଡିତ ତହିଁ ଉପସ୍ଥିତ ହୋଇ
ବୋଇଲେକ ତର୍କ ଯୁକ୍ତି ଆଉ କିସ ପାଇଁ ।
ବୈଷ୍ଣବ-ସାଧକ ଶ୍ରେଷ୍ଠ ବୈଷ୍ଣବଙ୍କ ପ୍ରତି
ଯେ ପ୍ରକାରେ କୃପା କଲେ ଦେବ ଜଗପତି,
ତା ଦେଖି ମୋ ହୃଦତମଃ ହୋଇଅଛି ଦୂର
ବୈଷ୍ଣବ ପଣ୍ଡିତ ସହ ଏକମତ ମୋର ।
ତର୍କ ଯୁକ୍ତି ଆଦି କିଛି ନ କରି ବିଶେଷ
ଏମନ୍ତେ ବିଚାର କାର୍ଯ୍ୟ ସୂକ୍ଷ୍ମେ ହେଲା ଶେଷ ।
ଅନ୍ୟ କେତେକ ବିଷୟେ କଥାବାର୍ତ୍ତା ପରେ
ସଭା ଭଙ୍ଗ ହେଲା ଅଳ୍ପ ସମୟ ମଧ୍ୟରେ ।
ଗୌରୀଙ୍କୁ କହିଲେ ଦେବରାୟ ଅତଃପର
"ଯେ କଥା ବିଚାର ପାଇଁ ଆହ୍ୱାନ ତୁମ୍ଭର
ଉତ୍ଥାପନ ନ ହେଉଣୁ ସେ ସବୁ ପ୍ରସଙ୍ଗ
ଅନ୍ୟ କଥା କହି ସଭା କରିଦେଲ ସାଙ୍ଗ ।
ନିଜ ଶରୀର ଦେଖାଇ କହିଲେ ଠାକୁର
ବୈଷ୍ଣବ କହଇ ପୁଣି ଏକୁ ଅବତାର ।
ସମ୍ଭବ କି ହୋଇପାରେ ଏହା କେତେବେଳେ
ତୁମ୍ଭର କି ମତାମତ କହ ମୋତେ ଭଲେ ।"
ଉତ୍ତରେ ଭାଷିଲେ ଗୌରୀ ଗମ୍ଭୀର ରାବରେ
"ତାକୁ ବଳି ଆଉ କିଛି ମୋହର ମତରେ ।
ମୋ ବିଶ୍ୱାସ ପୂର୍ବଯୁଗ ଅବତାରଗଣ
ଯେ ବ୍ରହ୍ମଙ୍କ କଳା ଘେନି ମର୍ତ୍ତ୍ୟେ ଆଗମିଣ
ନିଜ ପ୍ରାଣ ବଳି ଦେଇ ପ୍ରାଣୀଙ୍କ କଲ୍ୟାଣେ
ପ୍ରଚାର କଲେ ବିବିଧ ଧର୍ମ ଏ ଭୁବନେ ।
ସେହି ଅନାଦିକାରଣ ପ୍ରଭୁ ନିରଞ୍ଜନ
ଆପଣେ ଏ ଧରାଧାମେ ସ୍ୱୟଂ ଅବତୀର୍ଣ୍ଣ ।"
ଗୌରୀଙ୍କ ସିଦ୍ଧାନ୍ତ ଶୁଣି ପ୍ରଭୁ ନରହରି
ସହାସ୍ୟେ କହିଲେ ପୁଣି ସମ୍ବୋଧନ କରି ।
"ନିଜ ମତାମତ ତୁମ୍ଭେ ଯାହା ବ୍ୟକ୍ତ କଲ
ବଇଷ୍ଣବ ଚରଣଙ୍କୁ ତହିଁ ବଳିଗଲ ।
ଏ ପ୍ରକାର କଥା ତୁମ୍ଭେ କହୁଛ କିମ୍ପାଇଁ
କଥାର ମରମ ମୁଁ ତ ବୁଝି ନ ପାରଇ ।"
ଗଉରୀ କହିଲେ ତହୁଁ ବିନୟେ ଉତ୍ତର
"ଗ୍ରନ୍ଥବାକ୍ୟେ କହୁନାହିଁ ମୁହିଁ ଏ ପ୍ରକାର ।
ଶାସ୍ତ୍ରାଦି ପଢ଼ିଣ ପୂର୍ବେ ଯାହା ଜାଣିଥିଲି
ପ୍ରତ୍ୟକ୍ଷ ପ୍ରମାଣ ତାର ତୁମ୍ଭଠି ପାଇଲି ।
ଶାସ୍ତ୍ରବାକ୍ୟେ ନିବେଶିଛି ମୋହର ଯେ ମତ
ପ୍ରତିବାଦେ ଯଦି କେହି ଅଛନ୍ତି ପ୍ରସ୍ତୁତ ।
ରାଜିଅଛି ତାଙ୍କ ସଙ୍ଗେ ତର୍କ ଯୁକ୍ତି କରି
ପ୍ରମାଣ କରିବି ମତ-ସତ୍ୟତା ମୋହରି ।"

ଗୌରୀଙ୍କ ବଖାଣ ଶୁଣି କହିଲେ ଠାକୁରେ
"ଜାଣି ନ ପାରଇ ମୁହିଁ ଏହା କିଞ୍ଚିତରେ ।"
ଗୌରୀ କହିଲେ "ସତ୍ୟ ତୁମ୍ଭର ବଚନ
ଶାସ୍ତ୍ରେ ଅଛି ଭୂରି ଭୂରି ଏଥିର ପ୍ରମାଣ ।
ଆପଣାକୁ ନ ଜାଣନ୍ତି ଆପେ ଯେତେବେଳେ
ଅବଗତ ହେବେ ତାହା ଅନ୍ୟେ କେଉଁ ବଳେ ।
କରୁଣା କରିଣ ଚିହ୍ନା ଦେଲେ ଆପଣାକୁ
ଇତରେ ସକ୍ଷମ ହେବେ ତେବେ ଚିହ୍ନିବାକୁ ।"
ଗୌରୀଙ୍କ ବିଶ୍ୱାସ ଭକ୍ତି ଦେଖିଣ ଏସନ
ମୃଦୁ ମନ୍ଦ ହାସ୍ୟ କଲେ ପ୍ରଭୁ ନାରାୟଣ ।
ପ୍ରଭୁ ପାଦେ ଗୌରୀ ଶେଷେ ସମାକୃଷ୍ଟ ହୋଇ
ମନ କଲେ ନାହିଁ ଅନ୍ୟ ସ୍ଥାନେ ଯିବା ପାଇଁ ।
ଦିବ୍ୟ ସଙ୍ଗ ଲଭେ ଚିତ୍ତେ ଦିବ୍ୟଜ୍ଞାନ ଜାତ
ସଂସାରେ ବିରାଗ ଭାବ ହେଲା ଉପସ୍ଥିତ ।
ଲୋକ ଖ୍ୟାତି ଦାମ୍ଭିକତା ପାଣ୍ଡିତ୍ୟାହଙ୍କାର
ହୃଦୟରୁ ଏକାବେଳେ ହୋଇଲା ଯେ ଦୂର ।
ଚିତ୍ତରେ ତାଙ୍କର ଏବେ ସୁଦୃଢ଼ ଧାରଣା
ଏ ଜଗତ ମିଥ୍ୟା ବିଭୁପାଦ ଲାଭ ବିନା ।
ଅଳୀକ ବିଷୟେ ମତ୍ତ ଥାଇ ଏତେ ଦିନ
ବୃଥାରେ କ୍ଷେପଣ କଲି ଦୁର୍ଲ୍ଲଭ ଜୀବନ ।
ସୁଦୃଢ଼ ସଂକଳ୍ପ ତେଣୁ କଲେ ମନେ ମନେ
ଗୃହେ ଫେରି ଯିବି ନାହିଁ ଆଉ କଦାଚନେ ।
ଯେତେଦିନ ଏ ଧରାରେ ଥିବି ମୁଁ ଜୀବିତ
ଭକ୍ତିରେ ଭଜିବି ବିଭୁ ଅନ୍ତର ସହିତ ।
କେବେ ଯଦି ଅନୁକମ୍ପା ହୋଇବ ତାଙ୍କର
ନିଶ୍ଚୟ ଦର୍ଶନ ଦେବେ ସେ ବିଶ୍ୱ ଠାକୁର ।
ଏଠାରେ ରହିଲେ ପୁତ୍ର ପରିବାରଗଣ
ଗୃହ ପାଇଁ ଦେଖାଇବେ ନାନା ପ୍ରଲୋଭନ ।
ଏମନ୍ତ ବିଚାରି ଦିନେ ପ୍ରାତଃକାଳୁ ଉଠି
ଫେଡ଼ିଲେ ଅନ୍ତର କଥା ପ୍ରଭୁଦେବେ ଭେଟି ।
ଭକ୍ତିଭରେ ଶ୍ରୀଚରଣେ କରି ନମସ୍କାର
ମେଲାଣି ମାଗିଣ କ୍ଷଣେ ହେଲେ ଦେଶାନ୍ତର ।
ଏଥିଅନ୍ତେ ଭେଟିଲେ ଯେ ଶ୍ରୀପଦ୍ମଲୋଚନ
ବର୍ଦ୍ଧମାନେ ସୁପ୍ରସିଦ୍ଧ ପଣ୍ଡିତ ପ୍ରଧାନ ।
ଦର୍ଶନ ଶାସ୍ତ୍ରରେ ତାଙ୍କ ଅଗାଧ ପାଣ୍ଡିତ୍ୟ
ରାଜ ସଭା କରିଥିଲେ ତେଣୁ ଅଲଙ୍କୃତ ।

ଅଦ୍ଭୁତ ପ୍ରତିଭାଶାଳୀ ପଣ୍ଡିତପ୍ରବର
ସାଧୁଜନେ ଶୁଣ ଏକ ଦୃଷ୍ଟାନ୍ତ ତାହାର
ଏକଦା ସେ ବର୍ଦ୍ଧମାନ ରାଜ ଦରବାରେ
ପ୍ରଶ୍ନ ଉତ୍ଥାପନ କଲେ ପଣ୍ଡିତ ନିକରେ ।
ଶିବ ବିଷ୍ଣୁ ଏହି ଦୁଇ ଦେବଙ୍କ ମଧ୍ୟର
କିଏ ବଡ଼, କିଏ ସାନ, କି ମତ ଶାସ୍ତ୍ରର ।
ତାଙ୍କ ମଧ୍ୟେ ଯେହୁ ଥିଲେ ଶିବଙ୍କ ଭକତ
ଶିବ ବଡ଼ କହି ଶ୍ଲୋକ ଶାସ୍ତ୍ରରୁ ଉଦ୍ଧୃତ ।
ବିଷ୍ଣୁଭକ୍ତ ଯେହୁ ଥିଲେ ସେ ମତ ଖଣ୍ଡିଣ
କହିଲେ ଦେବତା ମଧ୍ୟେ ବିଷ୍ଣୁହିଁ ପ୍ରଧାନ ।
ସେ ସମ୍ବନ୍ଧେ ଲେଖା ଯାହା ଶାସ୍ତ୍ରମାନଙ୍କରେ
ଅନର୍ଗଳ ଗାଇଗଲେ ସେ ସବୁ ଦମ୍ଭରେ ।
ଏକ ଆରେକର ମତ କରିଣ ଖଣ୍ଡନ
ଆପଣା ଇଷ୍ଟକୁ ବଡ଼ କଲେକ ପ୍ରମାଣ ।
ବାଦାନୁବାଦରେ ତହୁଁ ବହୁକ୍ଷଣ ଗଲା
କୌଣସି ମୀମାଂସା ତାର ହୋଇ ନ ପାରିଲା ।
ରାଜାଙ୍କ ଶ୍ରେଷ୍ଠ ପଣ୍ଡିତ ଶ୍ରୀ ପଦ୍ମଲୋଚନ
ସଭାସ୍ଥଳେ ଅବଶେଷେ କଲେ ଆଗମନ ।
ଉପସ୍ଥିତ ହୋଇ ତହୁଁ ପଣ୍ଡିତପ୍ରବର
ବିବାଦ କାରଣ ଶୁଣି ଭାଷିଲେ ଉତ୍ତର ।
"ଚଉଦ ପୁରୁଷ ମୋର କେହି କେତେବେଳେ
ଦେଖିନାହାନ୍ତି ବିଷ୍ଣୁ ବା ଶିବ ମହୀତଳେ ।
କେମନ୍ତେ କହିବି ମୁହିଁ ନିଶ୍ଚୟ କରିଣ
ମହେଶ ଅଟନ୍ତି ବଡ଼ କିମ୍ବା ନାରାୟଣ ।
ଶାସ୍ତ୍ରମତ ଶୁଣିବାକୁ ଯଦି ଇଚ୍ଛା କର
ଧୀର ଚିତ୍ତେ ଶୁଣ ତେବେ ବଚନ ମୋହର ।
ଶିବ ହୋଇଛନ୍ତି ବଡ଼ ଶୈବଙ୍କ ଶାସ୍ତ୍ରରେ
ବିଷ୍ଣୁ ହୋଇଛନ୍ତି ବଡ଼ ବୈଷ୍ଣବ ଗ୍ରନ୍ଥରେ ।
ଯାହାର ଅଟଇ ଯେହୁ ଆରାଧ୍ୟ ଦେବତା
ବଡ଼ କରି ଭଣିଛନ୍ତି ତାକୁ ଗ୍ରନ୍ଥକର୍ତ୍ତା ।
ପ୍ରକୃତରେ କେହି କା'ଠୁଁ ନୁହେଁ ବଡ଼ ସାନ
ଶକ୍ତି, ବଳ, ମହିମାରେ ଉଭୟ ସମାନ ।"
ଏମନ୍ତ ସିଦ୍ଧାନ୍ତ ଶୁଣି ସୁଧୀବରଙ୍କର
ଧନ୍ୟ ଧନ୍ୟ କଲେ ସଭା ପଣ୍ଡିତ ନିକର ।
ବିଭୁପାଦେ ଭକ୍ତି ଆଉ ଅଗାଧ ପାଣ୍ଡିତ୍ୟ
ପଦ୍ମଲୋଚନଙ୍କଠାରେ ଦୁଇ ସମ୍ମିଳିତ ।

ସଦ୍‌ଗୁରୁ, ଇଷ୍ଟନିଷ୍ଠା ତପସ୍ୟା ବଳରେ
ବହୁ ଖ୍ୟାତି ଅର୍ଜିଥିଲେ ଜନ ସମାଜରେ ।
ତାଙ୍କର ସଦ୍‌ଗୁଣାବଳୀ ଶୁଣି ନରହରି
ତାଙ୍କୁ ଦେଖିବା ନିମନ୍ତେ ଉଦବଗ୍ନ ଭାରି ।
ପ୍ରଭୁଙ୍କ ବ୍ୟଗ୍ରତା ଦେଖି ମଥୁର ମୋହନ
ବର୍ଦ୍ଧମାନ ଯିବାପାଇଁ କଲେ ଆୟୋଜନ ।
ଏକାଳେ ପ୍ରାପତ ହେଲେ ସେଠୁଁ ସମାଚାର
ଶରୀର ଅସୁସ୍ଥ ହେତୁ ପଣ୍ଡିତପ୍ରବର ।
ଆଣସ୍ୱାଦହ ସମୀପେ ଭାଗୀରଥୀ ତୀରେ
ବାୟୁ ପରିବରତନେ 'ଛନ୍ତି ଏକ ଘରେ ।
ସମ୍ବାଦର ସତ୍ୟାସତ୍ୟ ନିରୂପଣ ପାଇଁ
ମଥୁର ପ୍ରେରିଲେ ହୃଦୁ ମୁଖୁର୍ଯ୍ୟାଙ୍କୁ ତହିଁ ।
ସଠିକ ସମ୍ବାଦ ପ୍ରାପ୍ତ ହୋଇଣ ଏସନେ
ଭକ୍ତେ କଲେ ଦେବଗୃହ ପଣ୍ଡିତ ଦର୍ଶନେ ।
ସାଧକ ପଣ୍ଡିତ ଆଉ ପ୍ରଭୁ ପରମେଶ୍ୱର
ଏକତ୍ର ମିଳନେ ହେଲେ ପ୍ରୀତିର ସଞ୍ଚାର ।
ଦ୍ରବ୍ୟ ନେଇଣ ସୁଧୀବର କଲେକ ଦର୍ଶନ
ବାହ୍ୟେ ନର, ଅନ୍ତରରେ କାଳୀମୂର୍ତ୍ତି ପୁଣ ।
ଭକ୍ତିସହକାରେ ତେଣୁ ଯୋଡ଼ି ବେନିକର
ପୂଜାସନ ଆଣି ବସାଇଲେ ଖରତର ।
ତାଙ୍କର ଭକ୍ତି ଦେଖିଣ ପ୍ରଭୁ ଭାବଗ୍ରାହୀ
ଭାବରେ ଆବିଷ୍ଟ ହେଲେ କ୍ଷଣମଧ୍ୟେ ତହିଁ ।
ହୃଦୟ ଆବେଗ ଆଉ ସମ୍ଭାଳି ନ ପାରି
ଶ୍ୟାମାଗୁଣ ଗାନ କଲେ ପ୍ରଭୁ ନରହରି ।

## ଗୀତ

କେ ଜାନେ ଗୋ କାଲୀ କେମନ୍
ଷଡ ଦରଶନେ ନା ପାୟ ଦରଶନ୍ ।
କାଲୀ ପଦ୍ମବନେ ହଂସ ସନେ
ହଂସୀରୂପେ କରେ ରମଣ୍ ।
ତାଁକେ ସହସ୍ରାରେ ମୂଲାଧାରେ
ସଦା ଯୋଗୀ କରେ ମନନ ।
ଓନି ଘଟେ ଘଟେ ବିରାଜ କରେନ୍
ଇଚ୍ଛାମୟୀର ଇଚ୍ଛା ଯେମନ୍ ।
ମାୟେର ଉଦର ବ୍ରହ୍ମାଣ୍ଡ ଭାଣ୍ଡ
ପ୍ରକାଣ୍ଡ ତା ବୁଝ କେମନ୍ ।

ମହାକାଲ ଜେନେଛେନ କାଲୀର ମର୍ମ
ଅନ୍ୟ କେବା ଜାନେ ତେମନ୍ ।
ପ୍ରସାଦ ଭାଷେ ଲୋକେ ହାଁସେ
ସନ୍ତରଣେ ସିନ୍ଧୁ ତରଣ ।
ଆମାର ମନ ବୁଝେଛେ ପ୍ରାଣ୍ ବୁଝେନା
ଧରବେ ଶଶୀ ହୟେ ବାମନ୍ ।

## ଗୀତ

ବଲ୍ ଦେଖ ଭାଇ କି ହୟ ମଲେ
ଏଇ ବାଦାନୁବାଦ କରେ ସକଲେ ।
କେଉ ବଲେ ଭୂତ ପ୍ରେତ ହବ
କେଉ ବଲେ ତୁଇ ସ୍ୱର୍ଗେ ଯାବି ।
କେଉ ବଲେ ସାଲୋକ୍ୟ ପାବି
କେଉ ବଲେ ସାଯୁଜ୍ୟ ମେଲେ ।

ବେଦେର୍ ଆଭାସ ତୁଇ ଘଟାକାଶ୍
ଘଟେର୍ ନାଶକେ ମରଣ ବଲେ ।
ଓରେ ଶୂନ୍ୟତେ ପାପପୁଣ୍ୟ ଗଣ୍ୟ
ମାନ୍ୟ କରେ ସବ୍ ଖେୟାଲେ ।
ଏକ ଘରେତେ ବାସ୍ କରେଛେ
ପାଞ୍ଚଜନେ ମିଲେ ଜୁଲେ ।
ସେ ଯେ ସମୟ ହଲେ ଆପନା ଆପନି
ଯେ ଯାର ସ୍ଥାନେ ଯାବେ ଚଲେ ।
ପ୍ରସାଦ ବଲେ ଯା ଛିଲି ଭାଇ
ତାଇ ହବିରେ ନିଦାନ କାଲେ ।
ଯେମନ ଜଲେର ବିମ୍ବ ଜଲେ ଉଦୟ
ଜଲ ହୟେ ସେ ମିଶାୟ ଜଲେ ।



ମଧ୍ୟେ ମଧ୍ୟେ ଦେବଗୃହ ଭାବାବିଷ୍ଟ ହୋଇ
ସ୍ଥାଣୁ ସମ ନିବେଶନ୍ତି ଚେତନା ହରାଇ ।
ପୁଲକ କମ୍ପନ ଆଦି ଭାବର ଲକ୍ଷଣ
ମୁହୁର୍ମୁହୁଃ ଶ୍ରୀ ଅଙ୍ଗରେ ହୁଅଇ ଦର୍ଶନ ।
ଭାବେ ବିଗଳିତ ହେଲେ ପଣ୍ଡିତପ୍ରବର
ବେନି ନେତ୍ରୁ ବହିଗଲା ଆନନ୍ଦାଶ୍ରୁଧାର ।
ଭାବ ମହାଭାବ ଆଦି ପ୍ରେମର ବିକାଶ
ଶାସ୍ତ୍ର ପଢ଼ି ଜାଣିଥିଲେ ଯେ ସବୁ ସନ୍ଦେଶ ।

ସ୍ୱରୂପ ଦର୍ଶନ କରି ଏବେ ସେ ସକଳ
ଭାବ ପରିପୂର୍ଣ୍ଣ ଚିତ୍ତେ ହୋଇଲେ ବିହ୍ୱଳ ।
ପ୍ରଭୁଙ୍କୁ ପୁଛିଲେ ତହୁଁ ଭକ୍ତ ସହିତର
"ଭାବାବେଶେ ଉପଲବ୍ଧି ହୁଏ କି ପ୍ରକାର ।"
ତନ୍ନ ତନ୍ନ ବଖାଣିଲେ ଯାହା ପ୍ରଭୁଦେବ
ଶାସ୍ତ୍ରର ଅତୀତ ବାକ୍ୟ ଅଟେ ସେ ସରବ ।
ଶିଷ୍ୟଗଣେ ପାଶେ ଡାକି ବୋଇଲେ ପଣ୍ଡିତ
"ଶାସ୍ତ୍ର ନ ପଢ଼ିଣ ଦେଖ ଏଙ୍କର ପାଣ୍ଡିତ୍ୟ ।
ଆବୃତ୍ତି କରିଲୁ ଆମ୍ଭେ ପେଡ଼ି ପେଡ଼ି ପୋଥି
ନ ପାଇଲୁ ପ୍ରକୃତରେ କିସ ତଥ୍ୟ ସେଥି ।
ଏ ଭଳି ପୁରୁଷୋତ୍ତମ ମର୍ତ୍ତ୍ୟରେ ବିରଳ
ଦର୍ଶନ ଲଭିଣ ଆଜି ଜନମ ସଫଳ ।"
ଶିଶୁ ପରାଏ ପୁଛିଲେ କରୁଣା ନିଦାନ
"ମୋ ଅବସ୍ଥା ଦେଖି ତବ କିସ ଅନୁମାନ ।"
ଉତ୍ତରେ ବୋଇଲେ ତାଙ୍କୁ ପଣ୍ଡିତ ପ୍ରବର
"ଦେବ ଦୁର୍ଲ୍ଲଭ ଅବସ୍ଥା ହୋଇଛି ତୁମ୍ଭର ।"
ହୃଦୟ ଭାଷିଲେ "ଅନ୍ୟ ପଣ୍ଡିତ ନିଚୟ
ଅବତାର ବୋଲି ଏଙ୍କୁ କରନ୍ତି ନିର୍ଣ୍ଣୟ ।"
ପଦ୍ମଲୋଚନ କହିଲେ "ମୋହର ମତରେ
ନ୍ୟୂନ କରି ହୁଅଇ ଯେ ତାହାଙ୍କୁ ଏଥିରେ ।
ଅବତାର ଯୁଗେ ଯୁଗେ ଯାଙ୍କଠୁଁ ଉଦ୍ଭବ
ସେହି ମହାଜନ ଏହି ପୁରୁଷ ପୁଙ୍ଗବ ।
ଏଙ୍କ କୃପା ପ୍ରାପ୍ତ ହେଲେ ଶତ ଶତ ନରେ
ମୂର୍ତ୍ତିକେ ପରିଣତ ହେବେ ଅବତାରେ ।"
ସହାସ୍ୟ ବଦନେ ତାଙ୍କୁ କହିଲେ ଶ୍ରୀହରି
"ରାଜ ଦରବାରେ ତବ ଅତ୍ୟନ୍ତ ଖାତିର ।
ଅତି ନଗଣ୍ୟ ମାନବ ମୁହିଁ ଯେ ଅଟଇ
ମୋ ପ୍ରତି ଏତେ ସମ୍ମାନ ଦେଖାଅ କିମ୍ପାଇ ।"
ଉତ୍ତେଜିତ ହୋଇ ତହୁଁ ପଣ୍ଡିତ ପ୍ରବର
ବୋଇଲେ "ଏ ନୁହଇ ଯେ ସ୍ତୁତି ବାକ୍ୟ ମୋର ।
ଅନ୍ତରେ ଅନ୍ତରେ ମୁହିଁ ବୁଝିଅଛି ଯାହା
ଭବସିନ୍ଧୁ ତରିବାକୁ ତୁମ୍ଭେ ଏକା ନାହା ।
ତୁମ୍ଭର ଚରଣ ରେଣୁ ହୋଇଲେ ପ୍ରାପତ
ନିଦା ମୂର୍ଖ ହୁଅଇ ଯେ କ୍ଷଣେ ସୁପଣ୍ଡିତ ।
କଥିତ ଆରୋଗ୍ୟ ହେଲେ ସଭା ଡକାଇଣ
ମୋ ମତ ତା ଙ୍କ ଅଗ୍ରତେ କରିବି ପ୍ରମାଣ ।"

ଶ୍ରୀଦେବ ବୋଇଲେ ସ୍ନେହେ ପଣ୍ଡିତଙ୍କୁ ଚାହିଁ
"ଦକ୍ଷିଣେଶ୍ୱରକୁ ଆସ ଥରେ ଦୟାବହି ।"
ପଣ୍ଡିତ ଭାଷିଲେ "ମୁହିଁ ଭଲ ହେଲେ ଥରେ
ନିଶ୍ଚୟ ଦର୍ଶିବି ଦ୍ୱିଧା ନ କର ଏଥିରେ ।"
ଅତଃପର ଶୁଣ ମନ ! ପଣ୍ଡିତେ କପର
ପୂଜିଥିଲେ ଶ୍ରୀଦେବଙ୍କୁ ଇଷ୍ଟ ଜ୍ଞାନ କରି ।
ଦେବୀ ସାଧନାରେ ସିଦ୍ଧ ପଣ୍ଡିତ ପ୍ରବର
ପାଇଥିଲେ ତାଙ୍କ ଠାରୁ ମଧ୍ୟ ଏକ ବର ।
ଯାହାବଳେ ଦୀର୍ଘକାଳ ଅର୍ଜିଥିଲେ ଖ୍ୟାତି
ତର୍କରେ ଅଜେୟ ଏହି ସୁଧୀ ମହାମତି ।
ଯେତେବେଳେ ଯେଉଁଠାକୁ ଆହୂତ ହୋଇଣ
ବିଚାର ନିମନ୍ତେ ଯାନ୍ତି ପଣ୍ଡିତ ପ୍ରଧାନ ।
ଜଳପୂର୍ଣ୍ଣ ଡାଲ ଆଉ ଗାମୁଛା ଖଣ୍ଡିଏ
ସବୁବେଳେ ତାହାଙ୍କର ପାର୍ଶ୍ୱେ ରଖାଥାଏ ।
କୌଣସି ଜଟିଳ ପ୍ରଶ୍ନ ମୀମାଂସା ସକାଶ
ଯେ କାଳେ କରନ୍ତି ସେହୁ ତର୍କ ସନ୍ନିବେଶ ।
ତା ପୂର୍ବେ ଗାମୁଛା ଡାଲ ଧରିଣ ହସ୍ତରେ
ଟହଲନ୍ତି ଏଣେ ତେଣେ କିଛି କ୍ଷଣ ଧୀରେ
ଏଥିଅନ୍ତେ ହାତ ମୁହଁ ଭଲ ରୂପେ ଧୋଇ
ଉପବେଶନ କରନ୍ତି ଆସନରେ ଯାଇ ।
ଏମନ୍ତ ଆଚାର ସଦାଥିଲେ ପ୍ରଦର୍ଶିଲେ
ଶାସ୍ତ୍ରଜ୍ଞାନ, ବୁଦ୍ଧିଶକ୍ତି ଜାଗେ ଦେବୀ ବଳେ ।
ତର୍କ ଯୁକ୍ତି ଦ୍ୱାରା ସର୍ବେ ହୋଇ ପରାହତ
ଅନେକ ପଣ୍ଡିତ ବୋଲି ଦେଶେ ଦେଶେ ଖ୍ୟାତ ।
ଦେବୀଙ୍କ ଆଦେଶ ମତେ ଆଚରନ୍ତି ଏହା
ପୂର୍ବେ କହି ନ ଥିଲେ ସେ କାହା ପାଖେ ତାହା ।
ଏମନ୍ତ କି ପ୍ରିୟ ପତ୍ନୀ ସଧର୍ମିଣୀ ପାଶ
ଏ ଗୂଢ଼ ତତ୍ତ୍ୱଟି କରି ନ ଥିଲେ ପ୍ରକାଶ ।
ଶ୍ରୀଦେବ ବୋଲନ୍ତି "ଜଗଦମ୍ବା ଦୟାବହି
ଏଥିର ମରମ ମୋତେ ଦେଇଥିଲେ କହି ।"
ଅବସର ପାଇ ଥରେ କରୁଣାସାଗର
ଲୁଚାଇ ରଖିଣ ଡାଲ ଗାମୁଛା ତାଙ୍କର ।
କୌଣସି ଜଟିଳ ପ୍ରଶ୍ନ ମୀମାଂସା କାରଣ
କଥୋପକଥନ ଛଳେ କଲେ ଉତ୍ଥାପନ ।
ଆସନ ତେଜିଣ ତହୁଁ ପଣ୍ଡିତପ୍ରବର
ବହୁ ଅନ୍ୱେଷିଲେ ଡାଲ ଗାମୁଛା ତାଙ୍କର ।

ଖୋଜି ଖୋଜି ଯେତେବେଳେ ତାହା ନ ପାଇଲେ
ହସି ହସି ଦେବରାୟ ତାହାଙ୍କୁ କହିଲେ ।
"ହାଲ ଗାମୁଛା ତୁମର ରଖିଅଛୁ ମୁହିଁ
ସେଥିପାଇଁ ତୁମ୍ଭେ ଆଉ ବ୍ୟସ୍ତ ହୁଅ ନାହିଁ ।
ଉପସ୍ଥିତ ପ୍ରଶ୍ନଟିର ସୁମୀମାଂସା କର
ହାଲ ଗାମୁଛା ତୁମର ଦେବ ଅତଃପର ।"
ଶ୍ରୀମୁଖ ବଚନ ଶୁଣି ବୋଇଲେ ପଣ୍ଡିତ
"ଛଳ କର ଦେବରାୟ ! ଆଉ କି ନିମିତ୍ତ ।
ତୁମ୍ଭେ ପ୍ରଭୋ ! ଜଗଦ୍‌ଗୁରୁ ଜଗତ-ଈଶ୍ୱର
ତୁମଠି ଅଛପା କିସ ଅଛୁ ଏ ସଂସାର ।"
ଅତି ଭକତି ସହିତ ଏମନ୍ତ ଭାଷିଣ
ଇଷ୍ଟଙ୍କାନେ ସ୍ତୁତି କରି ପୂଜିଲେ ଚରଣ ।
ସେହିଦିନୁ ପ୍ରଭୁପାଦେ ହେଲେ ଦୃଢ଼ଭକ୍ତ
ନିରତେ ତାଙ୍କର ସଙ୍ଗ ଅନ୍ତରେ ଲୋଡ଼ନ୍ତି ।
ପୀଡ଼ା ବୃଦ୍ଧି ହେବାରୁ ଅଙ୍ଗ ହୋଇଲା ଅବଶ
ନିଜେ ଆସି ନ ପାରନ୍ତି ଆଉ ପ୍ରଭୁ-ପାଶ ।
ସୁତଙ୍କୁ ପ୍ରେରଣ ତେଣୁ ତାଙ୍କ ସନ୍ନିଧାନେ
ମଧ୍ୟେ ମଧ୍ୟେ ଘେନିଯାନ୍ତି ଆପଣା ସଦନେ ।
ଈଶ୍ୱର ପ୍ରସଙ୍ଗେ ଦୁହେଁ ନିମଗନ ଥାଇ
ଜାଣି ନ ପାରନ୍ତି ବେଳ କେମନ୍ତେ ଗମଇ ।
ଏମନ୍ତେ କେତେକ ଦିନ ହୋଇଲା ଅତୀତ
ପୀଡ଼ା ଉପଶମ ନୋହି କ୍ରମଶଃ ବର୍ଦ୍ଧିତ ।
ଜୀବନର ଆଶା କ୍ରମେ ହେଲା କ୍ଷୀଣତର
ଜାଣି ପାରିଲେ ଯେମନ୍ତ ପଣ୍ଡିତପ୍ରବର ।
ଶରୀର ତେଜିବେ ଯାଇ ପୁଣ୍ୟ କାଶୀ ଧାମେ
ଏସନ କଳ୍ପନା କରି ଆପଣାର ମନେ,
କାୟାପୂତ ନୋହିଲେକ କାଶୀ ଯିବା ବୃଥା
ସୁତେ ଡାକି କହିଲେକ ଶୁଣ ମୋର କଥା ।
"ପ୍ରଭୁଙ୍କ ପ୍ରସାଦ କଣା ହୋଇଲେ ପ୍ରାପତ
ନିଶ୍ଚୟ ମୋହର କାୟା ହେବ ଶୁଦ୍ଧପୂତ ।"
ନାନାବିଧ ଉପାଦେୟ ଭୋଜ୍ୟ ବସ୍ତୁମାନ
ପ୍ରସ୍ତୁତ କରାଇ ନିଜ ଗୃହେ ଏକ ଦିନ ।
ସୁତ ହସ୍ତେ ପ୍ରେରଣ ତା ପ୍ରଭୁଙ୍କର ପାଶ
ପ୍ରସାଦ ଆଣିବା ପାଇଁ କଲେକ ଆଦେଶ ।
ତାଙ୍କ ପାଶେ ଆଗମିଣ ପଣ୍ଡିତ-ନନ୍ଦନ
ପିତାଙ୍କ ବିନତି ପାଦେ କଲେ ନିବେଦନ ।

ଉତ୍ତରେ କହିଲେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର
"ପ୍ରସାଦେ କି ରୋଗମୁକ୍ତ ହେବ ପିତାଙ୍କର ?"
ପଦ୍ମବଲା କହିଲେ ସେ ଅତି ନମ୍ର ହୋଇ
"ତାତ ମୋର ନ ମାଗନ୍ତି ପ୍ରସାଦ ତା ପାଇଁ ।
ତାଙ୍କ ବିଶ୍ୱାସ ଆପଣ ପରମ-ଈଶ୍ୱର
ପ୍ରାଣୀ ହିତେ ଧରିଛନ୍ତି ନର କଳେବର ।
ଆପଣଙ୍କ ପ୍ରସାଦ ସେ ପାପତ ହୋଇଲେ
କାଶୀରେ ତେଜିବେ ପୂତ ଦେହ ଅନ୍ତକାଳେ ।
ଏମନ୍ତ ବିଶ୍ୱାସେ ତାଙ୍କ ପ୍ରସାଦରେ ଆଶ
ଦୟାକରି କଣିକାଏ ଦିଅନ୍ତୁ ଭବେଶ !"
ସକଳ ପଦାର୍ଥ ଦେବ କହୁଁତେ କହୁଁତେ
ଗ୍ରହଣ କରିଣ ଦେଲେ ପ୍ରସାଦ ତା ହାତେ ।
ଭକ୍ତି ସହ ସେ ପ୍ରସାଦ ହୋଇଣ ପ୍ରାପତ
କାଶୀଧାମେ ଯାତ୍ରା କଲେ ଭକତ ପଣ୍ଡିତ ।
ସେଠାରେ କିଛୁକାଳ ସୁଖେ ବାସ କରି
ନରକାୟ ତେଜିଣ ସେ ଗଲେ ସ୍ୱର୍ଗପୁରୀ ।
ନାରାୟଣ ଶାସ୍ତ୍ରୀ ନାମେ ଆରେକ ପଣ୍ଡିତ
ଆଇଲେ ଦକ୍ଷିଣେଶ୍ୱରେ ପ୍ରଭୁ ସନ୍ନିହିତ ।
ଉତ୍ତର ପଶ୍ଚିମ ଦେଶେ ତାଙ୍କର ବସତି
ବାଲ୍ୟକାଳୁଁ ଧରିଥିଲେ ବ୍ରହ୍ମଚର୍ଯ୍ୟ ବୃତ୍ତି ।
ଗୁରୁଗୃହେ ବାସ କରି ପଚିଶ ବରଷ
ପାଞ୍ଚଟି ଦର୍ଶନ ଶାସ୍ତ୍ର ପଢ଼ି କଲେ ଶେଷ ।
ନ୍ୟାୟ ଦର୍ଶନ ଶାସ୍ତ୍ରଟି ପଠନ ନିମିତ୍ତ
ନବଦ୍ୱୀପ ନଗରୀରେ ହେଲେ ଉପସ୍ଥିତ ।
ସୁପ୍ରସିଦ୍ଧ ନୈୟାୟିକ ଗୃହେ ବାସ କରି
ନ୍ୟାୟଶାସ୍ତ୍ର ପଠନର ହେଲେ ଅଧିକାରୀ ।
ଏକାଦିକ୍ରମରେ ସାତ ବର୍ଷ ତହିଁ ଥାଇ
ନ୍ୟାୟଶାସ୍ତ୍ରେ ସୁପଣ୍ଡିତ ଜଗତେ ବୋଲାଇ ।
ଅଭିଜ୍ଞତା ଲଭି ଷଡ଼ ଦର୍ଶନେ ଏପରି
ପ୍ରବଳ ବାସନା ହେଲା ହୃଦୟେ ତାଙ୍କରି ।
ପୋଥିଗତ ବିଦ୍ୟା ଯାକ ନ କଲେ ସାଧନା
ପ୍ରକୃତ ତଥ୍ୟଟି ତାର ହେବ ନାହିଁ ଜଣା ।
ଏପରି ବିଚାରି ଦିନେ ମନେ କଲେ ସ୍ଥିର
ଦେଶେ ଫେରି ଆଚରିବେ ସାଧନା ତାହାର ।
ଶୁଣିଲେ ଦକ୍ଷିଣେଶ୍ୱରେ ଏକ ସାଧୁ 'ଛନ୍ତି
ପରମହଂସ ଅବସ୍ଥା ଯେହୁ ଲଭିଛନ୍ତି ।

ତାଙ୍କର ଦର୍ଶନ ପାଇଁ ଚିତ୍ତେ ହେଲା ଆଶ
କଷ୍ଟସାଧ୍ୟ କରି ତହିଁ ହୋଇଲେ ପ୍ରବେଶ ।
ଦର୍ଶନ ମାତ୍ରକେ ସେହି ରମଣୀୟ ସ୍ଥାନ
ଶାସ୍ତ୍ରୀଙ୍କର ପ୍ରାଣ ମନ କଲା ଆକର୍ଷଣ ।
ତଦୁପରେ 'ଛନ୍ନ ତହିଁ ଯେ ଦେବ ପୁରୁଷ
ତାଙ୍କ ସଙ୍ଗ ଲଭି ପାଇଲେ ବିଶେଷ ସନ୍ତୋଷ ।
ବେଦାନ୍ତରେ ପଢ଼ିଥିଲେ ସପ୍ତଭୂମି କଥା
ଗୋଟି ଗୋଟି ଚିହ୍ନିଗଲେ ସେ ମାର୍ଗ ସର୍ବଥା ।
ନିର୍ବିକଳ୍ପ ସମାଧି ଯେ ହୋଇ କରଗତ
ବିଚିତ୍ର ଦର୍ଶନମାନ ହୁଏ ଅନୁଭୂତ ।
ଅଖଣ୍ଡ ସଚ୍ଚିଦାନନ୍ଦ ବ୍ରହ୍ମଙ୍କ ଦର୍ଶନେ
ଏ ଭବ ସାଗର ତରିଯାନ୍ତି ପ୍ରାଣିଗଣେ ।
ଶୁଣିଥିଲେ କର୍ଣ୍ଣସ୍ଥ ଯା ଥିଲା ଶାସ୍ତ୍ରୀଙ୍କର
ନିତ ନିତ ଦେଖିଲେ ତା ଶ୍ରୀପ୍ରଭୁଙ୍କ ଠାର ।
ଈଶ୍ୱର ପ୍ରସଙ୍ଗମାନ ହେଲେ ଉତ୍ଥାପନ
ଯଥାତଥା ସମାଧିରେ ହୁଅନ୍ତି ମଗନ ।
ସମାଧିର ପରପାରେ ଯେ ଅବସ୍ଥା ଅଛି
ତାହା ମଧ୍ୟ ତାହାଙ୍କର ପ୍ରତ୍ୟକ୍ଷ ହୋଇଛି ।
ନିରେଖିଣ ଏ ପ୍ରକାର ଅଦ୍ଭୁତ ବ୍ୟାପାର
ଜ୍ଞାନନେତ୍ର ଉନ୍ମୁକ୍ତ ଏବେ ଶାସ୍ତ୍ରୀଙ୍କର ।
"ଶାସ୍ତ୍ରର ନିଗୂଢ଼ ମର୍ମ ବୁଝାଇବା ପାଇଁ
ଦ୍ୱିତୀୟ ମାନବ ଆଉ ଭବେ ନ ଦେଖଇ ।
ଯାହାହେଉ ସ୍ୱା'ଙ୍କ ପାଶେ କରି ବସବାସ
ବ୍ରହ୍ମପଦ ଲଭିବାକୁ କରିବି ପ୍ରୟାସ ।
କିଏ ଜାଣେ କେତେବେଳେ ଏ ଶରୀର ମୋର
କାଳ କବଳେ ପଡ଼ିବ ନାହିଁ ତାର ସ୍ଥିର ।
ବୃଥା କିପାଁ ଏ ଜୀବନ କରିବି କ୍ଷେପଣ
ବ୍ରହ୍ମପଦ ଲଭିବାକୁ ନ କରି ଯତନ ।
ଦେଶକୁ ମୋହର ଆଉ ଲେଉଟି ନ ଯାଇ
ପ୍ରାଣ ବଳି ଦେବି ବିଭୁ ଦରଶନ ପାଇଁ ।
ଏପରି ପ୍ରତିଜ୍ଞା କରି ଶାସ୍ତ୍ରୀ ନାରାୟଣ
କିଛୁକାଳ ପ୍ରଭୁ ପାଶେ କଲେ ଅବସ୍ଥାନ ।
ନିତ୍ୟ ନିତ୍ୟ ବସି ତାଙ୍କ ଶ୍ରୀଚରଣ ତଳେ
ଏକାଗ୍ର ଚିତ୍ତରେ କଥାମୃତ ପାନ କଲେ ।
ପାଣ୍ଡିତ୍ୟାଭିମାନ ଚିତ୍ତୁ ହୋଇ ଦୂରୀଭୂତ
ବ୍ୟାକୁଳତା ବୈରାଗ୍ୟ କ୍ରମେ ହେଲା ଜାତ ।

ସ୍ୱା'ଙ୍କର ଚରଣେ ମୁହିଁ ଘେନିଲେ ଶରଣ
ସାର୍ଥକ ହୋଇବ ମୋର ମାନବ ଜୀବନ ।
ଏମନ୍ତ ବିଚାରି ମନେ ଶାସ୍ତ୍ରୀ ମହାଶୟ
ଶ୍ରୀପ୍ରଭୁଙ୍କ ପାଦପଦ୍ମେ ଘେନିଲେ ଆଶ୍ରୟ ।
ନିଜ ମନୋଭାବ ତାଙ୍କ ପାଖେ ନିବେଦିଣ
ସନ୍ନ୍ୟାସ ଦୀକ୍ଷା ନେବାକୁ କଲେ ଆବେଦନ ।
ଚିତ୍ତ ବ୍ୟାକୁଳତା ଦେଖି ପ୍ରଭୁ ବିଶ୍ୱସାଇଁ
ସମ୍ମତି ପ୍ରକାଶ କଲେ ଦୀକ୍ଷା ଦେବା ପାଇଁ ।
ଶୁଭଦିନ ଶୁଭକ୍ଷଣ ନିର୍ଦ୍ଧାରଣ କରି
ପଣ୍ଡିତଙ୍କୁ ଦୀକ୍ଷା ଦେଲେ ପ୍ରଭୁ ନରହରି ।
ବ୍ରହ୍ମପଦ ଲାଭ ହେବ କେମନ୍ତେ ଜୀବନେ
ସେ ନିମନ୍ତେ ଚେଷ୍ଟା କଲେ ଶାସ୍ତ୍ରୀ ପ୍ରାଣପଣେ ।
ସଜଳ ନେତ୍ରରେ ଦିନେ ପ୍ରଭୁ ପାଶେ ଆସି
ଆଶୀର୍ବାଦ ଭିକ୍ଷା କଲେ ଯିବେ ବାରାଣସୀ ।
ନିର୍ଜ୍ଜନେ କରିବେ ତହିଁ ସାଧନ ଭଜନ
ବ୍ରହ୍ମଙ୍କ ଦର୍ଶନ କିମ୍ବା ଶରୀର ପତନ ।
ଏସନ ସଙ୍କଳ୍ପ କରି ଶାସ୍ତ୍ରୀ ମହୋଦୟ
ପଦରଜ ଶିରେ ନେଇ ଘେନିଲେ ବିଦାୟ ।
ଏକାଳେ ଭେଟିଲେ ଆସି ଦୁଇଟି ବାଳକ
ଗୋବିନ୍ଦ ଜଣକ ନାମ ଗୋପାଳ ଆରେକ ।
ଏ ବେନି ଶିଶୁଙ୍କ ଚିତ୍ତେ ଭକତି ଅସୀମ
ଗୋବିନ୍ଦ ପଦାରବିନ୍ଦେ ଆଶ ଅନୁକ୍ଷଣ ।
ପ୍ରଭୁଙ୍କ ସମୀପେ ନିତ୍ୟ ଆତଯାତ କରି
ଈଶ୍ୱର ପ୍ରସଙ୍ଗେ ମତ୍ତ ଦିବସ ଶର୍ବରୀ ।
ସ୍ୱଭାବ ଚରିତ୍ର ତାଙ୍କ ଅତୀବ ନିର୍ମ୍ମଳ
ସେ ହେତୁ ଆକୃଷ୍ଟ ପ୍ରଭୁ ଭକତବତ୍ସଳ ।
ପ୍ରେମ ଭକତିର ନାନା ଗୂଢ଼ କଥା କହି
ତାଙ୍କ ମାନସ ରଞ୍ଜିଲେ ପ୍ରଭୁ ଭାବଗ୍ରାହୀ ।
ଶ୍ରୀଦେବ କରନ୍ତି ଯଦା ହରି ଗୁଣ ଗାନ
ତା ଶୁଣିଣ ବିମୋହିତ ବେନି ଭକ୍ତଜନ ।
ଭାବେ ବିଗଳିତ ପୁଣି ଚିତ୍ତ ଏ ପ୍ରକାର
ଆନନ୍ଦାଶ୍ରୁ ବହିଯାଏ ନେତ୍ରୁ ଝର ଝର ।
ଦିବ୍ୟ ସଙ୍ଗ ପ୍ରଭାବରେ ନିରନ୍ତେ ଏସନ
ଅନ୍ତରେ ବହିଲା ପ୍ରେମ ଭକ୍ତିର ତୋଫାନ ।
ଆତ୍ମଜ୍ଞାନ କ୍ରମେ ସଦ୍ୟ ହୋଇଲା ଉଦୟ
ଏ ସଂସାର ତାଙ୍କ ପକ୍ଷେ ହେଲା ବିଷ ପ୍ରାୟ ।

ପ୍ରଭୁ ପାଶେ ଆସି ଦିନେ ଭକତ ଗୋପାଳ
ପ୍ରାର୍ଥନା କଲେକ ପାଦେ କାନ୍ଦିଣ ବହୁଳ ।
"ବିଦାୟ ଦିଅନ୍ତୁ ମୋତେ ପ୍ରଭୁ ନରହରି
ସ୍ଥଳଯାଏଁ ଏବେ ମୁହିଁ ଧରି ଧ୍ୟାନ କରି ।"
ଶ୍ରୀଦେବ ବୋଇଲେ "ଏହି ନବୀନ ବୟସେ
ଯିବା ପାଇଁ ଅଭିଳାଷ କିମ୍ପାଇ ମାନସେ ?
ଆଉ କିଛୁ ଦିନ ଏଠି ଦେହ ଧରି ରହି
ଈଶ୍ୱରଙ୍କ ଲୀଳା ଖେଳା ଦେଖ ମନ ଦେଇ ।"
ଉତ୍ତରେ କହିଲେ ଭକ୍ତ ଯୋଡ଼ି ହେଲ କର
"ଇଚ୍ଛା ନ ବଳଇ ଦିନେ ରହିବାକୁ ମୋର ।"

ଶ୍ରୀଦେବ ବୋଇଲେ ତେବେ ବିଳମ୍ବ ନ କରି
ପୁନଃ ଆସି ସାହା ହେବ ଲୀଳାରେ ମୋହରି ।
ଭକତ ଗୋପାଳ ତହିଁ ହୋଇଣ ସମ୍ମତ
ଚରଣ ବନ୍ଦିଣ କାଶୀ ଚଳିଲେ ତ୍ୱରିତ ।
ଭକତ ଗୋବିନ୍ଦ ତାଙ୍କ ଅନୁଗାମୀ ହେଲେ
ଏମନ୍ତେ ଭକତ କେତେ ଲୀଳା ସାଙ୍ଗ କଲେ ।
ଦେବ[illegible] କହିଲେ ଯେ "ଏ ଦୁଇ ଭକତ
[illegible]ଣେ ପ୍ରହ୍ଲାଦ ଆଉରେକ ଧ୍ରୁବ ଅଂଶେ ଜାତ ।"
ରାମକୃଷ୍ଣ ଲୀଳାମୃତ ସୁଧାର ଲହରୀ
[illegible] ପରି ପଢ଼ିବେ ଦିବା ବିଭାବରୀ ।

ଅବହେଳେ ଦୂର ହେବ ଏ [illegible]
ହୃଦ ପଦ୍ମେ ବିରାଜିବେ ପ୍ରଭୁ [illegible] ।

---

# ପଞ୍ଚଦଶ ଅଧ୍ୟାୟ

## ସ୍ୱଦେଶ ଯାତ୍ରା

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ପତିତପାବନ ହରି ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଦୀନବନ୍ଧୁ ଦୀନତାରି ଭକ୍ତ ପ୍ରାଣଧନ ।
ଅତ୍ୟନ୍ତ ମଧୁର ରାମକୃଷ୍ଣ ଲୀଳା କଥା
ଶ୍ରବଣେ ଉପୁଜେ ଭକ୍ତି ପ୍ରେମ ପବିତ୍ରତା ।
ସୁଧାରସେ ପୂର୍ଣ୍ଣ ଗାଥା ଭୁଞ୍ଜ ନିରବଧି
ଅବହେଳେ ତରିଯିବ ଏ ଭବ ବାରିଧି ।
ସାଧନ ଭଜନ ଏବେ ପ୍ରଭୁଙ୍କର ଶେଷ
ଅତିସାର ବ୍ୟାଧି ବୃଦ୍ଧି ପାଇଲା ବିଶେଷ ।
ବ୍ୟାଧି ପ୍ରଭାବରେ ତନୁ କ୍ରମେ ହେଲା କ୍ଷୀଣ
ତାହା ଦେଖି ଚିନ୍ତାକୁଳ ମଥୁର ମୋହନ ।
ଚିକିତ୍ସା ନିମନ୍ତେ ନିୟୋଜିଲେ ଜଣେ ବୈଦ୍ୟ
କବିରାଜ ଶ୍ରେଷ୍ଠ-ନାମ ଶ୍ରୀ ଗଙ୍ଗାପ୍ରସାଦ ।
ବୈଦ୍ୟ ଶିରୋମଣିଙ୍କର ଚିକିତ୍ସାରେ ଥାଇ
ବ୍ୟାଧିରୁ ଆରୋଗ୍ୟ ଲଭ କଲେ ବିଶ୍ୱସାଇଁ ।
ବର୍ଷାକାଳେ ଗଙ୍ଗା ପାଣି ହୁଅଇ ଦୂଷିତ
ତାକୁ ପାନ କଲେ ବ୍ୟାଧି ପୁନଃ ହେବ ଜାତ ।

ଏମନ୍ତ ଆଶଙ୍କା କରି ଭକତ ମଥୁର
ସ୍ଥାନ ପରିବର୍ତ୍ତନର କଲେକ ବିଚାର ।
ନାନାଦି ଯୁକ୍ତି କରିଣ ସ୍ଥିର କଲେ ଶେଷେ
ଶ୍ରୀଦେବଙ୍କୁ ପଠାଇବେ ତାଙ୍କ ନିଜ ଦେଶେ ।
ଜଗଦମ୍ବା ଦାସୀ ନାମେ ମଥୁର ଗୃହିଣୀ
ପ୍ରଭୁ-ପାଦ-ପଦ୍ମର ଯେ ଚିର ଭିଖାରୁଣୀ ।
ତାଙ୍କର ଭକତି କଥା କହି ନ ହୁଅଇ
ସ୍ୱାମୀଠୁଁ କୌଣସି ଗୁଣେ ଊଣା ନ ଅଟଇ ।
ଦେବଙ୍କ ଆର୍ଥିକାବସ୍ଥା ନୁହଇ ସ୍ୱଚ୍ଛଳ
ଦରିଦ୍ରତା ବିରାଜଇ ଗୃହେ ଚିରକାଳ ।
ସେଠାକୁ ଗମନ କଲେ ପ୍ରଭୁ ପରମେଶ
ବ୍ୟବହାର୍ଯ୍ୟ ଦ୍ରବ୍ୟାଭାବେ ଭୋଗିବେ ବିଶେଷ ।
ଏସନ ବିଚାରି ମଥୁରଙ୍କ ପରିବାର
ଆୟୋଜନ କଲେ ବହୁ ଦରବ ସମ୍ଭାର ।
ବାରଶତ ଚଉସ୍ତରି ସାଲ ଜ୍ୟେଷ୍ଠ ମାସେ
ଶୁଭ ଦିନେ ବିଜେ କଲେ ପ୍ରଭୁ ନିଜ ଦେଶେ ।
ଭଣଜା ହୃଦୟ ଆଉ ଭୈରବୀ ବ୍ରାହ୍ମଣୀ
ଅନୁଗାମୀ ହୋଇଲେ ଯେ କେବଳ ଏ ତେନି ।

ବନ୍ଧୁଜନେ ଆସୁଛନ୍ତି ସ୍ନେହର ଗଦାଇ
ଆତ୍ମୀୟେ ଉଦ୍‌ବିଗ୍ନ ତେଣୁ ଦରଶନ ପାଇଁ ।
ସାଧନ ଭଜନେ ଯେବେ ପ୍ରଭୁ ଥିଲେ ରତ
ତାଙ୍କ ନାମେ ନାନା କଥା ଗ୍ରାମେ ପ୍ରଚାରିତ ।
କେ କହିଲା ଗଦାଧର ନାରୀବେଶ ଧରି
କାନ୍ଦୁଛନ୍ତି ନଗରର ବୋଲି ହରି ହରି ।
କେ କହେ ଗେରୁଆ ଲୁଗା ପିନ୍ଧି [illegible]
ସନ୍ନ୍ୟାସୀ ସମାନେ କାର୍ଯ୍ୟ କର୍ମ ଆଚରନ୍ତି ।
କେ କହିଲା ଫିଙ୍ଗି ଦେଇ ଯଜ୍ଞ ଉପବୀତ
କଣ୍ଠ ଖୋଲି ଆଲ୍ଲା ଆଲ୍ଲା ଭଜନ୍ତି ନିୟତ ।
ଏମନ୍ତେ ଗ୍ରାମରେ ନାନା କଥା [illegible]ର
ଯା ଶୁଣିଣ ମନେ ଦୁଃଖ ଗ୍ରାମବାସୀଙ୍କର
ଶ୍ରୀପ୍ରଭୁଙ୍କ ଆଗମନ ବାରତା ପାଇଣ
ତାହାଙ୍କୁ ଦେଖିବା ପାଇଁ ପ୍ରାଣ [illegible]ନ୍ତି
ପୂର୍ବରୁ ତାଙ୍କର ଯେଉଁ କୃପାପାତ୍ର ଥିଲେ
ପାଛୋଟି ଆଣିବା ପାଇଁ ଦାଣ୍ଡେ ଜୁଟି ହେଲେ ।
ଭକ୍ତ ସହ ସହସ୍ତରେ ଗୁନ୍ଥା ଫୁଲମାଳ
ଦେବଙ୍କ କଣ୍ଠେ ଦେଇଣ ଆନନ୍ଦେ ବିହ୍ୱଳ ।
ଦାଣ୍ଡ ମଧ୍ୟେ ଦେବରାୟେ ଗଲେ ଯେତେବେଳେ
ତାଙ୍କ ପଶ୍ଚାତେ ଧାଇଁଲେ ଲୋକ ଦଳେ ଦଳେ ।
ଦାଣ୍ଡେ ଆସି ନ ପାରିଣ ନବବଧୂଗଣ
ଦ୍ୱାରଦେଶେ ଠିଆ ହେଲେ ଓଢ଼ଣା କାଢ଼ିଣ ।
ଅସ୍ପୃଶ୍ୟ ନିକୃଷ୍ଟ ଜାତି ଗ୍ରାମେ ଥିଲେ ଯେତେ
ରାସ୍ତା କଡ଼େ ଠିଆ ହେଲେ ଭକ୍ତିପୂର୍ଣ୍ଣ ଚିତ୍ତେ ।
ଦେବରାଜଙ୍କ ଦର୍ଶନ ଲଭି ବନ୍ଧୁଜନେ
ସୁଖ ସୀମା ନ ରହିଲା ପଡ଼ୋଶୀଙ୍କ ମନେ ।
ନିଜ ନିଜ କାର୍ଯ୍ୟ ଛାଡ଼ି ଲୋକେ ଥୋକେ ଥୋକେ
ସ୍ନେହେ ପୃଚ୍ଛନ୍ତି କୁଶଳ ସମ୍ବାଦ ପ୍ରତ୍ୟେକେ ।
କଥାବାର୍ତ୍ତା କରି ସର୍ବେ ଅତି ଆହ୍ଲାଦିତ
ପୂର୍ବପ୍ରାୟ ଅଛି ତାଙ୍କ ସ୍ୱଭାବ ଚରିତ ।
ରଟି ହୋଇଥିଲା ତାଙ୍କ ନାମେ ଯେତେ କଥା
ତହିଁରେ ସତ୍ୟତା ନାହିଁ, ଅଲୀକ ସର୍ବଥା ।
ଅମାୟିକ, ପ୍ରେମପୂର୍ଣ୍ଣ, ହାସ୍ୟ ପରିହାସ
ପୂର୍ବପରି ପ୍ରତି ବାକ୍ୟେ ହେଉଛି ପ୍ରକାଶ ।
ସତ୍ୟନିଷ୍ଠ, ଧର୍ମପ୍ରାଣ, ନାମେ ମତୁଆଲା
ଏ ଭାବ ସମୂହ ଚିତ୍ତେ କରୁଅଛି ଖେଳା ।

ବିଶେଷତଃ ଦୃଷ୍ଟ ଏବେ ଏତିକି ମାତ୍ରର
ଦିବ୍ୟାବେଶେ ତନୁ ମନ ମଗ୍ନ ନିରନ୍ତର ।
ଅଲକ୍ଷ୍ୟେ ତାର ପ୍ରଭାବ ବିସ୍ତାରି ଏମନ
ଦର୍ଶନେ ଯେ ଆଗମନ୍ତି ତାଙ୍କ ସନ୍ନିଧାନ ।
ତାଙ୍କ ଚିତ୍ତୁଁ ଦୁର୍ଭାବନା ହୋଇ ଦୂରୀଭୂତ
ଦିବ୍ୟାନନ୍ଦ ଶାନ୍ତି ସ୍ରୋତ କ୍ଷଣେ ପ୍ରବାହିତ ।
ବାହୁଡ଼ନ୍ତି ଯେତେବେଳେ ନିଜ ନିଜ ଘରେ
ପୁନଃ ପୁନଃ ଦେଖିବାକୁ ଆକାଂକ୍ଷା ମନରେ ।
କିଏ ଯେମନ୍ତେ ଆକର୍ଷଇ ଅଲକ୍ଷ୍ୟରେ ପ୍ରାଣ
କଥାମୃତ ପାନ ପାଇଁ ସଦା ଧାଏଁ ମନ ।
ମଧୁପାନ ଲୋଭାସକ୍ତ ମକ୍ଷିକା ସଦୃଶ
ନିରତେ ଧାଇଁଲେ ଲୋକ ପ୍ରଭୁଦେବ ପାଶ ।
ପ୍ରାଣର ଦର୍ଥଙ୍କୁ ପାଇ ବନ୍ଧୁଜନ ପରେ
ବସିଲା ଆନନ୍ଦ ହାଟ କାମାର ପୁକୁରେ ।
ନିତ୍ୟ ନିତ୍ୟ ପାର୍ଶ୍ୱେ ଆସି ଲୋକ ଅଗଣନ
କଥାମୃତ ପାନକରି ଭବେ ହେଲେ ଧନ୍ୟ ।
ବିବିଧ ମିଷ୍ଟାନ୍ନ ଦ୍ରବ୍ୟ କରିଣ ପ୍ରସ୍ତୁତ
ପ୍ରଭୁଙ୍କ ଭୋଜନ ପାଇଁ ଆଣନ୍ତି ନିୟତ ।
ଭୋଗିଲେହେଁ ଦେବରାୟ ଉଦର ପୀଡ଼ାରେ
ଯେ ଯାହା ଦିଅନ୍ତି ତାହା ଭୁଞ୍ଜନ୍ତି ଶ୍ରଦ୍ଧାରେ ।
ଉଚ୍ଚନୀଚ ଜାତି ଯେଣୁ ନାହିଁ ଭେଦାଭେଦ
ଭକ୍ତିସହ ଯେ ଯା' ଦିଏ ତହିଁରେ ଆହ୍ଲାଦ ।
ଡମପଲ୍ଲୀ ଥିଲା ଏକ ତାଙ୍କ ଗୃହ ପାଶେ
ବାସନା ତାଙ୍କର କିଛି ଅର୍ପଣ ସକାଶେ ।
ନୀଚକୁଳ ହେତୁ ମନ ଅତ୍ୟନ୍ତ ଶଙ୍କିତ
କାହାକୁ ନ କହି ଭୟେ ହୃଦେ ମର୍ଦ୍ଦିତ ।
ମନୋଭାବ ଜାଣିପାରି ପ୍ରଭୁ ଚିନ୍ତାମଣି
ପୂର୍ଣ୍ଣକଲେ ଆଶା ଯେମନ୍ତେ ଶୁଣ ସେ କାହାଣୀ ।
ଦୀନଜନ ପ୍ରତି ତାଙ୍କ ଦୟା ଅତିଶୟ
ତା ନ ହେଲେ ନାମ କାହିଁ ହେବ ଦୟାମୟ ।
ଭାବାବିଷ୍ଟ ହୋଇ ପ୍ରଭୁ କରୁଣାସାଗର
ଭୂତଳେ ପଡ଼ିଲେ ସଂଜ୍ଞା ହରାଇ ସତ୍ୱର ।
ସାରାଦିନ ଏ ଭାବରେ ହୋଇଲା ଅତୀତ
କୌଣସି ପ୍ରକାରେ ଚେତା ନୋହିଲା ଆଗତ ।
ସଦନେ ହେଲେ ହେଁ ବନ୍ଧୁଲୋକ ସମାଗମ
ଖୋଇବାକୁ ଚେଷ୍ଟା କରି ସର୍ବେ ବ୍ୟର୍ଥଶ୍ରମ ।

ଭାଗ୍ୟବତୀ ଭିକ୍ଷାମାତା ଧନୀ କମାରୁଣୀ
କହିଲେ ରମଣୀ ବୃନ୍ଦେ ଭାବାବେଶ ଜାଣି ।
ଗଦାଇଙ୍କୁ ଖୋଇବାକୁ ଚାହେଁ ଯାଇ ଆଣ
ଗୃହେ ଯାଇ ଇଚ୍ଛାମତ ଦ୍ରବ୍ୟ ଘେନ ଆସ ।
ସାରାଦିନ ଅନାହାରୀ ପ୍ରାଣର ଗଦାଇ
ସର୍ବେ ମିଳି ଦେବା ଭୋଜ ଆସ ବେଗେ ଧାଇଁ ।
ଏହାଶୁଣି ଯେତେ ଲୋକ ଥିଲେ ଉପସ୍ଥିତ
ଉଚ୍ଚନୀଚ ନ ଭାବିଣ ପାର୍ଥକ୍ୟ କିଞ୍ଚିତ ।
ନିଜ ନିଜ ଘରେ ଯାଇ ସାଧ୍ୟ ଅନୁସାରେ
ଆଣିଲେ ବିବିଧ ଦ୍ରବ୍ୟ ଅନୁରାଗ ଭରେ ।
କେ ଆଣିଲା କ୍ଷୀର ସର, କେ ଆଣିଲା ମୁଢି
କିଏ ଅବା ଫଳମୂଳ ପୂରାଇ ଗୃଙ୍ଗୁଡ଼ି ।
ଯେ ଯାହା ଆଣିଲା ତାହା ଦେଲା ତାଙ୍କ ମୁଖେ
ଭାବାବେଶେ ଦେବରାଜ ଖାଇଲେକ ସୁଖେ ।
ଆହାର କରିଲେ ଯେତେ ନ ଆସିଲା ଚେତା
ଆଜ କିଏ ବାକୀ ଅଛ ଡାକେ ଭିକ୍ଷାମାତା ।
ଯେ ଜାତି ସେ ଜାତି ହେଉ ନ କର ଭାବନା
ଶୀଘ୍ର ଶୀଘ୍ର ପାଶେ ଆଣ ଯାର ଯା ବାସନା ।
ଏହାଶୁଣି ତମସାକ ଧାଇଁଲେ ଭବନେ
ଭୋଗ୍ୟଯୋଗ୍ୟ ଦ୍ରବ୍ୟ କିଛି ଆଣିବା କାରଣେ ।
ସୁପକ୍ୱ ପଣସଟିଏ ବୃକ୍ଷରୁ ତୋଳିଣ
ବିଶୁଦ୍ଧ ହସ୍ତରେ ତାହା ଆଣିଲେ ବହନ ।
ଭକ୍ତବାଞ୍ଛା କଳ୍ପତରୁ ପ୍ରଭୁ ପରମେଶ
ମହାନନ୍ଦେ ଭୁଞ୍ଜିଲେ ସେ ପାଚିଲା ପଣସ ।
କହିତ ସମସ୍ତ ପରେ ପ୍ରଭୁ ଶ୍ରୀଠାକୁରେ
ପ୍ରକୃତିସ୍ଥ ହେଲେ ପଛା ଜାଣି ଧୀରେ ଧୀରେ ।
ଉଚ୍ଚନୀଚ ଜାତି ଅଟେ ସମାଜ-ବନ୍ଧନ
ହୃଦଭାବ ନିରେଖନ୍ତି ପ୍ରଭୁ ଭଗବାନ ।
ବିପ୍ରେ ଶୂଦ୍ରେ ତାଙ୍କ ପାଶେ ନାହିଁ ଭେଦାଭେଦ
ଯେ ଡାକେ ଅନ୍ତର ସହ ତାଠାରେ ଆହ୍ଲାଦ ।
ଯାହା କହିଛନ୍ତି ପ୍ରଭୁ ଆହାର ସମ୍ବନ୍ଧେ
ଶ୍ରବଣ କଲେକ ପ୍ରାଣୀ ଥିବେ ଅପ୍ରମାଦେ ।
"ଶୂକରର ମାଂସ କେହି କରିଣ ଭକ୍ଷଣ
ବିଭୂତି ରଖିପାରିଲେ ତା ଭକ୍ତି ଅକ୍ଷୁଣ୍ଣ ।
ଧନ୍ୟ ଅଟେ ସେହି ପ୍ରାଣୀ, ଧନ୍ୟ ଜନ୍ମ ତାର
ଅଗ୍ରଗଣ୍ୟ ଅଟଇ ସେ ପ୍ରାଣୀଙ୍କ ମଧ୍ୟର ।

କାମକାଞ୍ଚନାସକ୍ତ ଯେ ହବିଷ୍ୟାନ୍ନ ଖାଇ
ଧିକ ତା ଜୀବନ ହୀନ ପ୍ରାଣୀ ସେ ବୋଲାଇ ।
ବ୍ରହ୍ମଜ୍ଞାନ ହୋଇଅଛି ଯାହାର ଆୟତ୍ତ
ଆହାରେ ନ ଥାଏ ତାର ବିଚାର କିଞ୍ଚିତ ।
ଶୂକରର ମାଂସ କିମ୍ବା ପୂତ ହବିଷ୍ୟାନ୍ନ
ତା'ଠାରେ ଉଭୟ ବସ୍ତୁ ଅଟଇ ସମାନ ।
ଭକ୍ତଙ୍କ ପକ୍ଷେ ଅଟେ ଆରେକ ଯେ ବିଧି
ଯାହା ତାହା ଖାଇବାକୁ ଶାସ୍ତ୍ରରେ ନିଷେଧି ।
ନିଗୂଢ଼ ମର୍ମ ଅଛି ଏଥିରେ ନିହିତ
ଶ୍ରୀବିଧାନ ଶୁଣ ସର୍ବେ ସ୍ଥିର କରି ଚିତ୍ତ ।
ମନ ସଙ୍ଗେ ଆହାରର ଘନିଷ୍ଠ ସମ୍ବନ୍ଧ
ଅବସ୍ଥା ବିଶେଷେ ତେଣୁ ନିୟମ ନିର୍ବନ୍ଧ ।
ପ୍ରାଣୀଙ୍କ ଶରୀର ମନେ ଯେ ସବୁ ଆହାର
ପରିବର୍ତ୍ତନ ଘଟାଏ କୌଣସି ପ୍ରକାର ।
କି ଅବା କରାଏ ବିଭୁପାଦେ ଭକ୍ତି ହାନି
ସାଧନାବସ୍ଥାରେ ତାହା ପରିତ୍ୟାଜ୍ୟ ଜାଣି ।
ଜ୍ଞାନମାର୍ଗରେ ନ ଥାଏ ଏମନ୍ତ ବିଚାର
ଜିହ୍ୱା ତୃପ୍ତି ଲକ୍ଷ୍ୟ ନୁହେ ତାଙ୍କର ଆହାର ।
ବ୍ରହ୍ମଠାରେ ସଦା ମଗ୍ନ ଜ୍ଞାନୀଙ୍କର ମନ
ଭୋଜ୍ୟଦ୍ରବ୍ୟେ ଅସଂଲଗ୍ନ ତାହା ସେ କାରଣ ।
ଆହାରର ଦୋଷଗୁଣ କୌଣସି ପ୍ରକାର
କାର୍ଯ୍ୟ କରି ନ ପାରଇ ତା ମନ ଉପର ।
ନିଜ ପାଇଁ ଜ୍ଞାନୀ କେବେ ଆହାର ନ କରେ
ଆହାର ଆହୁତି ତାଙ୍କ କୁଣ୍ଡଳିନୀଠାରେ ।"
ଶ୍ରୀରାମକୃଷ୍ଣ ଚରିତ ଅମୃତ ଲହରୀ
ଭକ୍ତି ସହ ପାନ କର ହବା ଭବପାରୀ ।
ସ୍ୱଗୃହରେ ବିରାଜନ୍ତି ପ୍ରଭୁ ଦେବରାୟେ
ଏ ସମ୍ବାଦ ପ୍ରବେଶିଲା ଶ୍ୱଶୁର ଆଳୟେ ।
ଶ୍ରୀ ସାରଦାଦେବୀ ତାଙ୍କ ସହଧର୍ମିଣୀ
ପତିଙ୍କ ଦର୍ଶନ ପାଇଁ ହେଲେ ଆକାଂକ୍ଷିଣୀ ।
ଅଭିଳାଷ ଜଣାଇଣ ସ୍ୱାମୀଙ୍କ ପଯ୍ୟନ୍ତରେ
ଆଜ୍ଞା ଘେନ ପ୍ରବେଶିଲେ ଶ୍ୱଶୁର ମନ୍ଦିରେ ।
ସ୍ୱାମୀଙ୍କ ସମ୍ବନ୍ଧେ ଶୁଣି ନାନାବିଧ କଥା
ମାନସେ ଉପୁଜିଥିଲା ଅତିଶୟ ବ୍ୟଥା ।
ଏବେ ସାକ୍ଷାତେ ତାହାଙ୍କୁ ଦର୍ଶନ କରିଣ
ଚକ୍ଷୁ କର୍ଣ୍ଣର ବିବାଦ କଲେକ ଭଞ୍ଜନ ।

ଈଶ୍ୱର ପ୍ରସଙ୍ଗ ଯେବେ ସ୍ୱାମୀ ହେଲେ ରତ
ଅନ୍ୟ କଥା ଶ୍ରୀବଦନୁ ନ ହୁଏ ସ୍ଖଳିତ ।
ଲୋକାଗ୍ରର ପାଶେ ମଧ୍ୟ ବୃତ୍ତାନ୍ତ ଆବଦ୍ଧ
ଗ୍ରାମସ୍ଥ ସରବ ଶ୍ରେଣୀ-ଲୋକ ସ୍ନେହାସ୍ପଦ ।
ବାତୁଳ ନୁହନ୍ତି ସତ ଯଥା ଜନଶ୍ରୁତି
ହରିନାମ ରସାସ୍ୱାଦେ ମଗ୍ନ ଦିନରାତି ।
ଚତୁର୍ଦ୍ଦଶ ବର୍ଷେ ଏବେ ଦେଖା ଉପଗତ
ପରିଣୟ ପରେ ଏହା ପ୍ରଥମ ସାକ୍ଷାତ ।
ସ୍ୱାମୀଙ୍କ ଏସନ ଦିବ୍ୟ ଭାବ ନିରେଖିଣ
ସାରଦାଦେବୀଙ୍କ ମନ ତହିଁ ନିମଗନ ।
ପତ୍ନୀଙ୍କୁ ସମୀପେ ପାଇ ପ୍ରଭୁ ଶ୍ରୀ ଠାକୁର
ତାଙ୍କ କର୍ତ୍ତବ୍ୟ ପାଳନେ ହେଲେ ଯତ୍ନପର ।
ଧର୍ମମାର୍ଗେ ପତ୍ନୀ ଯେମନ୍ତେ ହୋଇବେ ସହାୟ
ସେ ଭାବରେ ଦୀକ୍ଷା ଦେଲେ ତାଙ୍କୁ ଦୟାମୟ ।
ସ୍ୱାମୀଙ୍କ କଠୋର ବ୍ରହ୍ମଚର୍ଯ୍ୟ ବ୍ରତାଦର୍ଶ
ଦିବ୍ୟ ଭାବେ ପୂର୍ଣ୍ଣ କଲା ପତ୍ନୀଙ୍କ ମାନସ ।
କାମବିବର୍ଜ୍ଜିତ ଶୁଦ୍ଧ ପ୍ରେମ ଲଭି ପାଇଁ
ଶ୍ରୀଚରଣ ସେବିବାରେ ମଗ୍ନ ରହିଲହିଁ ।
ଏମନ୍ତ ଦେଖିଣ ତାଙ୍କୁ ଭୈରବୀ ବ୍ରାହ୍ମଣୀ
ପ୍ରଭୁଙ୍କର ବ୍ରହ୍ମଚର୍ଯ୍ୟେ ବାଧା ଅନୁମାନି
ସେଥିରୁ ନିରସ୍ତ ପାଇଁ ବୁଝାଇଲେ ଯେତେ
ଦେବରାୟ ନ ମାନିଲେ କୌଣସିମତେ ।
ଏଥିରେ ଭୈରବୀ ବିପ୍ରା ହୋଇ ଅତି କ୍ଷୁଣ୍ଣ
ଅଭିମାନେ ଜର୍ଜ୍ଜରିତ ହେଲା ତାଙ୍କ ମନ ।
ବିପ୍ରାଙ୍କର ଦୁର୍ବଳତା ଜାଣି ଶ୍ରୀଠାକୁରେ
ତ୍ରୁଟି ନ କଲେ କିଞ୍ଚିତ ପୂର୍ବର ଶ୍ରଦ୍ଧାରେ ।
ପରନ୍ତୁ କହିଲେ ପ୍ରଭୁ ପତ୍ନୀଙ୍କୁ ବୁଝାଇ
ବିପ୍ରାଙ୍କୁ ସେବିବ ଶାଶୁରୂପେ ମନ ଦେଇ ।
ଯଥା ପତି ତଥା ପତ୍ନୀ ସମାନେ ସମାନ
ବିପ୍ରାଙ୍କ ସେବାରେ ରତ ଦୁହେଁ ଅନୁକ୍ଷଣ ।
ତଥାପି ବିପ୍ରାଙ୍କ ମନେ ନାହିଁ ପ୍ରଫୁଲ୍ଲତା
ଅହଂକାର ଅଭିମାନେ ସଦା କର୍କ୍କଶତା ।
ସାମାନ୍ୟ କଥାରେ ଦିନେ ଉତ୍ତେଜିତା ହୋଇ
ମେଲାଣି ମାଗିଲେ କାଶୀଧାମେ ଯିବାପାଇଁ ।
ଶୁଣ ଆରେ ମନ ସେହି ଘଟଣା ବିବୃତି
ଶ୍ରବଣ ମଧୁର ରାମକୃଷ୍ଣ ଲୀଳାଗୀତି ।

ପ୍ରଭୁଙ୍କର ଅନୁଗତ ଭକ୍ତ ଶ୍ରୀନିବାସ
ଭକ୍ତିଡୋରେ ଦେବ ସଦା ବନ୍ଧା ତାଙ୍କ ପାଶ ।
ଉଚ୍ଚବଂଶେ ନ ହେଲେ ହେଁ ଜନମ ତାଙ୍କର
ଧର୍ମ୍ମଭାବେ ବହୁଗୁଣେ ଶ୍ରେଷ୍ଠ ସଭିଙ୍କର ।
ଗଦାଧରଙ୍କ ପ୍ରସାଦ ପ୍ରାପତି ଆଶାରେ
ଉପନୀତ ହେଲେ ଦିନେ ପଭୁଙ୍କ ପାଶରେ ।
ବାଲ୍ୟବନ୍ଧୁ ଶ୍ରୀନିବାସେ ଦେବରାୟେ ପାଇ
ତାଙ୍କ ହୃଦୟରେ ସୁଖ ସୀମା ନ ଧରଇ ।
ଭାଗବତେ ତାହାଙ୍କର ବିଶେଷ ବ୍ୟୁତ୍ପତ୍ତି
ଆଗରୁଁ ଜାଣିଣ ଏହା ପ୍ରଭୁ ଜଗପତି ।
ଭାଗବତ ପ୍ରସଙ୍ଗରେ ଦୁହେଁ ମତ୍ତ ହେଲେ
ବେଳକାଳ ପ୍ରତି କିଛୁ ଲକ୍ଷ୍ୟ ନ ରଖିଲେ ।
ଏମନ୍ତେ ମଧ୍ୟାହ୍ନକାଳ ହୋଇଲା ଅତୀତ
ପ୍ରସାଦ ସେବନ ପାଇଁ ସର୍ବେ ସମାହୂତ ।
ନାନାବିଧ ଭୋଜ୍ୟ ଅତି ଯତନେ ତିଆରି
ଯାହା ପାଇ ପଡ଼ୋଶୀଏ ଆନନ୍ଦିତ ଭାରି ।
ଗ୍ରାମମଧ୍ୟେ ପ୍ରଚଳିତ ପ୍ରଥା ଯେ ପ୍ରକାର
ଶୂଦ୍ରର ଉଚ୍ଛିଷ୍ଟ ଶୂଦ୍ର କରେ ପରିଷ୍କାର ।
ଭକ୍ତ ଶ୍ରୀନିବାସ ଏହି ପ୍ରଥା ଅନୁସାରେ
ଭୋଜନାନ୍ତେ ବ୍ୟସ୍ତ ନିଜ ପତ୍ର ଗୋଟିଆରେ ।
ଏମନ୍ତ ଦେଖିଣ ତାଙ୍କୁ ଭୈରବୀ ବ୍ରାହ୍ମଣୀ
ନିଷେଧ କରିଲେ କହି ସବିନୟ ବାଣୀ ।
"ଆପଣ ଅତିଥି ଏଠି ଆହେ ଭକ୍ତବର !
ଉଚ୍ଛିଷ୍ଟ ତୋଳିବା କାର୍ଯ୍ୟ ଆମ୍ଭମାନଙ୍କର ।"
ବାରମ୍ବାର କହିବାରୁ ବ୍ରାହ୍ମଣୀ ଏମନ୍ତ
ନିର୍ବିବାଦେ ଶ୍ରୀନିବାସ ହୋଇଲେ ସେ କ୍ଷାନ୍ତ ।
ଭୈରବୀ ବ୍ରାହ୍ମଣୀ ବିପ୍ରକୁଳେ ଜନମିଣ
ଶୂଦ୍ରର ଉଚ୍ଛିଷ୍ଟ ସେହୁ ତୋଳିବେ କେସନ ।
ସାମାଜିକ ପ୍ରଥାମତେ ଏହା ଅନୁଚିତ
ଏସନେ ଆପତ୍ତି କଲେ ନାରୀଏ ବହୁତ ।
ରାଜି ନୋହିଲାରୁ ବିପ୍ରା ତାଙ୍କର କଥାରେ
ମହା ଗଣ୍ଡଗୋଳ ସୃଷ୍ଟି ହୋଇଲା ସେଠାରେ ।
ହୃଦୟ ପ୍ରାପତ ହୋଇ ତାର ସମାଚାର
ଭୈରବୀଙ୍କୁ ବୁଝାଇଲେ ନାନା ପରକାର ।
ତଥାପି ଭୈରବୀ ତାଙ୍କ କଥା ନ ମାନିଣ
ଉଚ୍ଛିଷ୍ଟ ଗୋଟିଆ କାର୍ଯ୍ୟେ ବ୍ୟାପୃତ ଆପଣ ।

ପଲ୍ଲି ସମାଜରେ ଏଥେ ହେବ ଗଣ୍ଡଗୋଳ
ଏମନ୍ତ ଭାଳଣ ହୃଦୁ ମହା ଶଙ୍କାକୁଳ ।
ଉପାୟବହୁନେ ଅତି ଉତ୍ତେଜିତ ହୋଇ
ବିପ୍ରା ପ୍ରତି କଟୁବାକ୍ୟ ପ୍ରୟୋଗ କଲଇଁ ।
"ସମାଜ ଗର୍ହିତ କାର୍ଯ୍ୟ କଲେ ଏ ପ୍ରକାର
ତବ ଅବସ୍ଥିତି ଏଠି ହୋଇବ ଦୁଷ୍କର ।"
ବ୍ରାହ୍ମଣୀ କହିଲେ କ୍ରୋଧେ "ଏଥିକି ନ ଡରେ
ଆଶ୍ରୟ ଦେଖିବ ମୁହିଁ ଶୀତଳା ମନ୍ଦିରେ ।"
ପରିବାରବର୍ଗ ଅମଙ୍ଗଳ ଶଙ୍କା କରି
ବୁଝାଇଲେ ନାନାମତେ ବିପ୍ରା ହସ୍ତ ଧରି ।
ଶ୍ରବଣ କରିଣ ତାଙ୍କ ସବିନୟ ବାଣୀ
କାର୍ଯ୍ୟରୁ ନିରସ୍ତ ହେଲେ ଭୈରବୀ ବ୍ରାହ୍ମଣୀ ।
କିଛୁକାଳ ପରେ ଯେବେ କ୍ରୋଧ ଉପଶମ
ଲଜ୍ଜିତା ହୋଇଲେ ବିପ୍ରା ବୁଝି ନିଜ ଭ୍ରମ ।
ଏ ସ୍ଥାନେ ରହିଲେ ହେବ ଭାବ ବିପର୍ଯ୍ୟୟ
ବେଶୀ ଦିନ ସ୍ଥିତି ତେଣୁ ନୁହଇ ବିଧେୟ ।
ଏସନ ସିଦ୍ଧାନ୍ତ କରି ଆପଣାର ମନେ
ପ୍ରାତଃକାଳୁ ଉଠିଗଲେ କୁସୁମ ଚୟନେ ।
ବିବିଧ ସୁଗନ୍ଧ ପୁଷ୍ପେ ଗୁନ୍ଥି ଏକ ହାର
ପ୍ରଭୁଙ୍କର କଣ୍ଠେ ଦେଲେ ଭକ୍ତି ସହକାର ।
ଚନ୍ଦନ କର୍ପୂରେ କରି ଶ୍ରୀଅଙ୍ଗ ଚର୍ଚ୍ଚିତ
ଶ୍ରୀଚୈତନ୍ୟ ଜ୍ଞାନେ ପାଦେ ହେଲେ ପ୍ରଣିପାତ ।
ଆପଣା ଦୁଷ୍କର୍ମେ ଅନୁତପ୍ତା ବିପ୍ରକନ୍ୟା
ସର୍ବାନ୍ତଃକରଣେ କ୍ଷମା କଲେକ ପ୍ରାର୍ଥନା ।
ପ୍ରାଣମନ ସମର୍ପିଣ ପ୍ରଭୁଙ୍କ ଚରଣେ
ବିଦାୟ ଗ୍ରହଣ କଲେ ପ୍ରଫୁଲ୍ଲ ବଦନେ ।
ଛଅ ବର୍ଷ କାଳ ବିପ୍ରା ପ୍ରଭୁ ପାଶେ ଥାଇ
କାଶୀଧାମେ ଯାତ୍ରା କଲେ ଫୁଲ୍ଲଚିତ୍ତ ହୋଇ ।
ଦେବରାୟ ସ୍ୱଦେଶରେ ଥିଲେ ଯେତେ ଦିନ
ପଲ୍ଲୀର ଗଗନ ଧର୍ମ-ଭାବେ ପରିପୂର୍ଣ୍ଣ ।
ବିପ୍ର ଶୂ ଦ୍ର ଧନୀମାନୀ ପଣ୍ଡିତ ମୂରୁଖ
କଥାମୃତ ପାନ କରି ପ୍ରାପ୍ତ ମହାସୁଖ ।
ଭେଦାଭେଦ ଜ୍ଞାନ ତେଜି ପୁରୁଷ ବା ନାରୀ
ବୃନ୍ଦ ହୋନ୍ତି ଆସି ସର୍ବେ ନିଜ କାର୍ଯ୍ୟ ସାରି ।
ଈଶ୍ୱର ପ୍ରସଙ୍ଗେ ମାତି ଏମନ୍ତେ ପ୍ରତ୍ୟହ
ବହିଲା ସଭିଙ୍କ ଚିତ୍ତେ ଧର୍ମର ପ୍ରବାହ ।
ଧର୍ମ୍ମପଥେ କରିଥିଲେ ଉନ୍ନତି କେମନ୍ତ
ଶୁଣ ଆରେ ବାସ୍ତୁମନ ! ତାହାର ଦୃଷ୍ଟାନ୍ତ ।
ପ୍ରତିବାସିନୀ କେତୋଟି ଆସି ଦିନକରେ
ଧର୍ମ୍ମାଳାପ କରୁଥିଲେ ପ୍ରଭୁ ସଙ୍ଗତରେ ।
ଏ କାଳେ ହୋଇଲା ଦେବଙ୍କର ଭାବାବେଶ
ନାନା ଲୋକେ ନାନା କଥା କଲେ ଯେ ପ୍ରକାଶ ।
ତାଙ୍କ ମଧ୍ୟେ ଥିଲେ ଜଣେ ଭକ୍ତିମତୀ ନାରୀ
ଆଲୋଚନା ଶୁଣି ଶୁଣି ବିରକ୍ତ ଯେ ଭାରି ।
ସଙ୍ଗିନୀଙ୍କୁ କହିଲା ସେ ନିଷେଧ ବଚନେ
"ଗୋଳମାଳ କର ନାହିଁ ଏଠି ତୁମ୍ଭେମାନେ ।
ଭାବାବେଶ ନ ଭାଙ୍ଗଇ ଯେତେକ୍ଷଣଯାଏ
ତେତେକ୍ଷଣ ଚୁପ ହୁଅ ସରବେ ଟିକଏ ।
ସଚ୍ଚିଦାନନ୍ଦ ସାଗରେ ପ୍ରଭୁ ଗୁଣଧାମ
ମହାସୁଖେ ସନ୍ତରନ୍ତି ଏବେ ମୀନସମ ।
ଗଣ୍ଡଗୋଳ କଲେ ସୁଖେ ହୋଇବ ବ୍ୟାଘାତ
ଏ କାର୍ଯ୍ୟରେ ବାଧାଦାନ ଅତୀବ ଗର୍ହିତ ।"
ଏ ପ୍ରକାର ହିତବାଣୀ ଶୁଣିଣ ସକଳେ
ଭାବଭଙ୍ଗ ହେବାଯାଏ ନିର୍ବାକେ ରହିଲେ ।
ତଦନ୍ତେ ଭାବ-ସମାଧି ଭାଙ୍ଗିଲା ଯେମନ୍ତେ
ନାରୀ-କଥା ସତ୍ୟାସତ୍ୟ ଜାଣିବା ନିମନ୍ତେ ।
ଏକମେଳ ହୋଇ ସର୍ବେ ଭକ୍ତି ସହକାରେ
ସେହିକଥା ଉତ୍ଥାପିଲେ ପ୍ରଭୁଙ୍କ ପାଶରେ ।
ଉତ୍ତରେ କହିଲେ ତହୁଁ ପ୍ରଭୁ ଭଗବାନ
ସତ୍ୟ ଅଟଇ ତାହାର ପ୍ରତ୍ୟେକ ବଚନ ।
ଏହାଶୁଣି ସେ ସରବେ ଆଶ୍ଚର୍ଯ୍ୟ ମଣିଲେ
ଏ ନାରୀ କପରି ଆଗୁଁ ଏ ତତ୍ତ୍ୱ ଜାଣିଲେ ।
ମଙ୍ଗଳ ନିଦାନ ରାମକୃଷ୍ଣ-ଗୁଣ ଗୀତ
ଶ୍ରବଣେ କୀର୍ତ୍ତନେ ଚିତ୍ତ ହୁଏ ପୁଲକିତ ।
ସାତମାସ ଅବସ୍ଥିତ କରି ଜନ୍ମସ୍ଥାନେ
ଧର୍ମଭାବ ଉପୁଜାଇ ଗ୍ରାମବାସୀ ମନେ ।
ବିଜେକଲେ ଦେବରାୟ ପୁନଃ କର୍ମସ୍ଥଳୀ
ବିରାଜିତା'ଛନ୍ତି ଯହିଁ ଜଗନ୍ମାତା କାଳୀ ।
ଭଣଜା ହୃଦୁକୁ ପୁନଃ ତାଙ୍କ ସଙ୍ଗେ ଧରି
ଗ୍ରାମଠାରୁ ବାହାରିଲେ ପ୍ରଭୁ ନରହରି ।
ବାଟରେ ଘଟିଲା ଏକ ଅଦ୍ଭୁତ ଘଟନ
ଏକମନେ ସାଧୁଜନେ ଶୁଣ ସେ ଆଖ୍ୟାନ ।

ଭୋଜନ ସମସ୍ୟ ଜାଣି ହୃଦୟ ଠାକୁର
ଆଶ୍ରୟ ନେଲେ ଏକ ଅତିଥିଶାଳାର ।
ରେଲଷ୍ଟେସନ ସେଠାରୁ ଅତି ଅଳ୍ପବାଟ
ଖାଦ୍ୟ ପାକ ଆରମ୍ଭିଲେ ହୃଦୁ ଚଟାପଟ ।
କଲିକତା ଆଡେ ସେଠୁ ଏକମାତ୍ର ଗାଡ଼ି
ଉଭୟଙ୍କର ଅସୁବିଧା ତାକୁ ଦେଲେ ଛାଡ଼ି ।
ଭୋଜନ ଯୋଗାଡ଼ କରି ହୃଦୁ ସେକାରଣେ
ମାମୁଁଙ୍କୁ କହିଲେ କାର୍ଯ୍ୟ ସାରନ୍ତୁ ବହନେ ।
ଆହାରାନ୍ତେ ବିଜେ କଲେ କରୁଣାସାଗର
ସଙ୍ଗେ ନେଇ ହୃଦନାଥ ଭଣଜା ତାଙ୍କର ।
ଇଷ୍ଟେସନ ଧରିବାକୁ ଅଛି ଅଳ୍ପଦୂର
ମଳତ୍ୟାଗେ ଗଲେ ପ୍ରଭୁ ଜଗତଠାକୁର ।
ଏକଜାତି କଣ୍ଟାଗଛ ଦେଖିଲେ ସେଠାରେ
ଶୂଳପାଣି ତୁଷ୍ଟ ହୋନ୍ତି ପୂଜିଲେ ତହିଁରେ ।
ପ୍ରଚୁର ଜନ୍ମିଛି ତହିଁ ସେ ବୃକ୍ଷ ନିଚୟ
ତାହା ଦେଖି ତାଙ୍କମନେ ପ୍ରୀତି ଅତିଶୟ ।
ବୃକ୍ଷରୁ କେତେକ ଶାଖା ଯୋଗାଡ଼ କରିଣ
ମହେଶଙ୍କ ଅର୍ଚ୍ଚନରେ ହେଲେ ନିମଗନ ।
ଶଶବ୍ୟସ୍ତେ ହୃଦୁ ଯେତେ ପ୍ରକାରେ ଡାକିଲେ
ଭାବାବିଷ୍ଟ ଦେବରାଜ କିଛି ନ ଶୁଣିଲେ ।
ଏଥିମଧ୍ୟେ ସେ ଦିନର ନିରୂପିତ ଗାଡ଼ି
ଦେଖୁ ଦେଖୁ ଚାଲିଗଲା ଇଷ୍ଟେସନ ଛାଡ଼ି ।
ପୂଜା ଶେଷେ ପ୍ରଭୁଦେବ ଯେବେ ବାହୁଡ଼ିଲେ
ହୃଦୟ ବିରକ୍ତ ହୋଇ ଅନେକ ବକିଲେ ।
ଡାକି ଡାକି ନ ଆସିଲ ଗାଡ଼ି ଗଲା ଚାଲି
ଉପାୟ କରିବା କିସ ଦେଖ ଏବେ ଭାଳି ।
ଉତ୍ତର ନ ଦେଇ ପ୍ରଭୁ ରହିଲେ ମଉନେ
ଅତିଶୟ ବ୍ୟସ୍ତ ହେଲେ ହୃଦୁ ମନେ ମନେ ।

ଇଷ୍ଟେସନ ଗୃହ ମଧ୍ୟେ କରିଣ ପ୍ରବେଶ
ମାଷ୍ଟରେ ପୁଚ୍ଛିଲେ ଅନ୍ୟ ଗାଡ଼ିର ସନ୍ଦେଶ ।
କଲିକତା ଅଭିମୁଖେ ଆଜ ଯିବା ପାଇଁ
ଆଉ କି କୌଣସି ଗାଡ଼ି ଏଥି ମଧ୍ୟେ ଥାଇ ?
ଉତ୍ତରେ କହିଲେ ସେହି ହୃଦୟଙ୍କୁ ଗୃହୀ
କଲିକତା ଅଭିମୁଖେ ଆଉ ଗାଡ଼ି ନାହିଁ ।
ତେବେ ଗୋଟେ ଅସମୟ ଗାଡ଼ି ଆସୁଅଛି
ଏଥିର ସମ୍ବାଦ ତାର ଯୋଗେ ମୁଁ ପାଇଛି ।
କୋମ୍ପାନୀର ବଡ଼ବାବୁ ଆସୁଛନ୍ତି ତହିଁ
ଦେଖିବି ସେଥିରେ ଯଦି ପାରିବ ଚଢ଼ାଇ ।
ଅନ୍ୟ ଯାତ୍ରୀ ଯିବା ପାଇଁ ନାହିଁ ଅଧିକାର
ଚେଷ୍ଟା ତ୍ରୁଟି ନ କରିବି, କରୁଛି ସ୍ୱୀକାର ।
ଗାଡ଼ି ଆସିଲାରୁ କର୍ମଚାରୀଙ୍କ ଯତନେ
ଆନନ୍ଦେ ଉଠିଲେ ତହିଁ ପ୍ରଭୁ ହୃଷ୍ଟମନେ ।
ଇଚ୍ଛାମୟ ଈଶ୍ୱରଙ୍କ ଇଚ୍ଛାରେ ଜଗତ
କେଉଁଠି ଘଟୁଛି କ'ଣ କାହାକୁ ବା ଜ୍ଞାତ ।
ଶୁଭାଶୁଭ ଭାଳି ପ୍ରାଣୀ ଆଚରନ୍ତି କର୍ମ
ଫଳାଫଳ ତାର ଇଚ୍ଛାମୟଙ୍କ ଅଧୀନ ।
ଈଶ୍ୱର ମଙ୍ଗଳମୟ ଚିତ୍ତେ ଦୃଢ଼େ ଜାଣି
କର୍ମ କଲେ ଶୁଭଫଳ ଦିଅନ୍ତି ଚକ୍ରପାଣି ।
ଫଳ ଆଶେ କର୍ମ କଲେ ଅବିଦ୍ୟା ସଂସାରେ
ବିଷମୟ ଫଳ ତାର ହୁଅଇ ଶେଷରେ ।
କର୍ମ ଆଉ ତାର ଫଳ କରିଣ ବର୍ଜନ
ଭଜ ମନ ! ନିତ୍ୟ ରୂପ ଶ୍ରୀଗୁରୁ ଚରଣ ।
ପାଇବୁ ଅମୂଲ୍ୟ ନିଧି ଆଶା ଯିବ ମେଣ୍ଟି
ବୃଥା କାମ୍ୟ ମାୟା ସଙ୍ଗେ ହେଉଅଛୁ ଘାଣ୍ଟି ।
ରାମକୃଷ୍ଣ-ଲୀଳାମୃତ ସୁଧାର ଲହରୀ
ପାନ କର ସୁଖେ ମନ ଦିବସ ଶର୍ବରୀ ।

---

## ଷୋଡଶ ଅଧ୍ୟାୟ
## ତୀର୍ଥ ପର୍ଯ୍ୟଟନ

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅଖିଳ ବ୍ରହ୍ମାଣ୍ଡ ସ୍ୱାମୀ ବ୍ରହ୍ମ ସନାତନ ।

ଶ୍ରୀଗୁରୁ ଚରଣ ମନ ଭଜ ନିରବଧି
ଇଚ୍ଛାଥିଲେ ତରିବାକୁ ଏ ଭବ ବାରିଧି ।
ରାମକୃଷ୍ଣ ଲୀଳା ଗୁପ୍ତ ପର୍ବତ ନିର୍ଝର
ପ୍ରତି ଜଳକଣା ତାର ଅମୃତ ଭଣ୍ଡାର ।

ଏ ସ୍ମରଣୀ କଲେ ମନ ! ରହ ସଦା ବୃତ
ଚିତ୍ତ କଲମଷନାଶକ ଯିବ ତୋର ଗ୍ଲାନି ।
ଏମନ୍ତେ ହୋଇଲେ ଶୁଦ୍ଧ ସ୍ୱଚ୍ଛ ନିରମଳ
ଦେଖିବୁ ପ୍ରଭୁଙ୍କ ଲୀଳା ବିଶୁଦ୍ଧ ବିମଳ ।
ସାଧୁଜନେ ସାବଧାନେ କର ଅବଧାନ
ତୀର୍ଥ ପର୍ଯ୍ୟଟନ କଥା ଅପୂର୍ବ କଥନ ।
ଦିନକରେ ସନ୍ଧ୍ୟାବେଳେ ମଥୁର ବନିତା
ପତି ପାଶେ ଉତ୍‌ଥାପିଲେ ତୀର୍ଥ ଯିବା କଥା ।
ଧର୍ମକର୍ମ ତୀର୍ଥଯାତ୍ରା ପୁଣ୍ୟପ୍ରଦାୟିନୀ
ମଥୁର ବିଦିତ ପାଶେ ପାଇ ଚନ୍ଦ୍ରାମଣି ।
ପରିବାର ସହ ପଦ୍ମପାଦକୁ ସେବିଣ
ପ୍ରଭୁଦେବ ବିନୁ କିଛି ନ ଜାଣିଲେ ଆନ ।
ପଙ୍କଜଚରଣେ ତାଙ୍କ ଭକ୍ତି ବଳାଆର
ଜୀବନସର୍ବସ୍ୱ ସେହି ଚରଣ ତାଙ୍କର ।
ପତ୍ନୀଙ୍କ ପ୍ରସ୍ତାବ ଶୁଣି ଭକ୍ତ ଶିରୋମଣି
ସସ୍ନେହେ ବୋଇଲେ ତାଙ୍କୁ ସୁଧାମୟ ବାଣୀ ।
ଦେବଦ୍ୱୟ ରାଜି ହେଲେ ତୁମ୍ଭର ପ୍ରସ୍ତାବେ
ମୋହର ସମ୍ମତି ତହିଁ ଅଛି ପୂର୍ଣ୍ଣଭାବେ ।
ତାଙ୍କୁ ଛାଡ଼ି ଯିବା ପାଇଁ ବଳୁ ନାହିଁ ମନ
ସର୍ବାଗ୍ରେ ତାଙ୍କର ମତ କର ଗୋ ଗ୍ରହଣ ।
ପ୍ରଭୁପାଶେ ପ୍ରବେଶିଣ ମଥୁର ଗୃହିଣୀ
ନିବେଦିଲେ ଶ୍ରୀଚରଣେ ସମସ୍ତ କାହାଣୀ ।
ଭକ୍ତବାଞ୍ଛା କଳ୍ପତରୁ ପ୍ରଭୁ ଜଗବାନ
ଏଡ଼ି ନ ପାରନ୍ତି କେଭେ ପ୍ରଭୁଙ୍କ ପ୍ରାର୍ଥନା ।
କ୍ଷଣକାଳ ଚିନ୍ତି ରାଜି ହେଲେ ଚନ୍ଦ୍ରାମଣି
ଅତି ପୁଲକିତା ତହିଁ ମଥୁର ଗୃହିଣୀ ।
ଏ ରହସ୍ୟ ଭେଦିବାକୁ ଅଛି ଶକ୍ତି କାର
ପରାଜିତ ପ୍ରଜାପତି ମନୁଷ୍ୟ କି ଛାର ।
କରୁଅଛି କେତେ କିଏ ଦୁଃସାଧ୍ୟ ସାଧନ
ସହ୍ୟ କରି ଶୀତ, ତାପ, ବ୍ରତ ଅନଶନ ।
କଟୀରେ କୌପୀନ ମାତ୍ର ତରୁତଳେ ବାସ
ସଜଳ ନେତ୍ରେ ନିକ୍ଷିପ୍ତ ସୁଦୀର୍ଘ ନିଃଶ୍ୱାସ ।
ଆତ୍ମସୁଖ ବିବର୍ଜିତ ଭକ୍ଷ୍ୟ ମାତ୍ର ଜଳ
ଜୀର୍ଣ୍ଣଶୀର୍ଣ୍ଣ କଳେବର କଙ୍କାଳ କେବଳ ।
ତଥାପି ନ ପାନ୍ତି ଭବେ ଯାଙ୍କର ଦର୍ଶନ
ତାଙ୍କୁ ପୁଣି ନେଇ କେହି ଖେଳେ ରାତିଦିନ ।

ଧନ୍ୟ ଧନ୍ୟ ତବ ଲୀଳା ଗୋଲୋକ ବିହାରୀ
ଦେବ କଳ୍ପରେ ଅଜ୍ଞାତ ଯାହାର ମାଧୁରୀ ।
ପ୍ରଭୁଙ୍କ ସମ୍ମତି ପାଇ ଭକତ ମଥୁର
ଯୋଗାଡ଼ କଲେକ ଏବେ ତୀର୍ଥେ ଗମିବାର ।
ଦ୍ରବ୍ୟ, ଅର୍ଥ, ଖାଦ୍ୟ, ପେୟ, ବିବିଧ ଦରବ
ବିଦେଶରେ ଆବଶ୍ୟକ ହେବ ଯେ ସରବ ।
ବିଧି ମତେ ସେ ସକଳ ହେଲା ଆୟୋଜନ
ବସ୍ତା ବସ୍ତା ବନ୍ଧା ହେଲା ବସନ ବାସନ ।
ଶ୍ରୀମନ୍ଦିରେ ନିବସନ୍ତି ପ୍ରଭୁଙ୍କ ଜନନୀ
ଅତି ବୃଦ୍ଧା ଶୁଭ୍ର କେଶା ଦେବୀ ଚନ୍ଦ୍ରମଣି ।
ତାଙ୍କ ମତ ଲୋଡ଼ିବାକୁ କରୁଣା ନିଦାନ
ବନ୍ଦିଲେ ଚରଣ ଯୁଗ ଆସି ସନ୍ନିଧାନ ।
ମାତାଙ୍କ ଆଶିଷ ବାଣୀ ଶିରୋଧାର୍ଯ୍ୟ କରି
ତାଙ୍କଠୁଁ ମେଲାଣି ନେଲେ ପ୍ରଭୁ ନରହରି ।
ବାରଶତ ଚଉସ୍ତରୀ ସାଲ ମାଘମାସ
ନିର୍ଦ୍ଦିଷ୍ଟ ହୋଇଲା ତୀର୍ଥେ ଗମିବା ସକାଶ ।
ଦ୍ୱିତୀୟ ତୃତୀୟ ଶ୍ରେଣୀ ସରବ ସମେତ
ଗୃହଖଣ୍ଡ ରେଲ ଡବା ଭଡ଼ା ତନ୍ନିମିତ୍ତ ।
ରେଲବାଇ ସଙ୍ଗେ ଚୁକ୍ତି କଲେକ ମଥୁର
କଟାଇ ରଖିବେ ଗାଡ଼ି ଇଚ୍ଛା ଯେଉଁଠାର ।
ନିର୍ଦ୍ଧାରିତ ଶୁଭଦିନ ହେଲା ଉପସ୍ଥିତ
ତୀର୍ଥେ ବିଜେ କଲେ ପ୍ରଭୁ ଶ୍ରୀଦେବ ଅଚ୍ୟୁତ ।
ଶୁଶ୍ରୂଷା ନିମନ୍ତେ ସଙ୍ଗେ ଭଣଜା ହୃଦୟ
ମଥୁର, ମଥୁର ପତ୍ନୀ, ଦାସ ଦାସୀ ଚୟ ।
ଦେଓ ଘରେ ବୈଦ୍ୟନାଥଜୀଉଙ୍କ ଦର୍ଶନେ
ମଥୁରଙ୍କ ସାଧାରଣ ଅଭିଳାଷ ମନେ ।
ରେଲବାଇ ସଙ୍ଗେ ପୂର୍ବ ଚୁକ୍ତି ଅନୁସାରେ
ଗାଡ଼ିକୁ ରଖିଲେ କାଟି ଦେଓଘର ଠାରେ ।
ପାର୍ଶ୍ୱସ୍ଥ ପଲ୍ଲୀରେ ଦିନେ ଗମନ ସମୟେ
ଲୋକଙ୍କ ଦୁର୍ଦ୍ଦଶା ଦେଖି ପ୍ରଭୁ ଦୟାମୟେ ।
ମଥୁରେ କହିଲେ ଡାକି ବ୍ୟଥିତ ଅନ୍ତରେ
ଏମାନଙ୍କ ଦୁରବସ୍ଥା ଦେଖିଯାଅ ଥରେ ।
ଜଗତ ଜନନୀ ମୋର ତୁମ୍ଭଙ୍କୁ ଏ ଭବେ
ତାଙ୍କର ଖାଜାଞ୍ଚି ରୂପେ ଖଂଜିଛନ୍ତି ଏବେ ।
ମାଖିବାକୁ ଦିଅ ତେଲ ଏହାଙ୍କୁ ଏମନ୍ତ
ମୁଣ୍ଡଠାରୁ ବହିଯାଉ ପାଦ ପରଯନ୍ତ ।

ଖାଇବାକୁ ଦିଅ ତାଙ୍କୁ ଉଦର ପୂରାଇ
ଖଣ୍ଡେ ଲେଖାଁ ଲୁଗା ଦିଅ ପରିଧାନ ପାଇଁ ।
ପ୍ରଭୁଙ୍କ ଆଦେଶ ଶୁଣି ଭକତ ମଥୁର
ଇତସ୍ତତଃ ହେଲେ କିସ କହିବେ ଉତ୍ତର ।
ଚିନ୍ତାକରି କ୍ଷଣ କାଳ ବିନୟେ ବୋଇଲେ
"ବହୁ ଅର୍ଥ ବ୍ୟୟ ହେବ ତୀର୍ଥାଦି ସକଳେ ।
ସାମାନ୍ୟ ନୁହଇ ପୁଣି ସଂଖ୍ୟା ଏହାଙ୍କର
ଅନ୍ନ ବସ୍ତ୍ର ଦାନେ ବହୁ ଅର୍ଥ ଦରକାର ।
ବିଦେଶେ ହୋଇଲେ ପ୍ରଭୋ ! ଅର୍ଥର ଅଭାବ
ବିପଦର ସୀମା ଆଉ ତହିଁ ନ ରହିବ ।
ଏଥିକି ଆପଣେ ଯାହା କରିବେ ଆଦେଶ
ଆଜ୍ଞା ପାଳନେ ପ୍ରସ୍ତୁତ ଅଛଇ ଏ ଦାସ ।"
ଦୀନବନ୍ଧୁ କୃପାସିନ୍ଧୁ ପ୍ରଭୁ ଅବତାର
ପ୍ରାଣୀଙ୍କ ଦୁର୍ଦ୍ଦଶା ଦେଖି ଅତୀବ କାତର ।
ଦର ଦର ବହିଗଲା ନେତ୍ରୁ ବାରିଧାର
ପ୍ରସ୍ରବଣୁ ବହିମାନ ଜଳ ସ୍ରୋତ ପରି ।
ମଥୁର ଗୁହାରି ଶୁଣି ପ୍ରଭୁ ଦୀନନାଥ
ଉତ୍ତରେ କହିଲେ ତାଙ୍କୁ ହୋଇଣ ଦୁଃଖିତ ।
"ସ୍ୱାଙ୍କର କୌଣସି ରୂପେ ନାହିଁ ତ ସମ୍ବଳ
ଅର୍ଥାଭାବେ ହେଉଛନ୍ତି ଅତି କଲବଲ ।
ତୁମ୍ଭେମାନେ ଯାଅ ସର୍ବେ ତୀର୍ଥ ପର୍ଯ୍ୟଟନେ
ସ୍ୱାଙ୍କୁ ଛାଡ଼ି ନ ଯିବି ମୁଁ ଏଠୁଁ କଦାଚନେ ।"
ଏସନ ଭାଷିଣ ପ୍ରଭୁ କରୁଣାସାଗର
ବସିଲେ ଦରିଦ୍ର ମେଳେ ଧରିଣ ଜିଗର ।
ଦୀନ ଦୁଃଖୀ ପ୍ରତି ଦେଖି ଅପାର କରୁଣା
ଭକ୍ତବର ମଥୁରଙ୍କ ବୁଦ୍ଧି ହେଲା ବଣା ।
କଲିକତା ଅଭିମୁଖେ ତ୍ୱରି ଲୋକ ପ୍ରେରି
ଅଣାଇଲେ ବସ୍ତ୍ରମାନ ଆଦେଶ ଯେପରି ।
ଖଣ୍ଡେ ଲେଖାଁ ଲୁଗା ପାଇ ଦୀନ ଦୁଃଖୀଜନ
ମହାନନ୍ଦ ପାରାବାରେ ହେଲେ ଭାସମାନ ।
ତାଙ୍କର ଆନନ୍ଦ ଦେଖି କୃପାନିଧିଙ୍କର
ହୃଦ ମଧ୍ୟେ ଉଚ୍ଛୁଳିଲା ଆନନ୍ଦ ଅପାର ।
ଏମନ୍ତେ ଦରିଦ୍ରଜନେ ଅନୁଗ୍ରହ କରି
ବାରାଣସୀ ବିଜେ କଲେ ପ୍ରଭୁ ନରହରି ।
ବିଶ୍ୱ ବିଧାତାଙ୍କୁ ଘେନି କୋମ୍ପାନୀର ଗାଡ଼ି
ପ୍ରବେଶିଲା କାଶୀଧାମେ ବାୟୁ ବେଗେ ଉଡ଼ି ।

ପୁଣ୍ୟତୋୟା ଗଙ୍ଗା ତୀରେ କାଶୀ ଅବସ୍ଥିତ
ବିସ୍ତୀର୍ଣ୍ଣ ସୋପାନ ଶ୍ରେଣୀ ଘାଟେ ସମନ୍ୱିତ ।
ଅସଂଖ୍ୟ ଶିବ ମନ୍ଦିର ବିରାଜଇ ତହିଁ
ବ୍ୟୋମସ୍ପର୍ଶୀ କୋଠା ଯେତେ ତାର ସୀମା ନାହିଁ ।
ତୋରଣେ ଶୋଭିତ ବହୁ ସୁବିସ୍ତୀର୍ଣ୍ଣ ମାର୍ଗ
ଅଗଣନ ଅଛି ବାପୀ ଆଉର ତଡ଼ାଗ ।
ସ୍ଥାନେ ସ୍ଥାନେ ସୁଶୋଭିତ ଉଦ୍ୟାନ ଭବନ
ଜନମନ ହରଇ ଯେ ତାହା ଅନୁକ୍ଷଣ ।
ସବୋପରି ଶୋଭେ ବିଶ୍ୱନାଥଙ୍କ ମନ୍ଦିର
ସୁବର୍ଣ୍ଣରେ ଆଚ୍ଛାଦିତ ଯାହାର ଶିଖର ।
ଭାରତର ଚାରିଆଡ଼ୁ ସାଧୁ ସନ୍ଥ ନ୍ୟାସୀ
ଶାନ୍ତି ଲଭୁଛନ୍ତି ଏହି ପୁଣ୍ୟତୀର୍ଥେ ଆସି ।
ଦୀନ-ଜନଙ୍କ ଅଭାବ ମୋଚନ ନିମିତ୍ତେ
ସଂଖ୍ୟା ନାହିଁ ଅନ୍ନଛତ୍ର ଟେଣ୍ଟା ତହିଁ ଯେତେ ।
ବହୁକାଳରୁ ଅଜସ୍ର ଧନ ବ୍ୟୟ ହୋଇ
ସୁବର୍ଣ୍ଣ ନିର୍ମିତ ଶିବ ପୁରୀ ଏ ବୋଲାଇ ।
ଦିବାନିଶି ବିରାଜିଣ ତହିଁ ମହେଶ୍ୱର
ସ୍ଥାପନ୍ତି ବିଶ୍ୱାସ ଭକ୍ତି ଚିତ୍ତେ ପ୍ରାଣୀଙ୍କର ।
ଶିବଙ୍କ ଶକତି ଅନ୍ନପୂର୍ଣ୍ଣା ରୂପ ଧରି
ତହିଁ ବିତରନ୍ତି ଅନ୍ନ ଦିବସ ଶର୍ବରୀ ।
ଏମନ୍ତ ଯେ ସ୍ୱର୍ଣ୍ଣପୁରୀ ପୁଣ୍ୟ କାଶୀଧାମ
ତହିଁ ପ୍ରବେଶିଲେ ସୁଖେ ପ୍ରଭୁ ଆତ୍ମାରାମ ।
ଦର୍ଶନ ମାତ୍ରେ ହୃଦୟେ ଭକ୍ତି ଭାବୋଦୟ
ପ୍ରାଣମନ ଏକାବେଳେ ହୋଇଗଲା ଲୟ ।
ମଥୁରଙ୍କୁ ପାଶେ ଡାକି ପ୍ରଭୁ ନାରାୟଣ
ତାହାଙ୍କୁ କହିଲେ "ଶୁଣ, ମୋହର ବଚନ ।
ପୁଣ୍ୟ ତୀର୍ଥେ କାଶୀଧାମ ମୂର୍ତ୍ତ ସ୍ୱର୍ଣ୍ଣପୁରୀ
ଅପବିତ୍ର ନ କରିବ ମଳମୂତ୍ର ସାରି ।
ସବାରୀର ବନ୍ଦୋବସ୍ତ କର ମୋହ ପାଇଁ
ଶୌଚାଦି କରିବ ତୀର୍ଥ ବହିର୍ଭାଗେ ଯାଇଁ ।
ଇଦୃଶ ଆଦେଶ ପାଇ ଭକତ ମଥୁର
ପାଲିଙ୍କିର ବନ୍ଦୋବସ୍ତ କଲେ ଖରତର ।
ଏସନେ ଯାଇଣ ନିତ୍ୟ ସହର ବାହାରେ
ଶୌଚ କର୍ମ ସମାପନ୍ତି ପ୍ରଭୁ ଶ୍ରୀଠାକୁରେ ।
ତାହାଙ୍କୁ ସଙ୍ଗତେ ଘେନି ମଥୁର ମୋହନେ
ପଞ୍ଚତୀର୍ଥ କରିବାକୁ ଗଲେ ନାବ ଯାନେ ।

ମଣିକର୍ଣ୍ଣିକା ସମୀପେ କାଶୀର ଶ୍ମଶାନ
ଚିତା ଯହିଁ ଜଳୁଥାଇ ସାରା ରାତ୍ରଦିନ ।
ଘାଟେ ନାବ ଲାଗିବାକୁ ଅଛୁ କିଛୁ ଦୂର
ଚିତାଧୂମ ଦୃଷ୍ଟ ହେଲା ଘନ ଘଟାକାର ।
ଦର୍ଶନ କରିଣ ଏହା ପ୍ରଭୁ ନାରାୟଣ
ମହାନନ୍ଦ ପାରାବାରେ ହେଲେ ଭାସମାନ ।
ପୁଲକେ ସର୍ବାଙ୍ଗ କ୍ଷଣେ ହୋଇ ରୋମାଞ୍ଚିତ
ଭାବାବେଶେ ଧାଇଁବାକୁ ଯେମନ୍ତ ଉଦ୍ୟତ ।
ସ୍ରୋତେ ପଡ଼ି ଭାସିଯିବେ ଶଙ୍କା କରି ମନେ
ଧରିବାକୁ ଧାବମାନ ହେଲେ ମାଝୀମାନେ ।
ନାବର ଗୋଟିଏ କୋଣେ ପ୍ରଭୁ ଠିଆ ହୋଇ
ସମାଧିସ୍ଥ ହେଲେ ଦିବ୍ୟ ଦରଶନ ପାଇ ।
ଶ୍ରୀମୁଖେ ମଣ୍ଡଳ ଦିବ୍ୟ ଜ୍ୟୋତିଃ ସମାଚ୍ଛନ୍ନ
ନିଶ୍ଚେଷ୍ଟ ଦଣ୍ଡାୟମାନ ସହାସ୍ୟ ବଦନ ।
ଭଣଜା ହୃଦୟ ଆଉ ଭକତ ମଥୁର
ନିରେଖିଣ ସେ ଦୃଶ୍ୟଟି ବିସ୍ମିତ ଅନ୍ତର ।
ଭାବୋପଶମ ହେଲାରୁ କିଛି କ୍ଷଣ ପରେ
ଓହ୍ଲାଇଲେ ସର୍ବେ ମଣିକର୍ଣ୍ଣିକା ଘାଟରେ ।
ସ୍ନାନ ଆଦି ନିତ୍ୟକର୍ମ ସମାପନ କରି
ଅନ୍ୟାନ୍ୟ ତୀରଥେ ବିଜେ କଲେ ନରହରି ।
ଭାବାବେଶେ ପ୍ରଭୁ ଯାହା କଲେକ ଦର୍ଶନ
ସେ ବିଷୟେ ଶୁଣ ଏବେ ଶ୍ରୀମୁଖ ବଚନ
"ଦେଖିଲି ପୁରୁଷ ଏକ ଅତି ମନୋହର
ଶୁଭ୍ରବର୍ଣ୍ଣ କଳେବର ସୁଦୀର୍ଘ ଆକାର ।
ପିଙ୍ଗଳ ବର୍ଣ୍ଣର ଜଟା ଶିରେ ଲମ୍ବମାନ
ଶ୍ମଶାନେ ଗମ୍ଭୀର ଭାବେ ଧୀରେ ବିଚରଣ ।
ପ୍ରତ୍ୟେକ ଶବ ପାଶେ ସେ ଉପସ୍ଥିତ ହୋଇ
ଉଠାନ୍ତି ଯତନେ ତାଙ୍କୁ ବ୍ରହ୍ମ ମନ୍ତ୍ର ଦେଇ ।
ଏଣେ ସର୍ବ ଶକ୍ତିମୟୀ ଦେବୀ ଜଗନ୍ମାତା
ମହାକାଳୀ ରୂପେ ପାଶେ ହୋଇ ଆବିର୍ଭୂତା,
ଆନନ୍ଦେ ବସିଣ ସେହି ଚିତାର ଉପରେ
ଯେତେ ପ୍ରକାର ସଂସ୍କାର ଥାଏ ଦେହୀଠାରେ,
ସ୍ଥୂଳ ସୂକ୍ଷ୍ମ କାରଣାଦି ବିବିଧ ବନ୍ଧନ
ଗୋଟିଏ ଗୋଟିଏ କରି କରନ୍ତି ମୋଚନ ।
ଏମନ୍ତେ ଉନ୍ମୁକ୍ତ କରି ନିର୍ବାଣର ଦ୍ୱାର
ପ୍ରାଣୀଙ୍କୁ ପ୍ରେରନ୍ତି ଦେବୀ ନିତ୍ୟ ବ୍ରହ୍ମପୁର ।
ଯେ ଯୋଗ ସାଧନ କରି ପ୍ରାଣୀ କଳ୍ପ କଳ୍ପ
କଦବା ଲଭନ୍ତି କେବେ ଭୂମାନନ୍ଦ ସ୍ୱଳ୍ପ ।
ସେହି ଭୂମାନନ୍ଦ ଏଠି କାଶୀ ବିଶ୍ୱନାଥ
ପ୍ରାଣୀଙ୍କୁ ଦେଇଣ ନିତ୍ୟ କରନ୍ତି କୃତାର୍ଥ ।"
ମଥୁରଙ୍କ ସଙ୍ଗେ ଥିଲେ ଯେତେକ ପଣ୍ଡିତ
ଶ୍ରୀମୁଖୁଁ ଶୁଣିଣ ଏହି ଅଦ୍ଭୁତ ବୃତ୍ତାନ୍ତ ।
କାଶୀଖଣ୍ଡେ ଲେଖାଅଛି ଏ ସମ୍ବନ୍ଧେ ଯାହା
ନିବେଦିଲେ ପ୍ରଭୁ ପାଶେ ସବିନୟେ ତାହା ।
ଯେ ପ୍ରାଣୀ ଲଭଇ ମୃତ୍ୟୁ ଆସି କାଶୀଧାମେ
ତା ସମାନ ଭାଗ୍ୟବାନ ନାହିଁ ତ୍ରିଭୁବନେ ।
ତା ଠାରେ ପ୍ରସନ୍ନ ହୋଇ ପ୍ରଭୁ ବିଶ୍ୱନାଥ
ଦେଖାଇ ଦିଅନ୍ତି ତାଙ୍କୁ ନିର୍ବାଣର ପଥ ।
କିରୂପେ ହୁଅଇ ସେହି ନିର୍ବାଣ ପ୍ରାପତି
ସେ ସମ୍ବନ୍ଧେ ନାହିଁ କିଛି ବିଶେଷ ବିବୃତି ।
ଆପଣ ଦର୍ଶନ କଥା ଯାହା ବଖାଣିଲେ
ଶାସ୍ତ୍ରର ଲେଖାକୁ ତହିଁ ଅତିକ୍ରମ କଲେ ।
ଯେତେଦିନ ଥିଲେ ପ୍ରଭୁ ଏହି ପୁଣ୍ୟ ସ୍ଥାନେ
ପ୍ରତ୍ୟହ ଗମନ୍ତି ବିଶ୍ୱନାଥଙ୍କ ଦର୍ଶନେ ।
କିଏ ଅବା କରୁଅଛି ଦର୍ଶନ କାହାର
ମନ୍ଦିରେ ପ୍ରବେଶ ମାତ୍ରେ ମଗ୍ନ ସମାଧିର ।
ନାବେ ବସି ଦିନକରେ ଜଗତ ଗୋସାଇଁ
ଆସୁଥିଲେ ବିଶ୍ୱନାଥ ଦରଶନ ପାଇଁ ।
ଦୂରରୁ ଦେଖିଲେ ତୀରେ କାଶୀ ବିଶ୍ୱେଶ୍ୱର
ଠିଆ ହୋଇଛନ୍ତି ଯେହ୍ନେ ତାଙ୍କ ଅପେକ୍ଷାର ।
ତଦନ୍ତେ ସେ ଧୀରେ ଧୀରେ ପ୍ରଭୁ ପାଶେ ଆସି
ସ୍ୱହିଁ ସ୍ୱହିଁ ଦେହ ମଧ୍ୟେ କ୍ଷଣେ ଗଲେ ମିଶି ।
ଅତଃପର ନିରେଖିଲେ ପ୍ରଭୁ ଭାବାବେଶେ
ସନ୍ନ୍ୟାସୀ ଗୋଟିଏ ଯେହ୍ନେ ଆସି ତାଙ୍କ ପାଶେ ।
ହସ୍ତ ଧରି ଘେନିଗଲେ ମନ୍ଦିର ଭିତରେ
ସ୍ୱର୍ଣ୍ଣମୟୀ ଅନ୍ନପୂର୍ଣ୍ଣା ମୂର୍ତ୍ତି ଯେଉଁଠାରେ ।
କାଶୀଧାମେ ଦେବରାଷ୍ଟ୍ର ଥିଲେ ଯେତେ ଦିନ
ପ୍ରତ୍ୟହ ହୁଅଇ ଦିବ୍ୟ ଦର୍ଶନ ଏସନ ।
ଦେବାଳୟମାନଙ୍କରେ ଯେ ସ୍ଥାନେ ଗମିଲେ
ବାହ୍ୟଜ୍ଞାନ ଆଗୁଁ ଶୂନ୍ୟ ଭାବର ପ୍ରାବଲ୍ୟେ ।
ପୂର୍ବ ଲୀଳା ସ୍ମୃତି ପଥେ ହୋଇଣ ଜାଗ୍ରତ
ହୃଦ ମଧ୍ୟେ ବହିଯାଏ ମହାଭାବ ସ୍ରୋତ ।

ଦେବଦେବୀଙ୍କ ସ୍ୱରୂପ ଦରଶନ ପାଇଁ
ସମର୍ଥ ନୋହିଲେ କେବେ ଜଗତ ଗୋସାଇଁ ।
ବହୁ ସାଧୁସନ୍ଥ କାଶୀଧାମେ ନିବସନ୍ତି
ନଣ୍ଡା ମୁଣ୍ଡ, ହସ୍ତେ ଥାଳ ଗେରୁଆ ପିନ୍ଧନ୍ତି ।
ବେଦାନ୍ତର ମର୍ମ କେହି ବୁଝନ୍ତି କଦବା
ଅତି ସାମାନ୍ୟ ବୁଝନ୍ତି ପୁଣ୍ୟାତ୍ମା ଯେ ଅବା ।
ପରମହଂସ ଅବସ୍ଥା ଲଭିଛନ୍ତି ଦେବ
ଏମାନେ ବୁଝିବେ କାହୁଁ ତାର ଗୂଢ଼ଭାବ ।
ଶ୍ରୀଅଙ୍ଗରେ ନାହିଁ କିଛି ନିଶାଣ ଲକ୍ଷିତ
ନାସିକା ଲଲାଟ ଆଦି ତିଳକବର୍ଜିତ ।
ଦେହ ନୁହେଁ ଭସ୍ମାବୃତ, ଶିରେ ନାହିଁ ଜଟା
ରୁଦ୍ରାକ୍ଷ ତୁଳସୀମାଳା ନାହିଁ ଘନଘଟା ।
ଅଙ୍ଗେ ନାହିଁ ନାମାବଳୀ କମ୍ବା ବ୍ୟାଘ୍ର ଛାଲ
ଧୂନି ଜଳା, ସଙ୍ଗେ ଚେଲା, ମୁଖେ ହର ହର ।
ପରିଧାନ ଏକମାତ୍ର ଶୁକ୍ଳ ସୂତା ବସ୍ତ୍ର
ପ୍ରୟୋଜନ ଅନୁସାରେ ଆଚ୍ଛାଦିତ ମାତ୍ର ।
ନ କରନ୍ତି ବେଦ ପାଠ, ବର୍ଣ୍ଣ ବିବର୍ଜିତ
କୌଣସି ସମ୍ବନ୍ଧ ନାହିଁ ଶାସ୍ତ୍ରାଦି ସହିତ ।
ବାହାରକୁ ଚିହ୍ନିବାର ସାଧ୍ୟ ନାହିଁ କାର
ଆପଣେ ଚିହ୍ନା ନ ଦେଲେ ପ୍ରଭୁ କୃପା କରି ।
ମନୁଷ୍ୟ କିଅବା ସୁର ବ୍ରହ୍ମା ପରାଜିତ
ଈଶ୍ୱରଙ୍କ ନରଲୀଳା ନିଗୂଢ଼ ଏମନ୍ତ ।
କାଶୀ ଅବସ୍ଥାନ କାଳେ ପ୍ରଭୁ ଶ୍ରୀଠାକୁରେ
ଭେଟିଥିଲେ ବହୁ ସାଧୁ ସନ୍ଥ ସହିତରେ ।
ତାଙ୍କ ମଧ୍ୟେ ଅଗ୍ରଗଣ୍ୟ ତ୍ରୈଲଙ୍ଗ ସ୍ୱାମୀ
ଅତ୍ୟନ୍ତ ଉନ୍ନତ ଆତ୍ମା ଯତିବର ମୌନୀ ।
ଭଲ ମନ୍ଦେ ସମଜ୍ଞାନ ବିକାରବିହୀନ
କ୍ଷୁଧା ତୃଷ୍ଣା ଶୂନ୍ୟ, ଦିଗମ୍ବର ପରିଧାନ ।
ଖର ବର୍ଷା ଶୀତ ପ୍ରତି ନ ଥାଏ ଭ୍ରୂକ୍ଷେପ
ଜାହ୍ନବୀ ବାଲୁକାଶଯ୍ୟା, ସୂର୍ଯ୍ୟ ଚନ୍ଦ୍ରାତପ ।
ଯତିଙ୍କର ଗୁଣାବଳୀ ଦେଶେ ଦେଶେ ଖ୍ୟାତ
ଦର୍ଶନେ ଆସନ୍ତି ତେଣୁ ଲୋକ ଶତ ଶତ ।
ଏମନ୍ତ ସନ୍ନ୍ୟାସୀ ପାଦେ କୋଟି ନମସ୍କାର
ଯାହାଙ୍କ ଦର୍ଶନାକାଂକ୍ଷୀ ବ୍ରହ୍ମାଣ୍ଡ ଠାକୁର ।
ତାଙ୍କ ପାଶେ ଦେବବର୍ଯ୍ୟ ସଦା ଉପସ୍ଥିତ
ମନେ ମନେ ପୂଜା କଲେ ସ୍ୱାମୀ ଯଥୋଚିତ ।

ଏକମାତ୍ର ନସ୍ୟଡାବି ସମ୍ବଳ ତାଙ୍କର
ତାହା କାଢ଼ି ସମର୍ପିଲେ ହସ୍ତେ ପ୍ରଭୁଙ୍କର ।
ପରମ ହରଷେ ପ୍ରଭୁ ତହୁଁ ନସ୍ୟ ଘେନି
ଅଙ୍ଗୁଳି ନିର୍ଦ୍ଦେଶେ ପ୍ରଶ୍ନ କଲେ ସାର ବାଣୀ ।
ଏକ ବା ଅଧିକ'ଛନ୍ତି ଜଗତେ ଈଶ୍ୱର
ସଙ୍କେତେ କହିଲେ ମୌନୀ ତାହାର ଉତ୍ତର ।
ସମାଧିସ୍ଥ ହୋଇ ତାଙ୍କୁ କଲେକ ଦର୍ଶନ
ଅଖଣ୍ଡ ସଚ୍ଚିଦାନନ୍ଦ ଏକ ଦୃଶ୍ୟମାନ ।
ଜୀବ ଜଗତ ଆବର ଆତ୍ମ ତୁମ୍ଭେ ଭାବ
ଯେତେକ୍ଷଣ ପ୍ରାଣୀ ଚିତ୍ତେ କାର୍ଯ୍ୟ କରୁଥିବ ।
ତେତେକ୍ଷଣ ଭଗବାନ ବ୍ରହ୍ମ ସନାତନ
ପ୍ରତୀୟମାନ ହୁଅନ୍ତି ବହୁତ ବୋଲିଣ ।
ଏମନ୍ତ ଉତ୍ତର ପାଇ ତୋଷ ଦେବବର୍ଯ୍ୟେ
ଆନନ୍ଦର ପାରାବାର ବହିଲା ହୃଦୟେ ।
ଭଣଜା ହୃଦୟେ ତହୁଁ ବୋଇଲେ ଶ୍ରୀହରି
ପରମହଂସ ଅବସ୍ଥା ପ୍ରକୃତ ସ୍ୱା'ଙ୍କର ।
ଦେଖିଲେ ହିଁ ମନେହୁଏ ଯେହ୍ନେ କାଶୀନାଥ
ସ୍ୱୟଂ ହୋଇଛନ୍ତି ସ୍ୱାଙ୍କଠାରେ ବିରାଜିତ ।
ଅତଃପର ଦିନକରେ ପ୍ରଭୁ ପରମେଶ
ନିମନ୍ତ୍ରଣ କଲେ ତାଙ୍କୁ ମଥୁର ଆବାସେ ।
ପାୟସାନ୍ନ ଆଦି କରି ବିଭିନ୍ନ ଦରବ
ନିଜ ହସ୍ତେ ଖୁଆଇଲେ ସ୍ନେହେ ପ୍ରଭୁଦେବ ।
ତଦନ୍ତେ ଶ୍ରୀଦେବଙ୍କର ଅଭିଳାଷ ମନେ
ଦେଖିବେ କିପରି ଆନ୍ତି ମଠାଧୀଶମାନେ ।
ନାନକପନ୍ଥୀ ମଠରେ ହୋଇ ଉପସ୍ଥିତ
ମହନ୍ତଙ୍କ ସଙ୍ଗେ ନିଜେ କଲେକ ସାକ୍ଷାତ ।
ବଡ଼ ବଡ ଝୋଟାଯାକ ଯୋଡ଼ି ବେନି କର
ଠିଆ ହୋଇଛନ୍ତି ପାଶେ ଯେସନ କିଙ୍କର ।
ମଠାଧୀଶଙ୍କୁ ଦେଖିଣ ତାଙ୍କ ଅନୁମାନ
କାର୍ଯ୍ୟେ ଯେତ ଗୃହସ୍ଥର ଗୃହିଣୀ ଯେସନ ।
ପୃଚ୍ଛିଲେ ତାହାଙ୍କୁ ଦେବ "କି ଉପାୟେ ମୁକ୍ତି ?"
ଉତ୍ତରିଲେ ମଠାଧୀଶ "ନାରଦୀୟ ଭକ୍ତି ।"
ବେଦାନ୍ତ-ବାଦୀ ହେଲେହେଁ ସରବେ ଏମାନେ
ଭକତି ମାର୍ଗକୁ ପ୍ରଶଂସନ୍ତି ବହୁଗୁଣେ ।
ସାତଦିନ ପ୍ରଭୁ ଏଠି ଅବସ୍ଥାନ କରି
ପ୍ରୟାଗକୁ ଗଲେ ମଥୁରଙ୍କୁ ସଙ୍ଗେ ଧରି ।

ମସ୍ତକ ମୁଣ୍ଡନ ଆଦି କ୍ରିୟାକର୍ମମାନ
ଶ୍ରୀମଥୁର ଯଥାବିଧି କଲେ ସମାପନ ।
ମସ୍ତକ ମୁଣ୍ଡନ ପାଇଁ ପ୍ରଭୁ ଶ୍ରୀଠାକୁରେ
ଅବଶ୍ୟକ ନାହିଁ ବୋଲି କହିଲେ ମଥୁରେ ।
ଆରେ ମୂଢ଼ମନ ! ଶୁଦ୍ଧ ବୁଝ ଭଲ କରି
ଆକାରେ ହେଲେହେଁ ନର, କାର୍ଯ୍ୟେ ନରହରି ।
ମାନବ ବୁଦ୍ଧିରେ କାର୍ଯ୍ୟକଳାପ ଦେଖିଲେ
ନିଶ୍ଚୟ ପଡ଼ିବୁ ତୁହି ବିଷମ ଜଞ୍ଜାଳେ ।
ଚର୍ମ ଚକ୍ଷୁ ଗୁପ୍ତ ରଖି ମାନସ ନୟନେ
ପ୍ରଭୁଙ୍କର ଲୀଳାଖେଳା ଦେଖ ଅନୁକ୍ଷଣେ ।
ଶୁଣିବା ଦେଖିବା ମଧ୍ୟେ ବହୁତ ଅନ୍ତର
ଶୁଣା ଚନ୍ଦ, ଦେଖା ଚନ୍ଦ ଭେଦ ଯେ ପ୍ରକାର ।
ସେ ଲୀଳା ଦର୍ଶନେ ଯଦି ଚାହୁଁ ଅଭିଳାଷ
ମନରୁ ତେଜ କାମିନୀ-କାଞ୍ଚନର ଆଶ ।
ଘନ କଳା ମେଘ ନେତ୍ର ପଥେ ଆଗମିଲେ
ଚନ୍ଦ୍ରଙ୍କ ଦର୍ଶନ ଯେମନ୍ତେ ନ ମିଳଇ ଭଲେ ।
ମହା ଅନର୍ଥର ମୂଳ ମାୟାର ବନ୍ଧନ
ଯେତେକ୍ଷଣ ନେତ୍ରେ ବନ୍ଧା, ଅସ୍ଫୁଟ ନୟନ ।
ଯେତେଦିନଯାଏ ତାହା ନ ହୁଅଇ ଦୂର
ଦିବ୍ୟଲୀଳାର ମାଧୁରୀ ଶୁଣ ନିରନ୍ତର ।
ବନ୍ଧନ ମୋଚନେ ତାର ଶକତି ଅସୀମ
କାୟମନୋବାକ୍ୟେ ସଦା ଭଜ ସେହି ନାମ ।
ପ୍ରୟାଗରେ ଥିଲାବେଳେ ବୈଦାନ୍ତିକ ଜଣେ
କୌତୂହଳେ ଆଗମିଲେ ପ୍ରଭୁଙ୍କ ଦର୍ଶନେ ।
ଏ ପ୍ରଦେଶେ ଖ୍ୟାତ ଦୟାନନ୍ଦ ସରସ୍ୱତୀ
ବେଦାନ୍ତ ବାଗୀଶ ଆର୍ଯ୍ୟ-ସମାଜାଧିପତି ।
ଏହାଙ୍କର ଚେଲା ସେହି ଆଗନ୍ତୁକ ଜନ
ନିରାକାର ଭାବ ଚାହେଁ ସଦା ,ବିଦ୍ୟମାନ ।
ରୂପଗୁଣ ସମନ୍ୱିତ ସାକାର ଈଶ୍ୱର
ସ୍ୱୀକାର କରନ୍ତି ନାହିଁ ପଣ୍ଡିତପ୍ରବର ।
ସାକାର ସମ୍ବନ୍ଧେ ତର୍କ ହୋଇଲା ବହୁତ
ମାୟାର ବ୍ୟାପାର ବୋଲି ପଣ୍ଡିତଙ୍କ ମତ ।
ନିଜ କଥା ସପକ୍ଷରେ ବେଦାନ୍ତ ବଚନ
ବହୁତ ଉଦ୍ଧୃତ କଲେ ଆଗନ୍ତୁକ ଜନ ।
ସେ ମତ ଖଣ୍ଡିଣ ତହୁଁ ପ୍ରଭୁ ନରହରି
ଜ୍ୱଳନ୍ତ ପ୍ରମାଣ ଶାସ୍ତ୍ରୁ ଦେଲେ ଭୂରି ଭୂରି ।

ତଥାପି ସେ ବୈଦାନ୍ତିକ ନ କଲେ ସ୍ୱୀକାର
ଉତ୍ତେଜିତେ ବୋଇଲେକ ପ୍ରଭୁ ଶ୍ରୀଠାକୁର ।
"ଜଗଦମ୍ବାଙ୍କୁ ପୂଜିଲି ଏତେ କାଳ ମୁହିଁ
ବୃଥା ହୋଇଲା କି ଶ୍ରମ, ଫଳ କିଛି ନାହିଁ ।"
ବଚନେ ନୋହିବ ଲଭ ଏହା ଅନୁମାନି
ସ୍ୱରୂପ ଧାରଣ କଲେ ପ୍ରଭୁ ଗୁଣମଣି ।
ବାୟୁରେ ଦୋଳଇ ଯେମନ୍ତେ ବୃକ୍ଷର ପଲ୍ଲ
ମହାଭାବେ ଦେବଙ୍କର ଅଙ୍ଗ ଟଳମଳ ।
ମହାଶକ୍ତି ଶ୍ରୀଅଙ୍ଗରେ କ୍ଷଣକେ ବିକାଶ
ରୂପ ରସ ଗୁଣ ଆଦି ଯା କଲେ ପ୍ରକାଶ ।
ଏଇ ଦେଖ ବୋଲି ନିଜ ଶରୀର ଦେଖାଇ
ହୁଙ୍କାର ଉଠିଲେ ତହିଁ ଜଗତ ଗୋସାଇଁ ।
ସୀସା ତାରେ ବୈଦ୍ୟୁତିକ ଶକ୍ତି ସଞ୍ଚାଳନେ
ଥର ଥର ହୋଇଣ ତା କମ୍ପଇ ଯେସନେ ।
ତେସନେ ଶ୍ରୀଦେବଙ୍କର ଶକ୍ତି ପ୍ରଭାବରେ
ଭାଗ୍ୟବାନ ବୈଦାନ୍ତିକ କମ୍ପିଲେ ସେଠାରେ ।
ଦିବ୍ୟନେତ୍ରେ ସେକାଳେ ସେ ଯା କଲେ ଦର୍ଶନ
ତା ଫଳେ ଲୋଟିଲେ ତଳେ ଧରି ଶ୍ରୀଚରଣ ।
ଏଥିଅନ୍ତେ ଶୁଣ ସର୍ବେ ଭକ୍ତ ସହକାର
ବୃନ୍ଦାବନେ ତୀର୍ଥ ପର୍ଯ୍ୟଟନ ସମାଚାର ।
ପ୍ରୟାଗରୁ ପୁନର୍ବାର କାଶୀଧାମେ ଫେରି
ପଶ୍ଚାନ୍ତରେ ବୃନ୍ଦାବନେ ବିଜେ କଲେ ହରି ।
ପଦାର୍ପଣ ମାତ୍ରେ ସେହି ପୁଣ୍ୟ ବୃନ୍ଦାବନେ
ଜାଗ୍ରତ ହୋଇଲା ପୂର୍ବ ସ୍ମୃତି ତାଙ୍କ ମନେ ।
କଂସ-ତ୍ରାସେ ବସୁଦେବ କୃଷ୍ଣ କୋଳେ ଘେନି
ପାରି ହେଲେ ଯେଉଁ ଘାଟେ ଯମୁନା ତଟିନୀ ।
ମଥୁରାର ସେହି ଘାଟ ଦେଖିଲେ ଯେପରି
ସେ ଛବି ଉଠିଲା ଚାହେଁ ତକ୍ଷଣେ ତାଙ୍କରି ।
ବିଶ୍ୱଧାତା ବିଶ୍ୱକର୍ତ୍ତା ପ୍ରଭୁ ଦେବରାୟେ
ନିରେଖିଲେ ବସୁଦେବ ଆକୁଳ ହୃଦୟେ ।
ଘୋର ତମିରେ ଆଚ୍ଛନ୍ନ ଗଭୀର ନିଶାରେ
ଊର୍ଦ୍ଧ୍ୱଶ୍ୱାସେ କୃଷ୍ଣ ଘେନି ଧାବନ୍ତି ବେଗରେ ।
ଏ ଦିବ୍ୟ ଚିତ୍ର ଦର୍ଶନେ ମହାଭାବ ଉଠି
ସମାଧିସ୍ଥ ହେଲେ କ୍ଷଣେ ଜଗତ ଗୋସାଇଁ ।
ସମାଧି କ୍ରମଶଃ ହେଲା ଏପରି ଗଭୀର
ବାହ୍ୟଜ୍ଞାନ ନ ରହିଲା କୌଣସି ପ୍ରକାର ।

ଭକ୍ତବୀର ଶ୍ରୀମଥୁର, ଭଣଜା ହୃଦୟ,
ବେନ କର୍ଣ୍ଣେ କୃଷ୍ଣନାମ କଲେ ଯେ ଉଭୟ
ତେବେ ମଧ ନ ଆସିଲା କଣ୍ଠତରେ ହୋସ
ଅନନ୍ୟ ଉପାସ୍ୟ ହୋଇ ମଥୁର ବିଶ୍ୱାସ ।
ସବାରୀରେ ଯେଜନଯିବେ ଏମନ୍ତ ବିଚାର
ଯଥୋଚିତ ବନ୍ଦୋବସ୍ତ କଲେ ଲୋକ ପ୍ରେରି ।
ମହାଭାବେ ମଗ୍ନ ଥାଇ ପ୍ରଭୁ ପରମେଶ
ବୃନ୍ଦାବନେ ନଗରଯାନେ କଲେକ ପବେଶ ।
ଏ ପ୍ରକାରେ ବିତିଗଲା ଦ’ଦିନ ପହର
ତଥାପି ଭାଜିଲା ନାହିଁ ସମାଧି ତାଙ୍କର ।
ବୃନ୍ଦାବନେ କିଛୁକାଳ ଅବସ୍ଥାନ ପରେ
ବାହ୍ୟଜ୍ଞାନ ଦୃଷ୍ଟ ହେଲା କ୍ରମେ ଶ୍ରୀଅଙ୍ଗରେ ।
ସେ ସ୍ଥାନର ଦୃଶ୍ୟ ଦେଖି ପ୍ରଭୁ ଭଗବାନ
ମହାନନ୍ଦ ପାରାବାରେ ହେଲେ ଭାସମାନ ।
ବିଶେଷତଃ ଶ୍ରୀକୃଷ୍ଣଙ୍କ ଯହିଁ ଲୀଳାସ୍ଥଳ
ସେ ସବୁ ଦର୍ଶନେ ଭାବ ହୋଇଲା ପ୍ରବଳ ।
ଚଉପଟେ ଜାଗେ ଉଠି ପୁଲୁବର ମୂର୍ତ୍ତ
ନିମିଷ ମଧ୍ୟରେ କଲା ବାହ୍ୟଜ୍ଞାନ ଚ୍ୟୁତ ।
ଏସନ ଅବସ୍ଥା ଦେଖି ଭକତ ମଥୁର
ପରାମର୍ଶ କଲେ ହୃଦୁ ମୁଖୁର୍ଯ୍ୟା ସଙ୍ଗର ।
ଯହିଁ ତହିଁ ଲୋପ ହୁଏ ସ୍ୱାଙ୍କ ବାହ୍ୟଜ୍ଞାନ
ତୀର୍ଥାଦି ଦର୍ଶନେ ଆଉ ଗମିବେ କେସନ ।
ସବାରୀର ବନ୍ଦୋବସ୍ତ କରୁଅଛୁ ମୁହିଁ
ତହିଁ ଆରୋହଣ ଯିବେ ପ୍ରଭୁ ଭାବଗ୍ରାହୀ ।
ଯାନେ ଯିବାପାଇଁ ଯଦ ହୋଇବେ ଅମତ
ତୁମ୍ଭେ ସଙ୍ଗେ ଯିବ, ଯାନ ଗମିବ ପଶ୍ଚାତ ।
ରାଧାକୁଣ୍ଡ ଶ୍ୟାମକୁଣ୍ଡ ଗିରି ଗୋବର୍ଦ୍ଧନ
ଏପରି ଅଛଇ ଯେତେ ରମଣୀୟ ସ୍ଥାନ ।
ସେ ସକଳ ଦେଖିବାକୁ ପ୍ରଭୁଙ୍କର ଆଶ
ଆଗହୁଁ ତା ଜାଣିପାରି ମଥୁର ବିଶ୍ୱାସ ।
ସବାରୀ ଖଣ୍ଡିଏ ଶୀଘ୍ର କଲେ ଆୟୋଜନ
ଯହିଁ ବସି ତୀର୍ଥେ ଯିବେ ପ୍ରଭୁ ଭଗବାନ ।
ଖାଇବାକୁ ସଙ୍ଗେ ଦେଲେ ଜଳପି ମିଠାଇ
ଅଧିକ ସୁଉକୀ ଦୋଣି ବିତରଣ ପାଇଁ ।
ଧନ ସ୍ପର୍ଶି ନ ପାରନ୍ତି ପ୍ରଭୁ ଗୁଣମଣି
ସବାରୀ କୋଣେ ସ୍ଥାପିଲେ ଆଗହୁଁ ତା ଜାଣି ।

ଏସନ ଯୋଗାଡ଼ କରି ଭକତ ମଥୁର
ତୀର୍ଥ ଦର୍ଶନେ ପ୍ରେରିଲେ ପ୍ରାଣର ଠାକୁର ।
ହୃଦୟ ପ୍ରଭୃତି ବହୁ ଲୋକ ସଙ୍ଗେ ଧରି
ତୀର୍ଥ ପର୍ଯ୍ୟଟନେ ବିଜେକଲେ ନରହରି ।
ରାଧାକୁଣ୍ଡ ଶ୍ୟାମକୁଣ୍ଡ ଦର୍ଶନ ପଥରେ
ଗୋବର୍ଦ୍ଧନ ଦେଖି ଯିବେ ବାସନା ଅନ୍ତରେ ।
ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟେ ତହିଁ ଯିବାବେଳେ
ରୋଦନ କରିଲେ କେତେ ପାଣର ବିକଳେ ।
"ଆରେ କାହ୍ନୁ ! ଏଠାରେ ତୁ ଚରାଉ ଗୋଧନ
ସବୁ ତ ଅକ୍ଷୁଣ୍ଣ ତୋର ପୂର୍ବର ନିଶାଣ ।
ତୋତେ ଦେଖୁନାହିଁ କିପାଁ ଆଜି ମୁଁ ଏଠାରେ
କାହିଁ ଅଛୁ ଆରେ କାହ୍ନୁ ! ଦେଖା ଦେ ରେ ଅରେ ।"
କହୁଁ କହୁଁ ଦେବରାୟ ଭାବରେ ବିହ୍ୱଳ
ନେତ୍ରୁ ବହିଗଲା ବାରିଧାର ଅନର୍ଗଳ ।
ଗୋବର୍ଦ୍ଧନ ନାମ ଶୁଣି ଚିତ୍ତେ ଯାହାଙ୍କର
ଉଚ୍ଛୁଳଇ ମହାବେଗେ ପ୍ରେମ ପାରାବାର ।
ଲୀଳାସ୍ଥଳ ଗିରି ଯେବେ ଦେଖିବେ ନୟନେ
କି କାଣ୍ଡ ଘଟିବ ହୃଦୁ ଭାଳି ବ୍ୟସ୍ତ ମନେ ।
ଯେମନ୍ତ ଦେଖିଲେ ସେହି ମନୋରମ ଗିରି
ନାଚୁଛନ୍ତି ଯହିଁ ରଙ୍ଗେ ମୟୂରମୟୂରୀ ।
ବନ ଫଳ ପୁଷ୍ପେ ଚତୁର୍ଦ୍ଦିଗ ମନୋହର
ଦଳେ ଦଳେ ଆତଯାତ ହରିଣ ନିକର ।
ବାହ୍ୟ ଜ୍ଞାନ ଏକାବେଳେ ହେଲା ଅନ୍ତର୍ହିତ
ମହାଶକ୍ତି ଶ୍ରୀଅଙ୍ଗରେ ହେଲା ସଞ୍ଚାରିତ ।
ସାଧ୍ୟ କାର ; କିଏ ତାଙ୍କୁ ରଖିବ ଧରିଣ
ଡେଇଁ ପଡ଼ି ଗୋବର୍ଦ୍ଧନେ କଲେ ଆରୋହଣ ।
ପଣ୍ଡାମାନେ ପ୍ରଭୁଙ୍କର ପଛେ ପଛେ ଧାଇଁ
ବହୁ କଷ୍ଟେ ଆଣିଲେ ଯେ ତାଙ୍କୁ ଲେଉଟାଇ ।
ରାଧାକୁଣ୍ଡେ ଶ୍ୟାମ କୁଣ୍ଡେ ଯାଇ ଦେବରାୟ
ସେଠାରେ ଦେଖିଲେ ବହୁ ସାଧକ ନିଚୟ ।
ଗୋଟିଏ ଗୋଟିଏ କୁଞ୍ଜ ତିଆରି କରିଣ
ତହିଁ ମଧ୍ୟେ ଯେ ଯା ଭାବେ ଧ୍ୟାନେ ନିମଗନ ।
ଯେ ଦ୍ୱାଦଶ କୃଷ୍ଣବନ ତନ୍ମଧ୍ୟେ ପ୍ରସିଦ୍ଧ
ସେ ସବୁ ଦର୍ଶନେ ଚିତ୍ତେ ଅପାର ଆନନ୍ଦ ।
ଦୀନଜନେ ଦାନ ପାଇଁ ଯେଉଁସବୁ ବିତ୍ତ
ସବାରୀର ଏକ କୋଣେ ଥିଲା ସଂରକ୍ଷିତ ।

ଉପଯୁକ୍ତ ପାତ୍ର ଦେଖି ପ୍ରଭୁ ନରହରି
ଫିଙ୍ଗିଲେ ତଳକୁ ନେଇ ଓଟାରି ଓଟାରି ।
ତ୍ୟାଗର ଜୀବନ୍ତ ମୂର୍ତ୍ତି ପ୍ରଭୁ ଭଗବାନ
ସ୍ପର୍ଶ କରି ନ ପାରନ୍ତି କାମିନୀକାଞ୍ଚନ ।
ବିତରଣ ନ କରିଣ ତେଣୁ ସ୍ୱହସ୍ତରେ
ବସ୍ତ୍ର ଦେଲେ ସେ ସକଳ ଏଭଳି ଭାବରେ ।
ଶ୍ରୀକୃଷ୍ଣ ମୂରତି ଯେତେ ବ୍ରଜପୁରେ ଥାଇ
ମଥୁରେ ବୋଲଇଲେ ଭୋଗ ଲାଗିଦେବା ପାଇଁ ।
ଯେଉଁଠି ଦେଖିଲେ ଯାହା ସମାଧିସ୍ଥ ତହିଁ
କି ବର୍ଣ୍ଣିବ ସେ ବୃତ୍ତାନ୍ତ ଅତି ମୂଢ଼ ମୁହିଁ ।
ଶ୍ରୀବଙ୍କୁବିହାରୀ ମୂର୍ତ୍ତି ବୃନ୍ଦାବନ ପତି
ବିଶେଷ ପ୍ରକଟ ଯହିଁ କୃଷ୍ଣଙ୍କ ଶକତି ।
ତାଙ୍କୁ ଦେଖି ଦେବରାଜେ ଭାବର ଆବେଶେ
ଆଲିଙ୍ଗନ କରିବାକୁ ଧାଇଁଲେକ ପାଶେ ।
ମହାଭାବ ହୋଇ ଏବେ ସମାଧି ଗମ୍ଭୀର
ସହଜେ ନ ଲେଉଟିଲା ଚେତା ତାହାଙ୍କର ।
ଗଉଡ଼ୀୟ ଭେକ ଧରି ତଦନ୍ତେ ଶ୍ରୀହରି
ଦ୍ୱାରେ ଦ୍ୱାରେ ବିଜେ କରି କଲେ ମାଧୁକରୀ ।
ଦିନକରେ ନିଧୁବନେ ପ୍ରଭୁ ଗୁଣଧାମ
ଭେଟିଲେ ରମଣୀ ଏକ ଗଙ୍ଗାମାତା ନାମ ।
ଷାଠିଏ ବରଷ ହେବ ତାଙ୍କର ବୟସ
ରାଧାକୃଷ୍ଣ ପ୍ରେମ ଚିହ୍ନେ ପ୍ରକଟ ବିଶେଷ ।
ସରବେ ବୋଲନ୍ତି ତାଙ୍କ ପ୍ରେମ ଭକ୍ତି ଦେଖି
ମର୍ତ୍ତ୍ୟେ ଯେହ୍ନେ ଆବିର୍ଭୂତା ଶ୍ରୀଲଳିତା ସଖୀ ।
ବୃଦ୍ଧାଙ୍କର କଟୀଦେଶ ବସନବିହୀନ
ଆଲଖାଲ୍ଲା ପିନ୍ଧି ଲଜ୍ଜା କରନ୍ତି ବାରଣ ।
ଭାବେ ସଦା ଗଦ ଗଦ ତାଙ୍କର ହୃଦୟ
ସ୍ୱଭାବେ ପଞ୍ଚବର୍ଷୀୟା ବାଳିକା ପରାୟ ।
କଣ୍ଠରେ ପୁଣ୍ଟୁଳା ବନ୍ଧା ଶାଳଗ୍ରାମ ମୂର୍ତ୍ତି
ଦୂରରୁ ପ୍ରଭୁଙ୍କୁ ବୃଦ୍ଧା ଦେଖିଲେ ଯେମିତ,
ଶ୍ରୀରାଧିକା ବୋଲି ଚିହ୍ନେ ହେଲା ଅନୁମିତ
ଆନନ୍ଦେ ଧାଇଁଲେ ତେଣୁ ପ୍ରସାରି ଦ୍ୱିହାତ ।
"ଆରେ ରେ ଦୁଲାଲୀ କାହିଁଥିଲୁ ଏତେ ଦିନ
ଭାଗ୍ୟବଳେ ଆଜ ମୁହିଁ ପାଇଲି ଦର୍ଶନ ।
ସାର୍ଥକ ମୋ ଜପ ତପ ଜନମ ଆବର
ମୋ କୁଞ୍ଜ ପବିତ୍ର କରି ଦେଇ ପାଦ ତୋର ।"

ଶଶାଙ୍କ ଦେଖିଲେ ଯଥା ଉଛୁଳେ ଜଳଧି
ପ୍ରଭୁଙ୍କୁ ଦେଖିଣ ତଥା ଚିତ୍ତେ ପ୍ରେମ ବୃଦ୍ଧି ।
ବୃଦ୍ଧାଙ୍କଠି ପ୍ରଭୁଙ୍କର ଅପାର ପୀରତି
ଧନ୍ୟ ଭକ୍ତବତ୍ସଳତା, ଧନ୍ୟ ଜଗତ୍ପତି ।
ବୃଦ୍ଧାଙ୍କ ଭକତି ଡୋରେ ଆବଦ୍ଧ ଏପରି
କ୍ଷୁଧା ତୃଷ୍ଣା ଏକାବେଳେ ଗଲେ ସେ ପାସୋରି ।
କାହିଁ ଅବା ଭକ୍ତବର ମଥୁର ବିଶ୍ୱାସ
କାହିଁବା ଭଣଜା ହୃଦୁ, ଖୋଜା ନାହିଁ ଲେଶ ।
ସାତଦିନ କଟିଯାଏ ବୃଦ୍ଧାଙ୍କ ଭବନେ
କୌଣସି ବିଷୟ ଆଉ ନ ଥାଏକ ମନେ ।
ପ୍ରତିଦିନ ଦିବାଭାଗେ ଅନ୍ନ ବସ୍ତ୍ର ନେଇ
ଆଶ୍ରମେ ଦିଅନ୍ତି ହୃଦୁ ମାତୁଳଙ୍କ ପାଇଁ ।
ଦିବା ଅବସାନେ ତହିଁ ହୋଇ ଉପନୀତ
ଫେରାଇ ଆଣନ୍ତି ଗୃହେ କଷ୍ଟରେ ବହୁତ ।
ପ୍ରଭୁଙ୍କର ଶ୍ରଦ୍ଧା ପ୍ରୀତି ବୃଦ୍ଧାଠି ଏପରି
ସକାଳେ ଆସନ୍ତି ଧାଇଁ ଆଶ୍ରମେ ତାଙ୍କରି ।
ବୃଦ୍ଧା ହେଲେ ପ୍ରିୟତମ ସଂସାର ମଧ୍ୟରେ
ଅନ୍ୟାନ୍ୟ ସରବେ ହେଲେ ଯେହ୍ନେ ଅତି ପର ।
ପ୍ରାଣର ପ୍ରତିମା ପାଇ ବୃଦ୍ଧା ଚିତ୍ତେ ପ୍ରୀତ
ପ୍ରସ୍ତୁତ କରନ୍ତି ନାନା ଖାଦ୍ୟ ନିତି ନିତି ।
ପ୍ରଭୁଙ୍କୁ ଡାକିଣ ସ୍ନେହେ ବସାଇ କୋଳରେ
ଶ୍ରୀମୁଖେ ଦିଅନ୍ତି ଭୋଜ୍ୟ ବସ୍ତୁ ସ୍ୱହସ୍ତରେ ।
ଉଦର ପୂରାଇ ପ୍ରଭୁ କଲେକ ଭୋଜନ
ତା ପରେ କରନ୍ତି ବିପ୍ରା ପ୍ରସାଦ ଗ୍ରହଣ ।
ଏମନ୍ତେ ଭୋଜନ କରି ବୃଦ୍ଧାଙ୍କ ଆଶ୍ରମେ
ଯଥା ତଥା ବିଚରନ୍ତି ପ୍ରଭୁ ଗୁଣଧାମେ ।
କାଳୀୟ ଦମନ ଘାଟେ ଦେବ ଦୀନନାଥ
ସ୍ନାନାର୍ଥେ ଗମନ୍ତି ନିତ୍ୟ ହୃଦୟ ସହିତ ।
ପ୍ରବେଶ ମାତ୍ରକେ ତହିଁ ଜାଗି ପୂର୍ବ ସ୍ମୃତି
ଭାବରେ ବିଭୋଳ ହୋଇ ସଂଜ୍ଞା ହୁଏ ଚ୍ୟୁତି ।
କୌଣସି ପ୍ରକାରେ ହୃଦୁ ତାହାଙ୍କୁ ଧରିଣ
ଗାଧୋଇ ଦିଅନ୍ତି କ୍ଷୁଦ୍ର ବାଳକ ସମାନ ।
ଘାଟେ ଆସି ଦିନକରେ ପ୍ରଭୁ ନରହରି
ଗୋପବାଳଙ୍କୁ ଦେଖିଲେ ଏକମେଳ ଧରି
ମଧୁର ସଙ୍ଗୀତ ମୁଖେ ଗାଇ ଏକତାନେ
ଯମୁନାକୁ ପାରି ହେଉଛନ୍ତି ଫୁଲ୍ଲ ମନେ ।

ଦର୍ଶନ ମାତ୍ରକେ ତାଙ୍କୁ ପ୍ରଭୁ ଦେବଗ୍ରସ୍ତ
ପୂର୍ବ ସ୍ମୃତି ଚିତ୍ତେ ଜାଗି ଭାବରେ ତନ୍ମୟ ।
ବେନି ନେତ୍ରୁଁ ଅଶ୍ରୁଧାର ବହିଲା ତକ୍ଷଣ
"ହେ କୃଷ୍ଣ ହେ କୃଷ୍ଣ" ବୋଲି ଡାକିଲେ ସଘନ ।
ହେଇ ହେଇ ଦେଖ ମୋର ନବଘନ ଶ୍ୟାମ
କରେ ବଂଶୀ, ଶିରେ ଶିଖିପୁଚ୍ଛ ମନୋରମ ।
ଅଧରେ ମଧୁର ହାସ୍ୟ ଯାଆନ୍ତି ନାଚି ନାଚି
ବେନିପାଦେ ରୁଣୁଝୁଣୁ ନୂପୁର ବାଜୁଛି ।
ଚାରିଆଡ଼େ ତାଙ୍କୁ ଘେରି ଗୋପବାଳଗଣ
ଗୋଚାରଣେ ଯାଉଛନ୍ତି ଯମୁନା ପୁଳିନ ।
"ଯାଉଛନ୍ତି ହେଇ ମୋର ଶ୍ୟାମ ନଟବର"
ଏମନ୍ତ କହି ଧାଇଁଲେ ପ୍ରଭୁ ଶ୍ରୀଠାକୁର ।
ବେଗେ ଯାଇ ହୃଦୁ ତାଙ୍କୁ ଧରିଲେ ଯେପରି
ତତ୍କ୍ଷଣରେ ସମାଧିସ୍ଥ ପ୍ରଭୁ ନରହରି ।
ଚେତା ନ ଆସିଲା ଆଉ କୌଣସି ପ୍ରକାରେ
ସବାରି ବ୍ୟବସ୍ଥା ତହୁଁ କଲେ ଖରତରେ ।
ଆଶ୍ରମେ ଆସିଲେ ଦେବଗ୍ରସ୍ତ ନରଯାନେ
ଭାବେ ଗଦ ଗଦ ବୃନ୍ଦା ତାହାଙ୍କ ଦର୍ଶନେ ।
ଭାବମୟୀ ବ୍ରଜେଶ୍ୱରୀ ଭାବରେ ମଗନ
ବିଶେଷ ଯତନ କଲେ ଏମନ୍ତ ଭାଳିଣ ।
ଭାବ ଭଜନରୁ ତାଙ୍କୁ ବସାଇଣ କୋଳେ
ସ୍ନେହ ସହକାରେ ତହୁଁ ବୃନ୍ଦା ଯେ ଭାଷିଲେ ।
"ଆରେ ଦୁଲାଲୀ ! ମୋ କୃଷ୍ଣେ ରହି ବରାବର
ଯତ୍ନେ ତ୍ରୁଟି ନ କରିବ କୌଣସି ପ୍ରକାର ।"
ବୃନ୍ଦାଙ୍କ ବଚନ ଶୁଣି କହିଲେ ଶ୍ରୀହରି
"ସେଥିରେ ଅନିଚ୍ଛା ନାହିଁ କହୁତ ମୋହରି ।
ତୁମ୍ଭର ଭୋଜନ ନିତ୍ୟ ଆତପ ତଣ୍ଡୁଳ
ଆହାର କରଇଁ ମୁହିଁ ସିଦ୍ଧାନ୍ନ କେବଳ ।"
ଉତ୍ତରେ କହିଲେ ତାଙ୍କୁ ତହୁଁ ଗଙ୍ଗାମାୟୀ
"ଚିନ୍ତା କିଛି କର ନାହିଁ ତୁମ୍ଭେ ସେଥିପାଇଁ ।
ଯେ ଖାଦ୍ୟ ଖାଇବା ନିତ୍ୟ ଅଭ୍ୟାସ ତୁମ୍ଭର
ଯୋଗାଡ଼ କରିବ ତାହା ଯତ୍ନ ସହିତର ।"
ମାରୁଲେ ବୋଇଲେ ତହୁଁ ଭଣଜା ହୃଦୟ
"ଉଦର ପୀଡ଼ାରେ ତବ କଷ୍ଟ ଅପ୍ରମେୟ ।
ଅତ୍ୟଧିକ ପୀଡ଼ା ହେଲେ କେ କରିବ ସେବା
ତୁଟି ଫୁଟି ପ୍ରତ୍ୟୁତ୍ତର ଦିଅ ନ୍ୟାଯ୍ୟ ଯେ ବା ।"

ବୃନ୍ଦା ଭାଷେ "ମଳମୂତ୍ର ପୋଛିବି ମୁଁ ହସ୍ତେ
ପ୍ରାଣ ଦେବାକୁ ପ୍ରସ୍ତୁତ ଦୁଲାଲୀ ନିମନ୍ତେ ।"
ଭଗବାନ ଭକ୍ତ ମଧ୍ୟେ ନାହିଁ ଭିନ୍ନାଭିନ୍ନ
ବୃନ୍ଦାଙ୍କ ଆଶ୍ରମେ ବାସ ପ୍ରଭୁଙ୍କର ମନ ।
ଘଟଣା ଶ୍ରବଣ ମାତ୍ରେ ମଥୁର ହୃଦୟେ
ଫେରିବା ବିଷୟେ ଶଙ୍କା ହେଲା ଅତିଶୟେ ।
ଯେପରି ଦେଖୁଛି ମୁହିଁ ଘଟଣା ଏଠାରେ
ବୃନ୍ଦାବନ ଧନ ମୋର ହଜିଯିବା ପରେ ।
ହୃଦୁଙ୍କୁ ଡାକିଣ ତହୁଁ କହିଲେ ଗୁପତେ
"ଏ ପ୍ରସ୍ତାବ ଭାଙ୍ଗି ଦିଅ ଯେ କୌଣସିମତେ ।
ଫେରିଯିବା ପାଇଁ ତାଙ୍କୁ କରାଅ ସମ୍ମତ
ଏଠାରେ ରହିବା ଆଉ ନୁହଇ ବିହିତ ।"
ବୃନ୍ଦା ସହ ଏଣେ ଦେବ କରନ୍ତି ବିଚାର
ଆଶ୍ରମରେ ଶୁଆବସା ହେବ କି ପ୍ରକାର ।
ଏମନ୍ତ ଶୁଣିଣ ହୃଦୁ ଶଙ୍କାଯୁକ୍ତ ଚିତ୍ତେ
ପ୍ରସ୍ତାବ ରାଖିଲେ ଦିନେ ମାମୁଁଙ୍କ ଅଗ୍ରତେ ।
ହେ ମାମୁଁ ! ଏଠାରେ ରହିଲୁଣି ବେଶୀ ଦିନ
ଚାଲ ଏବେ ଫେରିଯିବା ନିଜ ନିକେତନ ।
ଭକ୍ତିମତୀ ଗଙ୍ଗାମାତା ଶୁଣି ଏ ପ୍ରସ୍ତାବ
ଖେଦେ ବଖାଣିଲେ ହୃଦୁ ପାଶେ ମନୋଭାବ ।
"ଦୁଲାଲୀକୁ ପାଇଅଛି ବହୁ ପୁଣ୍ୟ ଫଳେ
କେସନେ ବଞ୍ଚିବି ପ୍ରାଣେ ତାଙ୍କୁ ଛାଡ଼ିଦେଲେ ।"
ବିଷମ ସମସ୍ୟା ଏବେ ହେଲା ଉପସ୍ଥିତ
ମଙ୍ଗଳ କାହାଣୀ ରାମକୃଷ୍ଣ ଲୀଳାମୃତ ।
ଫେରିଯିବା ପାଇଁ ହେଲା ନାନାଦି କୌଶଳ
ସର୍ବ ପ୍ରକାର ପ୍ରୟାସ ହୋଇଲା ବିଫଳ ।
ପ୍ରଭୁଙ୍କ ପ୍ରଗାଢ଼ ଭକ୍ତି ଜନନୀ ପସ୍ପର
ଏହା ଭାବି ଫନ୍ଦି ଏକ କଲେ ଶ୍ରୀମଥୁର ।
ହୃଦୁଙ୍କୁ ବୋଇଲେ ଡାକି "କହି ମାରୁଲଙ୍କୁ
ବୃଥା କିଆଁ କଷ୍ଟ ଦେବ ବୃନ୍ଦା ଜନନୀଙ୍କୁ ।
ଏକାକିନୀ 'ଛନ୍ତି ସେହୁ ଦକ୍ଷିଣେଶ୍ୱରରେ
ଅତି ଚିନ୍ତାନ୍ୱିତା ଥିବେ ତାଙ୍କ ବିହୁନରେ ।
ପ୍ରଭୁ ଫେରିଯିବେ ନାହିଁ ଆଉ କଲିକତା
ଏ କଥା ଶୁଣିଲେ ଚିତ୍ତେ ହେବ ଅତି ବ୍ୟଥା ।
ଘରଦ୍ୱାର ଛାଡ଼ି ତାଙ୍କ ପାଶେ ସେ ଆସିଲେ
ଯାପିବେ ଅନ୍ତିମ କାଳ ତହିଁ ଭଲେ ଭଲେ ।

ଆମ୍ଭେ ଫେରିଗଲେ ସେହୁ ତାଙ୍କ ଅଦର୍ଶନେ
ଆଉ କି ବଞ୍ଚିବେ ପ୍ରାଣେ ଭାବ ଦେଖ ମନେ ।"
ହୃଦୟ ଯେମନ୍ତ ଏହା କଲେ ନିବେଦନ
ଜନନୀଙ୍କ ପାଇଁ ତାଙ୍କ ମନ ଛନ ଛନ ।
ବୋଇଲେ ଅତୀବ ବ୍ୟଗ୍ରେ "ଚାଲ ତେବେ ଯିବା
ଏ ସ୍ଥାନେ ନୋହିଲା ଆଉ ମୋହର ରହିବା !"
ଉଠିଲେ ଏମନ୍ତ ଭାଷି ଜଗତ ଗୋସାଇଁ
ଯିବା ବୋଲି କହିଲାରୁ ଆଉ କେ ରଖଇ ।
ଗଙ୍ଗାମାତା ଦେଖି ତାଙ୍କୁ ଗମନ ଉଦ୍ୟତ
ଆରେ ମୋ ଦୁଲାଲୀ କହି କାନ୍ଦିଲେ ବହୁତ ।
"ଆରେ ମୋ ଦୁଲାଲୀ ! ଘର କରି ଅନ୍ଧକାର
ଚାଲିଗଲେ ବଞ୍ଚିବି ମୁଁ ପ୍ରାଣେ କି ପ୍ରକାର ।
ହୃଦୟସର୍ବସ୍ୱ ତୁହି ନୟନର ତାରା
ଦର୍ଶନ ଦେଇଣ କିପାଁ କଲୁ ବସ୍ତ୍ରହରା ।
କାନ୍ଦି କାନ୍ଦି ଗଙ୍ଗାମାତା ଧରିଲେ ଶ୍ରୀକର
ପାଦକ୍ଷେପେ ଶକ୍ତିହୀନ ଜଗତ ଠାକୁର ।
ଯିବାବେଳ ଗତ ପ୍ରାୟ ଏହା ଅନୁମାନି
ଅନ୍ୟ ହସ୍ତ ଧରି ହୃଦୁ ରଖିଲେ ଯେ ଟାଣି ।
ସନ୍ଧିଷ୍ଟିଲେ ପଡ଼ି ପ୍ରଭୁ ଭକତବତ୍ସଳ
ବାଳକ ପରାୟେ ତହିଁ କାନ୍ଦିଲେ କେବଳ ।
ତାଙ୍କର କ୍ରନ୍ଦନ ଦେଖି ବୃଦ୍ଧା ଗଙ୍ଗାମାତା
ଅତ୍ୟନ୍ତ କାତର ହେଲେ ଚିତ୍ତେ ପାଇ ବ୍ୟଥା ।
ଉପାୟ ନ ଦେଖି ଶେଷେ ହସ୍ତ ଛାଡ଼ିଦେଲେ
ମାତୁଳଙ୍କୁ ଭେଟି ନେଇ ହୃଦୁ ଚାଲିଗଲେ ।
ଏକ ପକ୍ଷ କାଳ ରହି ବୃନ୍ଦାବନ ତୀର୍ଥେ ।
ବାହୁଡ଼ିଲେ ସର୍ବେ ପୁନଃ ବାରାଣସୀ କ୍ଷେତ୍ରେ ।
ପ୍ରଭୁଙ୍କ ଆଦେଶମତେ ମଥୁର ମୋହନ
ଦାନସାଗର ଏଠାରେ କଲେ ଆୟୋଜନ ।
ଦୀନ ଦୁଃଖୀ ସାଧୁ ସନ୍ଥ ଆସିଲେ ଯେତେକ
ସମସ୍ତେ ଘେନିଲେ ତାଙ୍କ ଯାହା ଆବଶ୍ୟକ ।
ଡାଲି କମଣ୍ଡଳୁ ବସ୍ତ୍ର କମ୍ବଳାଦି କରି
କେତେ ଯେ ଏମନ୍ତେ ନେଲେ ନାହିଁ ତା ପ୍ରମାଣ ।
ଏସନେ ବହୁତ ଅର୍ଥ ଅକାତରେ ବ୍ୟୟ
ଖର୍ଚ୍ଚ ପ୍ରତି ଲକ୍ଷ୍ୟ ନାହିଁ ନିର୍ଭୀକ ହୃଦୟ ।
ଅତଃପର ଦେବରାୟ ବ୍ରହ୍ମାଣ୍ଡର ଈଶ
ବୀଣା ବାଦ୍ୟ ଶୁଣିବାକୁ କଲେ ଅଭିଲାଷ ।

ମହେଶ ସର୍କାର ନାମେ ଅଧିବାସୀ ଜଣେ
ବୀଣାବାଦ୍ୟ-ବିଶାରଦ ଥିଲେ ସେହି ସ୍ଥାନେ ।
ଦେବରାୟ ଭଣଜାଙ୍କୁ ସଙ୍ଗତେ ଘେନିଣ
ତାଙ୍କର ଆବାସେ ଉପସ୍ଥିତ ଏକଦିନ ।
ହୃଦୁ ବୋଇଲେ ତାହାଙ୍କୁ "ମାତୁଳ ମୋହର
ବୀଣାବାଦ୍ୟ ଶୁଣିବାକୁ ଆଗତ ଏଠାର ।"
ଭକତ ମହେଶ ତହୁଁ ପରମ ଆହ୍ଲାଦେ
ଭକ୍ତିସହ ଅଭ୍ୟର୍ଥନା କଲେ ପଦ୍ମପାଦେ ।
ଆଦରେ ବସାଇ ତାଙ୍କୁ ଉପଯୁକ୍ତ ସ୍ଥାନେ
ବାଦ୍ୟ ଆରମ୍ଭିଲେ ତାନମାନେ ଏକ ମନେ ।
ଶ୍ରବଣ ମାତ୍ରେ ବୀଣାର ସୁଲଳିତ ଧ୍ୱନି
କ୍ଷଣମଧ୍ୟେ ଭାବାବିଷ୍ଟ ପ୍ରଭୁ ଗୁଣମଣି ।
ଅର୍ଦ୍ଧ ବାହ୍ୟାବସ୍ଥା କ୍ରମେ ହେଲେ ପ୍ରତ୍ୟାଗତ
ଦେବୀ ଉଦ୍ଦେଶ୍ୟେ କହିଲେ ଶ୍ରୀଦେବ ଅଚ୍ୟୁତ ।
ସଚେତ କର ଗୋ ମାତଃ ! ଅରେ ଦୟାବତି
ପ୍ରାଣପୂରି ବୀଣା ବାଦ୍ୟ ଶୁଣିବଇଁ ମୁହିଁ ।
ସୁତର ପ୍ରାର୍ଥନା ଶୁଣି ଦେବୀ ଜଗନ୍ମାତା
କାଳ ବିଳମ୍ବ ନ କରି ଫେରାଇଲେ ଚେତା ।
ପ୍ରାପତ ହୋଇଣ ଏବେ ପୂର୍ଣ୍ଣ ବାହ୍ୟଜ୍ଞାନ
ଆନନ୍ଦ ସହିତେ ବାଦ୍ୟ କଲେକ ଶ୍ରବଣ ।
ଭାବେ ଗଦ ଗଦ ହୋଇ ପ୍ରଭୁ ନରହରି
ଆରମ୍ଭିଲେ ବୀଣା ସହ ସଙ୍ଗୀତ ତାଙ୍କରି ।
ଆନନ୍ଦ ଲହରୀ ତହିଁ ଉଠିଲା ଏମନ୍ତ ।
ନ ଜାଣିଲେ ବେଳକାଳ ଗମିଲା କେମନ୍ତ ।
ବାଦ୍ୟ ଶେଷେ ଜଳଯୋଗ କରି ଦେବରାୟ
ହୃଦୟଙ୍କୁ ସଙ୍ଗେ ଧରି ଫେରିଲେ ଆଳୟ ।
କିୟତ୍କାଳ କାଶୀ ତୀର୍ଥେ ଅବସ୍ଥିତି ପରେ
ଗୟା ଯିବାକୁ ମଥୁର ଚାହିଁଲେ ମନରେ ।
ପ୍ରଭୁ ପାଶେ ଏ ପ୍ରସ୍ତାବ କଲାରୁ ଆଗତ
ତହିଁରେ ଶ୍ରୀ ଦେବରାୟ ନୋହିଲେ ସମ୍ମତ ।
"ଗୟାଧାମୁଁ ଏ ଶରୀରେ ମୋର ଆଗମନ
ତହିଁ ଗଲେ ଏ ଦେହର ହୋଇବ ପତନ ।
ଯେ ଉଦ୍ଦେଶ୍ୟେ ଆସିଅଛୁ ଧରାଧାମେ ମୁହିଁ
ଅଦ୍ୟାବଧି ସେ କାର୍ଯ୍ୟଟି ପୂର୍ଣ୍ଣ ହୋଇ ନାହିଁ ।
ଗୟାଧାମେ ଯିବାପାଇଁ ତେଣୁ ଅନିଚ୍ଛୁକ
ଏକାନ୍ତେ ଭାଷିଲେ ଏହା ପ୍ରଭୁ ପଦ୍ମମୁଖ ।

ଜାଣିବାକୁ ଯୁକ୍ତି ଯଦି ଏଥିର କାରଣ
ପୁନଃ ପୁନଃ ପଢ଼ ମନ ! ଜନ୍ମ ବିବରଣ ।
ଯେ ସ୍ଥାନୁଁ ହୁଅଇ ଯେଉଁ ବସ୍ତୁର ଉତ୍ପତ୍ତି
ତା ସମୀପେ ଗଲେ ତାର ନ ରହଇ ସ୍ଥିତି ।
ସୂର୍ଯ୍ୟରୁ ଯେମନ୍ତ ଏହି ଧରାର ବିକାଶ
ତା ପାଶେ ଗମିଲେ ପୁନଃ ହେବ ତାର ନାଶ ।
ଈଶ୍ୱରଙ୍କଠାରୁ ଏହି ମାନବ ସମ୍ଭୂତ
ତାଙ୍କ ପାଶେ ଗଲେ ପୁନଃ ନିର୍ବାଣ ନିଶ୍ଚିତ ।
ଗୟାଧାମେ ବିଷ୍ଣୁଙ୍କର ବିଶେଷ ପ୍ରକାଶ
କୃଷ୍ଣ ଚୈତନ୍ୟାଦି ଯହିଁ ପ୍ରାପ୍ତ ଦିବ୍ୟାଦେଶ ।
ସେହି ଗୟାଧାମେ ଆସି ପିତା ପ୍ରଭୁଙ୍କର
ସ୍ୱପ୍ନରେ ଦର୍ଶନ କଲେ ଦେବ ଗଦାଧର ।
ଆଉର କହିଲେ ଦେବ ସୁପ୍ରସନ୍ନ ହୋଇ
ପୁତ୍ରରୂପେ ଜନମିବି ତୁମ୍ଭ ଘରେ ଯାଇ ।
ଗୟାଧାମେ ଗଲେ ତେଣୁ ପ୍ରଭୁ ଶ୍ରୀଠାକୁରେ
ସର୍ବତୋଭାବରେ ଲୀନ ହେବେ ବିଷ୍ଣୁଠାରେ ।
ମୂଢ଼ମନ ବୁଝ ଏବେ କଥାର ତାତ୍ପର୍ଯ୍ୟ
ପାର୍ଥିବ ପ୍ରସଙ୍ଗ ଛାଡ଼ି ଭ୍ରମନ୍ତିନ ରାଜ୍ୟ ।
ପୁରୀଧାମେ ଜଗନ୍ନାଥ ଜୀଉଙ୍କ ଦର୍ଶନ
କୌଣସି ସମୟେ କଥା ହେଲେ ଉତ୍ଥାପନ ।
ଉତ୍ତରେ କହିଲେ ପ୍ରଭୁ କରୁଣାସାଗର
"ଶ୍ରୀକ୍ଷେତ୍ର ଦର୍ଶନେ ଯିବା ନୋହିବ ମୋହର ।
ନୀଳାଚଳ ଅବସ୍ଥାନ କରି ଶ୍ରୀଚୈତନ୍ୟ
ମହା ସମାଧିରେ କଲେ ଶରୀର ରକ୍ଷଣ ।
ତହିଁ ଗଲେ ସେହି ଭାବେ ହୋଇ ପ୍ରଣୋଦିତ
ମହାସମାଧିରେ ମୁହିଁ ହେବି ନିମଜ୍ଜିତ ।"
ଶ୍ରୀକ୍ଷେତ୍ର ଦର୍ଶନ ତାଙ୍କ ନୋହିଲା ଏମନ୍ତେ
ଦିବ୍ୟ ରାଜ୍ୟ କଥା କିଏ ବୁଝିବ କେମନ୍ତେ ।
ମାୟାମୋହେ ପ୍ରାଣୀ ମନ ନିରତ ଆଚ୍ଛନ୍ନ
ଦିବ୍ୟ ଲୀଳାଖେଳା କାହୁଁ ଜାଣିବ ସେ ପୁଣ ।
ଶ୍ରୀରାମକୃଷ୍ଣ ଚରିତ ଅମୃତ ଭଣ୍ଡାର
ଗାଇଲେ ଶୁଣିଲେ ନେତ୍ର-ଆବରଣ ଦୂର ।
ଭଜମନ ଶ୍ରୀଚରଣ ଦିବା ବିଭାବରୀ
ଏ ଭବ ଜଳଧି ଯଦି ହୋଇବୁ ରୁ ପାରି ।
ପ୍ରାଣ-ପ୍ରତିମା ଦେବଙ୍କୁ ସଙ୍ଗତେ ଘେନିଣ
କାଶୀଧାମୁଁ ଯାତ୍ରା କଲେ ମଥୁର ମୋହନ ।

ବାରଣସୀ ପଞ୍ଚପ୍ରଭ ଜ୍ୟୋଷ୍ଠ ମଧ୍ୟଭାଗେ
ନିଜ ସ୍ଥାନେ ବାହୁଡ଼ିଲେ ପ୍ରଭୁ ମହାଷ୍ଟରେ ।
ରାଧାକୁଣ୍ଡୁଁ, ଶ୍ୟାମକୁଣ୍ଡୁଁ, ସୁପବିତ୍ର ରଜ
ଯତ୍ନେ ଆଣିଥିଲେ ଯାହା ପଲ୍ଲ ଦେବରାଜ ।
ସେଥିରୁ କଣିକ ବସ୍ତୁ ପଞ୍ଚବଟୀ ମୂଳେ
ସାଧନ କୁଟୀରେ ଅବଶିଷ୍ଟ ପୋତିଦେଲେ ।
ତଦନ୍ତେ ଘୋଷଣା କଲେ ପଲ୍ଲ ଦେବରାୟ
"ଶୁଣ ଏ ମନ୍ଦିରେ ଯେତେ ଅଛ ପ୍ରାଣିଚୟ
ଆଜିଠାରୁ ମୋହର ଏ ସାଧନର ସ୍ଥାନ
ଦେବଭୂମି ପରିଣତ ଯଥା ବୃନ୍ଦାବନ ।"
ପଦାର୍ପଣ କରି ଦେବ ଦକ୍ଷିଣେଶ୍ୱରରେ
ଆଦେଶିଲେ ପାଶେ ଡାକି ଭକତ ମଥୁରେ ।
"ନିମନ୍ତ୍ରଣ କରି ଦିନେ ଦୀନଦୁଃଖୀ ଜନେ
ଅନ୍ନବସ୍ତ୍ର ଦାନ କର ଅକାତର ମନେ ।
ତୀର୍ଥ ପର୍ଯ୍ୟଟନ ଫଳ ଶାସ୍ତ୍ର ଅନୁସାରେ
ପ୍ରାପତ ହୋଇବ ତେବେ ସମ୍ୟକ ରୂପରେ ।"
ଯେସନ ପ୍ରାଣର ପ୍ରଭୁ, ଖାଜଞ୍ଚି ତେସନ .
ଆଜ୍ଞା ମାତ୍ରେ ସଙ୍ଗେ ସଙ୍ଗେ ସବୁ ଆୟୋଜନ୍ ।
ବ୍ରାହ୍ମଣ ବୈଷ୍ଣବ ସାଧୁ ଯତି ଯୋଗୀ ବହୁ
ନିମନ୍ତ୍ରି ଆଣିଲେ ଶ୍ରୀମଥୁର କାହୁଁ କାହୁଁ ।
ପଞ୍ଚବଟୀ ମୂଳେ ହେଲା ବିରାଟ ଉତ୍ସବ
ମହାନନ୍ଦେ ଭାସମାନ ଦେଖି ପ୍ରଭୁଦେବ ।
ଚର୍ବ୍ୟଚୋଷ୍ୟ ଲେହ୍ୟ ପେୟ ଖାଇଲେ ଯେ ଯେତେ
କଳନା କରିବ କିଏ ବୋହିନେଲେ କେତେ ।
ବ୍ରାହ୍ମଣ ଗୋସ୍ୱାମୀମାନେ ତା ମଧ୍ୟ ଯେତେକ
ଷୋହଳ ମୁଦ୍ରା ପାଇଲେ ଦକ୍ଷିଣା ପ୍ରତ୍ୟେକ ।
ଅନ୍ୟାନ୍ୟ ବୈଷ୍ଣବ ଭକ୍ତ ଯେତେ ଆସିଥିଲେ
ଗୋଟିଏ ଗୋଟିଏ ମୁଦ୍ରା ବିଦାକି ପାଇଲେ ।
ବହୁତ ଅର୍ଥର ବ୍ୟୟ ହୋଇଲା ଏମନ୍ତେ
ତୀର୍ଥ ପର୍ଯ୍ୟଟନ କାର୍ଯ୍ୟ କର୍ମାନ୍ତି ସମାପ୍ତେ ।
ଶ୍ରୀରାମକୃଷ୍ଣ ଭାରତୀ କଲ୍ୟାଣ ନିଦାନ
ଧ୍ୟାନରତ କର ମନ ! ଶ୍ରବଣ କୀର୍ତ୍ତନ ।
ଅବହେଳେ ତରିଯିବୁ ଏ ଭବ ବାରିଧି
ନ ଥିବ ମରଣ ଶଙ୍କା ବିପଦରେ ଛନ୍ଦି ।
ଅନିତ୍ୟ କରୁଛୁ ଆଶ ତେବେ କିମ୍ପା ମନ !
ବରଜିଣ ସେ ପରମ ପଦ ନିତ୍ୟ ଧନ ।

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ପାଣିହାଟୀ ମହୋତ୍ସବ ଦର୍ଶନ, ଚୈତନ୍ୟାସନ ଗ୍ରହଣ ଓ ଭଗବାନ ଦାସ ବାବାଜୀଙ୍କ ସହିତ ସାକ୍ଷାତ ।

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତ ପାବନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ପାଣିହାଟୀ ନାମେ ଖ୍ୟାତ ଗ୍ରାମ ଗଙ୍ଗାତୀରେ
ମହୋତ୍ସବ ହୁଏ ଯହିଁ ପ୍ରତି ବରଷରେ ।
କି ଅବା ଉଦ୍ଦେଶ୍ୟ ତାର, ହେଉଛି କିମ୍ପାଇ
ଭକ୍ତ ସହ ତାର ତଥ୍ୟ ଶୁଣ ମନଦେଇ ।
ନାମର ମାହାତ୍ମ୍ୟ ଭବେ ପ୍ରଚାର କାରଣ
ନଦୀୟାରେ ଅବତୀର୍ଣ୍ଣ ପ୍ରଭୁ ଶ୍ରୀଚୈତନ୍ୟ ।
ତାଙ୍କର ମହିମା ଗୁଣ ପ୍ରଚାର ଉଦ୍ଦେଶ୍ୟେ
ନିତ୍ୟାନନ୍ଦ ପ୍ରଭୁ ଯେବେ ଭ୍ରମି ଦେଶେ ଦେଶେ,
ଆଚଣ୍ଡାଳେ ବିତରଣ ସୁଧା ହରି ନାମ
ଉପସ୍ଥିତ ହେଲେ ଆସି ପାଣିହାଟୀ ଗ୍ରାମ ।
ଅବଧୂତ ବସି ଏକ ବଟତରୁ ମୂଳେ
ସମସ୍ତ ରଜନୀ ତହିଁ ଆନନ୍ଦେ ଯାପିଲେ ।
ରଘୁନାଥ ଦାସ ଆଦି ଯେତେ ଭକ୍ତଗଣ
ଆଗମନ ବାର୍ତ୍ତା ପାଇ କଲେ ଅନ୍ୱେଷଣ ।
ଚତୁର୍ଦ୍ଦିଗ ଖୋଜି ଖୋଜି ସନ୍ଧାନ ନ ପାଇ
ସର୍ବେ ଉତ୍କଣ୍ଠିତ କାହିଁ ଗଲେ ସେ ନିତାଇ ।
ପରଦିନ ବଟମୂଳେ ପାଇଣ ଦର୍ଶନ
ଆନନ୍ଦସାଗରେ ସର୍ବେ ହେଲେ ଭାସମାନ ।
ରଘୁନାଥେ ସମ୍ବୋଧିଣ କହିଲେ ନିତାଇ
"ଗୃହସ୍ଥାଶ୍ରମରେ ସୁଖେ ରହିଅଛୁ ତୁହି ।
ଘରୁ ପଳାଇଣ ଆସି ଗୁପତ ଭାବରେ
ପ୍ରେମ ଆସ୍ୱାଦନ କରୁ ଗୋରାଙ୍କ ପସ୍ୱରେ ।
ଆଜଠାରୁ କରିବ ମୁଁ ତୋତେ ଦଣ୍ଡଧାରୀ
ଭକ୍ତ ସେବା କର ଚୂଡ଼ା-ମହୋତ୍ସବ କରି ।
ଏମନ୍ତେ ଆଦିଷ୍ଟ ହୋଇ ଭକ୍ତ ରଘୁନାଥ
ଚୂଡ଼ା ଆଣି ମହୋତ୍ସବ କରିଲେ ତୁରିତ ।
ଆରମ୍ଭିଲେ ତହିଁ ଏକ ବିରାଟ କୀର୍ତ୍ତନ
ଅଗଣନ ଲୋକ ଆସି କଲେ ଯୋଗଦାନ ।
ଏ ଦିନଟି ସ୍ମରଣାର୍ଥେ ପ୍ରତି ବରଷରେ
ଉତ୍ସବ କରନ୍ତି ଗୌର ଭକ୍ତେ ଏ ସ୍ଥାନରେ ।
ଅଦ୍ୟାବଧି ହେଉଛି ଯେ ଏହା ଅନୁଷ୍ଠିତ
ବହୁ ଲୋକ ମଧ୍ୟ ତହିଁ ହୁଅନ୍ତି ସମବେତ ।
ଅସଂଖ୍ୟ କୀର୍ତ୍ତନ ଦଳ ଚାରିଆଡ଼ୁ ଆସି
ହରିନାମ କୀର୍ତ୍ତନରେ ମତ୍ତ ଦିବାନିଶି ।
ଦେବରାୟ ସେ ଉତ୍ସବ ଦର୍ଶନ ସକାଶେ
ଇଚ୍ଛା ପ୍ରକାଶିଲେ ଥରେ ମଥୁରଙ୍କ ପାଶେ ।
ବହୁ ଗୁଣ୍ଡା ଗୌରଭକ୍ତ ଆସନ୍ତି ଯେ ତହିଁ
ନାମେ ମାତ୍ର ଭକ୍ତ କିନ୍ତୁ ଚିତ୍ତେ ଭକ୍ତି ନାହିଁ ।
ଦ୍ୱେଷ ହିଂସା ପୂର୍ଣ୍ଣ ଚିତ୍ତ ଗାହେ ନାମାବଳି
ବିଚିତ୍ର ଚର୍ଚ୍ଚିତ ଅଙ୍ଗ ହସ୍ତେ ମାଳ ଝୁଲି ।
ଠାଣିରେ ବାନ୍ଧନ୍ତି ଶିଖା ତହିଁ ଶୋଭେ ପୁଷ୍ପ
ମୋଟା ସରୁ କଣ୍ଠି ବେକେ ଦୋଳଇ ଅମାପ ।
କାମିନୀକାଞ୍ଚନ ରସେ ଚିତ୍ତ ନିମଗନ
ଉପରକୁ ଥାଏ ମାତ୍ର ଭକ୍ତିର ନିଶାଣ ।
ଭାବ, ମହାଭାବ, ପ୍ରେମ, ପୁଲକ, କମ୍ପନ,
ଭକ୍ତିବଳେ ଯେ ସକଳ ହୁଅଇ ଅର୍ଜ୍ଜନ ।
ତହିଁରେ ନ ଥିବା ଯୋଗୁଁ ଧାରଣା କଳ୍ପିତ
ଦେବଙ୍କୁ ଦେଖି ସେ ହେବେ ହିଂସା-ଜର୍ଜ୍ଜରିତ ।
କ୍ରୋଧ ପରବଶେ ତାଙ୍କୁ ଯଦି ଆକ୍ରମିଣ
କୌଣସି ପ୍ରକାରେ ଦେବେ ଶ୍ରୀଅଙ୍ଗେ କଷଣ ।
ଏସନ ଆଶଙ୍କା କରି ଭକତ ମଥୁର
ଉତ୍ତରେ କହିଲେ ଧୀରେ ପ୍ରଭୁଙ୍କ ଗୋଚର ।
ଯିବାର ଯୋଗାଡ଼ ସବୁ କରିଦେବି ମୁହିଁ
ସଙ୍ଗେ ଯିବେ ଦରୁଆନ ଦେହ-ରକ୍ଷା ପାଇଁ ।
ସହାସ୍ୟ ବଦନେ ପ୍ରଭୁ କହିଲେ ମଥୁରେ
ଦରୁଆନ ଯିବେ କିଁପା ମୋର ସଙ୍ଗତରେ ।
ଦରୁଆନ ସଙ୍ଗେ ଘେନି ତୀର୍ଥ ଦରଶନ
ଏହା ଅଟେ ରାଜସିକ ଭକ୍ତର ଲକ୍ଷଣ ।
ବିଘ୍ନ ଶଙ୍କା ଯାହା ତୁମ୍ଭେ କରୁଛ ମାନସେ
ସେଥିପାଇଁ ଜଗନ୍ମାତା ଛନ୍ତି ମୋର ପାଶେ ।

ତଥି ଯୋଗେ ଜଳପଥେ ଜାହ୍ନବୀ ବକ୍ଷରେ
ଉତ୍ସବକୁ ଚଳେକଲେ ବ୍ରହ୍ମାଣ୍ଡ ଠାକୁରେ ।
ଅସଂଖ୍ୟ କୀର୍ତ୍ତନ ଦଳ ଯୂଥ ଯୂଥ ହୋଇ
ନାବେ ବସି ସୁଖେ ଯାନ୍ତି ଗୀତ ଗାଇ ଗାଇ ।
ଝାଞ୍ଜ ମୃଦଙ୍ଗ ସହ ସଙ୍ଗୀତ ଧ୍ୱନିରେ
ଦିବ୍ୟ ଶୋଭା ପ୍ରସାରିତ ଜାହ୍ନବୀ ବକ୍ଷରେ ।
ସେ ଦୃଶ୍ୟ ଦର୍ଶନ ମାତ୍ରେ ପ୍ରଭୁ ବିଶ୍ୱସାଇଁ
ବାହ୍ୟଜ୍ଞାନ ଲୋପ ପ୍ରାପ୍ତ ଭାବାବିଷ୍ଟ ହୋଇ ।
ବେନି ନେତ୍ରୁ ବହମାନ ଆନନ୍ଦାଶ୍ରୁଧାର
ସହାସ୍ୟ ବଦନ ଯେମେ ପ୍ରଫୁଲ୍ଲ ଅନ୍ତର ।
ଶ୍ରୀ ପ୍ରଭୁଙ୍କୁ ବକ୍ଷେ ଧରି ତରୀ ବେଗେ ଚଳେ
ଲାଗିଲା ନିର୍ଦ୍ଦିଷ୍ଟ ଘାଟେ ଅତି ଅଳ୍ପ କାଳେ ।
ଅର୍ଦ୍ଧ ବାହ୍ୟ ଅବସ୍ଥାରେ ପ୍ରଭୁ ନଉହରି
କୂଳେ ବିଜେ କଲେ ଏକ ଲମ୍ଫଦାନ କରି ।
ଅସଂଖ୍ୟ କୀର୍ତ୍ତନ ଦଳ ହୋଇ ଏକତ୍ରିତ
ଉତ୍ସବ ସ୍ଥାନରେ ସଙ୍କୀର୍ତ୍ତନେ ଉନ୍ମତ୍ତ ।
ତୀର ବେଗେ ଧାଇଁଯାଇ ଜଗତ ଠାକୁର
ପଶିଲେ ଜନତା ଠେଲି ଉତ୍ସବ ମଧ୍ୟର ।
ତାଙ୍କ ସଙ୍ଗେ ଗାନ କରି ସୁଧା ହରିନାମ
ଉଲ୍ଲାସେ କଲେକ ନୃତ୍ୟ ପ୍ରଭୁ ଗୁଣଧାମ ।
ନୃତ୍ୟର ମାଧୁରୀ ଭବେ ନାହିଁ ପଟାନ୍ତର
ଯେ ଦେଖଇ ପ୍ରାଣମନ ଆକୃଷ୍ଟ ତାହାର ।
ଶ୍ରୀମୁଖ-ନିଃସୃତ-ନାମେ ନିହିତ ଯେ ଶକ୍ତି
ତା ଫଳେ ସଭିଙ୍କ ଚିତ୍ତେ ଉପୁଜିଲା ଭକ୍ତି ।
ତହିଁ ପୁଣି ବୀଣାବିନିନ୍ଦିତ କଣ୍ଠସ୍ୱର
ପାଷାଣ ହେଲେହେଁ ଗଳିଗଲା ଯେ ଅନ୍ତର ।
ଶ୍ରୀଦେବଙ୍କୁ ମଧ୍ୟେ ରଖି କୀର୍ତ୍ତନୀୟା ଯେତେ
ମହୋଲ୍ଲାସେ ନୃତ୍ୟ କଲେ ତାହାଙ୍କ ସହିତେ ।
କ୍ଷଣକେ ଉଇଁଣ ଚିତ୍ତେ ଭକତ ଅପାର
ଭୂତଳେ ଲୋଟିଲେ ସର୍ବେ ଧରି ଶ୍ରୀପୟର ।
ଦରଶକେ ଚତୁର୍ଦ୍ଦିଗେ ଜନତା ଠେଲିଣ
ଯତନେ କଲେ ଶ୍ରୀଅଙ୍ଗେ ପବନ ବ୍ୟଜନ ।
ଏଣେ ଭକ୍ତ ଶ୍ରୀମଥୁର ଚିନ୍ତାରେ ଆକୁଳ
ଯତନବିହୀନେ ଯଦି ଘଟେ ଅମଙ୍ଗଳ ।
କାର୍ଯ୍ୟ କର୍ମେ ନ ଲାଗିଲା ତାହାଙ୍କର ମନ
ଦୁଇ ଏକ ଭୃତ୍ୟ ଘେନି ଉଠିଲେ ବହନ ।
ସତ୍ୱର ଉତ୍ସବକ୍ଷେତ୍ରେ ହୋଇ ଉପସ୍ଥିତ
ଦେବଙ୍କୁ ଦେଖିଲେ ତହିଁ ନୃତ୍ୟେ ଉନ୍ମତ୍ତ ।
ଦରଶକେ ବିମୋହିତ ଶ୍ରୀମୂର୍ତ୍ତି ଦର୍ଶନେ
ନାନାଭାବେ ଲାଗିଛନ୍ତି ଶ୍ରୀଅଙ୍ଗ ସେବନେ ।
ଦୃଶ୍ୟ ଦେଖି ମଥୁରଙ୍କ ଅତି ପ୍ରୀତ ଚିତ୍ତେ
ବିଘ୍ନାଶଙ୍କା ନ ଦେଖିଣ ଫେରିଲେ ତ୍ୱରିତେ ।
ଧନ୍ୟ ଭକ୍ତ ଶ୍ରୀମଥୁର ଧନ୍ୟ ସେ ଭକତି
ନୋହିଲେ କି ବନ୍ଧା ଆନ୍ତେ ଗୃହେ ଜଗପତି ।
ନୃତ୍ୟେ ଉନ୍ମତ୍ତ ପ୍ରଭୁ ଗାଇ ହରି ଗୁଣ
ତାଙ୍କୁ ଘେରି ନାଚୁଛନ୍ତି ଲୋକ ଅଗଣନ ।
ସମୁଦ୍ର କଲ୍ଲୋଳ ପ୍ରାୟେ ଉଠି ହରି ଧ୍ୱନି
ଭବେ କି ପ୍ରକଟ ପୁନଃ ଗୌର ଗୁଣମଣି ।
ଏହା ଭାବ ଚାରିଆଡୁ ହେଲା ପୁଷ୍ପ ବୃଷ୍ଟି
ତା ସଙ୍ଗେ ଫିଙ୍ଗିଲେ ଫେଣୀ ଆଦି ହରିଲୁଟି ।
ମଧ୍ୟେ ମଧ୍ୟେ ସମାଧିସ୍ଥ ଜଗତ ଗୋସାଇଁ
ପତନାଶଙ୍କାରେ ଭକ୍ତେ ଧରୁଛନ୍ତି ଧାଇଁ ।
ଯେତେବେଳେ ବାହ୍ୟାବସ୍ଥା ସମାଗତ ପୁନଃ
ଶ୍ରୀଦେବ କରନ୍ତି ପ୍ରେମେ ମଧୁର କୀର୍ତ୍ତନ ।

## କୀର୍ତ୍ତନ

"ନଦେ ଟଲମଲ ଟଲମଲ କରେ
ଗୌର ପ୍ରେମେ ହିଲ୍ଲୋଳେ ରେ ।
ଯାଦେର ହରି ବଲିତେ ନୟନ ଝରେ
ଐ ତାରା ତାରା ଦୁଭାଇ ଏସେଛେ ରେ ।
ଯାରା ଆପ୍ନି ନେଚେ ଜଗତ୍ ନାଚାୟ
ତାରା ତାରା ଦୁଭାଇ ଏସେଛେ ରେ ।
ଯାରା ଆପନ କେନ୍ଦେ ଜଗତ୍ କାନ୍ଦାୟ
ତାରା ତାରା ଦୁଭାଇ ଏସେଛେ ରେ ।
ଯାରା ଆପ୍ନି ନେଚେ ଜଗତ୍ ନାଚାୟ
ତାରା ତାରା ଦୁଭାଇ ଏସେଛେ ରେ ।
ଯାରା ମାର୍ ଖେୟେ ପ୍ରେମ ଯାଚେ
ତାରା ତାରା ଦୁଭାଇ ଏସେଛେ ରେ ।
ଯାରା ଆଚଣ୍ଡାଲେ ପ୍ରେମ ଦେୟ
ତାରା ତାରା ଦୁଭାଇ ଏସେଛେ ରେ ।"

ମହୋତ୍ସବେ ଉପନୀତ ଯେତେ ଭାଗ୍ୟବାନ
ଦିବ୍ୟ ପ୍ରେମ ହିଲ୍ଲୋଳରେ ସର୍ବେ ଭାସମାନ ।

ଆନନ୍ଦର ହେତୁ କେହି ଜାଣି ନ ପାରନ୍ତି
ଗୁପ୍ତ ବେଶେ ଦେବରାସ୍ଥ ସଙ୍ଗେ ବିରାଜନ୍ତି ।
ସଂକୀର୍ତ୍ତନେ ନୃତ୍ୟ କରି ଶ୍ରୀଅଙ୍ଗୁ ତାଙ୍କର
ଅବିରଳ ବହିଗଲା ବହୁ ସ୍ୱେଦ ଧାର ।
ଅମଙ୍ଗଳ ଆଶଙ୍କାରେ ଭକତ ନିକରେ
ଗୃହକୁଁ କୌଣସି ରୂପେ ଆଣିଲେ ବାହାରେ ।
ମଧୁପାନେ ମତ୍ତ ମଧୁ-ମକ୍ଷିକା ପାଶରୁ
ଛଡ଼ାଇ ଆଣିଲେ ପଦ୍ମ ଯଥା ସରୋବରୁ ।
ଆକୁଳ ପରାଣେ ସର୍ବେ ଧାବନ୍ତି ପଶ୍ଚାତେ
କୀର୍ତ୍ତନୀୟା ଦଳ ତଥା ଧାବମାନ ସାଥେ ।
କେ ଆଣିଲା ଫୁଲମାଳ କେ ଆଣିଲା ଭୋଗ
ଚରଣେ ସମର୍ପି କଲେ ଆନନ୍ଦ ସମ୍ଭୋଗ ।
ଅହେତୁକ କୃପାସିନ୍ଧୁ ପ୍ରଭୁ ନାରାୟଣ
ସବୁଥିରୁ କିଛୁ କିଛୁ କରିଣ ଗ୍ରହଣ ।
ଭକତଙ୍କୁ ବିତରିଲେ ସ୍ନେହ ସହକାରେ
ସେ ପ୍ରସାଦ ପାଇ ସର୍ବେ ଭୁଞ୍ଜିଲେ ତୋଷରେ ।
ହାସ୍ୟ ପରିହାସ କେତେ ହେଲା ଭକ୍ତ ସଙ୍ଗେ
କେତେବେଳେ ମଗ୍ନ ପୁଣି ଭକତି ପ୍ରସଙ୍ଗେ ।
ଉତ୍ସବ ଉଦ୍ୟୋକ୍ତା ଭକ୍ତ ନାମ ମଣିସେନ
ପ୍ରଭୁଙ୍କର ଭକ୍ତିଭାବେ ବିମୁଗ୍ଧ ହୋଇଣ ।
ଖରତର ତାଙ୍କ ପାଶେ ହୋଇ ଉପସ୍ଥିତ
ସଦନକୁ ଡାକିନେଲେ ଆଦର ସହିତ ।
ପଙ୍କଜଚରଣ ବନ୍ଦି ପରିବାରମେଳେ
ଭକ୍ତ ସହକାରେ ଯଥା ବିଧି ଚର୍ଚ୍ଚାକଲେ ।
ଦର୍ଶକଙ୍କ ଚିତ୍ତେ ଭକ୍ତି ଭାବ ଉପୁଜାଇ
ନିଜସ୍ଥାନେ ବାହୁଡ଼ିଲେ ଜଗତ ଗୋସାଇଁ ।
ପ୍ରତିବର୍ଷ ଉତ୍ସବରେ ଯୋଗଦାନ କରି
ଏ ଭାବେ ବାନ୍ଧିଲେ ବହୁ ଚିତ୍ତେ ଭକ୍ତି ଡୋରି ।
ପ୍ରଚାର ହୋଇଲା ନାମ କ୍ରମଶଃ ଏସନ
ମେଘେ ଆବୃତ ରହିବ ସୂର୍ଯ୍ୟ କେତେ କ୍ଷଣ ।
ସହରର ମଧ୍ୟସ୍ଥଳେ କଲୁଟୋଲା ପଟି
ଖ୍ୟାତନାମା ହରିସଭା ଥିଲାକ ଯେଉଁଠି ।
ଭକତ ବୈଷ୍ଣବଗଣ ବାନ୍ଧି ଏକ ମେଣ୍ଟ
ପ୍ରତ୍ୟହ କରନ୍ତି ତହିଁ ଭାଗବତ ପାଠ ।
ସଭା ମଧ୍ୟେ ଥିଲା ଏକ ପବିତ୍ର ଆସନ
କୁସୁମ ଚନ୍ଦନେ ଯାହା ସଦା ସୁଶୋଭନ ।

ମହାପ୍ରଭୁ ଶ୍ରୀ ଚୈତନ୍ୟ ତହିଁ ବିଜେ କରି
ପ୍ରତ୍ୟହ ଶୁଣନ୍ତି ହରି କଥାର ମାଧୁରୀ ।
ଏସନ ବିଚାରି ମନେ ବୈଷ୍ଣବ ସକଳେ
କୀର୍ତ୍ତନ କରନ୍ତି ଗ୍ରନ୍ଥ ପାଠ ଶେଷ ହେଲେ ।
ଭାଗବତ ପୋଥିପାଠ ଶ୍ରବଣ କାରଣ
ଶ୍ରୀଦେବଙ୍କୁ ଆମନ୍ତ୍ରିଲେ ଦିନେ ସଭ୍ୟଗଣ ।
ଏମନ୍ତେ ଆହୂତ ହୋଇ ପ୍ରଭୁ ନରହରି
ସଭାସ୍ଥଳେ ପ୍ରବେଶିଲେ ବନ୍ଧୁ ସଙ୍ଗେ ଧରି ।
ତାଙ୍କ ପ୍ରତି ଯଥୋଚିତ ସମ୍ମାନ ଦେଖାଇ
ସଭ୍ୟଗଣ ବସାଇଲେ ଯଥାସ୍ଥାନେ ନେଇ ।
ସୁଧାରସେ ପରିପୂର୍ଣ୍ଣ ଭାଗବତ କଥା
ଏକମନେ ଶୁଣୁଛନ୍ତି ତହିଁ ଯେତେ ଶ୍ରୋତା ।
ଭାବାବେଶେ ଆତ୍ମହରା ହୋଇ ଶ୍ରୀଠାକୁର
ହରାଇଲେ ଭଲମନ୍ଦ ଜ୍ଞାନର ବିଚାର ।
ଆସନ ତେଜିଣ ତହୁଁ ମୁହୂର୍ତ୍ତ ମଧ୍ୟରେ
ଠିଆହେଲେ ଚୈତନ୍ୟଙ୍କ ଆସନ ଉପରେ ।
ଦକ୍ଷିଣ ହସ୍ତକୁ ଊର୍ଦ୍ଧ୍ୱଦିଗେ ଉତ୍ତୋଳିଣ
ଗମ୍ଭୀର ସମାଧି ଜଳେ ତକ୍ଷଣେ ମଗନ ।
ଅଙ୍ଗ ପ୍ରତ୍ୟଙ୍ଗ ସକଳ ହେଲା ଜଡ଼ବତ
ପ୍ରାଣର ସଞ୍ଚାର କାହିଁ ନୋହିଲା ଲକ୍ଷିତ ।
ଜ୍ୟୋତିର୍ମୟ ଦୃଷ୍ଟ ହେଲା ଶ୍ରୀମୁଖମଣ୍ଡଳ
ପ୍ରେମପୂର୍ଣ୍ଣ ହାସ୍ୟଛଟା ତହିଁରେ କେବଳ ।
ଏ ଦିବ୍ୟ ଦୃଶ୍ୟ ଦେଖିଣ ଭକତ ନିକରେ
ଭାବିଲେ ସରବେ ନିଜ ନିଜ ଅନ୍ତରରେ ।
ଭାବେ ବିଗଳିତ ହୋଇ ଏ ମହାପୁରୁଷ
ଚୈତନ୍ୟଦେବଙ୍କ ସହ କରନ୍ତି ବିଳାସ ।
ପାଠକ ଆପଣା କାର୍ଯ୍ୟ ହୋଇଣ ବିସ୍ମୃତ
ସ୍ଥିର ନେତ୍ରେ ନିରେଖିଣ ହେଲେ ସ୍ତମ୍ଭୀଭୂତ ।
ଶ୍ରୋତାଏ ସେଠାରେ ଯେତେ ଉପସ୍ଥିତ ଥିଲେ
ଅବ୍ୟକ୍ତ ଦିବ୍ୟ ଆନନ୍ଦ ଅନ୍ତରେ ଭୁଞ୍ଜିଲେ ।
ଏ ପ୍ରକାରେ ଦିବ୍ୟ ଭାବେ ହୋଇ ପ୍ରଣୋଦିତ
ତଦଣ୍ଡେ ଆସନ ତେଜି ସକଳ ଭକତ,
ମହୋଲ୍ଲାସେ ଉଚ୍ଚ ନାଦେ ହରିଧ୍ୱନି କରି
ସଂକୀର୍ତ୍ତନ ଆରମ୍ଭିଲେ ଶ୍ରୀଦେବଙ୍କୁ ଘେରି ।
ଶ୍ରବଣରେ ହରିନାମ ହୁଅନ୍ତେ ପ୍ରବେଶ
ବାହ୍ୟଜ୍ଞାନ ଦୃଷ୍ଟ ହେଲା ଶ୍ରୀଅଙ୍ଗେ କ୍ରମଶଃ ।

ଭାବେ ଗଦ ଗଦ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର
ପ୍ରେମେ ଆରମ୍ଭିଲେ ନୃତ୍ୟ ଉଦ୍ଦାମ ମଧୁର ।
ଭକ୍ତଗଣ ଶତଗୁଣେ ହୋଇ ଉତ୍ସାହିତ
ଚୌଦିଗେ ଘେରିଣ ତାଙ୍କୁ ନୃତ୍ୟେ ଉନମତ୍ତ ।
ଚୈତନ୍ୟ ଆସନ ପ୍ରଭୁ କଲେ ଅଧିକାର
ନ୍ୟାଯ୍ୟ କି ଅନ୍ୟାଯ୍ୟ କିଏ କରିବ ବିଚାର ।
ଉଦ୍ଦାମ ତାଣ୍ଡବ ନୃତ୍ୟେ ହରି ସଙ୍କୀର୍ତ୍ତନ
ସତେ ଯେହ୍ନେ ଧରାଧାମେ ଗୌର ଅବତୀର୍ଣ୍ଣ ।
ଏମନ୍ତେ ସରବେ ହୋଇ ଭାବେ ମତୁଆଲ
ସମସ୍ତ ଆଡ଼କୁ କା'ର ଲକ୍ଷ୍ୟ ନ ରହିଲା ।
ଜୟ ଜୟ ଧ୍ୱନି ଶେଷେ ସର୍ବେ ଉଚ୍ଚାରିଣ
ସାଙ୍ଗ କଲେ ବହୁକ୍ଷଣେ ମହା ସଙ୍କୀର୍ତ୍ତନ ।
ବିଶ୍ରାମ ଲଭିଣ ତହିଁ କ୍ଳାନ୍ତ ସମସ୍ତ
ବାହୁଡ଼ିଲେ ନିଜାଳୟେ ପ୍ରଭୁ ଦୟାମୟ ।
କୀର୍ତ୍ତନାନ୍ତେ ଭକ୍ତବୃନ୍ଦ ଚଳେ ଯେ ଯା' ଘର
ତଦନ୍ତେ ଜାଗ୍ରତ ଚିତ୍ତେ ପୂର୍ବର ସଂସ୍କାର ।
ଉତ୍ତେଜନା ପରେ କ୍ରମେ ଆସେ ଅବସାଦ
ଏହା ଅଟେ ପ୍ରକୃତିର ଅଟଳ ନିବନ୍ଧ ।
ହରି ସଙ୍କୀର୍ତ୍ତନେ ଚିତ୍ତେ ଭକ୍ତି ଉପୁଜଇ
ଜ୍ଞାନବଳୁ କିନ୍ତୁ ତାହା ସ୍ଥାୟୀ ନ ହୁଅଇ ।
ଯେ ପର୍ଯ୍ୟନ୍ତ ମତ୍ତ ଥାନ୍ତି ନାମ ସଙ୍କୀର୍ତ୍ତନେ
ଚଢ଼ିଯାନ୍ତି ଆଧ୍ୟାତ୍ମିକ ଉନ୍ନତ ସୋପାନେ ।
କୀର୍ତ୍ତନାନ୍ତେ ଖସିଆସେ ମନ ନିମ୍ନସ୍ତରେ
ସମୁଦ୍ରରେ ଢେଉ ଉଠେ ପଡ଼େ ଯେ ପ୍ରକାରେ ।
ଗୃହେ ବାହୁଡ଼ିଣ ଭକ୍ତେ ଚିନ୍ତାରେ ମଗନ
ଦର୍ଥଙ୍କ ନିମନ୍ତେ ରଖା ଥିଲା ଯେ ଆସନ ।
ଏ ବ୍ୟକ୍ତି ଆସିଣ ତାକୁ କଲେ ଅଧିକାର
ଉଚିତ କି ଅନୁଚିତ ଏ କାର୍ଯ୍ୟ ତାଙ୍କର ।
ଏକ ଦଳ କଲେ ତାଙ୍କ ପକ୍ଷ ସମର୍ଥନ
ଆରେକ କଲେ ଯେ ତୀବ୍ର ପ୍ରତିବାଦ ପୁଣ ।
ବଇଷ୍ଣବ ସମ୍ପ୍ରଦାୟେ ପଡ଼ିଲା ଚହଳ
ସମାଲୋଚନାରେ କଟିଗଲା କିଛି କାଳ ।
ତଦନ୍ତେ ମୀମାଂସା ପାଇଁ ସର୍ବେ ଏକମେଳେ
କାଲନାଧିକାରୀ ପାଶେ ଉପସ୍ଥିତ ହେଲେ ।
ବୈଷ୍ଣବଙ୍କ ଶିରୋମଣି ଭଜନପ୍ରଧାନ
ବିଖ୍ୟାତ ବାବାଜୀ ନାମ ଦାସ ଭଗବାନ ।

ବୈଷ୍ଣବ ସମାଜେ ଯାଙ୍କ ବିଶେଷ ପ୍ରସିଦ୍ଧି
ବୈଷ୍ଣବ ମତରେ ସେହୁ ଲଭିଥିଲେ ସିଦ୍ଧି ।
ଯେ ଆସନ ନିର୍ଦ୍ଧାରିତ ଇଷ୍ଟଙ୍କ ସକାଶ
ତହିଁରେ ବସିଲେ ଜଣେ ନଗଣ୍ୟ ପୁରୁଷ ।
ଶ୍ରବଣ ମାତ୍ରକେ ଦାସ ଭକ୍ତ ଶିରୋମଣି
ରୋଷ ଜାତହେଲା ତାଙ୍କ ମାନସେ ତକ୍ଷଣି ।
କ୍ରୋଧାନ୍ଧ ହୋଇଣ ଶେଷେ ଅପ୍ରିୟ ବଚନେ
ଗାଳିଦେଲେ ପ୍ରଭୁଙ୍କୁ ସେ ଯା ଆସିଲା ମନେ ।
ତାଙ୍କ ପାଶେ ଆସିଥିଲେ ଭକ୍ତବୃନ୍ଦ ଯେତେ
ତାଙ୍କୁ ମଧ୍ୟ ବକିଲେ ଯେ ଦାସ ନାନାମତେ ।
ଏତେ ଭକ୍ତ ଥାଉଁ ଥାଉଁ ହରି ସଭା ମଧ୍ୟେ
ରାମକୃଷ୍ଣ ସେ ଆସନେ ବସିଲେ ଅବାଧେ ।
ସେଥିପାଇଁ ଉପସ୍ଥିତ ଭକ୍ତବୃନ୍ଦ ଯେତେ
ସେ ସରବେ ଅପରାଧୀ ଅଟନ୍ତି ମୋ ମତେ ।
ଅତଃପର ବାବାଜୀଙ୍କ କ୍ରୋଧ ଶାନ୍ତ ହେଲେ
ଭବିଷ୍ୟତ ପ୍ରତିକାର ମାନସେ ପାଞ୍ଚିଲେ ।
ଅନ୍ୟ କେହି କେତେବେଳେ ଏପରି କରମ
କରିବାକୁ ଯେହ୍ନେ ଆଉ ନୋହିବେ ସକ୍ଷମ ।
ବିହିତ ବ୍ୟବସ୍ଥା ଦାସ ଦେଲେ ତା ନିମନ୍ତେ
ସେ ଆଦେଶ ଘେନି ସର୍ବେ ଫେରିଲେ ତୁରନ୍ତେ ।
ଯାଙ୍କ ପାଇଁ ହେଉଅଛି ଏତେ ଆନ୍ଦୋଳନ
ତାଙ୍କର ଭ୍ରୂକ୍ଷେପ ନାହିଁ, ନିର୍ବିକାର ମନ ।
ଅତ୍ୟନ୍ତ ବାସନା ହେଲା ଦିନେ ତାଙ୍କ ଚିତ୍ତେ
କେମନ୍ତେ ସାକ୍ଷାତ ହେବ ବାବାଜୀ ସହିତେ ।
ମଥୁରଙ୍କୁ ଜଣାଇଲେ ତାଙ୍କ ଅଭିଲାଷ
ତାର ଯୋଗାଡ଼ ସେ କଲେ ଯେମନ୍ତ ଆଦେଶ ।
ବର୍ଦ୍ଧମାନ ଜିଲ୍ଲା ମଧ୍ୟେ କାଲନା ସହର
ଯହିଁ ବିଦ୍ୟମାନ ବହୁ ଶିବଙ୍କ ମନ୍ଦିର ।
ରାଜ ପରିବାର ଯାହା କରିଣ ନିର୍ମାଣ
ମନ୍ଦିରେ ଅକ୍ଷୟ କୀର୍ତ୍ତି କଲେ ଯେ ସ୍ଥାପନ ।
ଏ ସ୍ଥାନହିଁ ଭଗବାନ ଦାସଙ୍କ ଆଶ୍ରମ
ଶ୍ରୀ ଗୌରାଙ୍ଗ ଭଜିଣ ଯେ ହେଲେ ସିଦ୍ଧକାମ ।
ନାବେ ବସି ପ୍ରଭୁ, ହୃଦୁ, ଭକତ ମଥୁର
ଗଙ୍ଗା ବକ୍ଷେ ବିଜେ କଲେ କାଲନା ସହରେ ।
ଘାଟରେ ଲାଗିଲା ତରୀ ଅତି ପ୍ରାତଃକାଳେ
ମଥୁର ମୋହନ ହୃଦୁ ବସା ଖୋଜି ଗଲେ ।

ହୃଦୟଙ୍କ ସଙ୍ଗେ ଘେନି ପଞ୍ଚ ନାରାୟଣ
ଭିତ ମଧ୍ୟେ ଆରମ୍ଭିଲେ ସହର ଦର୍ଶନ ।
ସାଧୁଙ୍କ ଠିକଣା ଜାଣି ଲୋକଙ୍କ ମୁଖରୁ
ଉପନୀତ ହେଲେ ତହିଁ ପ୍ରଭୁ ଜଗଦ୍‌ଗୁରୁ ।
ହୃଦୁଙ୍କୁ କହିଲେ ତହୁଁ ବ୍ରହ୍ମାଣ୍ଡର ସ୍ୱାମୀ
ତୁହି ଯାଆ ଅଗ୍ରେ, ମୁହିଁ ହେବି ଅନୁଗାମୀ ।
ଏହନ ଭାଷିଣ ପ୍ରଭୁ ଆପଣା ଶରୀର
ବସ୍ତ୍ରରେ ଆବୃତ କଲେ ସର୍ବତୋଭାବର ।
କେଜାଣି କି ରହସ୍ୟ ଯେ ନିହିତ ଏଥିରେ ।
ବୁଝି ନ ପାରିଲେ ହୃଦୁ ବିନ୍ଦୁ ପ୍ରମାଣରେ ।
ଏ ଭାବେ ଗମିଲେ ଅଗ୍ରେ ଭଣଜା ହୃଦୟ
ବସ୍ତ୍ରାବୃତ ହୋଇ ପଛେ ପ୍ରଭୁ ଦୟାମୟ ।
ବାବାଜୀ ସମୀପେ ହୃଦୁ ହୋଇ ଉପସ୍ଥିତ
ତାଙ୍କ ପାଦେ ପ୍ରଣମିଲେ ଭକତି ସହିତ ।
ସବିନୟେ ନିବେଦନ କଲେ ଅତଃପର
ତବ ଦର୍ଶନେ ଆଗତ ମାତୁଳ ମୋହର ।
ଏକାଳେ ବାବାଜୀ ତାଙ୍କ ଜପମାଳା ଧରି
ଶୁଣୁଥିଲେ କଣ୍ଠପସ୍ଥ ବୈଷ୍ଣବ ଗୁହାରି ।
ସହସା ତାଙ୍କ ମାନସ ହେଲା ବିଚଳିତ
ଆଶ୍ରମେ କୌଣସି ମହାପୁରୁଷ ଆଗତ ।
ଇତସ୍ତତଃ ଚାରିଆଡ଼େ ତହୁଁ ନିରେଖିଣ
ନ ପାଇଲେ ଏତାଦୃଶ ବ୍ୟକ୍ତିର ସନ୍ଧାନ
ବାବାଜୀ ନିବିଷ୍ଟ ପୁନଃ କଥୋପକଥନେ
କି ଶାସ୍ତି ଦେବେ ସାଧୁର ଅନ୍ୟାୟାଚରଣେ ।
ଦୁଷ୍କର୍ମର ବିବରଣ ଶୁଣି ଆଦ୍ୟ ପ୍ରାନ୍ତ
ଦଣ୍ଡ ଆଦେଶିଲେ ତହିଁ ବିହିତ ଯେମନ୍ତ ।
"କଣ୍ଠୀ ମାଳ ତାହାଠାରୁ ଛଡ଼ାଇ ରଖିଣ
ସମ୍ପ୍ରଦାୟୁଁ ତଡ଼ି ଦିଅ ତାହାକୁ ଏକ୍ଷଣ ।"
କଥା ଶେଷ ନ ହେଉଣୁ ପ୍ରଭୁ ନରହରି
ସଭାମଧ୍ୟେ ଉପବିଷ୍ଟ ନମସ୍କାର କରି ।
ହୃଦୟ ଭାଷିଲେ ତହୁଁ ତାଙ୍କୁ ଦେଖାଇଣ
ମାତୁଳ ଅଟନ୍ତି ମୋର ଏହି ମହାଜନ ।
ହରିନାମେ ମତୁଆଲ ଆନ୍ତି ନିରନ୍ତର
ହରି ବିନୁ ନ ଜାଣନ୍ତି ବିଷୟ ଆବର ।
ହୃଦୟ ବଚନ ଶୁଣି ସାଧୁ ଭଗବାନ
ପୁଚ୍ଛିଲେ କୁଶଳବାର୍ତ୍ତା ତାଙ୍କୁ ପ୍ରଣମିଣ ।

ଜପମାଳା ଦେଖିଣ ସେ ବାବାଜୀଙ୍କ ହାତେ
ହୃଦୟ ପୁଚ୍ଛିଲେ ତାଙ୍କୁ ଅତି ଆଚମ୍ବିତେ ।
"ସାଧନ ଭଜନ କରି ହୋଇଛନ୍ତି ସିଦ୍ଧ
ମାଳା, ଚିତା ସହ କପାଁ ତଥାପି ସମ୍ବନ୍ଧ ।"
ଗମ୍ଭୀରେ ଉତ୍ତର ଦେଲେ ଭକ୍ତବର ଦାସ
"ଲୋକ ଶିକ୍ଷା ହେତୁ ରଖିଅଛୁ ଏ ଅଭ୍ୟାସ ।
ନତୁବା ଇତର ପ୍ରାଣୀ ମୋର ଦେଖାଦେଖି
ଧର୍ମପଥୁଁ ଭ୍ରଷ୍ଟ ହେବେ ଭଜନ ଉପେକ୍ଷି ।"
ଅହଂଭାବେ ପରିପୂର୍ଣ୍ଣ ବାବାଜୀଙ୍କ କଥା
ଶୁଣିଣ ବିରକ୍ତ ହେଲେ ଜଗତକର୍ତ୍ତା ।
ସମ୍ଭାଳି ନ ପାରି ଶେଷେ ଉତ୍ତେଜିତ ହୋଇ
ଠିଆ ହେଲେ ଲୁଗାପଟା ଦୂରେ ଫିଙ୍ଗିଦେଇ ।
କଟିରୁ ପଡ଼ିଲା ଖସି ପିନ୍ଧିବା ବସନ
ବଦନମଣ୍ଡଳେ ଦିବ୍ୟ ଜ୍ୟୋତିଃ ଭାସମାନ ।
ହୁଙ୍କାର କହିଲେ ତହୁଁ ସାଧୁଙ୍କୁ ସମ୍ବୋଧି
"ଏଡ଼େ ଅହଂକାର ଅଛୁ ତୋଠେ ଅଦ୍ୟାବଧି ।
କିଏ ତୁମ୍ଭେ ଭାଳି ଦେଖ ଦାସ ଭଗବାନ
ଲୋକଶିକ୍ଷା ଦେବାପାଇଁ କର ଆସ୍ଫାଳନ ।
ଅହଂକାରେ ତବ ଚିତ୍ତ ଏପରି ଜର୍ଜ୍ଜର
କଣ୍ଠୀ କାଢ଼ି ଭକ୍ତ ବିତାଡନ ଆଜ୍ଞା କର ।
ଜାଣନା କି ଏ ଜଗତ ଯାହାଙ୍କ ରଚନା
ଶିକ୍ଷାଦାନେ କ୍ଷମ ନୁହେ କେହି ତାଙ୍କ ବିନା ।"
ଏହା କହି ଦେବରାୟ ହେଲେ ଭାବାବିଷ୍ଟ
ଅଙ୍ଗପ୍ରତ୍ୟଙ୍ଗ ସକଳ ନିସ୍ପନ୍ଦ ନିଶ୍ଚେଷ୍ଟ ।
ତୀକ୍ଷ୍ଣ ଶର ପ୍ରାୟେ ତାଙ୍କ ତେଜସ୍ୱିନୀ ବାଣୀ
ଦାସଙ୍କ ହୃଦୟେ ବିଦ୍ଧ ହୋଇଲା ତକ୍ଷଣି ।
ତଦଣ୍ଡେ ହୋଇଣ ଦିବ୍ୟ ଜ୍ଞାନର ସଞ୍ଚାର
ମନେ ମନେ ଆପଣାକୁ କଲେ ସେ ଧିକ୍‌କାର ।
"ବାସ୍ତବିକ ଏ ଜଗତେ ବିଭୁହିଁ କର୍ତ୍ତା
ଚରାଚର ବିଶ୍ୱ ଚଳେ ତାଙ୍କ ଆଜ୍ଞା ଯଥା ।
ଅହଂକାର ବଶବର୍ତ୍ତୀ ହୋଇଣ ମାନବ
ନିରତେ ଭାଳଇ ମୁହିଁ କରୁଛି ସରବ ।
ବିଭୁ ଦେଇଛନ୍ତି ଯାକୁ ଯେମନ୍ତ ଶକତି
ସେହି ସୀମା ମଧ୍ୟେ ସେହୁ ଭ୍ରମେ ଦିନରାତି
ତାଠାରୁ ଅଧିକ କାର୍ଯ୍ୟ କରିବା ନିମିତ୍ତ
କାହାରି କ୍ଷମତା ନାହିଁ ବିନ୍ଦୁ ପରିମିତ ।"

ସାଧୁ ସାଧୁ ଏ ପ୍ରକାର ଭକତ ପ୍ରଧାନ
ଆକର୍ଷିତ ହେଲା ପ୍ରଭୁ ପାଦେ ତାଙ୍କ ମନ ।
ମହାପୁରୁଷ ଅଟନ୍ତି ଏ ବ୍ୟକ୍ତି ନିଶ୍ଚୟ
ହୃଦେ ବିରାଜଇ ଜ୍ଞାନ ଭକତି ଉଭୟ ।
ପ୍ରକୃତିସ୍ଥ ଦେଖି ତାଙ୍କୁ ଭକ୍ତବର ଦାସ
ହରି କଥାରେ ମାନସ କଲେ ସନ୍ନିବେଶ ।
ଦାସ ଭଗବାନ ଆଉ ପ୍ରଭୁ ଭଗବାନ
ହରିକଥାମୃତ ପାନେ ହୋଇଲେ ମଗନ ।
ଭାବ ମହାଭାବାଦି ଯା ଲକ୍ଷଣ ପ୍ରେମର
ମୁହୁର୍ମୁହୁ ଦୃଶ୍ୟମାନ ତାହା ଶ୍ରୀଅଙ୍ଗର ।
ଏହା ନିରେଖିଣ ଦାସ ହୋଇଲେ ଚକିତ
"ଦେବ ଅଂଶେ ଏହାଙ୍କର ନିଶ୍ଚୟ ସମ୍ଭୂତ ।
ଭାବ ମହାଭାବ କଥା ଶାସ୍ତ୍ରେ ପଢ଼ିଥିଲି
ଅନୁଭୂତି ପାଇଁ ମୋର ପ୍ରାଣୋତ୍ସର୍ଗ କଲି ।
ସାଧନ ଭଜନ କଲି ବହୁତ ପ୍ରକାରେ
ଲଭି ନ ପାରିଲି ଯାହା ମୋର ଜୀବନରେ ।
ସ୍ୱାଙ୍କଠି ଦେଖଇ ସେହି ଭାବ ମହାଭାବ
ଅବତାରାନ୍ତେ ହୁଏ ନିତ୍ୟ ସମ୍ଭୁବ ।"
ଏ ପ୍ରକାର ସାଧୁ ସାଧୁ ଭକ୍ତବରଙ୍କର
କ୍ରମଶଃ ବଢ଼ିଲା ଭକ୍ତି ପ୍ରଭୁଙ୍କ ପସ୍ପର ।
ଯେମନ୍ତ ଶୁଣିଲେ ସେହୁ ଏହି ମହାଜନ
ଅଧିକାର କରିଥିଲେ ଚୈତନ୍ୟ-ଆସନ ।
ଆପଣାକୁ ଧିକ୍‌କାରିଣ ହେଲେ ମର୍ମାହତ
କଟୂବାକ୍ୟ ପ୍ରୟୋଜିଲି ଅଜ୍ଞାତାବଶତଃ ।
ମୋ ସମାନେ ଅପରାଧୀ ନାହିଁ ଏ ମର୍ତ୍ତ୍ୟରେ
ବିନୀତେ ମାଗିଲେ କ୍ଷମା ପ୍ରଭୁଙ୍କ ପଦ୍ମରେ ।
ଏ ପ୍ରକାରେ ସାଙ୍ଗ ହେଲା ପ୍ରେମ ଅଭିନୟ
ବସାଘରେ ବାହୁଡ଼ିଲେ ପ୍ରଭୁ ଦୟାମୟ ।
ବାବାଜୀ ଯେ କରିଛନ୍ତି ଉଚ୍ଚାବସ୍ଥା ଲାଭ
ମଥୁର ପାଖେ ଫେଡ଼ିଲେ, ପ୍ରଭୁ ପଦ୍ମନାଭ ।
ଏହା ଶୁଣି ଶ୍ରୀମଥୁର ଭକ୍ତି ସହକାରେ
ବାବାଜୀଙ୍କ ଦରଶନେ ଗଲେ ଧନକରେ ।
ମଥୁର ଫେରିଲେ, ତାଙ୍କୁ ଆଦେଶିଲେ ଦେବ
ଭକ୍ତି ସେବାପାଇଁ ଏଠି କର ମହୋତ୍ସବ ।
ଅତଃପର ଦେବବର୍ଯ୍ୟ ମଥୁର ସହିତ
ବିଜେ କଲେ ନବଦ୍ୱୀପ ଦର୍ଶନ ନିମିତ୍ତ ।

ଚୈତନ୍ୟଙ୍କ ଜନ୍ମଭୂମି ଏ ପବିତ୍ର ଧାମ
ତହିଁ ପ୍ରବେଶିଣ ପ୍ରଭୁ ପୁରୁଷ-ଉତ୍ତମ,
ଗୋସ୍ୱାମୀଙ୍କ ଥିଲା ଯେତେ ଠାକୁର ମନ୍ଦିର
ନିତ୍ୟ ପୂଜା ହୁଏ ଯହିଁ ଗୌରାଙ୍ଗଙ୍କର ।
ଗୋଟେ ଗୋଟେ କରି ସର୍ବସ୍ଥାନେ ସେ ଗମିଲେ
ଦିବ୍ୟଭାବର ଅଭାବ ସବୁଠି ଦେଖିଲେ ।
ବିଷାଦ ଗ୍ରସ୍ତ ହେବାରୁ ଏଣୁ ଚିତ୍ତ ସମାବୃତ
କିପାଇଁ ଅଇଲି ଖେଦ କରିଲେ ବହୁତ ।
ପ୍ରତ୍ୟାବର୍ତ୍ତନ ସମୟେ ନାବେ ଆରୋହଣ
ସେଠାରେ ପାଇଲେ ଏକ ଅଦ୍ଭୁତ ଦର୍ଶନ ।
ସୁନ୍ଦର ବାଳକ ଦୁଇ କିଶୋର ବୟସ
ଯାହାଙ୍କର କାନ୍ତି ତପ୍ତ କାଞ୍ଚନ ସଦୃଶ ।
ଦିବ୍ୟ ଜ୍ୟୋତିଃମଣ୍ଡଳରେ ଶିର ଆଚ୍ଛାଦିତ
ସ୍ୱରୂପ ଦର୍ଶନେ ପ୍ରାଣ ମନ ବିମୋହିତ ।
ବେନି ହସ୍ତ ଟେକିଣ ସେ ଯୁବକ ଦୁଇଟି
ହସି ହସି ଶୂନ୍ୟମାର୍ଗେ ଆସିଲେ ଝଟପଟି ।
"ହେଇ ଆସିଲେଣି" କହି ପ୍ରଭୁ ଦୟାମୟ
ସଂଜ୍ଞାଶୂନ୍ୟ ହୋଇ ଜଳେ ପତନ ପର୍ଯ୍ୟାୟ ।
ଏ କାଳେ ମଥୁର ଆସି ଧଇଲେ କୁଣ୍ଢାଇ
କ୍ଷଣମଧ୍ୟେ ସମାଧିସ୍ଥ ଜଗତ ଗୋସାଇଁ ।
ଶ୍ରୀଦେବ ବୋଲନ୍ତି ବେନି ଦିବ୍ୟଦେହଧାରୀ
ଝଟପଟ ଆସି ପଶିଲେ ଦେହରେ ମୋହର ।
ନବଦ୍ୱୀପ ସନ୍ନିକଟେ ଚଡ଼ା ପାଣ ଦେଇ
ନାବେ ଗମନ ସମୟେ ପ୍ରଭୁ ବିଶ୍ୱପାଇଁ ।
ଗମ୍ଭୀର ଭାବରେ ମନ ହୋଇଲା ଆକୃଷ୍ଟ
ନବଦ୍ୱୀପ ଧାମେ ଯାହା ନୋହିଥିଲା ଦୃଷ୍ଟ ।
କେତେ ପୃଚ୍ଛିଲାରୁ ତାଙ୍କୁ ମଥୁର ବିଶ୍ୱାସ
ଉତ୍ତରେ କହିଲେ ତାର ପ୍ରଭୁ ପରମେଶ ।
"ମହାପ୍ରଭୁ ଚୈତନ୍ୟଙ୍କ ପୁଣ୍ୟଲୀଳାଭୂମି
ବହୁକାଳୁଁ ଗଙ୍ଗାଗର୍ଭେ ବିଲୀନ ହେଲାଣି ।
ସମ୍ମୁଖେ ଯେ ଚଡ଼ାମାନ ଦର୍ଶନ କରିଲି
ତାହା ହିଁ ପ୍ରକୃତ ଥିଲା ତାଙ୍କ ଲୀଳାସ୍ଥଳୀ ।
ଉପସ୍ଥିତ ହେଲାକ୍ଷଣି ତେଣୁ ସେହି ସ୍ଥାନେ
ଦିବ୍ୟଭାବ ଜାଗରୂକ ହେଲା ମୋର ମନେ ।"
ଏହିରୂପେ ଯେତେବେଳେ ପ୍ରଭୁ ଶ୍ରୀଚୈତନ୍ୟ
ଦର୍ଶନକୁ ଯାଇଥିଲେ ଧାମ ବୃନ୍ଦାବନ ।

ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବହୁ ଗୁପ୍ତ ଲୀଳାସ୍ଥଳ
ଅବସ୍ଥାର କରି ଭବେ ସ୍ଥାପିଲେ ମଙ୍ଗଳ ।
ନବଦ୍ୱୀପ ଦର୍ଶନାନ୍ତେ ପ୍ରଭୁ ଦୟାମୟ
ଭଲେ ଭଲେ ବାହୁଡ଼ିଲେ ଆପଣା ଆଳୟ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଲହରୀ
ହୃଦୟ ପୂରାଇ ପିଅ ହବା ହରବରୀ ।
ଏ ଭବ ଯାତନା ଦୂର ହୋଇ ଅବହେଳେ
ଭୁଞ୍ଜିବୁ ପରମାନନ୍ଦ ସ୍ୱର୍ଗେ କାଳେ କାଳେ ।

---

## ଅଷ୍ଟାଦଶ ଅଧ୍ୟାୟ

## ହୃଦୟ ମୁଖୋପାଧ୍ୟାଙ୍କ ପ୍ରତି କୃପା ପ୍ରଦର୍ଶନ

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ରାମକୃଷ୍ଣ ଲୀଳା କଥା ଶ୍ରବଣ ମଙ୍ଗଳ
ଶ୍ରବଣେ କୀର୍ତ୍ତନେ ଚିତ୍ତ ହୁଅଇ ନିର୍ମଳ ।
ଶୁଣ ଆରେ ମନ ! ଏବେ ହୃଦୟ କେସନ
ଶ୍ରୀଦେବଙ୍କ କୃପା ଲଭି ହୋଇଲେ ଯେ ଧନ୍ୟ ।
ମାରୁଳଙ୍କ ପାଶେ ଥାଇ ହୃଦୟ ଠାକୁର
ତାଙ୍କ ସେବା ଶୁଶ୍ରୂଷାରେ ରତ ନିରନ୍ତର ।
ଯେ କାଳେ ଯେମନ୍ତ ସେବା ହୁଏ ପ୍ରୟୋଜନ
ଯତ୍ନେ ତ୍ରୁଟି ନ କରନ୍ତି ସେଥୁ କଦାଚନ ।
ଏମନ୍ତେ ତାହାଙ୍କୁ ରଖି ସତତ ସନ୍ତୋଷ
ଚିତ୍ତରେ ଦାମ୍ଭିକ ଭାବ ଜାଗ୍ରତ ବିଶେଷ ।
ମାରୁଳ ମୋହର ଦୈବୀ ଶକ୍ତି ସମନ୍ୱିତ
ବହୁ ଅଲୌକିକ ଶକ୍ତି ଯା ଦେଲେ ଆସୁଛି ।
ଚଳିବ କମାଇ ମୁହିଁ ପରକାଳ ପାଇଁ
ସାଂସାରିକ ସୁଖ-ଭୋଗେ ଜଳାଞ୍ଜଳି ଦେଇ ।
ବିଷୟ କର୍ମରେ ରତ ରହିଣ ନିଘଟେ
ଯଥେଷ୍ଟ ଶ୍ରୀବୃଦ୍ଧି କଲେ ଆପଣା ଆୟତ୍ତେ ।
ଏ ବିଶ୍ୱ ବ୍ରହ୍ମାଣ୍ଡେ ଯାହା ଧାତାଙ୍କ ନିୟମ
ତାକୁ ଏଡ଼ିବାକୁ ପୁଣି କେ ଅଟଇ କ୍ଷମ ।
କାହାରିକୁ ନ ଦିଅନ୍ତି ସର୍ବବିଧ ସୁଖ
ଚେତା ଆଣିବାକୁ ଖଞ୍ଜିଥାନ୍ତି ନାନା ଦୁଃଖ ।
ନିର୍ବୋଧ ପ୍ରାଣୀଙ୍କ ଅଟେ ଏମନ୍ତ ସ୍ୱଭାବ
ଯେତେ ଭୋଗିଲେହେଁ ସତ୍‌ଜ୍ଞାନର ଅଭାବ ।
ତୀର୍ଥରୁ ବାହୁଡ଼ିବାର କିଛିକାଳ ପରେ
ହୃଦୟଙ୍କ ପତ୍ନୀ ଗଲେ ଶମନ ଆଗାରେ ।
ସଂସାର ଅନିତ୍ୟ ଭାବି ହୃଦୟ ଠାକୁର
ମନପ୍ରାଣ ଢାଳିଦେଲେ ଦେବୀଙ୍କ ପୟର ।
ନିଷ୍ଠାସହ ନିତ୍ୟ କଲେ ଦେବୀଙ୍କ ଅର୍ଚ୍ଚନ
ଈଶ୍ୱର ପ୍ରସଙ୍ଗେ ମଗ୍ନ ଏକାବେଳେ ମନ ।
ଉପବୀତ, ପରିଧେୟ ବସ୍ତ୍ର ଫିଙ୍ଗି ଦେଇ
ମଧ୍ୟେ ମଧ୍ୟେ ଧ୍ୟାନେରତ ନିର୍ଜ୍ଜନରେ ଯାଇ ।
ମାରୁଳଙ୍କ ପାଦେ ଦିନେ କଲେକ ବିନତି
ତାଙ୍କ ଭଳି ଯେସନ୍ତେ ହୁଏ ଧର୍ମ-ଅନୁଭୂତି ।
ହିଦୁ କଥା ଶୁଣି ପ୍ରଭୁ କହିଲେ ବୁଝାଇ
ଜପତପ ତୋର କିଛି ପ୍ରୟୋଜନ ନାହିଁ ।
ଭକ୍ତି ସହ ମୋର ସେବା ଶୁଶ୍ରୂଷାଦି କଲେ
ମୁକତି ଲଭିବୁ ତୁହି ଭବେ ଅବହେଳେ ।
ଏମନ୍ତେ ଶ୍ରୀଦେବରାୟ ବୁଝାଇଲେ ଯେତେ
କର୍ଣ୍ଣେ ନ ଟେକିଲେ ହିଦୁ କଉଣସିମତେ ।
ଅନନ୍ୟ ଉପାୟ ହୋଇ କରୁଣାସାଗର
ଶେଷରେ କହିଲେ ତାଙ୍କୁ ସସ୍ନେହେ ଉତ୍ତର ।
ଦେବୀଙ୍କର ଯାହା ଇଚ୍ଛା ତାହାହିଁ ହୋଇବ
ମୋହର କଥାରେ କେଭେ କିଛି ନ ଘଟିବ ।
ଦେବୀଙ୍କ କୃପାରୁ ମୋର ସ୍ୱଭାବ ବଦଳି
ନିତ୍ୟ ନିତ୍ୟ ନାନାବିଧ ଉପଲବ୍ଧି କଲି ।
ତୋଠାରେ ତେମନ୍ତ ହେଲେ ତାଙ୍କ ଅନୁଗ୍ରହ
ମୋ ପରି ଦେଖିବୁ ଦିବ୍ୟ ଦୃଶ୍ୟ ଅହରହ ।
ଅତଃପର କିୟତ୍‌କାଳ ହୋଇଲା ଅତୀତ
ହିଦୁ ହିଦୁ ପୂଜାପୂଜ କମଣଃ ବର୍ଦ୍ଧିତ ।
ନିଷ୍ଠାଭକ୍ତି ସହ ନିତ୍ୟ ପୂଜା ପ୍ରଭାବରେ
ପ୍ରସନ୍ନା ହୋଇଲେ ଜଗନ୍ମାତା ତାଙ୍କଠାରେ ।
କମେ କମେ ହେଲା ବହୁ ଦିବ୍ୟ ଦରଶନ
ଲୋପପାଏ ମଧ୍ୟେ ମଧ୍ୟେ ତାଙ୍କ ବାହ୍ୟଜ୍ଞାନ ।

ହୃଦୁ ଯବେ ମଗ୍ନ ଥିଲେ ଭାବର ଆବେଶେ
ଏକାଳେ ଭେଟିଲେ ତାଙ୍କୁ ମଥୁର ବିଶ୍ୱାସେ ।
ତାଙ୍କର ଏପରି ଭାବ ଦର୍ଶନ କରିଣ
ମଥୁର ଭାଷିଲେ ଦେବେ ବିସ୍ମିତ ହୋଇଣ ।
ଏପରି ଅବସ୍ଥା ପୁଣି ହୃଦୁର କିପାଇଁ
ଉତ୍ତରେ କହିଲେ ତାଙ୍କୁ ବ୍ରହ୍ମାଣ୍ଡ ଗୋସାଇଁ ।
"ଏହାକୁ ଭଣ୍ଡାମି ବୋଲି ନ ଭାବ ମନେ
କାରଣ କହୁଛୁ ତାର ଶୁଣ ସାବଧାନେ ।
କୌଣସି ରୂପେ ଶମ୍ଭୁଙ୍କ ଦରଶନ ପାଇଁ
ଦେଖି ପାରେ ଅତି ବଳ ବ୍ୟାକୁଳିତ ହୋଇ ।
ଭକ୍ତଡୋରେ ବିଭୁ ସଦା ବନ୍ଧା ଭକ୍ତ ପାଶେ
ଦର୍ଶନ ଲଭୁଛି ସେହୁ ଆଭାସେ ଆଶ୍ୱାସେ ।
ଏ ଅବସ୍ଥା ନ ରହିବ ଛାଡି ବେଶି ଦିନ
ଅଚିରେ ହୋଇବ ଶାନ୍ତ ଯେନ ମୋ ବଚନ ।"
ଶ୍ରୀମୁଖ ବଚନ ଶୁଣି କହିଲେ ମଥୁର
"ଏ ସକଳ ତବ ଲୀଳା ପ୍ରଭୁ ପରାତ୍ପର !
ମୋଠାରେ ଛଳନା କର ହେ ନାଥ ! କିମ୍ପାଇ
ତବ କୃପା ବିନୁ ଏହା ସମ୍ଭବ ନୁହଇ ।
ବାରେକ କରୁଣା କରି ପ୍ରଭୋ ନରହରି !
ହୃଦୁଠାରୁ ଏ ଭାବକୁ ନିଅନ୍ତୁ ଅପସାରି ।
ନନ୍ଦୀ ଭୃଙ୍ଗୀ ସମ ସଦା ଆମ୍ଭେ ଦୁଇଜଣ
ପାଶେ ଥାଇ ଦାସ ରୂପେ ସେବିବୁ ଚରଣ ।
ଦାସଠି ଏ ଅବସ୍ଥାର ଅଛି କିସ ଲଭ
ବିଚାର କରି ଦେଖନ୍ତୁ ପ୍ରଭୁ ପଦ୍ମନାଭ ।"
ଏଥିଅନ୍ତେ କିଛିକାଳ ଗଲା ଅତିବାହି
ଗଭୀର ନିଶୀଥେ ଯବେ ପ୍ରଭୁ ବିଶ୍ୱସାଇଁ ।
କୌଣସି କାରଣେ ନିଜ ଗୃହରୁ ବାହାରି
ପଞ୍ଚବଟୀ ଅଭିମୁଖେ ଗଲେ ତ୍ୱରା କରି ।
ହୃଦୟ ଏମନ୍ତେ ତାଙ୍କୁ ଯିବାର ଦେଖିଣ
ମଳତ୍ୟାଗେ ଗଲେ ବୋଲି କରି ଅନୁମାନ ।
ଡାଲ ଗାମୁଛା ଘେନିଣ ପଛେ ପଛେ ଗଲେ
ଅପୂରୁବ ଦୃଶ୍ୟଟିଏ ବାଟରେ ଦେଖିଲେ ।
ଉଭଯାଇ ଶ୍ରୀଦେବଙ୍କ ସ୍ଥୂଳ କଳେବର
ଘନୀଭୂତ ଦିବ୍ୟ ଜ୍ୟୋତିଃ ତହିଁରୁ ବାହାର ।
ଯାହାର ଆଲୋକେ ପଞ୍ଚବଟୀ ଆଲୋକିତ
କୋଟି ଶଶଧର ଯେସନ୍ତେ ତହିଁ ବିରାଜିତ ।
ଜ୍ୟୋତିର୍ମୟ ବେନି ପାଦ ନ ଲାଗେ ଧରାରେ
ଚାଲି ଯାଉଛନ୍ତି ସେହ୍ନେ ଶୂନ୍ୟ ମାର୍ଗରେ ।
ଦୃଶ୍ୟ ଦେଖିଣ ହୃଦୁଙ୍କ ଚିତ୍ତ ସ୍ତମ୍ଭୀଭୂତ
ଭାବିଲେ ନେତ୍ର କି ମୋର ହୋଇଲା ବିକୃତ ?
ବେନି ଚକ୍ଷୁକୁ ମାର୍ଜନ କଲେ ବାରମ୍ବାର
ତଥାପି ଘଟିଲା ନାହିଁ ବ୍ୟତିକ୍ରମ ତାର ।
ବୃକ୍ଷଲତା କୁଟୀରାଦି ପଦାର୍ଥ ନିଚୟ
ସକଳ ଦେଖନ୍ତି ସ୍ୱାଭାବିକ ପୂର୍ବ ପ୍ରାୟ ।
ମାରୁଳଙ୍କୁ ନିରୀକ୍ଷଣ କଲେ ଯେତେବାର
ସେହି ଜ୍ୟୋତିର୍ମୟାକାର ଦେଖିଲେ ତାଙ୍କର ।
ହୃଦୟ ଭାବିଲେ ମନେ ମନେ ତଦନ୍ତରେ
ବିକୃତ ହେଲା କି କଲ ମୋ ଦେହ ପିଣ୍ଡରେ ।
ଯାହାର ପ୍ରଭାବେ ଏହି ଅଦ୍ଭୁତ ଦର୍ଶନ
ନେତ୍ର ପଥେ ମୋର ପୁନଃ ପୁନଃ ଆଗମନ ।
ଏସନ ଭାଳିଣ ସଦା ନିଜ ଦେହ ପ୍ରତି
ନିରୀକ୍ଷଣ କଲେ ଥରେ ହୃଦୁ ମହାମତି ।
ମନେକଲେ ସେ ବି ଜଣେ ଦିବ୍ୟଦେହଧାରୀ
ଭବେ ଉଭି ଦେବ ଅନୁଚର ଆଖ୍ୟା ଧରି ।
ଶ୍ରୀପ୍ରଭୁଙ୍କ ସାଥେ ସାଥେ ରହି ଯୁଗେ ଯୁଗେ
ସେବା କାର୍ଯ୍ୟ କରି ଆସୁଥାଇ ଅନୁରାଗେ ।
ବିଶ୍ୱପତି ଆବର ସେ ନୁହନ୍ତି ଯେ ଭିନ୍ନ
ଅଂଶରୁ ସମ୍ଭୂତ ସେବା କରିବା କାରଣ ।
ଏ ଜ୍ଞାନ ଜାଗ୍ରତ ହେବା ମାତ୍ର ହୃଦୟରେ
ନିମଗ୍ନ ତକ୍ଷଣ ମହାନନ୍ଦ ପାରାବାରେ ।
ଆପଣେ ଭୁଲିଣ ତହିଁ ଭୁଲିଲେ ସଂସାର
ଦୂର ହେଲା ଲୋକଲଜ୍ଜା ଭୟାଦି ଆବର ।
ଉନ୍ମାଦ ସଦୃଶ ଉଚ୍ଚେ ଡାକିଲେ ମାମୁଙ୍କୁ
"ଆରେ ରାମକୃଷ୍ଣ ଏବେ ଚହ୍ନିଛି ନିଜକୁ ।
ଆରେ ଆରେ ଆମ୍ଭେ ଦୁହେଁ ନୋହୁ ତ ମନୁଷ୍ୟ
ଏଠାରେ କିପାଇଁ ଆଉ କରିବାରେ ବାସ ।
ଆସ ଆସ ରାମକୃଷ୍ଣ ! ଦେଶେ ଦେଶେ ଭ୍ରମି
ଉଦ୍ଧାରିବା ଏ ଜଗତେ 'ଛନ୍ତି ଯେତେ ପ୍ରାଣୀ ।"
ହୃଦୁଙ୍କ ଚିତ୍କାର ଶୁଣି ପ୍ରଭୁ ଭାବଗ୍ରାହୀ
ତାଙ୍କୁ କହିଲେ, "ଏପରି ହୁଅନା ରେ ରୁହ ।
ଶାନ୍ତ ହୁଅ ଉଚ୍ଚନାଦ ନ କର ତୁ ଆଉ
ନାଦ ଶୁଣି ଲୋକମାନେ ହେବେ ହାଉ ହାଉ ।

ଦୁର୍ଘଟଣା ତାର ଅବା ହେଲା ଉପସ୍ଥିତ
ହେବୁ ଜାଣିବାକୁ ଲୋକେ ହେବେ ପ୍ରଧାବିତ ।"
ଯେତେ ପ୍ରକାରେ ଶ୍ରୀପ୍ରଭୁ କହିଲେ ଆଶ୍ୱାସି
ଉଡ଼ିଗଲା କଥାଯାକ ହୃଦୁ କର୍ଣ୍ଣେ ପଶି ।
ଖରତରେ ଦେବରାୟେ ଆସି ସନ୍ନିଧାନ
ବକ୍ଷସ୍ଥଳ ସ୍ପର୍ଶି ତାର କହିଲେ ବଚନ ।
"ଜଗତ ଜନନୀ ମା ଲୋ ଭବାନୀ ଶଙ୍କରୀ
ଏହାର ଶକ୍ତି ହରଣ ଦେ ଲୋ ଜଡ କରି ।
ସ୍ପର୍ଶମାତେ ତାର ସେହି ଅପୂର୍ବ ଦର୍ଶନ
କ୍ଷଣମଧ୍ୟେ ମହାଶୂନ୍ୟେ ହୋଇଲା ବିଲୀନ ।
ସ୍ୱାଭାବିକାବସ୍ଥା ହୃଦୁ ପାଇଲେ ଯେମନ୍ତ
ବିଷାଦରେ ପରିପୂର୍ଣ୍ଣ ହେଲା ତାଙ୍କ ଚିତ୍ତ ।
ନିବେଦନ କରି କହିଲେ ମାତୁଳ ସମୀପ
କି କାରଣେ ଦେଲ ମୋତେ ତୁମ୍ଭେ ଅଭିଶାପ ।
"ଆଉ କି ସେ ଦର୍ଶନ ମୋ ଭାଗ୍ୟରେ ଘଟିବ"
ଉତ୍ତରେ କହିଲେ ତହୁଁ ପ୍ରଭୁ ବିଶ୍ୱଦେବ ।
"ଚିରକାଳ ପାଇଁ ଜଡ଼ ରହିଥିବୁ ତୁହି
ଏପରି କଥା ତ କେଭେ କହି ନାହିଁ ମୁହିଁ ।
ଏ ଅବସ୍ଥା ଥିବ ତୋର ବର୍ତ୍ତମାନ ପାଇଁ
ଏହାହିଁ ମୋ କହିବାର ତାତ୍ପର୍ଯ୍ୟ ଅଟଇ ।
ସାମାନ୍ୟ ଦର୍ଶନେ କଲୁ ଏତେ ଗଣ୍ଡଗୋଳ
ଉପାୟ ବାହୁନେ ମୁହିଁ କଲି ଏ କୌଶଳ ।
ଦିନରାତ କେତେ କ'ଣ ଦେଖୁଅଛି ମୁହିଁ
କିଛିମାତ୍ର ଉଚ୍ଚବାଚ୍ୟ ନ କରଇ ତହିଁ ।
ତୋ କାର୍ଯ୍ୟ ନିରେଖି ମୋର ହୁଏ ଅନୁମିତ
କାର୍ଯ୍ୟକାଳ ହୋଇ ନାହିଁ ତୋର ଉପସ୍ଥିତ ।
ଏ ନିମନ୍ତେ ନ କରିବୁ ତୁହି ଆଉ ଖେଦ
ବେଳ ହେଲେ ପାଇବୁ ତୁ ସ୍ୱର୍ଗର ସମ୍ପଦ ।"
ଶ୍ରୀମୁଖ ବଚନ ଶୁଣି ହୃଦୟ ନୀରବ
ମାନସେ ଜାଗ୍ରତ ହେଲା ଅହଂକାର ଭାବ ।
ମନେ ମନେ ସ୍ଥିର କଲେ କୌଣସି ଉପାୟେ
ପୂର୍ବର ଅବସ୍ଥା ଲାଭ କରିବି ନିଶ୍ଚୟେ ।
ଏସନେ ପୋଷିଣ ଚିତ୍ତେ ସୁଦୃଢ଼ କାମନା
ଆରମ୍ଭିଲେ ଜପତପ ଧ୍ୟାନ ଧାରଣା ।
ପଞ୍ଚବଟୀ ମୂଳେ ଜପ କରିଣ ମାତୁଳ
ଲଭିଛନ୍ତି ଅମାନୁଷ ଶକତି ସକଳ ।
ତାଙ୍କର ଆସନେ ବସି ଜପ କଲେ ମୁହିଁ
ଅନାୟାସଲବ୍ଧ ହେବ ସିଦ୍ଧକାମ ତହିଁ ।
ଏମନ୍ତ କରିଣ ସ୍ଥିର ଘୋର ନିଶାକାଳେ
ଉପସ୍ଥିତ ହେଲେ ସେନେ ପଞ୍ଚବଟୀ ମୂଳେ ।
ମାତୁଳ ଆସନେ ଅନୁରାଗେ ଉପବେଶି
ଧ୍ୟାନେ ମଗ୍ନ ହେଲେ ତହିଁ ମାନସ ନିବେଶି ।
ଏକାଳେ ଶ୍ରୀଦେବରାୟ କରୁଣାସାଗର
ଗୃହ ତେଜି ସେ ଦିଗକୁ ହେଲେ ଅଗ୍ରସର ।
କିୟଦ୍ଦୂର ଗମିଲାରୁ ଶୁଣିଲେ ଚିତ୍କାର
କାତରେ ଡାକଇ ହୃଦୁ ତାଙ୍କୁ ବାରମ୍ବାର ।
"ମାମୁଁ ! ମାମୁଁ ! କାହିଁ ଅଛ, ଆସ ବେଗେ ଧାଇଁ
ଏଠାରେ ଯେ ପୋଡିମଲି ଜୀବନରେ ମୁହିଁ ।"
ଭଣଜାର ସକରୁଣ ଚିତ୍କାର ଶୁଣିଣ
ପାଶେ ଯାଇ ଦେବରାୟ ପୁଚ୍ଛିଲେ କାରଣ ।
"ଆରେ ହୃଦୁ ! କିମ୍ପାଇ ତୁ ହେଉଛୁ ଏପରି
କିସ ହେଲା ତୋର ଏଠି କହ ବେଗେ କରି ।"
ଉତ୍ତରେ କହିଲେ ହୃଦୁ କାତରେ ବଚନ
"ଅସହ୍ୟ ଯାତନା ପ୍ରାଣେ କି କହିବି ଆନ ।
ଧ୍ୟାନ ପାଇଁ ଏ ଆସନେ ବସିଗଲି ମାତ୍ରେ
କେ ଯେସନ୍ତେ ପଲମେ ନିଆଁ ଢାଳିଦେଲା ଗାତ୍ରେ ।
ଦାହିକା ଯନ୍ତ୍ରଣା ମୋର ଅଙ୍ଗେ ଗୁରୁତର
ତୁରନ୍ତ ଏଥିର ତୁମ୍ଭେ କର ପ୍ରତିକାର ।"
ତହୁଁ ପ୍ରଭୁ ଦେବରାୟ କରୁଣା ନିଧାନ
ଆଶ୍ୱାସନା କଲେ ଅଙ୍ଗେ ହାତ ବୁଲାଇଣ ।
"ଭାବନା ନ କର ଆଉ, ପୀଡ଼ା ହେବ ଦୂର
କଥା ଏଡ଼ି କାର୍ଯ୍ୟ କରୁ କିମ୍ପା ଏ ପ୍ରକାର ।
ବାରମ୍ବାର କହିଅଛି ପୂରୁବେ ମୁଁ ତୋତେ
ମୋ ସେବା କଲେକ ମୁକ୍ତି ଲଭିବୁ ନିଶ୍ଚିତେ ।"
ଏସନ କହିଣ ତାକୁ ସ୍ପର୍ଶକଲା ମାତେ
ପୀଡ଼ା ଦୂର ହୋଇ ମହା ଶାନ୍ତି ଜାତ ଗାତେ ।
ତଦନ୍ତେ ହେଲା ହୃଦୁର ସୁଦୃଢ଼ ଧାରଣା
ଅନ୍ୟଗତି ନାହିଁ ମୋର ମାମୁଁ ସେବା ବିନା ।
ପ୍ରଭୁଙ୍କର ହିତ ବାଣୀ ଧରି ନିଜ ଶିରେ
ସେବା ଆରମ୍ଭିଲେ ଦୃଢ଼ ଭକ୍ତି ସହକାରେ ।
ଏ ଭାବେ କିଞ୍ଚିତ କାଳ ହୋଇଗଲା ଅତୀତ
ଅନ୍ୟ ଏକ ଭାବ ପୁଣି ଚିତ୍ତେ ସମୁଦିତ ।

ଶାରଦୀୟ ଦୁର୍ଗୋତ୍ସବ ଦେଖି ଆଗମନ
ଦେବୀ ଗଢ଼ି ପୂଜା ପାଇଁ ହୃଦୁ କଲେ ମନ ।
ଷୋଡ଼ଶୋପଚାରେ ହେବ ଦେବୀଙ୍କର ପୂଜା ।
ମନୋଭାବ ଜ୍ଞାତ କଲେ ମାମୁଙ୍କୁ ଭଣଜା ।
ଅଭିଳାଷ ଜାଣିପାରି ପ୍ରଭୁ ନରହରି
ଶୁଭ କାର୍ଯ୍ୟେ ପ୍ରକାଶିଲେ ସମ୍ମତି ତାଙ୍କରି ।
ମାମୁଁଙ୍କ ଆଦେଶ ପାଇ ହୃଦୁ ଆନନ୍ଦିତ
ମଥୁରଙ୍କ ପାଶେ ଗଲେ ସାହାଯ୍ୟ ନିମିତ୍ତ ।
ଯଥାସାଧ୍ୟ ଅର୍ଥଦାନ କରିଣ ମଥୁର
ହୃଦୁଙ୍କୁ କହିଲେ "ଶୁଣ ଅନୁରୋଧ ମୋର
ମୋ ଗୃହରେ ଦୁର୍ଗୋତ୍ସବ ତୁମ୍ଭଙ୍କୁ ତ ଜଣା
ଅସମ୍ପୂର୍ଣ୍ଣ ହେବ ପୂଜା ପ୍ରଭୁଦେବ ବିନା ।
ଏଥିପାଇଁ ତାଙ୍କୁ ମୁହିଁ କୌଣସି ପ୍ରକାରେ
ଛାଡ଼ି ନ ପାରିବି ଗ୍ରାମେ ତୁମ୍ଭ ସହିତରେ ।"
ମଥୁର ବଚନ ଶୁଣି ହୃଦୟ ବିଷଣ୍ଣ
ସ୍ଥିର କଲେ ଗ୍ରାମେ ଏକା କରିବେ ଗମନ ।
ହୃଦୁଙ୍କୁ ବିଷଣ୍ଣ ଦେଖି ପ୍ରଭୁ ଗୁଣନିଧି
ଆଶ୍ୱାସିଣ କହିଲେକ ତାହାଙ୍କୁ ସମ୍ବୋଧି ।
"ବିଷଣ୍ଣ ହୁଅନା ଶୁଣି ମଥୁର ବଚନେ
ସୂକ୍ଷ୍ମ ଦେହେ ଯିବି ତୋର ପୂଜା ଦରଶନେ ।
ତୋ ବିନୁ ସେଠାରେ ଅନ୍ୟ କେହୁଣସି ପ୍ରାଣୀ
ମୋର ଉପସ୍ଥିତି କଥା ନ ପାରିବେ ଜାଣି ।
ତନ୍ତ୍ରଧାରକ ରଖିଣ ଅନ୍ୟ ବିପ୍ର ଜଣେ
ଆପଣା ଗୃହରେ ପୂଜା କରିବୁ ଆପଣେ ।
ଏକାବେଳେ ଉପବାସୀ କେଭେ ନ ରହିବୁ
ଗଙ୍ଗା ଜଳ ମିଶ୍ରିପଣା ମଧ୍ୟାହ୍ନେ ପିଇବୁ ।
ଏ ପ୍ରକାରେ କଲେ ତୁହି ଦେବୀଙ୍କ ଅର୍ଚ୍ଚନ
ଜଗତ ଜନନୀ ପୂଜା କରିବେ ଗ୍ରହଣ ।"
ଦେବୀଙ୍କ ପ୍ରତିମା କିଏ କରିବ ତିଆରି
ଆଣିବେ ତନ୍ତ୍ରଧାରକେ କାହାକୁ ସେ ବରି ।

ଆଦର ଯାହା କି ଦେଖି ପୂଜାର ବିଧାନ
ବୁଝାଇଲେ ତନ୍ନ ତନ୍ନ ପ୍ରଭୁ ନାରାୟଣ ।
ଏମନ୍ତେ ଆଦିଷ୍ଟ ହୋଇ ହୃଦୟ ଠାକୁର
ତୋଷମନେ ନିଜ ଗ୍ରାମେ ହୋଇଲେ ବାହାର ।
ମାତୁଳଙ୍କ ହିତ ବାଣୀ ଶିରୋଧାର୍ଯ୍ୟ କରି
ସେହିମତେ ପୂଜିବାକୁ ହେଲେ କାର୍ଯ୍ୟକାରୀ ।
ଦେବୀଙ୍କ ବୋଧନ ଆଦି ଯେତେ କର୍ମମାନ
ଷଷ୍ଠୀ ଦିନ ଯଥାବିଧି ହୋଇଲା ସମ୍ପନ୍ନ ।
ବିହିତ ସପ୍ତମୀ ପୂଜା ଶେଷ ହେଲା ବେଳେ
ପ୍ରଭୁଙ୍କର ଜ୍ୟୋତିର୍ମୟ ରୂପ ସେ ଦେଖିଲେ ।
ଭାବାବିଷ୍ଟ ହୋଇ ପ୍ରଭୁ କରୁଣାସାଗର
ଠିଆ ହୋଇଛନ୍ତି ଦେବୀ ପ୍ରତିମା ପାଖର ।
ହୃଦୁ ବୋଲେ ମାମୁଁଙ୍କୁ ସେ ଜ୍ୟୋତିର୍ମୟ ରୂପେ
ପ୍ରତ୍ୟକ୍ଷ ଦର୍ଶନ କଲେ ଦେବୀଙ୍କ ସମୀପେ ।
ଅଷ୍ଟମୀ ନବମୀ ସନ୍ଧିପୂଜା ଏ ପ୍ରକାରେ
ନିର୍ବିଘ୍ନେ ସମ୍ପନ୍ନ ହେଲା ପ୍ରଭୁଙ୍କ କୃପାରେ ।
ଏଥିଅନ୍ତେ ବାହୁଡ଼ିଣ ହୃଦୟ ଠାକୁର
ମାତୁଳଙ୍କୁ ନିବେଦିଲେ ସମସ୍ତ ବ୍ୟାପାର ।
ଉତ୍ତରେ କହିଲେ ପ୍ରଭୁ ଭକତବତ୍ସଳ
"ପୂଜା ଦେଖିବାକୁ ମନ ହେଲାଖି ବ୍ୟାକୁଳ,
ଭାବାବେଶେ ଦିବ୍ୟ ଦେହ କରିଣ ଧାରଣ
ଜ୍ୟୋତିର୍ମାର୍ଗେ ପ୍ରବେଶିଲି ଦେବୀ ସନ୍ନିଧାନ ।
ଦେବୀଙ୍କ ସମୀପେ ରହି ଅର୍ଚ୍ଚନ ଆରତି
ଦେଖିଲି ସମସ୍ତ କାର୍ଯ୍ୟ ତୋଷ ହୋଇ ଅତି ।"
ପୂଜା ସାଙ୍ଗ କରି ଏବେ ହୃଦୟ ଠାକୁର
ସେବା କାର୍ଯ୍ୟେ ରତ ହେଲେ ପୂର୍ବେ ଯେ ପ୍ରକାର ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣେ କୀର୍ତ୍ତନେ ହେବେ ଭବ ନଦୀ ପାର ।
ବୋଲ ଆଉ ଭଜ ମନ ! ଚରଣ କମଳ
ଏଡ଼ିବାକୁ ଇଚ୍ଛାଥିଲେ ଭବ-ମାୟାଜାଳ ।

---

## ଊନବିଂଶ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କର ଭ୍ରାତୁଷ୍ପୁତ୍ର ଅକ୍ଷୟକୁମାରଙ୍କ ବିୟୋଗ

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।

ଜୟ ଜୟ ରାମକୃଷ୍ଣ ଅନାଦି କାରଣ
ପତିତପାବନ ହରି ବ୍ରହ୍ମ ସନାତନ ।

ପ୍ରଭୁଙ୍କର ଭ୍ରାତୃଷ୍ପୁତ୍ର ଅକ୍ଷୟକୁମାର
ଆଶୈଶବୁଁ ମାତା ଯାଙ୍କ ଗଲେ ସ୍ୱର୍ଗପୁର ।
ଚନ୍ଦ୍ରାଦେବୀଙ୍କ ଯତ୍ନରେ ମାତୃହୀନ ଶିଶୁ
ଦିନୁଦିନ ବୃଦ୍ଧିପ୍ରାପ୍ତ ଯେସନେ ସୁଧାଂଶୁ ।
ସୁନ୍ଦର ସୁଠାମ ରୂପ ମନୋମୋହକର
ଦେଖିଲେହିଁ ମନେହୁଏ ଯେସନେ ମହେଶ୍ୱର ।
ବାଲ୍ୟକାଳୁଁ ଦେବ ପାଦେ ଥିଲା ତାଙ୍କ ମତି
ଶ୍ରୀରାମଚନ୍ଦ୍ରଙ୍କଠାରେ ବିଶେଷ ଭକତି ।
କୁଳଦଅଁ ରଘୁବୀରେ ପୂଜନ୍ତି ନିତ
ନିତ୍ୟ ନିତ୍ୟ ଯାପିଲେ ସେ ସମସ୍ତ ବହୁତ ।
କୈଶୋର ବୟସେ ଏବେ ପଦାର୍ପଣ କରି
ଭରଣପୋଷଣ ପାଇଁ ଚିନ୍ତେ ଚିନ୍ତା ଭରି ।
କର୍ମାନୁସନ୍ଧାନ ହେତୁ ସ୍ୱଗ୍ରାମ ତେଜିଣ
ଅଇଲେ ଦକ୍ଷିଣେଶ୍ୱରେ ପ୍ରଭୁ ସନ୍ନିଧାନ ।
ହୃଦୟରେ ପୋଷିଥିଲେ ଯଥା ଅଭିଳାଷ
କାର୍ଯ୍ୟ ମଧ୍ୟ ଖଞ୍ଜିଦେଲେ ତଥା ପରମେଶ ।
ରାଧାଗୋବିନ୍ଦ ଜୀଉଙ୍କ ପୂଜକ ପଦରେ
ନିଯୁକ୍ତ ହୋଇଲେ ରାମତାରକଙ୍କ ପରେ ।
ପୂଜା କରିବା ସମୟେ ଏମନ୍ତ ତନ୍ମୟ
ଭୁଲିଯାନ୍ତି ଏକାବେଳେ ବାହ୍ୟିକ ବିଷୟ ।
ଆତଯାତ ହେଉଥାନ୍ତି ଲୋକସଂଖ୍ୟାତୀତ
ତା ପ୍ରତି ନ ଥାଏ ଲକ୍ଷ୍ୟ ତାଙ୍କର କିଞ୍ଚିତ ।
ଦୁଇତିନି ଘଣ୍ଟାକାଳ ତନ୍ମୟ ରହିଣ
ପୂଜା ଆରମ୍ଭନ୍ତି ପୁନଃ ହେଲେ ବାହ୍ୟଜ୍ଞାନ ।
ବିଷ୍ଣୁଙ୍କ ପୂଜା ସମ୍ପନ୍ନ କରିଣ ଏମନ୍ତେ
ପଞ୍ଚବଟୀ ମୂଳେ ଶିବ ଅର୍ଚ୍ଚନ୍ତି ତଦନ୍ତେ ।
ନିତ୍ୟକର୍ମ ପୂଜାପୂଜି ହୋଇଗଲେ ଶେଷ
ନିଜ ଭୋଜ୍ୟ ପାକେ ନିୟୋଜନ୍ତି ସେ ମାନସ ।
ଆହାରାନ୍ତ ବଢ଼ାଇଣ ଦ୍ୱିଜ ଅପରାହ୍ନେ
ଭାଗବତ ପାଠେ ନିବସନ୍ତି ଏକ ମନେ ।
ଅନୁରାଗ କ୍ରମେ କ୍ରମେ ହୋଇ ବୃଦ୍ଧିପ୍ରାପ୍ତ
ତାଳୁଦେଶୁ ମଧ୍ୟେ ମଧ୍ୟେ ଝରଇ ଶୋଣିତ ।
ଅକ୍ଷୟଙ୍କ ଦୃଢ଼ ଭକ୍ତି ବିଶ୍ୱାସ ଦର୍ଶନେ
ଆନନ୍ଦିତ ହେଲେ ଅତି ପ୍ରଭୁ ମନେ ମନେ ।
ଦୁଇତିନି ବର୍ଷ ହେଲା ଏମନ୍ତେ ଅତୀତ
ଗତିବିଧି ଦେଖି ରାମେଶ୍ୱର ସଶଙ୍କିତ ।

ପରିଣୟ ସୂତ୍ରେ ତାଙ୍କୁ ଆବଦ୍ଧ କାରଣ
ବିଭିନ୍ନ ସ୍ଥାନରେ କଲେ ପାତ୍ରୀ ଅନ୍ୱେଷଣ ।
କାମାରପୁକୁର ପୂତ ଗ୍ରାମର ସନ୍ନିଧ
ଉପଯୁକ୍ତା ପାତ୍ରୀ ପାଇ ସ୍ଥାପିଲେ ସମ୍ବନ୍ଧ ।
ବାରଶତ ପଞ୍ଚତ୍ରିଶ ସାଲ ବଇଶାଖେ
ପରିଣୟ କାର୍ଯ୍ୟ ଶେଷ ହେଲା ଦୁଃଖେସୁଖେ ।
ତଦନ୍ତେ ଅକ୍ଷୟ ଚନ୍ଦ୍ର କାର୍ଯ୍ୟାନୁବନ୍ଧନେ
ଆଗମିଲେ ତାହାଙ୍କର ଶ୍ୱଶୁର ଭବନେ ।
ସେଠାରେ ଆକ୍ରାନ୍ତ ଏକ ଉତ୍କଟ ରୋଗରେ
ଶୁଭଫଳ ହେଲା ନାହିଁ କିଛି ଚିକିତ୍ସାରେ ।
ଏସନ ସମ୍ବାଦ ପାଇ ଦ୍ୱିଜ ରାମେଶ୍ୱର
ଚିକିତ୍ସାର୍ଥେ ଅଣାଇଲେ ଗ୍ରାମକୁ ତାଙ୍କର ।
ବହୁତ ଚିକିତ୍ସା ଦ୍ୱାରା ଆରୋଗ୍ୟ କରାଇ
ପୁନଶ୍ଚ ଦକ୍ଷିଣେଶ୍ୱରେ ଦେଲେକ ପଠାଇ ।
ଏଠାରେ କ୍ରମଶଃ ହେଲା ସ୍ୱାସ୍ଥ୍ୟର ଉନ୍ନତି
ଦଇବ ଶାସନେ ସଦା ବିପରୀତ ନୀତି ।
ଅକ୍ଷୟ ସହସା ଦିନେ ଜ୍ୱରରେ ଆକ୍ରାନ୍ତ
ତାହା ଦେଖି ଦେବରାୟେ ଉଦ୍‌ବିଗ୍ନ ଅତ୍ୟନ୍ତ ।
ଡାକତର କବିରାଜ ଯାକୁ ଦେଖାଇଲେ
ସାଧାରଣ ଜ୍ୱର ବୋଲି ସରବେ ଭାଷିଲେ ।
ହୃଦୁଙ୍କୁ କହିଲେ ଡାକି ପ୍ରଭୁ ଶ୍ରୀଠାକୁର
"କଦାପି ନୁହଇ ଏହା ସାଧାରଣ ଜ୍ୱର ।
ଯେତେ ଦୂର ହେଉଅଛି ମୋର ଅନୁମାନ ।
ତାଠି ଦେଖା ଗଲାଣି ତ ବିକାର ଲକ୍ଷଣ ।
ପୁଣି ଯେଉଁ କନ୍ୟାଟିକୁ ବିଭା କରିଥାଇ
ରାକ୍ଷସଗଣବିଶିଷ୍ଟା ସେ ନାରୀ ଅଟଇ ।
ଅଶୁଭ ଲକ୍ଷଣମାନ ସମସ୍ତ ପ୍ରକାଶ
ଭଲ ଚିକିତ୍ସା କରାଇ ମେଣ୍ଟି ନିଅ ଆଶ ।"
ହୃଦୟ କହିଲେ ତହୁଁ ମାମୁଁ କଥା ଶୁଣି
ଶ୍ରୀମୁଖୁଁ ବାହାରେ କିମ୍ପା ଏ ଅଶୁଭ ବାଣୀ
ଉତ୍ତରେ କହିଲେ ତହୁଁ ପ୍ରଭୁ ଶ୍ରୀଠାକୁର
"ଏ କଥା ମୁଁ କହୁ ନାହିଁ ସ୍ୱଇଚ୍ଛାରେ ମୋର ।
ଜାଣୁନୁ କି ହୃଦୁ ! ରୁହ ମୋର ଅଭିଳାଷ
ଆରୋଗ୍ୟ ନ ହୋଇ ସେହୁ ପ୍ରାଣେ ଯାଉ ନାଶ ।
କି କରିବ ଆରେ ହୃଦୁ ! ମୋର ବଶ ନାହିଁ
ଯାହା ବୋଲାଇଲେ ଦେବୀ ତା କହିଲି ମୁହିଁ ।"

ହୃଦୟ ଉଦ୍‌ବିଗ୍ନ ଶୁଣି ଶ୍ରୀମୁଖ ବଚନ
ଭଲ ଚିକିତ୍ସା ନିମନ୍ତେ କଲେ ଆୟୋଜନ ।
ନାନା ସ୍ଥାନୁଁ ଚିକିତ୍ସକ ଆଣିଣ ତୁରନ୍ତ
ସୁଚିକିତ୍ସା କରାଇଲେ ଯାବୁ ପରିଯନ୍ତ ।
ବିଫଳ ହୋଇଲା ସବୁ ପରିଶ୍ରମ ତାର
ଊଣା ନ ପଡ଼ିଲା ବ୍ୟାଧି କିଞ୍ଚିତ ମାତର ।
ଉତ୍ତର ଉତ୍ତର ତାହା ହୋଇଣ ବର୍ଦ୍ଧିତ
ଅନ୍ତିମ ସମୟ କ୍ରମେ ହେଲା ଉପସ୍ଥିତ ।
ଏହା ଜାଣି ଅନ୍ତର୍ଯାମୀ ପ୍ରଭୁ ନରହରି
ଅକ୍ଷୟେ କହିଲେ ଶଯ୍ୟା ପାଶେ ବସି କରି ।
କହ ଅକ୍ଷୟ ! "ଓଁ, ରାମ, ଗଙ୍ଗା, ନାରାୟଣ,"
ଯେତେ ଥର ପାରୁ ଆରେ କର ଉଚ୍ଚାରଣ ।
ଆବୃତ୍ତି କରିଣ ଏହା ମାତ୍ର ତିନିବାର
ମହାନିଦ୍ରାରେ ଶାୟିତ ଅକ୍ଷୟକୁମାର ।
ଶୋକତପ୍ତ ଚିତ୍ତେ ହୃଦୁ ବହୁତ କାନ୍ଦିଲେ
ଭାବାବେଶେ କଳ୍ପ ଦେବ ଉଚ୍ଚେ ହାସ୍ୟ କଲେ ।
ସ୍ଥିର ହୋଇ ବାସ୍ତୁମନ ! ଶୁଣ ସାବଧାନେ
କି ଗୂଢ଼ ରହସ୍ୟ ବିପରୀତ ଆଚରଣେ ।
ଶ୍ରୀ ପ୍ରଭୁ କହିଲେ, "ଶଯ୍ୟାପାଶେ ଠିଆହୋଇ
ଦେହାନ୍ତର ହେବା ଦୃଶ୍ୟ ତହିଁ ଦେଖିଲଇଁ ।
ମନେ ହେଲା ତରବାରି ଖୋଲ ମଧ୍ୟେ ଥିଲା
ସହସା ସଜୋରେ ତାକୁ କେହି କାଢ଼ି ନେଲା ।
ତରବାରି ଗ୍ରୁରେ ତାହା ରହିଲା ତଦ୍‌ବତ
ଉନ୍ମୁକ୍ତାନେ ଭୂମେ ଖୋଲ ହେଲା ନିପତିତ ।
ଭାବାବେଶେ କଲି ଯଦା ଏହା ଦରଶନ
ମହୋଲ୍ଲାସେ ଉତ୍‌ଫୁଲ୍ଲିତ ହେଲା ମୋର ମନ ।
ଆନନ୍ଦେ ନାଚିଲି କେତେ ଗୀତ ଗାଇ ଗାଇ
ଆବର ହସିଲି ଯେତେ ସୀମା ତାର ନାହିଁ ।"
ଭାବାବେଶ ଭାଙ୍ଗିଯାଇ ଯେବେ ନାରାୟଣ
ସାଧାରଣ ଅବସ୍ଥାକୁ କଲେ ଆଗମନ ।
ଅକ୍ଷୟ ବିୟୋଗ ପାଇଁ ହୃଦୟେ ତାଙ୍କର
ଶୋକର ପ୍ରଭାବ କ୍ରମେ କଲାକ ବିସ୍ତାର ।
ଜଗଦମ୍ବାଙ୍କୁ ସୁମରି କହିଲେ ଶ୍ରୀହରି
"ଆଶ୍ଚର୍ଯ୍ୟ ମଣୁଛୁ ମା ଲୋ ମାୟାକୁ ତୋହର ।
ଲଜ୍ଜା ନିବାରଣ ପାଇଁ ଯେ ବସ୍ତ୍ର ପିନ୍ଧୁଛୁ
କେଉଁଠି ପଡ଼ୁଛୁ ତାହା, ଅସ୍ତୁ ନାହିଁ କିଛୁ ।
ଭ୍ରାତୃଷ୍ପୁତ୍ର ସଙ୍ଗେ କେତେ ଦିନ ବା ସମ୍ବନ୍ଧ
ତା ମାୟା ନ ଏଡ଼ି ପାରି ଶୋକେ ହେଲି ଅନ୍ଧ ।
ଯେତେବେଳେ ଏତେ ଶୋକ ଅନୁଭୂତ ମୋର
କି ଦୁଃଖ ନ ହେଉଥିବ ଗୃହସ୍ଥଜନଙ୍କର ।
ତୋହର କୃପାରେ ମାତଃ ! ଦେଖିଲି ସକଳ
ଏ ଭବ ସଂସାର ଘୋର ମାୟାମୋହ ଖେଳ ।
ତୋତେ ଧରି ଯେତୁ ଏହି ସଂସାରେ ଭ୍ରମଇ
ଶୋକେ ପଡ଼ିଲେହେଁ କେବେ କାତର ନୁହଇ ।"
ସଂସାରର ଅନିତ୍ୟତା ସମ୍ବନ୍ଧେ ଶ୍ରୀଦେବ
ଯା କହିଲେ ଶୁଣ ସେହି ଅମୂଲ୍ୟ ବିଭବ ।
"କେତେ ଦିନ ପାଇଁ ଅବା ଭବେ ଆଗମନ
ପୁତ୍ରପୌତ୍ରାଦି ସମ୍ବନ୍ଧ ଅବା କେତେ ଦିନ ।
ସୁଖ ଲୋଭେ ଆଶେ ପ୍ରାଣୀ କରଇ ସଂସାର
କଳ୍ପନାକଳ୍ପନା କେତେ ମାନସ ମଧ୍ୟର ।
ବହୁଶ୍ରମ କରି ସୁଖସମ୍ଭୋଗ ଆଶାରେ
ପୁତ୍ର କନ୍ୟା ମୁଖ ଦେଖି ଆନନ୍ଦ ଚିତ୍ତରେ ।
ପଢ଼ାଶୁଣା କରି ସେହି ହେଲାରୁ ମନୁଷ୍ୟ
ବିବାହ ଦେଇଣ ତାଙ୍କୁ ଭୁଞ୍ଜିଲେ ଉଲ୍ଲାସ ।
ମନେକଲେ ଏ ସଂସାର ସୁଖର ଆଗାର
କିଛୁକାଳ କଟିଗଲା ସୁଖେ ଏ ପ୍ରକାର ।
ତା ପରେ ନାତିନାତୁଣୀ ହୋଇଲେ ଜନମ
କାର ଜ୍ୱର, କାର କାଶ, ସଙ୍କଟ ବିଷମ ।
ଶତ ଚେଷ୍ଟା ସତ୍ତ୍ୱେ କେହି ଗଲା ଯମପୁରେ
ଅମନୁଷ୍ୟ ହୋଇ କେହି ଭ୍ରମିଲା ଦାଣ୍ଡରେ ।
ଆଜି ମଲା ବଡ଼ ପୁଅ, କାଲି ମଲା ନାତି
ଭାବନା ଚିନ୍ତାରେ ବ୍ୟତିବ୍ୟସ୍ତ ଦିନରାତି ।
ସଂସାରର ଅନିତ୍ୟତା ତଦା ବୁଝିପାରି
ଆପଣା କର୍ମକୁ ଆପେ ନିନ୍ଦଇ ଧିକ୍‌କାରି ।
ଜ୍ଞାନତ ହୋଇଲେ ଆଉ ନ ଥାଏ ଉପାୟ
କେବଳ ଥାଉଁ ଥାଉଁ ଘେନ ଶ୍ରୀପଦେ ଆଶ୍ରୟ ।"
ଅକ୍ଷୟ ବିୟୋଗ ପରେ ମଥୁର ମୋହନ
ଜମିଦାରୀ ପ୍ରଦର୍ଶନେ କଲେକ ମନନ ।
ରାଣାଘାଟେ ନବ କୋଠୀ ହୋଇଛୁ ନିର୍ମିତ
ତହିଁ ଯିବା ଦିନ ଆସି ହେଲା ଉପସ୍ଥିତ ।
ଅକ୍ଷୟ ବିୟୋଗେ ଶୋକାତୁର ଶ୍ରୀଠାକୁର
ସ୍ଥାନ ପରିବର୍ତ୍ତନରେ ଦୁଃଖ ହେବ ଦୂର ।

ଏହା ଶୁଣି ଶ୍ରୀମଥୁର ଯାଇ ତାଙ୍କ ପାଶେ
ଅନୁରୋଧ କଲେ ସଙ୍ଗେ ଗମନ ସକାଶେ ।
ଭକ୍ତର ପ୍ରାର୍ଥନା ଶୁଣି ପ୍ରଭୁ ଭବନାଥ
ତାଙ୍କ ସଙ୍ଗେ ଯିବା ପାଇଁ ହୋଇଲେ ସମ୍ମତ ।
ଏଥିରେ ମଥୁର ଚିତ୍ତେ ଅପାର ଆନନ୍ଦ
ସାଥୀ ହେବେ ପ୍ରାଣାରାମ ପ୍ରଭୁ ଶ୍ରୀଗୋବିନ୍ଦ ।
ଜୟ ଜୟ କୃପାନିଧି ଦୀନଜନାଶ୍ରୟ
କୋଠିରେ କି କାଣ୍ଡ ହେଲା ଶୁଣ ସେ ବିଷୟ ।
କଲ୍ୟାଣ-ନିଧାନ କଥା ମଧୁର ଆଖ୍ୟାନ
ଶ୍ରବଣେ ଶାନ୍ତିନେ ସର୍ବ ଦୁଃଖ ବିମୋଚନ ।
ରାଣାଘାଟ ସନ୍ନିକଟେ ଥିଲା ଏକ ଗ୍ରାମ
କାଲାଇ ଘାଟ ଅଟଇ ଯାହାର କି ନାମ ।
ସେଠାରେ ଅଛଇ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର
ବସବାସ ଯହିଁ ବହୁ ଦୀନଜନଙ୍କର ।
ପତର କୁଟୀରମାନ ଶୋଚନୀୟ ଅତି
ତରୁତଳେ ବାସ କରି କଟାନ୍ତି ସେ ରାତି ।
ଅନଶନେ ଜୀର୍ଣ୍ଣଶୀର୍ଣ୍ଣ ରୁଗ୍ଣ କଳେବର
ପଞ୍ଜରାର ଅସ୍ଥି ଗଣି ହୁଏ ଅକ୍ଳେଶର ।
ଶତ ଗ୍ରନ୍ଥିଯୁକ୍ତ କ୍ଷୁଦ୍ର ମଳିନ ବସନ
ଯାହା ପିନ୍ଧି କରନ୍ତି ସେ ଲଜ୍ଜା ନିବାରଣ ।
ମୂର୍ତ୍ତିମତୀ ଦରିଦ୍ରତା ସ୍ୱରୂପ ଦର୍ଶନେ
ଅତି ବ୍ୟଥା ପାଇଲେକ ଦେବରାୟ ମନେ ।
ଶ୍ୟାମାଙ୍କୁ କହିଲେ ନାଥ ଜଗତ ଗୋସାଇଁ
"ଯାଙ୍କ ରୂପେ ଦୀନ ଦୁଃଖୀ କାହିଁ ନ ଦେଖଇ ।
ତୁମ୍ଭେ ମାତ, ଜଗଦ୍ଧାତ୍ରୀ ତୁମ୍ଭର ଏ ରାଜ୍ୟେ
ଏଭଳି ଦୁଃଖୀଙ୍କ ବାସ ତୁମ୍ଭଙ୍କ କି ସାଜେ ?
ବୁଝି ନ ପାରଇ ତବ କାର୍ଯ୍ୟର ମରମ
କେ ଖାଏ କ୍ଷୀର ଖେଚଡ଼ି, ଅଭୁକ୍ତ କେ ପୁଣ !
ତ୍ରିଲୋକ-ଈଶ୍ୱରୀ ତୁମ୍ଭେ ସଭିଙ୍କ ଜନନୀ
ତୁମ୍ଭର ଏ ଭେଦ ନୀତି କମାଇ ଭବାନୀ ?"
ଦୀନ-ସଖା ଦେବରାଜ ଦୁଃଖୀ ପ୍ରାଣଧନ
ଅହେତୁକ କୃପାସିନ୍ଧୁ ଦାରିଦ୍ର୍ୟ ଭଞ୍ଜନ ।
ଅନାଥଜନଙ୍କ ନାଥ ଦୟାର୍ଦ୍ର ଅନ୍ତରେ
ସସ୍ନେହେ କହିଲେ ତାକ ଭକତ ମଥୁରେ ।
"ଏମାନଙ୍କ ସମ ଦୁଃଖୀ କାହିଁ ନ ଦେଖଇଁ
ଅନ୍ନଦାନ କର ଯାଙ୍କୁ ଉଦର ପୁରାଇ ।
ପିନ୍ଧିବାକୁ ଦିଅ ବସ୍ତ୍ର ଜଣ୍ଡିଏ ଲେଖାଏଁ
ଦାରିଦ୍ର୍ୟ ମୋଚନ କର ସାଧ୍ୟେ ଯାହା ହୁଏ ।
ଏଭଳି କାଙ୍ଗାଳ ଜନପୁରେ ଦେଖା ନାହିଁ"
କହୁ କହୁ ବାରିଧାର ନେତ୍ରୁ ଗଲା ବହି ।
ଜୟ ଜୟ ଦୀନନାଥ କାଙ୍ଗାଳ ଠାକୁର
ଯାଙ୍କ ପଦେ ଏତେ ଦୟା ତାଙ୍କୁ ନମସ୍କାର ।
ଭୁବନମୋହନ ହରି ଯା ପଦ ସଦୟ
ସାର୍ଥକ ଜୀବନ ତାର ଧନ୍ୟ ନର-କାୟ ।
କେ କହେ କାଙ୍ଗାଳ ଯାଙ୍କୁ ଏ ଯେ ଭାଗ୍ୟବାନ
ଯାହାଙ୍କ ଦୁଃଖେ କାତର ପ୍ରଭୁ ଭଗବାନ ।
ଦୀନନାଥ ପ୍ରଭୁଙ୍କର ଦର୍ଶନ ନିମିତ୍ତ
ଧରାତଳେ ଦୀନକୁଳେ ହୋଇଛନ୍ତି ଜାତ ।
ଦେଖିବେ,ନେତ୍ର ପୁରାଇ ଅଭୟ ଶ୍ରୀପଦ
ତେଣୁ ଏ ପ୍ରାନ୍ତରେ ବାସ ତେଜି ଜନପଦ ।
ଦ୍ୱାରଦେଶେ ଦିନେ ସ୍ୱୟଂ ପ୍ରଭୁ ନରହରି
ପୂର୍ଣ୍ଣ ଆଶା, ଆଜି ପୁଣ୍ୟ ଦରଶନ କରି ।
ଯେତେବେଳେ ଯାହା ଆଜ୍ଞା ହୁଏ ମଥୁରଙ୍କୁ
ନିରତେ ତତ୍ପର ଥାନ୍ତି ତାହା ପାଳିବାକୁ ।
ଏଥରକ କିନ୍ତୁ ହେଲା ତାର ବ୍ୟତିକ୍ରମ
କେ ବୁଝିବ ତବ ଲୀଳା ପ୍ରଭୋ ଆତ୍ମାରାମ !
ପ୍ରଭୁଙ୍କ ଆଦେଶ ଶୁଣି କହିଲେ ମଥୁର
"ହେ ପ୍ରଭୋ ! ସତତ ତବ ଦୟାର୍ଦ୍ର ଅନ୍ତର ।
ଦୀନ ଦୁଃଖୀ ଦର୍ଶନରେ ଦ୍ରବୀଭୂତ ହୃଦୟ
କେଉଁଠୁ ଆସିବ ଅର୍ଥ ନ ଜାଣଇ ଦୟା ।
ଏ ସ୍ଥାନେ ଅଛନ୍ତି ଯେତେ ଦୀନ ଦୁଃଖୀ ଜନ
ଅନ୍ନ ବସ୍ତ୍ର ଦାନେ ବହୁ ଅର୍ଥ ପ୍ରୟୋଜନ ।
କେଉଁଠୁ କିପରି ଅର୍ଥ ଆସଇ ହସ୍ତକୁ
ସେ ଖବର ଜଣା ନାହିଁ କିଛି ଆପଣଙ୍କୁ ।
ସେ କାରଣେ ଆଜ୍ଞା ଦିଅ ମୋତେ ବାରମ୍ବାର
ସମ୍ପାଦନ କରିବାକୁ କାର୍ଯ୍ୟ ଏ ପ୍ରକାର ।
ମଥୁରଙ୍କ ଭାବ ଦେଖି ପ୍ରଭୁ ଭଗବାନ
ଉତ୍ତରେ କହିଲେ ତାଙ୍କୁ କର୍କଶ ବଚନ ।
"ହେକି ଦେଖ ମନେ ଥରେ ମଥୁର ବିଶ୍ୱାସ !
କିଏ ତୁମ୍ଭେ, କାହାର ବା ଅଟଇ ଏ ବିଷ୍ୟ ।
ଜାଣନା କି ଷଡ଼ଭୁବନ ମାତାଙ୍କ ଭଣ୍ଡାର
ତାଙ୍କର ଇଙ୍ଗିତେ ଭବେ ସବୁ କାରବାର ।

ଆସିନାହିଁ ଧନ ନେଇ, ଯିବ ସେହିପରି
ଧନୀଲୋକ ମାନେ ଭବେ ଖାଜଞ୍ଚି ତାଙ୍କରି ।
ଜନନୀଙ୍କ କୋଷାଧ୍ୟକ୍ଷ ଅସଂଖ୍ୟ ସଂସାରେ
ଜଣେ ମାତ୍ର ଅଛ ତୁମ୍ଭେ ତାହାଙ୍କ ମଧ୍ୟରେ ।
ମାତାଙ୍କ ଆଦେଶ ; କର ଧନ ବିତରଣ
ଦୁଃଖେକଷ୍ଟେ ପ୍ରପୀଡ଼ିତ ତାଙ୍କର ସନ୍ତାନ ।"
ଶ୍ରବଣ ମାତ୍ରକେ ଏହି ତେଜପୂର୍ଣ୍ଣ ବାଣୀ
ମଥୁରଙ୍କ ହୃଦତମ ବିନଷ୍ଟ ତକ୍ଷଣି ।
ଦୂରୀଭୂତ ହୋଇଗଲା ଯେ ମନର ନୀଚତା
ଲଜ୍ଜିତ ହୋଇଲେ ଅତି ଆସିଗଲାରୁ ଚେତା ।
ବିନମ୍ରେ କହିଲେ ତାଙ୍କୁ ଯୋଡ଼ି ବେନିକର
"ବାସନା ପୂରଣ ପାଇଁ ଏ ଦାସ ତତ୍ପର ।"
ଏସନ ସ୍ପର୍ଶିଣ ତାଙ୍କୁ ମଥୁର ବିଶ୍ୱାସ
କଲିକତାକୁ ସତ୍ୱର ପ୍ରେରିଲେ ସନ୍ଦେଶ ।
ବସ୍ତାବନ୍ଦୀ କରି ପ୍ରେର ବସନ ବନ୍ଧନ
ଦୀନଦୁଃଖୀଜନେ ଏଠି ହେବ ବିତରଣ ।
ଆଦେଶ ପ୍ରାପତି ମାତ୍ରେ କର୍ମଚାରୀମାନେ
ପ୍ରେରିଲେ ଯେ ବସ୍ତା ବସ୍ତା ବସନ ବନ୍ଧନେ ।
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଯାହା ଦରକାର
ଆୟୋଜନ କଲେ ତାହା ନିଜେ କୋଠିଠାର ।
ସପ୍ତାହ ପର୍ଯ୍ୟନ୍ତ ହେଲା ଦରିଦ୍ର ଭୋଜନ
ସାନନ୍ଦେ ଦେଖନ୍ତି ବସି ପ୍ରଭୁ ନାରାୟଣ ।
ସୁହଳ ସହିତେ ନବ ବସ୍ତ୍ରଦାନ ଶେଷେ
ଆଶୀର୍ବାଦ କଲେ ସର୍ବେ ମନର ଉଲ୍ଲାସେ ।
ଦୀନଜନ, ଭାଗ୍ୟବାନ ତୁମ୍ଭେ ହିଁ ସଂସାରେ
ତବ ପଦରଜ ଦିଅ ଅଧମର ଶିରେ ।
ତୁମ୍ଭର ସୌଭାଗ୍ୟ କଥା ନ ହୁଏ ବଖାଣି
ଦ୍ୱାର ଦେଶେ ପ୍ରାପ୍ତ ହେଲ ପ୍ରଭୁ ଚକ୍ରପାଣି ।
ବହୁତ ସାଧନ ଫଳେ ଯାହା ନ ମିଳଇ
ଅବହେଳେ ଲବ୍ଧ ହେଲେ ସେ ପ୍ରାଣ ଗୋସାଇଁ ।
ଦୀନତା ଅଛଇ ଯହିଁ କାରଣ ଏହାର
ଅଧମ ମାଗଇ ସେହି ଭିକ୍ଷା ବାରମ୍ବାର ।
ଦ୍ୱାରଠିଁ ଦେଖିବ ସର୍ବ ଜଗତ ପାବନ
ଶ୍ରୀପଦ ପଙ୍କଜେ ସର୍ବେ ! ଦିଅ ମୋତେ ସ୍ଥାନ ।
ଦୀନତା-ରତନ ଆସ, ଯାଅ ଅହଂକାର
କରୁଣା କରିବେ ତେବେ କରୁଣାସାଗର ।
ବୁଝିଣ ବୁଝାଅ ମନ କରୁଛୁ ମିନତି
ଜନମ ତରଅ ଗାଇ ରାମକୃଷ୍ଣ-ଗୀତି ।
ଶ୍ରୀରାମକୃଷ୍ଣ ଚରିତ ଅମୃତ ଭଣ୍ଡାର
ଗାଇଲେ ଏ ମର ପ୍ରାଣୀ ହୋଇବେ ଅମର ।
ସଂସାରର ଶୋକ ଦୁଃଖ ହୋଇ ଦୂରୀଭୂତ
ନିତ୍ୟ ସୁଖ ହ୍ରଦ ମଧ୍ୟେ ହେବ ପ୍ରବାହିତ ।
ଧରାର ଅନିତ୍ୟ ସୁଖେ ଦେଇ ଜଳାଞ୍ଜଳି
ବିଭୁପାଦେ ପ୍ରାଣ ମନ ଦିଅ ସର୍ବେ ଢାଳି ।
ଭବେ ଅହେତୁକ କୃପାସିନ୍ଧୁ ଅଭ୍ୟୁଦୟ
ନ ରହିବ ଶୋକ ଦୁଃଖ ଯାତନା ନିଚୟ ।
ଅତଃପର ଦେବରାୟ ମଥୁର ସହିତେ
ଭ୍ରମିଲେ ଜମିଦାରୀର ଆଉ ସ୍ଥାନ କେତେ ।
ମଥୁରଙ୍କ ଗୁରୁ ଗୃହେ ଶେଷେ ପ୍ରବେଶିଣ
କିୟତ୍କାଳ ସୁଖେ ତହିଁ କଲେକ ଯାପନ ।
ଗୁରୁ ପରିବାର ମଧ୍ୟେ କଲହ ମେଣ୍ଟାଇ
ଫେରିଲେ ଦକ୍ଷିଣେଶ୍ୱରେ ଜଗତ ଗୋସାଇଁ ।
ରାମକୃଷ୍ଣଲୀଳା କଥା ଅମୃତ ଆଖ୍ୟାନ
ଭକ୍ତଭରେ ଦିବାନିଶି କର ସର୍ବେ ପାନ ।

---

## ବିଂଶ ଅଧ୍ୟାୟ

## ମଥୁର ମୋହନଙ୍କ ପ୍ରତି କୃପା

ଜୟ ଜୟ ରାମକୃଷ୍ଣ ବାଞ୍ଛା କଳ୍ପତରୁ
ଅପାର କରୁଣାସିନ୍ଧୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ପ୍ରେମଭକ୍ତି ପରିପୂର୍ଣ୍ଣ ପ୍ରଭୁଙ୍କ ଚରିତ
ଅଲୌକିକ ଶକ୍ତି ପୁଣି ତହିଁରେ ନିହିତ ।
ଗୃହେ ବସି ଏକ ମନେ ଶ୍ରବଣ କୀର୍ତ୍ତନେ
ସଦ୍ୟ ଫଳ ପ୍ରାପ୍ତ ବିନା ସାଧନ ଭଜନେ ।
ନିତ୍ୟଲୀଳା ସହଚର ମଥୁର ବିଶ୍ୱାସ
ଜାଣି ଜାଣି ନ ପାରନ୍ତି ସ୍ୱରୂପ ଆଭାସ ।
ନିଦାଘ ବୈଶାଖେ ଯଥା ତପନ କିରଣ
କେବେ ଢାଳେ ଖର ରଶ୍ମି କେବେ ମେଘାଚ୍ଛନ୍ନ ।

ପ୍ରଭୁଙ୍କର କ୍ରୀଡ଼ା ତଥା ମଥୁର ସହିତ
କେବେ ବା ପ୍ରକଟ, କେବେ ରହିଲା ଗୁପତ ।
କରୁଣା କରି ଧରା ନ ଦେଲେ ଆପଣେ
ତାଙ୍କୁ ଧରିବାକୁ କ୍ଷମ କିଏ ଏ ଭୁବନେ ।
ମଥୁରଙ୍କ ଭାଗ୍ୟ କଥା ନ ହୁଏ ବଖାଣି
ଯାଙ୍କ ପ୍ରତି କଲେ କୃପା ପ୍ରଭୁ ଚିନ୍ତାମଣି ।
ପ୍ରଭୁ ପାଦେ ସମାକୃଷ୍ଟ ଭକତ ମଥୁର
ମଝିରେ ତାଙ୍କ ଭକ୍ତିର ନାହିଁ ପଟାନ୍ତର ।
ଦିନକରେ ଦେବଗୃହ କୌଣସି କାରଣେ
ବାରଣ୍ଡାରେ ବୁଲୁଥିଲେ ଭାବାବିଷ୍ଟ ମନେ ।
ଦୂରେ ଆଇଣ ମଥୁର କଲେ ନିରୀକ୍ଷଣ
ଶିବ ଶକ୍ତି ଦୁହିଁଙ୍କର ଅଦ୍ଭୁତ ମିଳନ ।
ଭକତ ଉଚ୍ଛ୍ୱାସ ଚିତ୍ତେ ହେଲା ପ୍ରବାହିତ
ସମ୍ଭାଳି ନ ପାରି ଦ୍ରୁତେ ପାଶେ ସମାଗତ ।
ପ୍ରଭୁଙ୍କର ବେନି ପାଦ ଧରି ଦୁଇ କରେ
କ୍ରନ୍ଦନ କଲେକ ଶିର ସ୍ଥାପି ତଦୁପରେ ।
ମଥୁରେ ବୋଇଲେ ପ୍ରଭୁ କରୁଣାସାଗର
"ହେତୁ ନ ବୁଝଇ କିପାଁ ହୁଅ ଏ ପ୍ରକାର ।
ରାଣୀଙ୍କ ଜାମାତା ତୁମ୍ଭେ ଲୋକେ ଅଛ ଖ୍ୟାତ
କି କହିବେ ତୁମ୍ଭଙ୍କୁ ସେ ଦେଖିଲେ ଏମନ୍ତ ।
ଶାନ୍ତ ହୁଅ ଏବେ ତୁମ୍ଭେ ମଥୁର ମୋହନ
କିପାଇଁ ଅଧୈର୍ଯ୍ୟ ଏତେ କହ ବିବରଣ ।"
ଉତ୍ତରେ କହିଲେ ତହୁଁ ଭକତ ମଥୁର
"ଦେଖିଲି ଅଦ୍ଭୁତ ଦୃଶ୍ୟ ସ୍ୱରୂପେ ତୁମ୍ଭର ।
ବୁଲୁଥିଲେ ଯେତେବେଳେ ପ୍ରଭୋ ବାରଣ୍ଡାରେ
ଦିବ୍ୟ ଦର୍ଶନ ପାଇଲି ତବ ଶ୍ରୀଅଙ୍ଗରେ ।
ସମ୍ମୁଖେ ଦେଖିଲି ସ୍ପଷ୍ଟ ଦେବୀଙ୍କ ମୂରତି
ବିରାଜିତ ହୋଇଛନ୍ତି ମନ୍ଦିରେ ଯେମନ୍ତି ।
ଦେଖିଲି ପଶ୍ଚାତ୍‌ଭାଗେ ଶୂଳପାଣି ଶିବ
କହିତ ନାହିଁ ତ ଭ୍ରମ ଏଥେ ପ୍ରଭୁଦେବ !
ଲୋଚନର ଭ୍ରମ ବୋଲି ଭାବି ପ୍ରଥମରେ
ପୋଛିଲି ବିଶେଷ ଯତ୍ନେ ତାହା ବେନିକରେ ।
ସନ୍ନିବିଷ୍ଟ ଚିତ୍ତେ ପୁଣି ନିରେଖିଲି ଯେତେ
ଦେଖିଲି ଯେ ସେହି ଦିବ୍ୟ ମୂର୍ତ୍ତି ପୂର୍ବ ମତେ ।
ଏ ପ୍ରକାରେ ଯେତେ ଥର କଲି ନିରୀକ୍ଷଣ
ସ୍ୱରୂପେ ଦେଖିଲି ଶିବ ଶକ୍ତିର ମିଳନ ।
ତୁମ୍ଭେ ପ୍ରଭୋ ! ଆଦିନାଥ ଅନାଦି କାରଣ"
ଏହା କହି ଶ୍ରୀମଥୁର କଲେକ କ୍ରନ୍ଦନ ।
ତାହାଙ୍କୁ କହିଲେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର
"ଏ ବିଷୟ କିଛୁ ମୋତେ ନ ହୁଏ ଗୋଚର ।"
ଏ ପ୍ରକାରେ ନାନା ଭାବେ ଆଶ୍ୱାସନା ଦେଇ
ବହୁକଷ୍ଟେ ଶାନ୍ତ କଲେ ତାଙ୍କୁ ବିଶ୍ୱସାଇଁ ।
ସେହିଦିନୁ ପ୍ରଭୁପାଦେ ମଥୁରଙ୍କ ଭକ୍ତି
ଶତଗୁଣେ କ୍ରମଶଃ ଯେ ହେଲା ବୃଦ୍ଧିପ୍ରାପ୍ତି ।
ପ୍ରବଳ ବାସନା ଚିତ୍ତେ ତାଙ୍କ ସଙ୍ଗ ଲଭ
ସହ୍ୟ କରି ନ ପାରିଲେ ସେଥିର ଅଭାବ ।
ସାନୁନୟେ ଅନୁରୋଧ କରି ବାରମ୍ବାର
ପ୍ରାଣର ଈଶଙ୍କୁ ନେଇଗଲେ ନିଜ ଘର ।
ଚରଣ ସେବଣ ତହିଁ ପତିପତ୍ନୀ ଦ୍ୱୟେ
ଭୁଞ୍ଜିଲେ ଅପାର ସୁଖ ଆପଣା ହୃଦୟେ ।
ଶୋଇବାକୁ ଦେଲେ ବହୁ ମୂଲ୍ୟର ବିଛଣା
ବ୍ୟବହାରେ ସ୍ୱର୍ଣ୍ଣ ରୌପ୍ୟ ପାତ୍ରର ଯୋଜନା ।
ପିନ୍ଧିବାକୁ ବହୁମୂଲ୍ୟ ବସନ ଅଣାଇ
ଅସୀମ ଆନନ୍ଦ ଚିତ୍ତେ ଶ୍ରୀଅଙ୍ଗେ ମଣ୍ଡାଇ ।
ଧନୀ ସୌଦାଗର ଜଣେ ଏକାଳେ ପ୍ରବେଶ
ବହୁବିଧ ଶୀତ ଲୁଗା ବିକ୍ରୟ ସକାଶ ।
ବନାରସୀ ଶାଲ ଯୋଡ଼େ ଥିଲା ତା ମଧ୍ୟର
ନାନା କାରୁକାର୍ଯ୍ୟଯୁକ୍ତ ଅତି ମନୋହର ।
ପ୍ରଭୁଙ୍କର ଉପଭୋଗ୍ୟ ଏହା ଯେ ଅଟଇ
ମନସ୍ଥ କଲେକ ତହୁଁ ତାହା କ୍ରୟ ପାଇଁ ।
ସହସ୍ରେକ ମୁଦ୍ରା ଦେଇ ତାକୁ କ୍ରୟ କରି
ଶ୍ରୀଅଙ୍ଗେ ପିନ୍ଧାଇ ତୋଷ ହୋଇଲେ ଯେ ଭାରି ।
ଶାଲ ଯୋଡ଼ା ହୋଇ ପ୍ରଭୁ ଆନନ୍ଦେ ବିହ୍ୱଳ
ନାଚି ନାଚି ବିଚରିଲେ ଯେହ୍ନେ ଶିଶୁବାଳ ।
ବାରମ୍ବାର ନିରେଖନ୍ତି ଯତନେ ତାହାକୁ
ଡାକିଣ କହନ୍ତି ପୁଣି ଦେଖନ୍ତି ଯାହାକୁ ।
"ଏଇ ଦେଖ ମୂଲ୍ୟବାନ ଶାଲଟିକୁ ମୋର
ସହସ୍ର ମୁଦ୍ରାରେ କିଣି ଦେଇଛୁ ମଥୁର ।"
ପରକ୍ଷଣେ ପୁଣି ଅନ୍ୟ ଭାବର ଉଦୟ
ଆନନ୍ଦ ଉଲ୍ଲାସ ଆଦି କ୍ଷଣ ମଧ୍ୟେ ଲୟ ।
ମାନସେ ଭାଳନ୍ତି ଏହା କି ଅବା ଜିନିଷ
"ଯାହା ପାଇଁ ଲୋଭାସକ୍ତ ମନ ! ତୁ ଉଦ୍ଧୃଶ ।

ଛାଗଲୋମରେ ଏହା ତ ହୋଇଛି ତିଆରି
କିମ୍ପାଇ ଆସକ୍ତି ଏତେ ତହିଁରେ ତୋହରି ?
ଅନ୍ୟାନ୍ୟ ପଦାର୍ଥ ଗଢ଼ା ଯେଉଁ ପଞ୍ଚଭୂତେ
ଏହା ମଧ୍ୟ ନିର୍ମିତ ଯେ ହୋଇଅଛି ସେଥେ ।
ଶୀତ ମାତ୍ର ନିବାରଣ ହୁଅଇ ଏଥିରେ ।
କମ୍ବଳାଦି ବ୍ୟବହୃତ ହୁଏ ଯେ ପ୍ରକାରେ ।
ଅନ୍ୟାନ୍ୟ ପଦାର୍ଥ ଭଳି ବିଭୁଙ୍କ ଦର୍ଶନେ
ସାହାଯ୍ୟ କରଇ ନାହିଁ ଅଣୁ ପରମାଣେ ।
ପରନ୍ତୁ ଏଥିରେ ଅଙ୍ଗ କଲେ ଆଚ୍ଛାଦନ
ହୃଦୟରେ ଜାତ ଅହଂକାର ଅଭିମାନ ।
ଏଡେ ମୂଲ୍ୟବାନ ଶାଲ ପିନ୍ଧିଅଛି ମୁହିଁ
ଏପରି ସୁନ୍ଦର ଦ୍ରବ୍ୟ ଆଉ କା'ର ନାହିଁ ।
ଅହଂକାର ଏ ପ୍ରକାରେ କ୍ରମେ ବୃଦ୍ଧିପାଇ
ଚିତ୍ତକୁ ସମ୍ୟକ ଭାବେ ଆଚ୍ଛନ୍ନ କରଇ ।
ଫଳେ ବିଭୁପାଦୁଁ ମନ ହୋଇଣ ଅନ୍ତର
ସଂସାର ଜାଲରେ ପଡ଼ି ହୁଏ ହରବର ।
ଏମନ୍ତ ବହୁତ ଦୋଷ ନିହିତ ଏଥିରେ
କି ଲାଭ ରଖିଣ ତେବେ ଏହାକୁ ଗାତ୍ରରେ ।"
ଏସନ ବିଚାରି ମନେ ପ୍ରଭୁ ନରହରି
ଭୂତଳେ ଫିଙ୍ଗିଲେ ଶାଲ ତୁଚ୍ଛ ଜ୍ଞାନ କରି ।
ଏଥିରେ ମିଳଇ ନାହିଁ ବିଭୁଙ୍କ ଦର୍ଶନ
ଏହାପେକ୍ଷା ହୀନ ବସ୍ତୁ ନାହିଁ କିଛି ଆନ
ପାଦେ ଦଳି ବାରମ୍ବାର ପକାଇଲେ ଛେପ
ପୋଡ଼ି ଦେବା ପାଇଁ ତାକୁ ଉଦ୍ୟତ ଯେରୂପ ।
ଜଣେ କେହି ତତ୍‌ଦଣ୍ଡରେ ତହିଁ ପ୍ରବେଶିଣ
ବେଗେ ଟାଣି ଆଣି ଶାଲ କଲା ସଂରକ୍ଷଣ ।
ଏ ସମ୍ବାଦ କହିଲାରୁ ମଥୁର ଅଗ୍ରତେ
ବିଚଳିତ ନ ହେଲେ ସେ ତହିଁରେ କିଞ୍ଚିତେ ।
ଉତ୍ତରେ ଓଲଟି ପୁଣି କହିଲେ ମଥୁର
"ଜଗଜ୍ଜନ ଚିନ୍ତାମଣି ଅଟନ୍ତି ସେ ମୋର ।
ନରେ କି ବୁଝିବେ ତାଙ୍କ କାର୍ଯ୍ୟର ମରମ
ପ୍ରଜାପତି ବୁଝିବାକୁ ଯାହାକୁ ଅକ୍ଷମ ।
ଶ୍ରୀଦେବ ଅଟନ୍ତି ମୋର ମଙ୍ଗଳ ନିଧାନ
ପ୍ରାଣୀଙ୍କ ମଙ୍ଗଳ ଚିନ୍ତା ଚିତ୍ତେ ଅନୁକ୍ଷଣ ।
ଯାହା ସେ କରନ୍ତି ତହିଁ ମୋହର ସନ୍ତୋଷ
ହୃଦୟେ ନ ଥାଏ ଦ୍ୱିଧା, ସଂଶୟର ଲେଶ ।

ଆଉ ଥରେ ପ୍ରଭୁ ଚିତ୍ତ-ବିନୋଦନ ପାଇଁ
ଯାତ୍ରାଦଳେ ଶ୍ରୀ ମଥୁର ଆଣିଲେ ଡକାଇ ।
ଗାୟକଙ୍କ ଭଲ ମନ୍ଦ ବିଚାର ନିମିତ୍ତ
ପ୍ରଭୁଙ୍କ ଉପରେ ତାର ଭାର ହେଲା ନ୍ୟସ୍ତ ।
ଭଲ ଲୁଗାପଟାଦିରେ ଶ୍ରୀଅଙ୍ଗ ମଣ୍ଡାଇ
ଦର୍ଶକଙ୍କ ଅଗ୍ରେ ତାଙ୍କୁ ବସାଇଲେ ନେଇ ।
ଗାୟକଙ୍କୁ ପୁରସ୍କାର ପ୍ରଦାନ ସକାଶ
ଥାକ ମାରି ରଖି ଦେଲେ ଟଙ୍କା ଦଶ ଦଶ ।
ଶତାଧିକ ଟଙ୍କା ରଖି ଏମନ୍ତେ ଅଗ୍ରତେ
ବିତରଣ ଭାର ଦେଲେ ତାଙ୍କୁ ଇଚ୍ଛାମତେ ।
ଅହେତୁକୀ କୃପାସିନ୍ଧୁ ପ୍ରଭୁ ଭଗବାନ
ତାଙ୍କଠି ଖପରି ସମ ଧନରତ୍ନମାନ ।
ମର୍ମସ୍ପର୍ଶୀ ଗୀତଟିଏ ଯେମନ୍ତ ଶୁଣିଲେ
ତତ୍‌କ୍ଷଣେ ଯେ ଦେବରାୟ ଭାବାବିଷ୍ଟ ହେଲେ ।
ଥାକମରା ଟଙ୍କା ଥିଲା ସମ୍ମୁଖରେ ଯେତେ
ଗାୟକ ଆଡ଼କୁ ଠେଲି ଦେଲେ ନିଜ ହାତେ ।
ଏସନେ ସମସ୍ତ ଟଙ୍କା ଅଚିରକରେ ଶେଷ
ମଥୁର ଦେଖିଣ ଏହା ପରମ ସନ୍ତୋଷ ।
ଯେ ପ୍ରକାର ମନ, ପୁରସ୍କାର ସେହିପରି
ପରନ୍ତୁ ଏପରି ଭାଳି ଆନନ୍ଦିତ ଭାରି ।
ପୁଣି ଶହେ ଟଙ୍କା ଆଣି ମଥୁର ମୋହନ
ଥାକମାରି ପୂର୍ବପରି କଲେ ସଂସ୍ଥାପନ ।
ଗୀତେ ବିମୋହିତ ହୋଇ ଶ୍ରୀଦେବ ଅତ୍ୟନ୍ତ
ବିତରିଲେ ସବୁ ଟଙ୍କା ପୂର୍ବେ ଯେମନ୍ତ ।
ପାଶେ ଆଉ ଟଙ୍କା ନାହିଁ ଦେଖିଣ ଶ୍ରୀହରି
ଦାନ କଲେ ଲୁଗାପଟା ଯା ଥିଲା ତାଙ୍କରି ।
ଆଚ୍ଛାଦନ ଏକମାତ୍ର ହେଲା ଦିଗମ୍ବର
ଭାବେ ନିଶ୍ଚଳ ନିସ୍ପନ୍ଦ ପ୍ରଭୁ ଶ୍ରୀ ଠାକୁର ।
ଏହା ଦେଖି ଶ୍ରୀମଥୁର ଭକ୍ତ ଶିରୋମଣି
ସ୍ୱହସ୍ତେ ବ୍ୟଜନ କଲେ ବିଞ୍ଚଣା ଯେ ଘେନି ।
ଯେମନ୍ତ ଉଦାରମନା ପ୍ରଭୁ ଗୁଣଧାମ
ଭକ୍ତ ମଧ୍ୟ ତାଙ୍କଠାରୁ ନୁହନ୍ତି ଯେ କମ ।
ଯେତେବେଳେ ଯାହା ଆଜ୍ଞା ହୁଏ ତାଙ୍କପ୍ରତି
ସଙ୍ଗେ ସଙ୍ଗେ ପାଳନ୍ତି ତା ନ କରି ଆପତ୍ତି ।
ବହୁ ଧନ ବ୍ୟୟ ହେଲା ଏପରି ଭାବରେ
କାତର ନୋହିଲେ କେବେ ମଥୁର ସେଥିରେ ।

ଅତଃପର ବାସ୍ୱାମନ ! କର ଅବଧାନ
ମଥୁରଙ୍କ ଗୃହେ ଦୁର୍ଗୋତ୍ସବ ବିବରଣ ।
ପ୍ରତିବର୍ଷ ହୁଏ ପୂଜା ସମାରୋହ ସହ
ରାଜସିକ ଭକ୍ତିର ଯା ଲକ୍ଷଣ ସମୂହ ।
ପଶ୍ଚପୃଷ୍ଠେ ମଣ୍ଡପଟି ସୁନ୍ଦର ମଣ୍ଡିତ
ବିଚିତ୍ର ସାଜସଜ୍ଜାରେ ଦେବୀ ସୁସଜ୍ଜିତ ।
ନାନାବିଧ ମିଷ୍ଟାନ୍ନାଦି ଦରବ ସମ୍ଭାରେ
ଦେବୀଙ୍କର ପୂଜା ହୁଏ ଷୋଡ଼ଶୋପଚାରେ ।
ବିବିଧ ବାଜଣା ନହବତରୁ ବାଜଇ
କୌଣସି ବିଷୟେ ତ୍ରୁଟି କଳ୍ପିତ ନ ଥାଇ ।
ପୂତ ହୋମ ଧୂମ ଗନ୍ଧେ ଚୌଦିଗ ପୂରିତ
ଚଣ୍ଡୀପାଠ ଆଦି ଯାହା ଯହିଁ ସୁବିହିତ ।
ଗୃହେ ଆସିଛନ୍ତି ଦେବୀ ଚିଦାନନ୍ଦମୟୀ
ଆନନ୍ଦେ ଗୃହୀଙ୍କ ମନ ପରିପୂର୍ଣ୍ଣ ଥାଇ ।
ଏଥି ସଙ୍ଗେ ଏ ବରଷ ପ୍ରଭୁ 'ଛନ୍ତି ଘରେ
ଏକତ୍ର ମିଳନ ଯେହ୍ନେ ଶୃନ୍ୟ ସୋହାଗରେ ।
ମଥୁର, ମଥୁର ପତ୍ନୀ ଦୁହିଁଙ୍କର ଚିତ୍ତ
ସହସ୍ର ଗୁଣରେ ତେଣୁ ଆନନ୍ଦେ ପୂରିତ ।
ମୃଣ୍ମୟୀ ପ୍ରତିମାଠାରେ ଚିନ୍ମୟୀ ମୂରତି
ଦର୍ଶନ କରିଣ ଭାବାବିଷ୍ଟ ଜଗପତି ।
ମାତା ସଙ୍ଗେ ସନ୍ତାନର ଯଥା ବ୍ୟବହାର
ଦେବୀଙ୍କଠି ଆଚରଣ ତଥା ପ୍ରଭୁଙ୍କର ।
ବାଳକ ସୁଲଭ କେତେ କହନ୍ତି ବଚନ
ଜୀବନ୍ତ ପ୍ରତିମା ପ୍ରାୟେ ଚିତ୍ତେ ଅନୁମାନ ।
ଆଜି ଯେହ୍ନେ ଧରାଧାମ, ଆକାଶ ମଣ୍ଡଳ,
ଅନିର୍ବଚନୀୟାନନ୍ଦେ ଦିଶୁଛି ଉଜ୍ଜ୍ୱଳ ।
ପୂତ ଦେବୀମଣ୍ଡପର ଭିତର ବାହାର
ଚତୁର୍ଦ୍ଦିଗେ ଯେହ୍ନେ ଦିବ୍ୟ ଜ୍ୟୋତିର ସମ୍ଭାର ।
ଦେବଦେବୀ ଏକତ୍ରରେ ସର୍ବେ ସମ୍ମିଳିତ
ଅପୂର୍ବ ଶୋଭାରେ ଦିଗଦିଗ ବିମଣ୍ଡିତ ।
ଦିବସେ ସପ୍ତମୀ ପୂଜା ହୋଇଲା ସମ୍ପନ୍ନ
ଦେବୀପାଦେ କଲେ ପ୍ରଭୁ ପୁଷ୍ପାଞ୍ଜଳି ଦାନ ।
ସନ୍ଧ୍ୟା ସମାଗତ ଏବେ ହୋଇବ ଆରତି
ଅନ୍ଦର ମହଲେ ଭାବେ ମଗ୍ନ ଜଗପତି ।
ନିଜେ ଯେ ପୁରୁଷ ତାହା ହୋଇଣ ବିସ୍ମୃତ
ଦେବୀଙ୍କର ସଖୀଭାବେ ଚିତ୍ତ ବିଗଳିତ ।

ଦିବ୍ୟ ଜ୍ୟୋତିରେ ଆଚ୍ଛନ୍ନ ଶ୍ରୀମୁଖମଣ୍ଡଳ
ମନ୍ଦ ମନ୍ଦ ହାସ୍ୟ ଦୃଷ୍ଟ ଅଧରେ କେବଳ ।
ଅଙ୍ଗଭଙ୍ଗୀ ଆଦି ସବୁ ରମଣୀ ସଦୃଶ
ନାରୀ ପ୍ରାୟେ ପିନ୍ଧିଛନ୍ତି ରଙ୍ଗ ପାଟ ବାସ ।
ରୂପ ସୌନ୍ଦର୍ଯ୍ୟ ଛଟାର ନାହିଁ ପଟାନ୍ତର
ତାଙ୍କୁ ଚିହ୍ନିବାକୁ ପୁଣି ସାଧ୍ୟ ଅଛି କାର ।
ମନୋଭାବ ଜାଣିପାରି ମଥୁର ଗୃହିଣୀ
ବହୁମୂଲ୍ୟ ଅଳଙ୍କାର ବାକସରୁ ଆଣି,
ଶ୍ରୀଅଙ୍ଗରେ ଲଗି କଲେ ସେ ସବୁ ଯତନେ
ରୂପର ସୌନ୍ଦର୍ଯ୍ୟ ବୃଦ୍ଧି ହେଲା ଶତଗୁଣେ ।
ତଥାପି ଭାଜିଲା ନାହିଁ ଭାବ ଯେ ତାଙ୍କର
ଦେବୀଙ୍କ ଆରତି ଏବେ ଉଠିବା ଉପର ।
ମଥୁରଙ୍କ ପତ୍ନୀ ତେଣୁ ଉଦ୍‌ବିଗ୍ନା ଯେ ଅତି
ଏକା ଛାଡ଼ି ଯିବା ପାଇଁ ବଳୁ ନାହିଁ ମତି ।
ଉପାୟ ନ ଦେଖି ଶେଷେ ପଦପ୍ରାନ୍ତେ ବସି
ହୃଦ ଭାବ ଜଣାଇଲେ ବଚନେ ପ୍ରକାଶି ।
"ସମାଗତ ପ୍ରାୟ ପ୍ରଭୋ ! ଆରତିର ବେଳ
ଦର୍ଶନେ ଗମିବା ତାତ ! ଆସନ୍ତୁ ସହଳ ।
ଆଜ କରିବେ ନାହିଁ କି ଚାମର ବ୍ୟଜନ
ସମୟ ତ ନାହିଁ ଆଉ ତିଳାର୍ଦ୍ଧ ପ୍ରମାଣ ।
ଦର୍ଶନେ ଯିବା ସକାଶ ଉଦ୍‌ବିଗ୍ନ ସକଳେ
ମୋର ପ୍ରାର୍ଥନା ଘେନନ୍ତୁ ଶ୍ରୀପଦ କମଳେ ।"
କାତର ପ୍ରାର୍ଥନା ଶୁଣି ପ୍ରଭୁ ନରହରି
ସ୍ୱଳ୍ପକେ ଲଭିଲେ ଜ୍ଞାନ ବିଳମ୍ବ ନ କରି ।
ପ୍ରଫୁଲ୍ଲ ହୃଦୟେ ପୁର-ନାରୀଗଣ ମେଳେ
ନାରୀବେଶେ ଦେବରାୟ ଧୀରେ ବିଜେକଲେ ।
ପ୍ରବେଶ ମାତ୍ରକେ ସର୍ବେ ଚଣ୍ଡୀ ମଣ୍ଡପରେ
ଆରତି ଆରମ୍ଭ ହେଲା କ୍ଷଣକ ମଧ୍ୟରେ ।
ଏକ ପାର୍ଶ୍ୱେ ମଥୁରାଦି ପୁରୁଷ ନିକର
ରହିଲେ ଦଣ୍ଡାୟମାନ ଯୋଡ଼ି ବେନିକର ।
ଅନ୍ୟ ପାର୍ଶ୍ୱେ ଠିଆହୋଇ ପ୍ରଭୁ ବିଶ୍ୱସାଇଁ
ଚାମର ବ୍ୟଜନ କଲେ ନାରୀମେଳେ ଥାଇ ।
କିଏ ସେ ଅପୂର୍ବ ନାରୀ କରଇ ଚାମର
ଆନ୍ଦୋଳନ ଏ ପ୍ରକାର ପୁରୁଷ ମଧ୍ୟର ।
ଆରତି ଶେଷେ ମଥୁର ଆସିଣ ଅନ୍ଦରେ
ପତ୍ନୀଙ୍କୁ ପୁଚ୍ଛିଲେ ସେହି ନାରୀ ସମ୍ବନ୍ଧରେ ।

ସହାସ୍ୟେ କହିଲେ ତହୁଁ ମଥୁର ଗୃହିଣୀ
ନାରୀ କଏ ତୁମ୍ଭେ ତାଙ୍କୁ ନ ପାରିଲ ଜାଣି ।
ସେ ଅଟନ୍ତି ଦେବୀସ୍ୱୟଂ କରୁଣା ନିଧାନ
ପତିଙ୍କୁ କହିଲେ ଫେଡ଼ି ସବୁ ବିବରଣ ।
ଆଶ୍ଚର୍ଯ୍ୟ ହୋଇଣ ତହୁଁ କହିଲେ ମଥୁର
"ଧରି ନ ଦେଲେ ଧରିବ, ଶକ୍ତି ଅଛି କାର ।
ସଦାସର୍ବଦା ତାହାଙ୍କୁ ଦେଖୁଥାଇଁ ପାଶେ
ତଥାପି ଅକ୍ଷମ ହେଲି ଚିହ୍ନିବା ସକାଶେ ।
ଅଷ୍ଟମୀ ନବମୀ ପୂଜା ଶେଷ ନିର୍ବିଘ୍ନରେ
ବିସର୍ଜନ ବେଳ ସଦା ହେଲା ଦଶମୀରେ ।
କର୍ତ୍ତାପାଶେ ପୁରୋହିତ ପ୍ରେରିଲେ ଖବର
ଆସିଲେକ ବିସର୍ଜନ ହେବ ଦେବୀଙ୍କର ।
ଏ ବର୍ଷର ପୂଜା ଅଟେ ଅତୀବ ବିଚିତ୍ର
ଦେବଦେବୀ ସମ୍ମିଳିତ ସରବେ ଏକତ୍ର ।
ଅପୂର୍ବ ଆନନ୍ଦସ୍ରୋତ ବହି ନିରନ୍ତର
କରିଛି ଯେ ମଥୁରଙ୍କ ଚିତ୍ତ ଅଧିକାର ।
ବିସର୍ଜନ କଥା କର୍ଣ୍ଣେ ପ୍ରବେଶ ମାତ୍ରକେ
ଅତ୍ୟନ୍ତ ବିଷାଦେ ଚିତ୍ତ ପୂରିଲା କ୍ଷଣକେ ।
ମନେ ମନେ ଶ୍ରୀମଥୁର କଲେକ ବିଚାର
"ବିସର୍ଜନ ଦେବି କିମ୍ପା ଦେବୀଙ୍କୁ ମୋହର ।
ଦେବୀଙ୍କ କଲ୍ୟାଣେ ଗୃହେ ଅଛି ଯେଉଁ ଧନ
ତହିଁରେ କରିବି ନିତ୍ୟ ତାଙ୍କର ଅର୍ଚ୍ଚନ ।
ଦେବୀ ଆଗମନେ ସର୍ବେ ଭୁଞ୍ଜୁଛନ୍ତି ସୁଖ
ବିସର୍ଜନ ଦେଇ କିମ୍ପା ଆଣିବି ମୁଁ ଦୁଃଖ ।
ସେକାରଣେ ବିସର୍ଜନ ଦେଇ ନ ପାରିବି"
ଦୃଢ଼େ ସେ ସଙ୍କଳ୍ପ କଲେ ଏମନ୍ତ ଯେ ଭାବି ।
ଯେତେ ପ୍ରକାରରେ ସର୍ବେ ତାଙ୍କୁ ବୁଝାଇଲେ
କାହାରି କଥାରେ କର୍ଣ୍ଣ ନ ଡେରିଲେ ଭଲେ ।
ବିଷମ ସମସ୍ୟା ଦେଖି ସରବେ ଚିନ୍ତିତ
ଅବିଧିରେ ଅମଙ୍ଗଳ ଘଟିବ ନିଶ୍ଚିତ ।
ସମ୍ବାଦ ପ୍ରାପତ ହୋଇ ମଥୁର ଗୃହିଣୀ
ପ୍ରଭୁଙ୍କ ଶରଣ ନେଲେ କହି ମୃଦୁ ବାଣୀ ।
"ବିଜୟା ଦଶମୀ ଦେବୀ ହେବେ ବିସର୍ଜନ
ଆଜ୍ଞା ଦେଇ କର୍ତ୍ତା ତାହା କରନ୍ତି ବାରଣ ।
ହୋଇଲା କି ଆଜ ତାଙ୍କ ମସ୍ତିଷ୍କ ବିକୃତ
ହେତୁ ନ ଜାଣିଣ ମୋର ଜ୍ଞାନ ବୁଦ୍ଧି ହତ ।
ଶାସ୍ତ୍ର ବିଧି ବହିର୍ଭୂତ ଯେ କରମମାନ
ତାହା ଆଚରଣେ ଶୁଭ ନାହିଁ କଦାଚନ ।
ଅନୁଗ୍ରହ କରି ତାଙ୍କୁ ବୁଝାଇଣ ଥରେ
ସମ୍ମତ କରାନ୍ତୁ ଏଥି କୌଣସି ପ୍ରକାରେ ।
ଆପଣଙ୍କ କଥା ସେହୁ ନ ପାରିବେ ଏଡ଼ି
ସରବେ ବିଷଣ୍ଣ ଗୃହେ ସଙ୍କଟରେ ପଡ଼ି ।"
କାତର ପ୍ରାର୍ଥନା ଶୁଣି ପ୍ରଭୁ ଗଦାଧର
ମଥୁରଙ୍କ ପାଶେ ବିଜେ କଲେ ଖରତର ।
ପ୍ରବେଶ ହୋଇଣ ତହିଁ ଦେଖିଲେ ଶ୍ରୀହରି
ମଥୁର ଭ୍ରମନ୍ତି ଗୃହେ ବାଉଳଙ୍କ ପରି ।
ଆରକ୍ତ ଲୋଚନ, ମୁଖ ଦିଶଇ ଗମ୍ଭୀର
କୌଣସି ଚିନ୍ତାରେ ଯେହ୍ନେ ମାନସ ଅସ୍ଥିର ।
ପ୍ରଭୁଙ୍କୁ ଦର୍ଶନ ମାତ୍ରେ ମଥୁର ମୋହନ
ଧାଇଁଆସି ମନକଥା କଲେ ନିବେଦନ ।
"ଯେ ଯାହା କହନ୍ତୁ ମୋର ନାହିଁ ତହିଁ ଡର
ମନ ମଧ୍ୟେ କରିଛି ଯେ ମୁହିଁ ଏହା ସ୍ଥିର ।
ଏ ଦେହରେ ଯେତେଦିନ ଥିବ ମୋର ପ୍ରାଣ
କରି ନ ପାରିବି ଜନନୀଙ୍କୁ ବିସର୍ଜନ ।
ପୂଜିବି ଭକତି ସହ ଗୃହରେ ନିରତ
ବଞ୍ଚି ନ ପାରିବି ଭଲେ ମାତାଙ୍କ ବ୍ୟତୀତ ।"
ସ୍ମିତରେ ବୁଲାଇ ହସ୍ତ ପ୍ରଭୁ ନାରାୟଣ
ହିତ ନିମନ୍ତେ କହିଲେ ମଙ୍ଗଲ ବଚନ ।
"କିଏ କହିଲା ମାତାଙ୍କୁ ବିସର୍ଜନ ଦେଇ
ସଂସାରେ ରହିବ ତୁମ୍ଭେ ମାତୃହୀନ ହୋଇ ।
ବିସର୍ଜନ ଦେଲେ ଅବା ଯିବେ କେଉଁଠାକୁ
ମାତାକି ରହିବେ ଛାଡ଼ି ନିଜ ସନ୍ତାନକୁ ?
ପୂଜାନେଲେ ଦିନତିନ ବସିଣ ମଣ୍ଡପେ
ଆଜଠାରୁ ରହିବେ ସେ ଆହୁରି ସମୀପେ ।
ମହାନନ୍ଦେ ହୃଦାସନେ ବସିଣ ତୁମ୍ଭର
ଗ୍ରହଣ କରିବେ ପୂଜା ଏବେ ନିରନ୍ତର ।"
ପ୍ରଭୁଙ୍କ କର ସ୍ପର୍ଶରେ ମଥୁର ମୋହନ
ଦେବୀଙ୍କୁ ହୃଦୟ ମଧ୍ୟେ କଲେ ଯେ ଦର୍ଶନ ।
ହୃଦାସନେ ବିରାଜିଣ ଜଗତଜନନୀ
ଉଦ୍ଭାସିତ କରୁଛନ୍ତି ଦଶଦିଶ ପୁଣି ।
ଅଦ୍ଭୁତ ଦର୍ଶନେ ଚିତ୍ତେ ଆନନ୍ଦ ଅପାର
ଦେବୀ ବିସର୍ଜନ ପାଇଁ ନୁହନ୍ତି କାତର ।

ଏମନ୍ତେ ବିଜୟା ପର୍ବ ନିର୍ବିଘ୍ନରେ ଶେଷ
ପରିବାରବର୍ଗ ଚିତ୍ତେ ଆନନ୍ଦ ଅଶେଷ ।
ଅତଃପର ସାଧୁଜନେ କର ଅବଧାନ
ଭାବ ସମାଧି ମଥୁର ଲଭିଲେ କେସନ ।
ଭାବ ସମାଧିରେ ଥାଇ ପ୍ରଭୁ ନରହରି
ଭୁଞ୍ଜନ୍ତି ଅପୂର୍ବ ଦିବ୍ୟ ଆନନ୍ଦ ଲହରି ।
ତାର ଅନୁଭୂତି ପାଇଁ କୌଣସି ସମୟେ
ପ୍ରବଳ ବାସନା ହେଲା ମଥୁର-ହୃଦୟେ ।
ମଥୁର ଭାବିଲେ ପ୍ରଭୁ କରୁଣାସାଗର
ଅଟନ୍ତି ସର୍ବ ଶକ୍ତିର ଘନୀଭୂତାକାର ।
ରାମ, କୃଷ୍ଣ, ଶିବ, କାଳୀ ଦେବଦେବୀ ଯେତେ
ତାଙ୍କ ଅନ୍ତରେ ନିହିତ ଅଛନ୍ତି ସମସ୍ତେ ।
ରୂପ ଗୁଣ ଅତିକ୍ରମି ଯେ ରାଜ୍ୟ ଅଛଇ
ଇଚ୍ଛାକଲେ ଦେଖାଇବେ ଜଗତ ଗୋସାଇଁ ।
ଏମନ୍ତ ଧାରଣା ଚିତ୍ତେ ହୋଇ ଗାଢ଼ତର
ବାସନା ପୂରଣ ପାଇଁ କଲେ ଯେ ଜଗର ।
ଉତ୍ତରେ କହିଲେ ପ୍ରଭୁ କରୁଣାନିଧାନ
ସ୍ଥିର ଚିତ୍ତେ ଶୁଣ ତୁମ୍ଭେ ମୋହର ବଚନ ।
"ମଞ୍ଜି ପୋତିଲେ କି ଗଛ ଜନମି ତକ୍ଷଣେ
ଫଳ ପାଚି ଭୁଞ୍ଜିପାରେ କେହି କଦାଚନେ ।
ଅଧୁନା ସଂସାରେ ତୁମ୍ଭେ ଅଛ ଯେଉଁଭାବେ
ବହୁ ପୁଣ୍ୟବଳେ ତାହା ଲଭନ୍ତି ମାନବେ ।
ସଂସାର କରିଣ ଧର୍ମେ ରଖିଅଛ ମତି
ଦୁଇଦିଗେ ସମଭାବେ କରୁଅଛ ଗତି ।
ଭାବ ସମାଧି ଅବସ୍ଥା ପ୍ରାପତ ହୋଇଲେ
ବିଷୟ କର୍ମରେ ମନ ନ ଲାଗିବ ତିଳେ ।
ବୁଝାସୁଝା କେ କରିବ ସମ୍ପତ୍ତି ତୁମ୍ଭର
ଭୂତଖିଆ ହୋଇ ସବୁ ଯିବ ନାରଖାର ।"
ବୁଝି ନ ବୁଝନ୍ତି ତାହା ମଥୁର ମୋହନ
ବିନୟେ ପ୍ରାର୍ଥନା ପାଦ ଧରି ପୁନଃ ପୁନଃ ।
ଯାହାଇଚ୍ଛା ତାହା ହେଉ ପ୍ରଭୋ ନରହରି
ଭାବ ସମାଧି କରାନ୍ତୁ ଥରେ ଦୟା କରି ।
ପୁନଶ୍ଚ କହିଲେ ତାଙ୍କୁ ପ୍ରଭୁ ଭଗବାନ
"କିପାଇଁ ହେଉଛ ତୁମ୍ଭେ ଅଧୀର ଏସନ ।
ଭକତେ ଲୋଡ଼ନ୍ତି ବିଭୁ-ସେବା ହିଁ କେବଳ
ଦର୍ଶନରେ ନ ହୁଅନ୍ତି ସୁଖୀ କେତେବେଳ ।
ବିଭୁଙ୍କ ଐଶ୍ୱର୍ଯ୍ୟ ଦେଖି ଚିତ୍ତେ ଜନ୍ମେ ଭୀତି
ଜାଗ୍ରତ ନ ହୁଏ ତେଣୁ ପ୍ରେମ ଅବା ପ୍ରୀତି ।
କୃଷ୍ଣଚନ୍ଦ୍ର ଯେତେବେଳେ ମଥୁରାକୁ ଗଲେ
ତାଙ୍କ ବିରହେ ଗୋପୀଏ ବ୍ୟାକୁଳା ହୋଇଲେ ।
ହୃଦଭାବ ଜାଣିପାରି ପ୍ରଭୁ ଚକ୍ରଧର
ସାନ୍ତ୍ୱନା ପାଇଁ ପ୍ରେରିଲେ ଉଦ୍ଧବେ ସତ୍ୱର ।
ଜ୍ଞାନପଥର ପଥିକ ଅଟନ୍ତି ଉଦ୍ଧବ
ବୁଝି ନ ପାରନ୍ତି ତେଣୁ ବୃନ୍ଦାବନ ଭାବ ।
କୃଷ୍ଣ ପ୍ରତି ଗୋପୀଙ୍କର ଯେଉଁ ଶୁଦ୍ଧ ପ୍ରେମ
ତାକୁ ସେ ବୋଲନ୍ତି ନୀଚ ଭକ୍ତିର ସୋପାନ ।
ଗୋପୀଙ୍କୁ ଦେଖିଲେ ତାଙ୍କ ଶିକ୍ଷାଲାଭ ହେବ
ଏହା ମଧ୍ୟ ଶ୍ରୀକୃଷ୍ଣଙ୍କ ଅନ୍ତରର ଭାବ ।
ଉଦ୍ଧବ ପ୍ରବେଶ ହୋଇ ପୁଣ୍ୟ ଗୋପପୁରେ
ଗୋପାଙ୍ଗନାଙ୍କୁ ଡାକିଣ କହିଲେ ସଧୀରେ ।
"କୃଷ୍ଣ କୃଷ୍ଣ ବୋଲି କିପାଁ ହେଉଛ ବ୍ୟାକୁଳ
ଜାଣନା କି କୃଷ୍ଣଚନ୍ଦ୍ର ପ୍ରଭୁ ଆଦିମୂଳ ।
ମଥୁରାରେ 'ଛନ୍ତି ସେହୁ, ବୃନ୍ଦାବନେ ନାହିଁ
ଭ୍ରମରୁ ଏ ଭାବ ତବ ଚିତ୍ତେ ଉପୁଜଇ ।
ଭଗବାନ କୃଷ୍ଣଚନ୍ଦ୍ର 'ଛନ୍ତି ସବୁଠାରେ
ଆଖି ମୁଦି ହୃଦମଧ୍ୟେ ଚିନ୍ତା କର ଥରେ ।
ନବଘନ ଶ୍ୟାମ କୃଷ୍ଣ ମୁରଲୀ ମୋହନ
ହୃଦୟରେ ବିଦ୍ୟମାନ କରିବ ଦର୍ଶନ ।"
ଉଦ୍ଧବ-ବଚନ ଶୁଣି କହିଲେ ଗୋପୀଏ
"କୃଷ୍ଣଙ୍କର ସଖା ଯେହୁ ବିଜ୍ଞାନୀ ବୋଲାଏ ।
ସେ ପୁଣି କହନ୍ତି କଥା ଅଜ୍ଞାନୀଙ୍କ ପରି
ତାଙ୍କୁ ବା କହିବୁ କିସ ଆମ୍ଭେ ମୂଢ଼ା ନାରୀ ।
ହେ ଉଦ୍ଧବ! ଶୁଣ ତୁମ୍ଭେ ଆମ୍ଭ ହୃଦବ୍ୟଥା
ଧନୀ ଜ୍ଞାନୀ ନୋହୁଁ ଆମ୍ଭେ ଗୋପଙ୍କ ବନିତା ।
ଋଷି ମୁନି ପ୍ରାୟେ ଧ୍ୟାନ ଜପତପ କରି
ପ୍ରାପ୍ତ ହୋଇ ନାହୁଁ ଆମ୍ଭେ ପ୍ରାଣର ମୁରାରି ।
କ୍ଷୀର, ସର, ମାଖନାଦି ଆଣିଣ ଏ କରେ
ଖୁଆଇଲୁ ଯେତେ ତାହା କିଏ କଳିପାରେ ।
ବନଫୁଲମାଳ ଆଦି କୁସୁମ ଚନ୍ଦନେ
ସଜାଇଲୁ କେତେ ରୂପେ ସାଦରେ ଯତନେ ।
ପ୍ରାଣର ପ୍ରତିମା ଯେହୁ ଅଟନ୍ତି ଏମନ୍ତ
ଅନ୍ୟ ଭାବେ ଭଜିବୁ ବା ତାହାଙ୍କୁ କେମନ୍ତ ।

ଧ୍ୟାନ କରିଥାନ୍ତୁ ଆମ୍ଭେ ଯେଉଁ ମନ ଦେଇ
ସେ ମନକୁ ସମର୍ପିଛୁଁ ତାଙ୍କ ପାଦେ ନେଇ ।
ଆମ୍ଭର ବୋଲିଣ କିଛୁ ନାହିଁ ଅମ୍ଭଠାରେ
ଅହଂବୁଦ୍ଧି ଜ୍ଞାନେ ତାଙ୍କୁ ଜପିବୁଁ ସନ୍ଧିରେ ।"
ଗୋପୀଙ୍କ ବଚନ ଶୁଣି ବିଜ୍ଞାନୀ ଉଦ୍ଧବ
ଅଦ୍ଭୁତ ମଣିଲେ ଜାଣି ତାଙ୍କ ହୃଦଭାବ ।
କୃଷ୍ଣଙ୍କଠି ଗୋପୀ ପ୍ରେମ କୀଦୃଶ ଗମ୍ଭୀର
କି ଅମୂଲ୍ୟ ନିଧି ସେହି ପ୍ରେମ-ପାରାବାର ।
ଅବଗତ ହୋଇ ତାହା ଆପଣା ଅନ୍ତରେ
ଗୁରୁଜ୍ଞାନେ ପ୍ରଣମିଲେ ଗୋପୀଙ୍କ ପଦ୍ମରେ ।
ମନେ ହେଜ ତୁମ୍ଭେ ଏବେ ମଥୁର ମୋହନ
ଶୁଦ୍ଧା ଭକତର ଅଟେ ଏଭଳି ଲକ୍ଷଣ ।
ଏମନ୍ତ ଭକତ ଯାର ଚିତ୍ତେ ଉପୁଜଇ
ବିଭୁଙ୍କ ଦର୍ଶନ ଆଶା ତାହାର ନ ଥାଇ ।
ବିଭୁଙ୍କ ସେବାରେ ଢାଳି ଦେଇ ମନପ୍ରାଣ
ପରମାନନ୍ଦ ଭୁଞ୍ଜଇ ଚିତ୍ତେ ଅନୁକ୍ଷଣ ।
ଏ ପ୍ରକାରେ ବୁଝାଇଲେ ଯେତେ ଦେବରାୟେ
ସାନ୍ତ୍ୱନା ଆସିଲା ନାହିଁ ମଥୁର ହୃଦୟେ ।
ଉପାୟ ନ ଦେଖି ପ୍ରଭୁ କରୁଣାସାଗର
ଧୀରେ ଧୀରେ ମଥୁରଙ୍କୁ ଭାଷିଲେ ଉତ୍ତର ।
"ଅଭିଳାଷ ଜଣାଇବ ଦେବୀଙ୍କ ଅଗ୍ରତେ
ଯାହା ସେ କରିବେ, କିଛି ନାହିଁ ମୋ ଆୟତ୍ତେ ।"
ତଦନ୍ତେ କିୟତକାଳ ହୋଇଲା ଅତୀତ
ଭାବ ସମାଧି ଯେକାଳେ ହେଲା ଅନୁଭୂତ ।
ସମ୍ଭାଳି ନ ପାରି ବେଗ ମଥୁର ମୋହନ
ପ୍ରଭୁପାଶେ ପ୍ରେରିଲେକ ବାରତା ବହନ ।
ଉପସ୍ଥିତ ହୋଇ ପାଶେ ପ୍ରଭୁ ନିରେଖିଲେ
ପୁରୁବର ଭଳି ବୋଲି ନାହିଁ ଥାଉ ଢଳେ ।
ଲୋଚନ ଆରକ୍ତ ହୋଇ ବହେ ଅଶ୍ରୁଧାର
ଘନ ଘନ ଝରୁଅଛି ବକ୍ଷ ତା ସଙ୍ଗର ।
ଈଶ୍ୱର ପ୍ରସଙ୍ଗ ବିନୁ ନାହିଁ ଅନ୍ୟ ଭାଷ
ଭାବେ ଉନମତ୍ତ ହୋଇ କାନ୍ଦନ୍ତି ବିଶେଷ ।
ଯେମନ୍ତ ଶ୍ରୀଦେବଙ୍କଠି ପଡ଼ିଲା ନଜର
ବେଗେ ଧାଇଁଆସି ପାଦ ଧରିଲେ ତାଙ୍କର ।
କହିଲେ "ହେ ଦେବ ! ମୋର ହୋଇଅଛି ଦୋଷ
ଦୀନପ୍ରତି ଅରେ ଦୟା କରନ୍ତୁ ଭବେଶ ।
ଗତ ତିନଦିନ ଧରି ଏ ଅବସ୍ଥା ମୋର
ବିଷୟ ସମ୍ପତ୍ତି ସବୁ ହେଲା ଛାରଖାର ।
ବିଷୟ ବୁଝିବା ପାଇଁ ଯେତେ ଚେଷ୍ଟାକଲି
ମନକୁ କୌଣସି ରୂପେ ସ୍ଥାପି ନ ପାରିଲି ।
ଦୟାକରି ଏ ଅବସ୍ଥା ନିଅ ପ୍ରଭୋ ! ଫେରି
ଲୋଡ଼ା ନାହିଁ ମୋର ଏଥେ, ମୁହିଁ ଯେ ସଂସାରୀ ।"
ଉତ୍ତରେ କହିଲେ ତହୁଁ ପ୍ରଭୁ ଭଗବାନ
"ଭଲ କରିଥିଲ ଏତେ ତେବେ କି କାରଣ ?"
ବିନୟେ କହିଲେ ତହୁଁ ଭକତ ମଥୁର
"ଏକାନ୍ତେ ଭୁଞ୍ଜିବି ସୁଖ ମନେ ଥିଲା ମୋର ।
ଯେପରି ଦେଖୁଛି ଏବେ ଘଟନାର ଗତି
ନଷ୍ଟ ହୋଇଯିବ ସବୁ ବିଷୟ ସମ୍ପତ୍ତି ।
ତୁମ୍ଭର ଏ ଭାବ ପ୍ରଭୋ ! ତୁମ୍ଭଙ୍କୁହିଁ ସାଜେ
ଲୋଡ଼ା ନାହିଁ ଏଥେ ମୋର ଆହେ ଦେବରାଜେ !"
ସହାସ୍ୟେ ବୋଇଲେ ତାଙ୍କୁ ଜଗତ ଗୋସାଇଁ
"ମନା କରୁଥିଲି ଆଗୁଁ ମୁହିଁ ସେଥିପାଇଁ ।"
ଶ୍ରୀମୁଖ ବଚନ ଶୁଣି କହିଲେ ମଥୁର
"ଜାଣିଥିଲି କି ପ୍ରଭାବ ଏପରି ଏହାର ।
ପାରାବାର ପ୍ରାୟେ ଏକାବେଳେ ମାଡ଼ିଆସି
ଅଭିଭୂତ କଲା ମୋର ପ୍ରାଣମନ ଗ୍ରାସି ।
ପଙ୍କଜଚରଣେ ଏବେ ମୋହର ମିନତି
ପୂର୍ବର ଅବସ୍ଥା ଫେରି ଦିଅନ୍ତୁ ଝଟତି ।"
ଭକ୍ତର ପ୍ରାର୍ଥନା ଶୁଣି ପ୍ରଭୁ ନାରାୟଣ
ବକ୍ଷେ ହସ୍ତ ସ୍ଥାପି ଭାବ କଲେକ ହରଣ ।
ଧନ୍ୟ ଧନ୍ୟ ଶ୍ରୀମଥୁର ତୁମ୍ଭର ଭକତି
ଯା ବଳେ ତୁମ୍ଭଠି ବନ୍ଧା ପ୍ରଭୁ ଜଗପତି ।
ସତ୍ୟ ସତ୍ୟ ଦେବ ଅଂଶେ ଜନମ ତୁମ୍ଭର
ପୂର୍ବ ସମ୍ବନ୍ଧରୁ ମନ ଟାଣେ ଶ୍ରୀପଦର ।
ମଥୁର ସମ୍ବନ୍ଧେ ବନ୍ଧାବନ୍ଧି ପରସ୍ପରେ
ଅକପଟ କାରବାର ତେଣୁ ନିରନ୍ତରେ ।
ଯେତେବେଳେ ଯାହା ପ୍ରଭୁ କରନ୍ତି ଦର୍ଶନ
ମଥୁର ଅଗ୍ରତେ ତାହା କରନ୍ତି ବର୍ଣ୍ଣନ ।
ଯେ ପ୍ରଭୁ ବୁଝାନ୍ତି ଏତେ ଆଧ୍ୟାତ୍ମିକ କଥା
ପରକ୍ଷଣେ ପୁଣି ସେହି ବାଳକ ସର୍ବଥା ।
କଥା କହୁ କହୁ ଦିନେ ମଥୁର ସହିତ
ବାହାରେ ଆସିଲେ ପ୍ରଭୁ ପରିସ୍ରା ନିମିତ୍ତ ।

ବାହୁଡ଼ିଣ ମନ ଦୁଃଖେ କହିଲେ ମଥୁରେ
"ଏ କି ବ୍ୟାଧି ହେଲା ପୁଣି ମୋହର ଶରୀରେ ।
ପରସ୍ରାବ ଦ୍ୱାର ଦେଇ ଶରୀର ମଧ୍ୟରୁ
ବାହାରି ଆସିଲା ପୋକ ଗୋଟେ ଅତି ସରୁ ।
ଦେହ ମଧ୍ୟରେ ତ ପୋକ ନ ଥାଏ କାହାରି
ଏପରି କିମ୍ପାଇ ହେଲା ବୋଲ ତ ବିଚାରି ।"
ବୁଝାଇ କହିଲେ ତହୁଁ ଉତ୍ତରେ ମଥୁର
"ଏଥିପାଇଁ ନ କରନ୍ତୁ ଚିନ୍ତା କିଞ୍ଚିତର ।
ପ୍ରାଣୀ ଚିତ୍ତେ କାମ କୀଟ କରିଣ ବସତି
ଉପୁଜାଏ ତାଙ୍କ ମନେ ନାନାଦି କୁବୃତ୍ତି ।
ସେହି କାମ କୀଟ ଆଜି ତବ ଶରୀରରୁ
ବହିର୍ଗତ ହୋଇଗଲା ଦେବୀଙ୍କ କୃପାରୁ ।
ଏଥିରେ ସାଧିତ ହେବ ବିଶେଷ ମଙ୍ଗଳ
ଚିନ୍ତା ନ କରନ୍ତୁ କିଛି ପ୍ରଭୋ ଆଦିମୂଳ !"
ମଥୁର ବଚନ ଶୁଣି ପ୍ରଭୁ ନରହରି
ଆନନ୍ଦେ ନାଚିଲେ କ୍ଷୁଦ୍ର ବାଳକ ଯେପରି ।
ମଥୁର କହନ୍ତି ପୁଣି ଆଉ ଦିନକରେ
କହିଲେ ଶ୍ରୀଦେବରାୟ କଥା ପ୍ରସଙ୍ଗରେ ।
"ସଦୟ ହୋଇଣ ମୋର ଜଗତ ଜନନୀ
ଜଣାଇଲେ ଭବିଷ୍ୟତ ଲୀଳାର କାହାଣୀ ।
ଅନ୍ତରଙ୍ଗ ଭକ୍ତ ମୋର ଅଛନ୍ତି ଅନେକ
ଏଠାରେ ଭେଟିବେ ଆସି ସର୍ବେ ଏକ ଏକ ।
ଈଶ୍ୱର ସମ୍ବନ୍ଧେ ନାନା ନିଗୂଢ଼ ବିଷୟ
ଶୁଣି ତାଙ୍କ ଚିତ୍ତେ ହେବ ଭକ୍ତିର ଉଦୟ ।
ସଚ୍ଚିଦାନନ୍ଦ ଯେହୁ ପ୍ରଭୁ ଭଗବାନ
ତାଙ୍କୁ କରିବେ ସେମାନେ ପ୍ରତ୍ୟକ୍ଷ ଦର୍ଶନ ।
ଏ ଦେହ ମାଧ୍ୟମେ ହେବ ପ୍ରାଣୀଙ୍କର ହିତ
ଯତ୍ନେ ରକ୍ଷା କରିଛନ୍ତି ତେଣୁ ଜଗନ୍ମାତ ।
ଏ ସବୁ ଯା ଜଗନ୍ମାତା ଦେଖାଇଲେ ମୋତେ
ମସ୍ତିଷ୍କର ଭ୍ରମ ଅବା ସତ୍ୟ ଅଛି ଏଥେ ।
କିସ ଅନୁମାନ ହୁଏ ତୁମ୍ଭର ଏଥିରେ
ସତ୍ୟାସତ୍ୟ ବିଚାରିଣ କହ ମୋତେ ବାରେ ।"
ବିନୟେ କହିଲେ ତହୁଁ ଭକତ ମଥୁର
"ଭ୍ରମ ନୁହେ କେତେବେଳେ ଏହା ମସ୍ତିଷ୍କର ।
ଯେତେ ଯାହା ଦେଖାଇଲେ ଘଟିଲା ପ୍ରତ୍ୟକ୍ଷ
ଏ ଗୋଟିକ ହେବ କିମ୍ପା ତେବେ ଭ୍ରମାତ୍ମକ ।
କୌଣସି କାରଣ ଯୋଗୁଁ ହୋଇଛି ବିଳମ୍ବ
ଜଗନ୍ମାତାଙ୍କର କଥା ନିଶ୍ଚୟ ଘଟିବ ।
ଶୀଘ୍ର ଶୀଘ୍ର ହୋଇଥିଲେ ଭକ୍ତ ସମ୍ମିଳନ
ତାଙ୍କ ସଙ୍ଗେ ଆନନ୍ଦେ ମୁଁ ଯାପିଥାନ୍ତି ଦିନ ।"
ଏ ପ୍ରକାର ଆଶ୍ୱାସନା ପାଇ ତାଙ୍କଠାରୁ
କହିଲେ ବାଳକ ପ୍ରାୟ ପ୍ରଭୁ ଜଗଦ୍‌ଗୁରୁ ।
"କେ ଜାଣେ ଭକତବୃନ୍ଦ ଆସୁଛନ୍ତି କେବେ
ମାତା ବିନୁ ନ ଜାଣନ୍ତି ଅପର ମାନବେ ।
ତନ୍ନ ତନ୍ନ କରି ସବୁ ବୁଝାଇଲେ ମୋତେ
ଘଟୁ ବା ନ ଘଟୁ ତାଙ୍କ ମରଜି ଯେମନ୍ତେ ।"
ପ୍ରଭୁପାଦେ ମଥୁରଙ୍କ ଭକତି କେମନ୍ତ
ସାବଧାନେ ଶୁଣ ମନ, ତାହାର ଦୃଷ୍ଟାନ୍ତ ।
ଦୁରୂହ ବ୍ୟାଧିରେ ଥରେ ଆକ୍ରାନ୍ତ ହୋଇଣ
ଶଯ୍ୟାରେ ଶାୟିତ ହେଲେ ମଥୁର ମୋହନ ।
ଦେବରାୟଙ୍କ ଦର୍ଶନ ନ ପାଇ ଏମନ୍ତ
ମନପ୍ରାଣ ଏକାବେଳେ ବିକଳ ଅତ୍ୟନ୍ତ ।
କାତରେ ପ୍ରେରିଲେ ଲୋକ ପାଶେ ବାରମ୍ବାର
ବିଜେ କଲେ ଦିନେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ।
ଶଯ୍ୟାପାଶେ ପ୍ରାପ୍ତ ହୋଇ ପ୍ରାଣର ଗୋବିନ୍ଦ
ମଥୁରଙ୍କ ଚିତ୍ତେ ଜାତ ଅପାର ଆନନ୍ଦ ।
ଶଯ୍ୟାରୁ କୌଣସିରୂପେ ଗାତ୍ରୋତ୍ଥାନ କରି
ବସିଲେ ଚରଣ ପ୍ରାନ୍ତେ ତକିଆକୁ ଡେରି ।
ଆବରି କହିଲେ "ପ୍ରଭୋ, କରୁଣା ନିଧାନ
ପଦରଜ ଶିରେଦେଇ ମୂଢ଼େ କର ଧନ୍ୟ ।"
ମଥୁର ବଚନ ଶୁଣି ପ୍ରଭୁ ପଦ୍ମନାଭ
ବୋଇଲେ "ମୋ ପଦରଜେ ହେବ କେଉଁ ଲାଭ ?
ବ୍ୟାଧିର କି ଉପଶମ ହୋଇବ ସେଥିରେ"
ଏହା ଶୁଣି ଶ୍ରୀମଥୁର କହିଲେ ଉତ୍ତରେ ।
ଶୁଣନ୍ତୁ ହେ ଦେବରାଜ ଆରତ ଭଞ୍ଜନ
"ରଜ ମାଗୁ ନାହିଁ ରୋଗୁଁ ମୁକତି କାରଣ ।
ଡାକତର କବିରାଜ ଅଛନ୍ତି ତା ପାଇଁ
ତୁମ୍ଭଙ୍କୁ କଷଣ ଦେବି ସେ ହେତୁ କିମ୍ପାଇ ।
ପାରି ହେବାକୁ ଦୁସ୍ତର ଭବ-ତରଙ୍ଗିଣୀ
ମାଗଇ ଚରଣ ରଜ ଯୋଡ଼ି କର ବେନି ।"
ଭକ୍ତର ପ୍ରାର୍ଥନା କର୍ଣ୍ଣେ ପ୍ରବେଶ ମାତ୍ରକେ
ଦେବରାୟ ଭାବାବିଷ୍ଟ ହୋଇଲେ କ୍ଷଣକେ ।

ଏହି ଅବସର ପାଇ ମଥୁର ମୋହନ
ଶ୍ରୀପଦ ପଙ୍କଜେ ଶିର କରିଲେ ସ୍ଥାପନ ।
ବେନି ନେତ୍ରୁ ବହିଗଲା ଆନନ୍ଦାଶ୍ରୁଧାର
କୃତାର୍ଥ ମଣିଣ ଧନ୍ୟ ହେଲେ ଭକ୍ତବର ।
ନିତ୍ୟ ସହଚର ଭକ୍ତ ମଥୁର ବିଶ୍ୱାସ
ଏମନ୍ତେ କରିଣ ବହୁ କ୍ରୀଡ଼ା ରଙ୍ଗ ରସ,
ବାରଶତ ଅଠସ୍ତରି ଆଷାଢ଼ ମାସରେ
ସହସା ଆକ୍ରାନ୍ତ ହେଲେ ବିଷମ ଜ୍ୱରରେ ।
ଅଭିନୟ କାର୍ଯ୍ୟ ଏବେ ସମାପ୍ତ ତାଙ୍କର
ରଙ୍ଗମଞ୍ଚ ସେକାରଣେ ହୋଇବେ ଅନ୍ତର ।
ତାହାର ସୂଚନା ଦେଲେ ଜଗତ ଜନନୀ
ସେ ହେତୁ ଚିନ୍ତିତ ଅତି ପ୍ରଭୁ ଚିନ୍ତାମଣି ।
ପ୍ରତ୍ୟହ ହୃଦୁଙ୍କୁ ପ୍ରେରି ନିଅନ୍ତି ଖବର
ନିଜେ ଯିବା ପାଇଁ ମନ ନୋହିଲା ତାଙ୍କର ।
ଆଠ ଦିନ ମାତ୍ର ରୋଗେ ହୋଇଣ ଆକ୍ରାନ୍ତ
ଆରମ୍ଭରୁ ବାକ୍ୟରୋଧ ଶେଷ ପରିଯନ୍ତ ।
ଆସନ୍ନ ମରଣ କାଳ ଜାଣି ଜ୍ଞାତିଗଣ
କାଳୀଘାଟେ ଘେନି ଗଲେ ତାହାଙ୍କୁ ବହନ ।
ମୃତ୍ୟୁକାଳେ ଦେବଗୃହ ଜଗତ ଠାକୁର
ସୂକ୍ଷ୍ମ ଦେହେ ପ୍ରବେଶିଲେ ସମୀପେ ତାଙ୍କର ।
ଆତ୍ମାରାମ ଘଟୁଁ ଯଦା ବାହାର ହୋଇଲେ
ଶ୍ୟାମାଙ୍କର ସଙ୍ଗିନୀଗଣ ରଥେ ଟେକିନେଲେ ।
ପୁଣ୍ୟ ଆତ୍ମା ରଥେ ବସି ଗଲେ ଦେବୀଲୋକ
ଏସନ ଦର୍ଶନ କଲେ ପ୍ରଭୁ ପଦ୍ମମୁଖ ।
ଶ୍ରୀଦେବ ବୋଇଲେ "ଭୋଗ ଲାଳସା ତାହାର
ମେଣ୍ଟି ନ ଥିବାରୁ ଭବେ ସମ୍ପୂର୍ଣ୍ଣ ରୂପର
ଭାଗ୍ୟବାନ ରାଜାଗୃହେ ଜନମ ଲଭିଣ
ଅସମ୍ପୂର୍ଣ୍ଣ ଭୋଗ ଲିପ୍ସା କରିବ ପୂରଣ ।"
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଶ୍ରବଣ କଲେକ ଜୀବେ ହୋଇବେ ଅମର ।
ମିଥ୍ୟା ସୁଖ ଆଶେ କର୍ମୀ ହେଉଛି ଧାବିତ
ସୁଖ ନୁହେ, ସେ ଯେ ଦୁଃଖ-ଭଣ୍ଡାରେ ପୂରିତ ।
ବେଳ ଥାଉଁ ଭଜ ମନ ଶ୍ରୀଗୁରୁ ଚରଣ
ଭବତ୍ରାତା କରିବେକ ତୋ ଦୁଃଖ ମୋଚନ ।

---

## ଏକବିଂଶ ଅଧ୍ୟାୟ
## ଷୋଡ଼ଶୀ ପୂଜା

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅନାଦିକାରଣ ବିଭୁ ଜଗଜ୍ଜନ ଗୁରୁ ।
ଜୟ ଜୟ ରାମକୃଷ୍ଣ ପତିତପାବନ
ଅପାର କରୁଣାସିନ୍ଧୁ ପ୍ରଭୁ ନିରଞ୍ଜନ ।
ସାଧନ ଭଜନ ଆଦି ଯେବେ ହେଲା ଶେଷ
ଷୋଡ଼ଶୀ ପୂଜା କଳ୍ପନା କଲେ ପରମେଶ
କିସ ସେ ଷୋଡ଼ଶୀ ପୂଜା, କି ମାହାତ୍ମ୍ୟ ତାର
ସାବଧାନେ ଶୁଣ ସର୍ବେ ଚିତ୍ତ କରି ସ୍ଥିର ।
ଭଗବତୀଙ୍କ ଅର୍ଚ୍ଚନ ହୁଅଇ ଏଥିରେ
ମନ୍ତ୍ର ଉଚ୍ଚାରଣ ହୁଏ ଷୋଡ଼ଶ ଅକ୍ଷରେ ।
ଷୋଡଶୀ ପୂଜା ନାମରେ ତେଣୁ ଏହା ଖ୍ୟାତ
ଭୟଙ୍କରୀ ମୂର୍ତ୍ତି ଏଥେ ନ ହୁଏ କଳ୍ପିତ ।
ତ୍ରିଭୁବନ ମଧ୍ୟେ ଯାହା ସୌନ୍ଦର୍ଯ୍ୟର ସାର
ଏଥିରେ କଳ୍ପନା ହୁଏ ସେହି ମୂର୍ତ୍ତିଟିର ।
ଚତୁର୍ଭୁଜା ତ୍ରିନୟନା ରକ୍ତପଦ୍ମାସୀନା
ଅରୁଣ କିରଣେ ଅଙ୍ଗ ଦିଶେ ସୁଶୋଭନା ।
ବିଶ୍ୱବିମୋହିନୀ ବେଶେ ଦେବୀ ବିଭୂଷିତା
ସର୍ବମଙ୍ଗଳଦାୟିନୀ ବ୍ରହ୍ମାଣ୍ଡର ମାତା ।
ଏମନ୍ତ ଅଟଇ ଯେଉଁ ଦେବୀ ଭଗବତୀ
ତାଙ୍କୁ ପୂଜିବାକୁ ମନ କଲେ ବିଶ୍ୱପତି ।
ବିଭୁଙ୍କର ଲୀଳା ଅଟେ ଭୁବନେ ଅଦ୍ଭୁତ
ଅଲୌକିକ ଭାବେ ପୁଣି ତାହା ସମ୍ପାଦିତ ।
ଶ୍ରୀ ସାରଦା ଦେବୀ ଯେହୁ ପତ୍ନୀ ଦେବଙ୍କର
ଅଷ୍ଟାଦଶ ବର୍ଷ ଏବେ ବୟସ ତାଙ୍କର ।
ଚାରି ବରଷ ପୂର୍ବରେ ପ୍ରଭୁ ଯେତେବେଳେ
ଆପଣାର ପ୍ରଦେଶକୁ ବିଜେ କରିଥିଲେ ।
ସେତେବେଳେ ଶ୍ୱଶୁରାଳୟେ ଆଗମନ କରି
ଦେବୀ ପାଇଥିଲେ ପୁଣ୍ୟ ଦର୍ଶନ ତାଙ୍କରି ।
ଦେବଦୁର୍ଲ୍ଲଭ ସ୍ୱାମୀଙ୍କର ସଂସ୍ପର୍ଶ ଆସିଣ
ଦିବ୍ୟାନନ୍ଦ ଭୁଞ୍ଜିଥିଲେ ଚିତ୍ତେ ଅନୁକ୍ଷଣ ।

ପିତାଳୟେ ବାହୁଡ଼ିଣ ଶ୍ରୀ.ସାରଦା ଦେବୀ
ଜୀବନ ଯାପିଲେ ସେଠି ପୂତ ସୁଖ ଭାବ ।
ଦିନ ପରେ ଦିନ କ୍ରମେ ହୋଇ ଅଗ୍ରସର
ଏସନେ କଟିଲା ଚାରି ବରଷ ତାଙ୍କର ।
ପତି ସେବା ଏବେ ତାଙ୍କ ଚିତ୍ତେ ବଳବତୀ
ସାଧୁଜନେ ଶୁଣ ଆଶ ମେଣ୍ଟିଲା କେମନ୍ତି ।
ବାରଶତ ଅଠସ୍ତରି ଫାଲ୍‌ଗୁନ ମାସରେ
ଗଙ୍ଗାରେ ପଡ଼ିଲା ବୁଡ଼ ଦୋଳ ପୂର୍ଣ୍ଣିମୀରେ ।
ସେ ଉଦ୍ଦେଶ୍ୟେ ଜ୍ଞାତିବର୍ଗ ତୀର୍ଥେ ବାହାରିଲେ
ଦେବୀ ମଧ୍ୟ ଯିବା ପାଇଁ ମାନସେ ପାଞ୍ଚିଲେ ।
ପିତାଙ୍କୁ ଜଣାଇବାରୁ ଚିତ୍ତ ଅଭିଳାଷ
ଚିତ୍ତରେ ତାଙ୍କର ହେଲା ଆନନ୍ଦ ବିଶେଷ ।
କନ୍ୟାଙ୍କ ସଙ୍ଗତେ ସେନ ଜନକ ତାଙ୍କର
ଶୁଭଦିନେ ଜ୍ଞାତିସଙ୍ଗେ ତୀର୍ଥକୁ ବାହାର ।
ରେଳ ଯୋଗେ ଦୂରସ୍ଥିତ କାଶୀ ବୃନ୍ଦାବନ
କଲିକତାର ଅତ୍ୟନ୍ତ ସନ୍ନିକଟ ସ୍ଥାନ ।
ପ୍ରଭୁଙ୍କର ଜନ୍ମଭୂମି କାମାରପୁକୁର
କିମ୍ବା ଜୟରାମବାଟୀ ଶ୍ୱଶୁରଙ୍କ ଘର ।
ପୂର୍ବପ୍ରାନ୍ତେ ରହିଅଛି ଅତିଦୂର ପଥ
ବାଷ୍ପୀୟ ପୋତେ ବା ରେଳେ ନୁହଇ ଯୁକତ ।
ଦେବୀଙ୍କର ପିତା ରାମଚନ୍ଦ୍ର ଦ୍ୱିଜବର
ଆତ୍ମୀୟସ୍ୱଜନ କନ୍ୟା ସହ ଏକତର ।
ପଦବ୍ରଜେ ବାହାରିଲେ ହୋଇ ଏକମେଳ
ପରସ୍ପରେ ରଙ୍ଗ କରି ଆନନ୍ଦେ ବିହ୍ୱଳ ।
ଧାନ୍ୟକ୍ଷେତ୍ର ଗୋଟି ପରେ ଗୋଟି ହେଲେ ପାର
ମଧ୍ୟେ ମଧ୍ୟେ ପଦ୍ମପୁଷ୍ପେ ସୁଶୋଭିତ ସର ।
ପଥପାର୍ଶ୍ୱେ ଅଶ୍ୱତ୍ଥଆଦି ବିଶାଳ ପାଦପ
ଛାୟାଦାନେ ହରୁଥାଇ ସୂର୍ଯ୍ୟଙ୍କର ତାପ ।
ପଥଶ୍ରାନ୍ତ ପଥିକଙ୍କ ଆଶ୍ରୟ କାରଣେ
ଚଟୀ ଘରମାନ ଖଞ୍ଜା ଅଛି ସ୍ଥାନେ ସ୍ଥାନେ ।
ସାନନ୍ଦେ ଚଲିଲେ ପଥ ଦୁଇ ତିନ ଦିନ
ତତପରେ ନିରାନନ୍ଦେ ହୃଦୟ ଆଚ୍ଛନ୍ନ ।
ଚଲିଶ୍ରମେ ଅନଭ୍ୟସ୍ତା ଶ୍ରୀ ସାରଦା ମାତା
ମଧ୍ୟ ପଥେ ଜ୍ୱର ରୋଗେ ହୋଇଲେ ଆକ୍ରାନ୍ତା ।
କନ୍ୟାର ପୀଡ଼ିତାବସ୍ଥା କରିଣ ଦର୍ଶନ
ଦ୍ୱିଜ ରାମଚନ୍ଦ୍ର ଅତି ଚିନ୍ତାକୁଳ ମନ ।

କନ୍ୟାକୁ ଘେନିଣ ସେଠୁ ଚଟୀ ଗୋଟିକରେ
ଆଶ୍ରୟ ଘେନିଲେ ରୋଗୁଁ ମୁକତ ଆଶାରେ ।
ଏମନ୍ତେ ପୀଡ଼ିତା ହୋଇ ଶ୍ରୀ ସାରଦା ଦେବୀ
ନିଜ କର୍ମକୁ ନିନ୍ଦିଲେ ଦୁଃଖ ଅନୁଭବି ।
ଏ ଦୁର୍ଦ୍ଦିନେ ଜଗନ୍ମାତା ପାଶେ ଉଭା ହୋଇ
କେବଣେ ସାନ୍ତ୍ୱନା ଦେଲେ ଶୁଣ ମନ ଦେଇ
ଭୀଷଣ ଜ୍ୱରରେ ଦେବୀ ହୋଇ ପ୍ରପୀଡ଼ିତା
ଶୋଇଥିଲେ ବିଛଣାରେ ହରାଇଣ ଚେତା ।
ଏକାଳେ ଏକ ଅଜ୍ଞାତ ରମଣୀ ଆସିଣ
ବସିଲେ ତାଙ୍କର ପାର୍ଶ୍ୱେ ଆତ୍ମୀୟ ଯେସନ ।
ଦେହ ମୁଣ୍ଡ ଶିରଆଡ଼େ ବୁଲାଇଣ ହାତ
ଆଉଁସିଲେ ସ୍ନେହେ ଯେହ୍ନେ ଜନ୍ମକଲା ମାତ ।
ଶୀତଳ କୋମଳ କର ସ୍ପରଶ ମାତ୍ରକେ
ଜ୍ୱର ଛାଡ଼ିଣ ଚେତନା ଆସିଲା କ୍ଷଣକେ ।
ଦୃଷ୍ଟି ଦେଲା ମାତ୍ରେ ଦେବୀ ଦେଖିଲେ ପାର୍ଶ୍ୱରେ
ଅଚିହ୍ନା ରମଣୀ ଏକ ବସି ସେବା କରେ ।
ଯାହାର ସୌନ୍ଦର୍ଯ୍ୟେ ପ୍ରାଣ ମନ ବିମୋହିତ
ମର୍ତ୍ତ୍ୟ ଧାମେ ଯେହ୍ନେ ଏକ ଦେବୀ ଆବିର୍ଭୂତ ।
କେଉଁଠୁ ଆସିଣ ଏଥୁ ଏ ବିଜନ ଦେଶେ ।
ଶୁଶ୍ରୂଷା କରଇ ମୋର ଆତ୍ମୀୟ ସଦୃଶେ ।
ଏମନ୍ତ ବିଚାରି ମନେ ଶ୍ରୀ ସାରଦା ମାତା
ପୁଚ୍ଛିଲେ ତାହାଙ୍କୁ ଧୀରେ ପରିଚୟ କଥା ।
"ଦେବୀ ବା ମାନବୀ ତୁମ୍ଭେ କାହାର ଗୃହିଣୀ
କେଉଁଠାରୁ ଆସୁଅଛ, କାହିଁ ଯିବ ପୁଣି ।"
ରମଣୀ କହିଲେ ତହୁଁ ସଧୀରେ ଉତ୍ତର
"ଦକ୍ଷିଣେଶ୍ୱରରୁ ମୁହିଁ ଆସୁଛି ଏଠାର ।"
ଏସନ ଉତ୍ତର ପାଇ ଶ୍ରୀ ସାରଦା ମାତା
ଅତ୍ୟଧିକ ଆଶ୍ଚର୍ଯ୍ୟରେ ହେଲେ ଅଭିଭୂତା ।
ସେଠାକାର ଲୋକ ଜାଣିଥିବେ ସେ ପତିଙ୍କୁ
ଏହା ଭାବି ମନ କଥା ନିବେଦିଲେ ତାଙ୍କୁ ।
"ଦକ୍ଷିଣେଶ୍ୱରକୁ ଯାଇ ସ୍ୱାମୀଙ୍କୁ ସେବିବି
ଘରୁ ବାହାର ହୋଇଲି ଏ ପ୍ରକାର ଭାବି ।
ଜ୍ୱରରେ ଆକ୍ରାନ୍ତ ହେଲି ଆସି ମଧ୍ୟ ପଥେ
ଜଳ୍ପନା କଳ୍ପନା ଆଜ ସବୁ ଗଲା ବ୍ୟର୍ଥେ ।
ଦକ୍ଷିଣେଶ୍ୱରକୁ ଯିବା ନ ଘଟିବ ଭାଗ୍ୟେ"
ଏମନ୍ତେ କହିଲେ ଖେଦେ କେତେ ତାଙ୍କ ଆଗେ ।

ସାନ୍ତ୍ୱନା ଦେଇଣ ବାମା କହିଲେ ଉତ୍ତରେ
"ଚିନ୍ତିତ ନ ହୁଅ ତୁମ୍ଭେ କଦାପି ଏଥିରେ ।
ଜ୍ୱରରୁ ଆରୋଗ୍ୟ ଲାଭ କରିଣ ସତ୍ୱର
ଦକ୍ଷିଣେଶ୍ୱରେ ଦେଖିବ ପତିଙ୍କୁ ତୁମ୍ଭର ।
ତୁମ୍ଭ ପାଇଁ ରଖାଇଛୁ ତାହାଙ୍କୁ ସେ ସ୍ଥାନେ
ସଂଶୟ ନ କର ତୁମ୍ଭେ ମୋହର ବଚନେ ।"
ତାହାଙ୍କୁ ପୁଚ୍ଛିଲେ ତହୁଁ ଶ୍ରୀ ସାରଦା ଦେବୀ,
"କିଏ ତୁମ୍ଭେ ମୋ ଦୁଃଖରେ ଏତେ ଅନୁଭବୀ ?"
ବିନୀତ ଭାବେ ବୋଇଲେ ତାହାଙ୍କୁ ରମଣୀ
"ସମ୍ପର୍କେ ଅଟଇ ମୁହିଁ ତୁମ୍ଭର ଭଉଣୀ ।"
କଥା ଶେଷ ନ ହେଉଣୁ ଶ୍ରୀ ସାରଦା ମାତା
ତତକ୍ଷଣେ ହୋଇଲେ ପୁନଃ ନିଦ୍ରା ଅଭିଭୂତା ।
ପ୍ରାତଃକାଳୁଁ ଦ୍ୱିଜ ରାମ ଗାତ୍ରୋତ୍ଥାନ କରି
ଜ୍ୱରର ବିରାମ ଦେଖି ଆନନ୍ଦିତ ଭାରି ।
କନ୍ୟାକୁ କହିଲେ "ତେବେ ଧୀରେ ଧୀରେ ଯିବା
ଅନ୍ୟ ଚଟୀ ଅଗ୍ରେ ଧରି ବିଶ୍ରାମ ଲଭିବା ।"
ପିତାଙ୍କ କଥାରେ କନ୍ୟା ହୋଇଲେ ସମ୍ମତ
କାଳ ବିଳମ୍ବ ନ କରି ଦୁହେଁ ବହିର୍ଗତ ।
କିଛି ଦୂର ଗଲା ପରେ ବିଭୁଙ୍କ କୃପାରେ
ପାଲିଙ୍କି ଖଣ୍ଡିଏ ପିତା ପାଇଲେ ଭଡ଼ାରେ ।
ପୀଡ଼ିତା ସାରଦାଦେବୀ ପାଲିଙ୍କିରେ ବସି
ରାତ୍ରରେ ଦକ୍ଷିଣେଶ୍ୱରେ ପ୍ରବେଶିଲେ ଆସି ।
ପୀଡ଼ିତା ପତ୍ନୀଙ୍କୁ ତହିଁ ଅବସ୍ଥା ଦେଖିଣ
ଅତ୍ୟନ୍ତ ଉଦ୍‌ବିଗ୍ନ ହେଲେ ପ୍ରଭୁ ନାରାୟଣ ।
ଯାତ୍ରା ଲାଗି ବୃଦ୍ଧି ହେବ ଜ୍ୱରର ପ୍ରକୋପ
ଏମନ୍ତ ଚିନ୍ତିଣ ପ୍ରଭୁ ବ୍ରହ୍ମାଣ୍ଡ ଅଧିପ,
ପତ୍ନୀଙ୍କ ଶୟନ ପାଇଁ ନିଜ ପ୍ରକୋଷ୍ଠରେ
ଭିନ୍ନ ଶଯ୍ୟା ବନ୍ଦୋବସ୍ତ କଲେକ ଯତ୍ନରେ ।
ଆକ୍ଷେପ କହିଲେ ତାଙ୍କୁ ପ୍ରଭୁ ଭଗବାନ
"ଏତେ କାଳ ପରେ ଏଠି କଲ ଆଗମନ ।
ଆଉକି ଧରାରେ 'ଛନ୍ତି ଭକତ ମଥୁର
ଚିକିତ୍ସା ନିମନ୍ତେ ଯତ୍ନ କରିବେ ତୁମ୍ଭର ?"
ଯାହାହେଉ ଦେବ ରାସ୍ତ ତହିଁଆରଦିନ
ଚିକିତ୍ସା ନିମନ୍ତେ କଲେ ବିଶେଷ ଯତନ ।
ଔଷଧ ସେବନ କରି ଦିନ ଦୁଇ ତିନି
ଆରୋଗ୍ୟଲାଭ କଲେ ଶ୍ରୀ ସାରଦାମଣି ।

ତଦନ୍ତେ ସେଠାରେ ତାଙ୍କ ରହିବା ସକାଶେ
ବନ୍ଦୋବସ୍ତ କଲେ ଦେବ ନିଜ ମାତା ପାଶେ ।
ପତିଙ୍କ ଆଦର ଯତ୍ନେ ବିମୁଗ୍ଧ ହୋଇଣ
ଦୂର କଲେ ପତ୍ନୀ ତାଙ୍କ ଚିତ୍ତ ଦ୍ୱନ୍ଦ୍ୱମାନ ।
ଦେଖିଲେ ତାଙ୍କର ପତି 'ଛନ୍ତି ପୂର୍ବ ପରି
ମିଥ୍ୟାରେ ରଟନ୍ତି କୁତ୍ସା ଅଜ୍ଞାନ ସଂସାରୀ ।
ଦେବଭାବେ ତାଙ୍କ ପତି ନିରତେ ବିହ୍ୱଳ
ମରମ ନ ବୁଝି ସର୍ବେ ବୋଲନ୍ତି ବାତୁଳ ।
ପ୍ରାଣୀଏ ଇଦୃଶ ପତି ବହୁପୁଣ୍ୟେ ପାନ୍ତି
ପାଇଲେ ଶ୍ରୀପଦ ସେବା ଧନ୍ୟ ମୁଁ ମଣନ୍ତି ।
ଏ ପ୍ରକାରେ ଦେବଭାବେ ହୋଇ ପ୍ରଣୋଦିତ
ଆପଣା କର୍ତ୍ତବ୍ୟ ଦେବୀ କଲେ ସ୍ଥିରୀକୃତ ।
ବସବାସ କରି ଏବେ ଶାଶୁଙ୍କର ପାଶେ
ପରିପୂର୍ଣ୍ଣ ହେଲା ଚିତ୍ତ ଅତୀବ ଉଲ୍ଲାସେ ।
ଦେବତୁଲ୍ୟ ପତି ଆଉ ଶାଶୁଙ୍କ ପୟର
ସେବାରେ ନିଯୁକ୍ତା ହେଲେ ଦେବୀ ଅତଃପର ।
କନ୍ୟାଙ୍କୁ ପ୍ରସନ୍ନା ଦେଖି ଦ୍ୱିଜ ରାମଚନ୍ଦ୍ର
ଭୁଞ୍ଜିଲେ ଆପଣା ଚିତ୍ତେ ଅପାର ଆନନ୍ଦ ।
ଦେବସମ ଜାମାତାଙ୍କ ପାଶେ କନ୍ୟା ରଖି
ଦ୍ୱିଜ ରାମଚନ୍ଦ୍ର ହେଲେ ଗୃହ ଅଭିମୁଖୀ ।
ପତ୍ନୀଙ୍କୁ ପାଇଣ ପାଶେ ପ୍ରଭୁ ଗୁଣଧର
ନିଜ କର୍ତ୍ତବ୍ୟ ପାଳନେ ହୋଇଲେ ତତ୍ପର ।
ମାନବ ଜନ୍ମର କିସ ମହତ ଉଦ୍ଦେଶ୍ୟ
ପ୍ରାଣୀଙ୍କର ତହିଁ କିବା କର୍ତ୍ତବ୍ୟ ବିଶେଷ ।
କିପରି ଭାବରେ ଥାଇ ଏ ଭବ ସଂସାରେ
ସ୍ଥାପିବାକୁ ହେବ ମନ ବିଭୁଙ୍କ ପୟରେ ।
ଇତ୍ୟାଦି ବିଷୟମାନ ଭିନ୍ନ ଭିନ୍ନ କରି
ପତ୍ନୀଙ୍କୁ ବୁଝାଇଦେଲେ ପ୍ରଭୁ ନରହରି ।
ପରିଣୟ ସୂତ୍ରେ ଯଦା ହୋଇଥିଲେ ଆବଦ୍ଧ
ଶ୍ୟାମାଙ୍କୁ ଜଣାଇଥିଲେ ପ୍ରଭୁ ଶ୍ରୀଗୋବଧ ।
ମାତଃ ଜଗଦମ୍ବେ ତୁମ୍ଭେ ଅନୁଗ୍ରହ କରି
ପତ୍ନୀଠାରୁ କାମରିପୁ ନିଅ ଅପସାରି ।
ତା ହେଲେ ଏକତ୍ର ଦୁହେଁ କରି ବସବାସ
ସାଧି ପାରିବ ମର୍ତ୍ତ୍ୟରେ ଜନ୍ମର ଉଦ୍ଦେଶ୍ୟ ।
ସୁତର କାତର ବାଣୀ ଶୁଣି ଜଗନ୍ମାତା
ପତ୍ନୀକୁ ପ୍ରକୃତ କଲେ କାମ ବିବର୍ଜ୍ଜିତା ।

ମଧୁର ଆଖ୍ୟାନ ତାର ଶୁଣ ମନ ଦେଇ
ହେଲେ ତରିବାକୁ ଇଚ୍ଛା ଯଦି ଭବ ନଈ ।
ତବସେ ସାରଦା ଦେବୀ ଶାଶୁ ପାଶେ ଥାନ୍ତି
ସ୍ୱାମୀ ପାଶେ ଶୋଇବାକୁ ନିଶୀଥେ ଆସନ୍ତି ।
ସମ୍ପୂର୍ଣ୍ଣ ଯୌବନା ପତ୍ନୀ ପୂର୍ଣ୍ଣ ଯୁବା ସ୍ୱାମୀ
ଏକତ୍ର ଶୟନରେ ସଦା ଯାପନ୍ତି ରଜନୀ ।
ଯୁବକ ଯୁବତୀ ଦୁହେଁ କାହାର ମନରେ
କାମୋଦ୍ରେକ ହୁଏ ନାହିଁ ଅଣୁ ପ୍ରମାଣରେ ।
ଈଶ୍ୱର ପ୍ରସଙ୍ଗେ ଦୁହେଁ ସର୍ବଦା ବିହ୍ୱଳ
ଗୋଲୋକରେ ପରିଣତ ହେଲା ଧରାତଳ ।
କୌଣସି ଯୁଗରେ କେଉଁଣସି ଅବତାରେ
ଏ ବିଶୁଦ୍ଧ ପ୍ରେମ ଦେଖା ନାହିଁ ଏ ଧରାରେ ।
ପତ୍ନୀଙ୍କୁ ନିଦ୍ରିତା ଦେଖି ଦେବରାୟ ଦିନେ
ବିଚାରେ ପ୍ରବୃତ୍ତ ହେଲେ ଆପଣାର ମନେ ।
"ଆରେ ମନ ! ଭଲରୂପେ ନିରୀକ୍ଷଣ କର
ଯାହାକୁ ହିଁ କହନ୍ତି ଲୋକେ କାମିନୀ ଶରୀର ।
ଯାହାକୁ ଅତି ଉପାଦେୟ ଭୋଗ୍ୟବସ୍ତୁ ଜାଣି
ଭୋଗକରିବା ନିମନ୍ତେ ଲାଳାୟିତ ପ୍ରାଣୀ ।
ଏ ଭୋଗ ବିଳାସ ଯାର ଚିତ୍ତେ ଥାଏ ଆଶ
ଦେହରେ ଆବଦ୍ଧ ରହେ ସଦା ତା ମାନସ ।
ଏଥିରେ ନ ହୁଏ କେବେଁ ବିଭୁପଦ ଲଭ
ଅତି ତୁଚ୍ଛ ହେୟ ବସ୍ତୁ ଏ ହେଉ ଜାଣିବ ।
ପ୍ରକୃତ ବିଚାର କରି କହ ଆରେ ମନ !
ତୋର ଆଶା କରିବାକୁ କାହାକୁ ଚିହ୍ନଣ ।
ବିଭୁପାଦ ଲଭ ଅବା କାମିନୀ ସମ୍ଭୋଗ
ଯାହାକୁ ତୋହର ଇଚ୍ଛା କର ତାକୁ ଭୋଗ ।
ପେଟେ ଭୋକ ମୁହେଁ ଲାଜ କେବେହେଁ ନ କର
ଭୋଗ୍ୟବସ୍ତୁ ସମ୍ମୁଖରେ ଚିନ୍ତା କି ଆବର ।"
ଏମନ୍ତ ବିଚାର କରି ଶ୍ରୀଦେବ ଅଚ୍ୟୁତ
ପତ୍ନୀ ଅଙ୍ଗ ସ୍ପର୍ଶିବାକୁ ଯେମନ୍ତ ଉଦ୍ୟତ ।
ଈଶ୍ୱରୀୟ ଭାବ ମନେ ଜାଗିଣ ତକ୍ଷଣ
ଗଭୀର ସମାଧି ଜଳେ ଦେଲେ ନିମଜ୍ଜନ ।
ଚିତ୍ତେ ହେଲା ଏ ପ୍ରକାର ଭାବ ବିହ୍ୱଳତା
କଟିଗଲା ସାରା ରାତି ନ ଆସିଲା ଚେତା ।
କର୍ଣ୍ଣମୂଳେ ଦେବଦେବୀ ନାମ ଉଚ୍ଚା
ଚେତା ଆସିଲାକ ବହୁ କଷ୍ଟେ ପରଦିନ ।

ଆପଣା କର୍ତ୍ତବ୍ୟ ଜାଣି ଜଗତ ଗୋସାଇଁ
ପତ୍ନୀକୁ ଦେଲେ ଯେ ଶିକ୍ଷା ସମୀପେ ବସାଇ ।
ଗୃହ କର୍ମରୁ ଆରମ୍ଭି ବ୍ରହ୍ମ ପଦ ଲଭ
ସବୁ ବିଷୟରେ ଶିକ୍ଷା ଦେଲେ ପଦ୍ମନାଭ ।
ପତ୍ନୀଙ୍କୁ କହିଲେ ଦିନେ କରୁଣାସାଗର
"ଚନ୍ଦ୍ରମାମୁଁ ଯଥା ମାମୁଁ ସବୁ ଶିଶୁଙ୍କର,
ପରମ ଆତ୍ମୀୟ ତଥା ଜଗତର ନାଥ
ଯେ ଡାକେ ପାରଇ ତାର ପାଶେ ଉପସ୍ଥିତ ।
ମାନବ ମାନଙ୍କ ଯେତେ ଅଛନ୍ତି ମହୀରେ
ସମସ୍ତଙ୍କ ଅଧିକାର ଅଛି ତାଙ୍କଠାରେ ।
ସର୍ବାନ୍ତଃକରଣ ଦେଇ ଯେ ତାଙ୍କୁ ଡାକଇ
କୃତାର୍ଥ ହୁଅଇ ସେହୁ ଦର୍ଶନ ଯେ ପାଇ ।
ତୁମ୍ଭେ ଯଦି ପ୍ରାଣ ଦେଇ ଡାକିବ ତାହାଙ୍କୁ
କୁଣ୍ଠିତ ନୋହିବେ ସେହୁ ଦର୍ଶନ ଦେବାକୁ ।"
ଦେବଭାବେ ପତି ପତ୍ନୀ ସଦା ମଗ୍ନ ଥାଇ
କେମନ୍ତେ ଯାପିଲେ ନିଶା ଶୁଣ ମନ ଦେଇ ।
କହିଲେ ସାରଦାଦେବୀ ଭକ୍ତଙ୍କ ଅଗ୍ରତେ
"ସେ ଦିବ୍ୟ ଭାବର କଥା ଅତୁଳ ଜଗତେ ।
ଯେ ଅପୂର୍ବ ଭାବ ରାଜ୍ୟେ ଭ୍ରମନ୍ତା ମୋ ମନ
କଥାରେ ତା ବୁଝାଇବା ଅତ୍ୟନ୍ତ କଠିନ ।
ଦେବରାୟ ଥାନ୍ତି ସଦା ଭାବରେ ବିହ୍ୱଳ
ଭାବାବେଶେ କେବେ କାନ୍ଦ, କେବେ ହାସ୍ୟ ରୋଳ ।
କେତେବେଳେ କହି ନାନା ହିତ କଥାମାନ
ଆଦେଶନ୍ତି କରିବାକୁ କାର୍ଯ୍ୟେ ତା ପାଳନ ।
କେତେବେଳେ ମନ ପ୍ରାଣ ଲୀନ ସମାଧିରେ
ସେ ଅବସ୍ଥା ଦେଖି ଭୟ ଜାତ ମୋ ଚିତ୍ତରେ ।
ରାତି ରାତି ବିତିଯାଏ ଚିନ୍ତାରେ ଆକୁଳ
ଭାବୁଥାଏଁ କେତେବେଳେ ହେବ ପ୍ରାତଃକାଳ ।
ଭାବର ପ୍ରାବଲ୍ୟ ଦିନେ ହୋଇଲା ଏପରି
ସମାଧିରେ ମଗ୍ନ ଥାଇ ସାରା ବିଭାବରୀ,
ସମାଧି ଭାଙ୍ଗିଲା ନାହିଁ କୌଣସି ପ୍ରକାରେ
ଯେତେ ଚେଷ୍ଟା କଲି ଫଳ ନୋହିଲା ସେଥିରେ ।
ଉପାୟ ନ ଦେଖି ବୁଦ୍ଧି ହଜିଲା ମେ ହର
କାତରେ ଭଣଜା ପାଶେ ପେଶିଲି ଖବର ।
ହୃଦୁ ଆସି ହରିନାମ କଲା କର୍ଣ୍ଣମୂଳେ
କିଛିକ୍ଷଣ ପରେ ତେବେ ଚେତା ସେ ଲଭିଲେ ।

ସମାଧି ଦେଖିଣ ମୋର ଚିତ୍ତେ ଭୟ ଜାତ
ପ୍ରଭୁ ପ୍ରାଣନାଥ ତାହା ହୋଇ ଅବଗତ,
କେଉଁ ଦେବ ନାମ କଲେ କେଉଁ ଅବସ୍ଥାରେ
ସହଜେ ଆସିବ ବାହ୍ୟଜ୍ଞାନ ତାଙ୍କଠାରେ
ତନ୍ନ ତନ୍ନ କରିଣ ତା ଶିଖାଇଲେ ମୋତେ
ତଦବଧି ଆଚରିଲି ମୁହିଁ ସେହିମତେ ।
ଦେବଦେବୀ ନାମ କର୍ଣ୍ଣେ ପ୍ରବେଶ ମାତ୍ରକେ
ସମାଧି ଭାଙ୍ଗିଣ ଚେତା ଆସଇ କ୍ଷଣକେ ।
ଭାବାବେଶେ କେତେବେଳେ ସମାଧି ହୋଇବ
ଜାଣି ନ ପାରିଲେ ତାହା କ୍ରମେ ଗାଢ଼ ହେବ ।
ଏମନ୍ତ ଚିନ୍ତାରେ ଚିତ୍ତ ହୋଇଣ ମଣ୍ଡିତ
ସାରା ରାତି ଶଯ୍ୟା ପାଶେ ଥାଏଁ ମୁ ଜାଗ୍ରତ ।
ଚେତା ଥିଲାବେଳେ ନାଥ ସୁସ୍ଥ ହୋଇଣ
ନାନା ବିଷୟରେ ଶିକ୍ଷା କରନ୍ତି ପ୍ରଦାନ ।
କେମନ୍ତେ ବଳିତା ରଖି ପ୍ରଦୀପ ଜାଳିବି
ଗୃହ କର୍ମମାନ କି ଭାବରେ ଆଚରିବି ।
କିଏ କିପରି ମନୁଷ୍ୟ ସ୍ୱଭାବ କେସନ
କାହା ସଙ୍ଗେ କି ପ୍ରକାର ବେଭାର ବିଧାନ ।
ଅନ୍ୟ ଗୃହେ ଗଲେ ସେହି ପରିବାର ପ୍ରତି
କି କର୍ତ୍ତବ୍ୟ, କାହା ସଙ୍ଗେ ବେଭାର କିମିତି ।
ଭଜନ କୀର୍ତ୍ତନ ପୂଜା ବିଭୁଙ୍କର ଧ୍ୟାନ
କେବଣେ ତା ଆଚରିଲେ ମନସ୍କାମ ପୂର୍ଣ୍ଣ ।
ଆଉରି ସମାଧି ଲଭି ପ୍ରାଣୀ ଏ ଧରାରେ
ବ୍ରହ୍ମଜ୍ଞାନ ଲଭି ତରିଯାନ୍ତି କି ପ୍ରକାରେ ।
ଇତ୍ୟାଦି ବିଷୟମାନ ତନ୍ନ ତନ୍ନ କରି
ପାଶେ ରଖି ଶିକ୍ଷା ଦେଲେ ଦେବ ନରହରି ।
ପତି ପତ୍ନୀ ମଧ୍ୟେ କିବା ପବିତ୍ର ସମ୍ବନ୍ଧ
ନିଜେ ସାଧି ଦେଖାଇଲେ ଆପଣେ ଗୋବିନ୍ଦ ।
ଆରେ ମୂଢ଼ ମନ ! ଏବେ ହେଜ ଦେଖ ଥରେ
କିପରି ବେଭାର ତୋର ପତ୍ନୀ ସହିତରେ ।
କାହିଁ ସେ ନିଃସ୍ୱାର୍ଥ ପ୍ରେମ, ହିତ ଶିକ୍ଷା ଦାନ
କାହିଁ ନାରୀ ପ୍ରତି ଭକ୍ତି, ନାରୀ ଜାତି ମାନ୍ୟ ।
ନିରତେ କାମକଟାକ୍ଷ କରି ତାଙ୍କ ପ୍ରତି
ଜନମ କରିବା ଯନ୍ତ୍ରେ କଲୁ ପରିଣତି ।
ଦିବ୍ୟ ନେତ୍ର ସାହାଯ୍ୟରେ କର ରୁ ଦର୍ଶନ
ଦେବଦେବୀ ମର୍ତ୍ତ୍ୟେ କେତେ ସହିଲେ କଷଣ ।
ମାନବ କଲ୍ୟାଣ ଚିତ୍ତେ ଦୃଢ଼ ଭାବେ ଧରି
ମର୍ତ୍ତ୍ୟକୁ ଆସିଲେ ଦେବୀ ସଙ୍ଗେ ନରହରି ।
ବିବାହ ବନ୍ଧନେ କିସ ମହତ ଉଦ୍ଦେଶ୍ୟ
ନିଜେ ସାଧି ଧରାଧାମେ ସ୍ଥାପିଲେ ଆଦର୍ଶ ।
ସେ ଆଦର୍ଶେ ଲକ୍ଷ୍ୟ ରଖି ଆରେ ବାଉଳା ମନ !
କାର୍ଯ୍ୟେ ପରିଣତ ପାଇଁ ହୁଅ ଯତ୍ନବାନ ।
"ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା" ଶାସ୍ତ୍ର ବଖାଣଇ
ନ ଜାଣିଲୁ ଏ ବାକ୍ୟର ମର୍ମ କି ଅଟଇ ।
ଶାସ୍ତ୍ରର ଦୋହାଇ ଦେଇ କାମ ମେଣ୍ଟାଇଲୁ
ଦୁଃଖ ଦାରିଦ୍ର୍ୟରେ ମହୀ ପରିପୂର୍ଣ୍ଣ କଲୁ ।
ପ୍ରାଣୀ ହିତେ କହିଛନ୍ତି ପ୍ରଭୁ ଗୁଣଧାମେ
"ଗୋଟିଏ କନ୍ୟା ବା ପୁତ୍ର ସନ୍ତାନ ଜନମେ
ପତି ପତ୍ନୀ ହୁହେଁ ଭାଇ ଭଉଣୀ ସମାନ
ବିଶୁଦ୍ଧ ଭାବେ ଯାପିବେ ତାଙ୍କର ଜୀବନ ।"
ପାଶୋରିଣ ଆରେ ମନ ! ଆର୍ଯ୍ୟ ବ୍ରହ୍ମଚର୍ଯ୍ୟ
ଆପଣାକୁ କଲୁ ସିନା ଏଡ଼େ ମ୍ଳାନକାର୍ଯ୍ୟ ।
ତୋ ଦୁଃଖେ କାତର ହୋଇ ଯୁଗ-ଅବତାର
ଦରିଦ୍ର ବ୍ରାହ୍ମଣ ଗୃହେ ଘେନିଲେ ଶରୀର ।
ଅତୀତ ଗୌରବ ଯଦି ବାସନା ତୋ ଚିତ୍ତେ
ତାଙ୍କ ଆଦର୍ଶରେ କାର୍ଯ୍ୟ ଆଚର ନିରତେ ।
ଶ୍ରୀକୃଷ୍ଣଙ୍କୁ ଉପେକ୍ଷିଣ ଯଦୁବଂଶ ଧ୍ୱଂସ
ଯୀଶୁଙ୍କୁ ଉପେକ୍ଷା କରି ଇହୁଦୀ ବିନାଶ ।
ଯୁଗ-ଅବତାର ବାଣୀ ଅବହେଳା କଲେ
ଜାତିର ବିନାଶ ହୁଏ ଦେଖ କାଳେ କାଳେ ।
ଅତଃପର ସାବଧାନେ ଶୁଣ ଆରେ ମନ !
ସ୍ତ୍ରୀ ଜାତିର ମହୀତଳେ କେଡ଼େ ଉଚ୍ଚ ସ୍ଥାନ ।
ପାଦ ସେବା କରୁ କରୁ ପତ୍ନୀ ଦିନକରେ
ପତିଙ୍କୁ ପୁଚ୍ଛିଲେ ପ୍ରଶ୍ନ ଅତି ମୃଦୁ ସ୍ୱରେ ।
"ତୁମ୍ଭେ ମୋତେ କି ଚକ୍ଷୁରେ କରୁଛ ଦର୍ଶନ"
ଉତ୍ତରେ ଭାଷିଲେ ଧୀରେ ପ୍ରଭୁ ଭଗବାନ ।
"ମନ୍ଦିରେ ଯେ ଜଗନ୍ମାତା ବିରାଜିତା 'ଛନ୍ତି
ଏ ଦେହ ପିଣ୍ଡର ସେହି କାରଣ ଅଟନ୍ତି ।
ଜନ୍ମଦାତ୍ରୀ ରୂପେ ସେହି 'ଛନ୍ତି ନହବତେ
ଚରଣ ସେବନ୍ତି ସେହି ମୋର ସନ୍ନିହିତେ ।
ସାକ୍ଷାତ୍ ଆନନ୍ଦମୟୀ ଦେବୀ ସ୍ୱରୂପରେ
ତୁମ୍ଭଙ୍କୁ ଦେଖଇ ମୁହିଁ ନିରତେ ଅନ୍ତରେ ।"

କେବଳ ଏ ମୁହିଁ କଥା ନ ଭାଳ ରେ ମନ !
କଥା ଯାହା କାର୍ଯ୍ୟେ ମଧ୍ୟ ତାହା ଆଚରଣ ।
ଭକ୍ତ ସହ ସେ ଆଖ୍ୟାନ ଅବଧାନ କର
ଏ ମଧ୍ୟରେ ନାହିଁ ଆଉ ପଟାନ୍ତର ଯାର ।
ବାରଶତ ଅଶୀ ସାଲ ଜ୍ୟେଷ୍ଠ ଅର୍ଦ୍ଧଗତ
ଅମାବାସ୍ୟା ତିଥି ତହିଁ ସଙ୍ଗେ ସମାଗତ
ଫଳହାରିଣୀ କାଳିକା ପୂଜା ଆଜଦିନ
ମଧ୍ୟରେ ବିଶେଷ ପୂଜା ତେଣୁ ଆୟୋଜନ ।
କେଜାଣି କି ମନେ ଭାବି ପ୍ରଭୁ ବିଶ୍ୱସାଇଁ
ଯୋଗାଡ଼ କରନ୍ତି ପୁଣି ଗୃହେ ପୂଜା ପାଇଁ ।
ସେ ନିମନ୍ତେ ଯାହା କିଛି ଲୋଡ଼ା ତାହାଙ୍କର
ଶାସ୍ତ୍ରମତେ ଯଥାବିଧି କଲେ ଏକତର ।
ଆଲିମ୍ପନ * ଆଦି ଦିଆହେଲା ଯଥାସ୍ଥାନେ
ପୂଜାରମ୍ଭ ହେବ ଶୁଭକ୍ଷଣ ଆଗମନେ ।
ଦେଖୁ ଦେଖୁ ଅସ୍ତାଚଳେ ଗଲେ ଦିନମଣି
ତିମିରେ ଆଚ୍ଛନ୍ନ ଅମାବାସ୍ୟାର ରଜନୀ ।
ପ୍ରଭୁଙ୍କର ଆଜ୍ଞାମତେ ଶ୍ରୀସାରଦା ମାତା
ଯଥାକାଳେ ପୂଜାସ୍ଥଳେ ହେଲେ ଉପନୀତା ।
ଦେବୀ ପାଶେ ପୂର୍ବମୁଖେ ବସିଲେ ଗୋସାଇଁ
ତାଙ୍କର ଦକ୍ଷିଣେ ପତ୍ନୀ ଉତ୍ତରାସ୍ୟା ହୋଇ ।
ସମ୍ମୁଖସ୍ଥ କଳସୀର ମନ୍ତ୍ରପୂତ ଜଳେ
ଯଥାବିଧି ଶ୍ରୀମାତାଙ୍କୁ ଅଭିଷିକ୍ତା କଲେ ।
ଅତଃପର ମନ୍ତ୍ର ପଢ଼ି ପ୍ରଭୁ ଭଗବାନ
ପୂଜାସ୍ଥଳେ ଭବାନୀଙ୍କୁ କଲେ ଆବାହନ ।
"ଦେବୀ ଭଗବତୀ ସର୍ବଶକ୍ତି ଅଧିଶ୍ୱରୀ
ଜଗତଜନନୀ ମାତଃ ତ୍ରିପୁର ସୁନ୍ଦରୀ !
କୃପାଦୃଷ୍ଟିପାତ ଥରେ କରିଣ ମୋଠାର
ଉନ୍ମୁକ୍ତ କରନ୍ତୁ ମୋର ସର୍ବସିଦ୍ଧି ଦ୍ୱାର ।
ୟାଙ୍କର ଶରୀର ମନ କରାଇଣ ପୂତ
ଦିବ୍ୟାନନ୍ଦ ୟାଙ୍କଠାରେ ହୋନ୍ତୁ ଆବିର୍ଭୂତ ।
ଏସନେ ୟାଙ୍କର ଦେହେ ବିରାଜି ଆପଣ
ବ୍ରହ୍ମାଣ୍ଡେ କରନ୍ତୁ ସର୍ବ ମଙ୍ଗଳ ସାଧନ ।"
ଏଥିଅନ୍ତେ ଶ୍ରୀ ସାରଦାଦେବୀଙ୍କ ଅଙ୍ଗରେ
ମନ୍ତ୍ରନ୍ୟାସ କଲେ ପ୍ରଭୁ ଯଥା ନିୟମରେ ।
ଷୋଡ଼ଶୋପଚାରେ ପୂଜା କରି ଦେବୀଙ୍କୁନେ
ଭୋଗ ମଧ୍ୟ ନିବେଦିଲେ ଭକ୍ତିଯୁକ୍ତ ମନେ ।
କିୟଦଂଶ ନିବେଦିତ ଭୋଗରୁ ଆଣିଣ
ସ୍ୱହସ୍ତରେ ଦେବୀ ମୁଖେ କଲେକ ପ୍ରଦାନ ।
ବାହ୍ୟଜ୍ଞାନଶୂନ୍ୟ ହୋଇ ଶ୍ରୀ ସାରଦା ମାତା
ଦେବୀଙ୍କ ଆସନେ ବସି ଏଣେ ସମାଧିସ୍ଥା ।
ଅର୍ଦ୍ଧବାହ୍ୟ ଅବସ୍ଥାରେ ପ୍ରଭୁ ଦେବରାଜେ
ମନ୍ତ୍ର ଉଚ୍ଚାରଣ କରି ସମାଧିସ୍ଥ ନିଜେ ।
ଅପୂରୁବ ଦୃଶ୍ୟ ମନ ! ଦେଖ ରେ ନେତ୍ରରେ
ପୂଜ୍ୟ ପୂଜକ ଉଭୟେ ମଗ୍ନ ସମାଧିରେ ।
ପୂର୍ବଭାବେ ଆତ୍ମା ସହ ଆତ୍ମାର ମିଳନ
ଦିବ୍ୟାନନ୍ଦ ଭୁଞ୍ଜିଲେକ ଏକ ହୋଇ ପୁଣ ।
ଏ ଭାବେ କିୟତକାଳ ହୋଇଲା ଅତୀତ
ଦ୍ୱିତୀୟ ପ୍ରହର ରାତି କ୍ରମେ ହେଲା ଗତ ।
ବାହ୍ୟଜ୍ଞାନ ଫେରିବାର ଯେ ସବୁ ଲକ୍ଷଣ
ଅତଃପର ସେ ସକଳ ଅଙ୍ଗେ ଦୃଶ୍ୟମାନ ।
ଅର୍ଦ୍ଧ ବାହ୍ୟାବସ୍ଥା ପ୍ରଭୁ ଲଭିଲେ ଯେମନ୍ତ
ଆତ୍ମନିବେଦନ କଲେ ଦେବୀ ପଦପ୍ରାନ୍ତ ।
ତଦନ୍ତେ ତାଙ୍କର ଯେତେ ସାଧନର ଫଳ
ଜପମାଳା ଆଦି କରି ଯା କିଛି ସମ୍ବଳ ।
ଦେବୀଙ୍କର ପାଦପଦ୍ମେ ତାହା ସମର୍ପିଣ
ଭକ୍ତିସହ ପ୍ରଣମିଲେ ମନ୍ତ୍ର ଉଚ୍ଚାରିଣ ।
"ମଙ୍ଗଳରୂପିଣୀ ମାତଃ ମଙ୍ଗଳଦାୟିନି !
ହେ ଦେବି ! ସରବ କର୍ମ ନିଷ୍ପନ୍ନକାରିଣୀ ।
ହେ ଶରଣଦାୟିନୀ ଶିବ-ସୋହାଗିନି ଗୌରି
ନମସ୍କାର କରଇଁ ମୁଁ ଚରଣେ ତୁମ୍ଭର ।"
ମୂର୍ତ୍ତିମତୀ ବିଦ୍ୟାରୂପୀ ପତ୍ନୀ ଦେହାଶ୍ରୟେ
ଈଶ୍ୱରୀର ଉପାସନା କରି ଦେବରାୟେ,
ସାଧନ ଭଜନ ପୂର୍ଣ୍ଣ କଲେ ଆପଣାର
ଦେବତ୍ୱରେ ଗଢ଼ିଲେକ ପତ୍ନୀଙ୍କୁ ତାଙ୍କର ।
ଏମନ୍ତେ ଦେବତ୍ୱ ଲଭି ଶ୍ରୀ ସାରଦା ମାତା
ପ୍ରାଣୀଙ୍କ ହିତ ସାଧନେ ଅର୍ଜିଲେ ଦକ୍ଷତା ।
ବହୁ ପ୍ରାଣୀ ତାଙ୍କଠାରୁ ହିତ କଥା ଶୁଣି
ଅବହେଳେ ତରିଗଲେ ଭବ-ତରଙ୍ଗିଣୀ ।
ଧିକ ଏ ଜୀବନ ମୋର ମୁହିଁ ମୂଢ଼ ଏତେ
ନ ମାଗିଲି କୃପାକଣା ପାଇ ସନ୍ନିହିତେ ।

* ଚିତା

ଆସିଥିଲେ ଦେଖି ଯେବେ ଶ୍ରୀକ୍ଷେତ୍ର ଦର୍ଶନେ
ବଡ଼ଦାଣ୍ଡେ ଥିଲେ କ୍ଷେତ୍ରବାସୀର ସଦନେ ।
ସମ୍ବାଦ ପ୍ରାପତ ମାତ୍ରେ ତହିଁ ଧାଇଁଯାଇ
କୃତାର୍ଥ ମଣିଲି ମୁହିଁ ପଦ-ରଜ ପାଇ ।
ରୂପର ମାଧୁର୍ଯ୍ୟ କିବା କରିବି ବର୍ଣ୍ଣନ
ବୟସ୍କା ହେଲେହେଁ କୋମଳତା ପରିପୂର୍ଣ୍ଣ ।
ଧୀର ପ୍ରଶାନ୍ତ ମୂରତି ସ୍ୱଭାବେ ବିଗଳିତା
ଭାବରାଜ୍ୟ ବିଚରଣ ଭାବପୂର୍ଣ୍ଣ କଥା ।
ବେନାକରେ ସୁଶୋଭିତ ସୁବର୍ଣ୍ଣ ବଳୟ
ତାଙ୍କ ପତି ଚିରଜୀବୀ ଦିଏ ପରିଚୟ ।
ଦର୍ଶନ ମାତ୍ରକେ ଚିତ୍ତେ ମାତୃଭାବ ଜାତ
ପ୍ରତି ବାକ୍ୟରେ କ୍ଷରଇ ଯେହ୍ନେ କି ଅମୃତ ।
ପ୍ରବେଶ ମାତ୍ରକେ ଦେଖି କରିଲେ ଯେ ପ୍ରଶ୍ନ
ସନ୍ତାନ ସନ୍ତତି ଆଦି 'ଛନ୍ତି କେତେ ଜଣ ।
ପୁତ୍ର କନ୍ୟା କିଛି ମାତ୍ର ନାହିଁ ଯେ ମୋହର
ତାହା ଶୁଣି ଆଦେଶିଲେ ବିଭୁ ଚିନ୍ତା କର ।
ଧାରଣା ନ କଲି ପାରି କଥାର ମରମ
ହେଲାରେ ଯାପିଲି ମୁହିଁ ଦୁର୍ଲଭ ଜୀବନ ।
ଶ୍ରୀପଦ ପଙ୍କଜେ ମୂଢ଼ କରଇ ମିନତି
କରୁଣା କଟାକ୍ଷ ଦିଅ ଅରେ ମୂଢ଼ ପ୍ରତି ।
ଯେତେଦିନ ଜୀବ ଥିବ ଏ ଦେହ ପିଞ୍ଜରେ
ମୋ ରସନା ରଟୁ ବିଭୁ ନାମ ନିରନ୍ତରେ ।
ରାମକୃଷ୍ଣ-ଲୀଳାମୃତ ଅମିୟ ପୂରିତ
ଶ୍ରବଣ କୀର୍ତ୍ତନେ ଯମ-ଭୀତି ଦୂରୀଭୂତ ।
ବେଳ ଥାଉଁ ଥାଉଁ ମନ ! ଭଜ ଶ୍ରୀଚରଣ
ଏଡ଼ିବାକୁ ଚାହୁଁ ଯଦି ଯମ-ନିର୍ଯ୍ୟାତନ ।

---

## ଦ୍ୱାବିଂଶ ଅଧ୍ୟାୟ

### ଭାବାବେଶେ ଯୀଶୁଖ୍ରୀଷ୍ଟଙ୍କ ଦର୍ଶନଲାଭ ଓ ଭକ୍ତମାନଙ୍କୁ ଦେଖିବା ନିମନ୍ତେ ବ୍ୟାକୁଳତା

ଜୟ ଜୟ ରାମକୃଷ୍ଣ ବାଞ୍ଛାକଳ୍ପତରୁ
ଅନାଦି କାରଣ ବିଭୁ ଜଗଜ୍ଜନ-ଗୁରୁ ।
ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ପତିତପାବନ ହରି ବ୍ରହ୍ମ ସନାତନ ।
ଶ୍ରୀରାମକୃଷ୍ଣ-ଚରିତ ଶ୍ରବଣ ମଙ୍ଗଳ
ଶ୍ରବଣେ କୀର୍ତ୍ତନେ ଚିତ୍ତ ହୁଅଇ ନିର୍ମଳ ।
ଏମନ୍ତେ ବିମଳ ସ୍ୱଚ୍ଛ ହୁଏ ଯାର ଚିତ୍ତ
ବିଭୁଙ୍କର ପ୍ରତିବିମ୍ବ ତହିଁ ପ୍ରତିଭାତ ।
ସାଧନ ଭଜନ ଶେଷ କରି ଦେବରାୟ
ଭାବାବସ୍ଥ ରହିଲେକ ସରବ ସମୟ ।
ପାଶ୍ଚାତ୍ୟ ଦେଶର ଇଷ୍ଟ ପ୍ରଭୁ ଯୀଶୁଖ୍ରୀଷ୍ଟ
ତାଙ୍କର ଦର୍ଶନ ପାଇଁ ଚିତ୍ତ ସମାକୃଷ୍ଟ
କେସନେ ପାଇଲେ ତାଙ୍କ ଦିବ୍ୟ ଦରଶନ
ସାଧୁଜନେ ଶୁଣ ସେହି ଅଦ୍ଭୁତ ଘଟନ ।
ମଥୁରଙ୍କ ମୃତ୍ୟୁ ପରେ ଆରେକ ଭକତ
ପ୍ରବିଷ୍ଟ ହୋଇଲେ ଏବେ ପ୍ରଭୁ ସନ୍ନିହିତ ।
ଶମ୍ଭୁଚରଣ ମଲ୍ଲିକ ନାମ ଯେ ତାଙ୍କର
ଧନରେ କୁବେର ପ୍ରାୟ ହୃଦୟ ଉଦାର ।
ଦାନେ ସଦା ମୁକ୍ତହସ୍ତ, ଖ୍ୟାତି ସେଥିପାଇଁ
କେତେ ଦାନ ହୁଏ ନିତ୍ୟ କଳି ନ ହୁଅଇ ।
ଚିତ୍ତେ ତାଙ୍କ ଅନୁରକ୍ତ ବ୍ରାହ୍ମଧର୍ମ ପ୍ରତି
ମୂର୍ତ୍ତି ପୂଜାରେ ସେ ହେଉ ଶ୍ରଦ୍ଧାହୀନ ଅତି ।
ଶ୍ରୀପ୍ରଭୁଙ୍କ ଅକପଟ ଭକତି ଦେଖିଣ
ତାଙ୍କଠି ଆକୃଷ୍ଟ ହେଲା ଶମ୍ଭୁଙ୍କର ମନ ।
ପ୍ରଭୁ ପାଶେ ମଧ୍ୟେ ମଧ୍ୟେ କରି ଆତଯାତ
ଗୂଢ଼ ବ୍ରହ୍ମତତ୍ତ୍ୱ ଶୁଣି ହେଲେ ଆପ୍ୟାୟିତ ।
ପରସ୍ପରେ ପ୍ରୀତି ବୃଦ୍ଧି ହୋଇଣ କ୍ରମଶଃ
ଭକ୍ତ ଡୋରେ ଶମ୍ଭୁ ବନ୍ଧା ଦେବରାଜ ପାଶ ।
ଗୁରୁ ପଦେ ବରି ତାଙ୍କୁ ସମ୍ମାନ ନିମିତ୍ତ
'ଗୁରୁଜୀ' 'ଗୁରୁଜୀ' ବୋଲି ଡାକିଲେ ନିରତ ।
ଏହା ଶୁଣି ଦେବରାୟ ବ୍ରହ୍ମାଣ୍ଡ ଗୋସାଇଁ
ବିରକ୍ତ ଭାବେ ବୋଇଲେ ଉତ୍ତେଜିତ ହୋଇ ।
"ଏ ଜଗତେ ଗୁରୁ କେହି ନୁହନ୍ତି କାହାର
ଏକମାତ୍ର ଗୁରୁ ସେହି ପ୍ରଭୁ ପରାତ୍ପର ।
'ଗୁରୁଜୀ' 'ଗୁରୁଜୀ' ବୋଲି କିମ୍ପା ଡାକ ମୋତେ
ବିଶ୍ୱଗୁରୁଙ୍କୁ ଅମାନ୍ୟ କରୁଅଛ ଏଥେ ।
ଯେତେ କହିଲେ ହିଁ ଶମ୍ଭୁ କିଛି ନ ଶୁଣିଲେ
'ଗୁରୁଜୀ' 'ଗୁରୁଜୀ' ଡାକ କେଭେ ନ ଛାଡ଼ିଲେ ।

ଯାହାଙ୍କ ସଂସ୍ପର୍ଶେ ପ୍ରାଣୀ ଦିବ୍ୟାଲୋକ ପାନ୍ତି
ତାଙ୍କ ବିନୁ ଆଉ କେ ବା ଭବେ ଗୁରୁ 'ଛନ୍ତି ।
ପ୍ରାଣ ମନ ଢାଳିଦେଇ ଗୁରୁଙ୍କ ପଦ୍ମରେ
ମନେ ମନେ ପୂଜା କଲେ ହୃଦୟ ମନ୍ଦିରେ ।
ଯେତେବେଳେ ପ୍ରଭୁଙ୍କର ଯାହା ଆବଶ୍ୟକ
ପୂରଣ କରନ୍ତି ତାହା ଭକତ ମଲ୍ଲିକ ।
ଯଥା ପତି ତାହାଙ୍କର ପତ୍ନୀ ସେହିପରି
ଭକତିରେ କେହି ଊଣା ନୁହନ୍ତି କାହାରି ।
ସାକ୍ଷାତ ଦେବତା ଜ୍ଞାନ ଦୃଢ଼େ ଧରି ଚିତ୍ତେ
ସେବନ୍ତି ଭକତି ସହ ପ୍ରଭୁଙ୍କୁ ନିରତେ ।
ମାନବୀ ନୁହନ୍ତି ଦେବୀ ଶ୍ରୀ ସାରଦା ମାତା
ଏମନ୍ତ ଭାଳନ୍ତି ସଦା ଶମ୍ଭୂଙ୍କ ବନିତା ।
ପଉଷ ମଙ୍ଗଳବାରେ ଗୃହେ ଘେନିଯାଇ
ସାକ୍ଷାତ ମଙ୍ଗଳା ଜ୍ଞାନେ ଆରାଧନ୍ତି ତହିଁ ।
ଶାଶୁଙ୍କ ସମୀପେ ଦେବୀ ଥାଇ ନହବତେ
ସ୍ଥାନାଭାବ ହେତୁ କଷ୍ଟ ଭୁଞ୍ଜୁଛନ୍ତି କେତେ ।
ଏସନ ବିଚାରି ମନେ ଭକତ ମଲ୍ଲିକ
କ୍ରୟ କଲେ ଜାଗା ଖଣ୍ଡେ ମନ୍ଦିରର ପାଖ ।
ସୁପ୍ରଶସ୍ତ ଗୃହ ତହିଁ କରି ନିର୍ମାଣ
ସାରଦା ଦେବୀଙ୍କୁ ଦେଲେ ରହିବା କାରଣ ।
ଗୃହକାର୍ଯ୍ୟେ ମଧ୍ୟ ତାଙ୍କୁ ସାହାଯ୍ୟ ସକାଶେ
ନିୟୋଜିଲେ ନାରୀ ଜଣେ ପୁଣି ତାଙ୍କ ପାଶେ ।
ବସବାସ କରି ଦେବୀ ଏ ନବ ଭବନେ
ସୁବିଧା ପାଇଲେ ପତି ସେବିବା କାରଣେ ।
ନାନାବିଧ ଖାଦ୍ୟଦ୍ରବ୍ୟ କରି ରନ୍ଧନ
ଆଣନ୍ତି ପତି ସମୀପେ ସ୍ୱହସ୍ତେ ବୋହିଣ ।
ଦେବରାୟେ ଦିବାଭାଗେ ପତ୍ନୀପାଶେ ଯାଇ
ହରନ୍ତି ତାଙ୍କର ମନ ହରିକଥା ଗାଇ ।
ଏମନ୍ତେ ବରଷେକାଳ ଯାପି ନିରନ୍ତର
ଶୁଣ ଏବେ ଖ୍ରୀଷ୍ଟଭାବ ସାଧିଲେ କିପରି ।
ଶମ୍ଭୂଙ୍କ ପ୍ରଗାଢ଼ ଭକ୍ତି କରି ଦର୍ଶନ
ତାଙ୍କ ପ୍ରତି ସମାକୃଷ୍ଟ ପ୍ରଭୁ ଭଗବାନ ।
ମଧ୍ୟେ ମଧ୍ୟେ ଯାଇ ତାଙ୍କ ଉଦ୍ୟାନ ଭବନେ
ତୋଷନ୍ତି ତାଙ୍କର ଚିତ୍ତ ହରିଗୁଣଗାନେ ।
ଦେବରାୟଙ୍କର ଭାବୋଚ୍ଛ୍ୱାସ ନିରେଖିଣ
ଯୀଶୁଙ୍କର କଥା ଶମ୍ଭୂ କଲେ ଉତ୍‌ଥାପନ ।
ତାଙ୍କର ଚରିତାମୃତ ଶୁଣିବା ସକାଶ
ଦେବରାଜ ପ୍ରକାଶିଲେ ଆଗ୍ରହ ବିଶେଷ ।
ବାଇବେଲ ପାଠ କରି ଶମ୍ଭୂ ନିତି ନିତି
ଶୁଣାଇଲେ ଯୀଶୁଙ୍କର ଲୀଳାମୃତ ଗୀତି ।
ଏମନ୍ତେ ଶୁଣି ବିମଳ ଚରିତ କାହାଣୀ
ସେ ଭାବେ ମଗନ ହେଲେ ପ୍ରଭୁ ଗୁଣମଣି ।
ତାଙ୍କ ପ୍ରଚାରିତ ଧର୍ମେ କି ସତ୍ୟ ନିହିତ
ପ୍ରବଳ ବାସନା ହେଲା ଜାଣିବା ନିମିତ୍ତ ।
କେମନ୍ତେ ପୂରିଲା ଚିତ୍ତ ଆଶ ତାହାଙ୍କର
ଜଗତେ ଅଦ୍ଭୁତ ଅଟେ ବିବୃତ୍ତି ତାହାର ।
ଦକ୍ଷିଣେଶ୍ୱର ଗ୍ରାମର ଅତି ନିକଟରେ
ଯଦୁ ମଲ୍ଲିକଙ୍କ ଏକ ଉଦ୍ୟାନ ସେଠାରେ ।
ନାନା ସରଞ୍ଜାମେ ପୂର୍ଣ୍ଣ ଉଦ୍ୟାନଭବନ
କାନ୍ଥେ ସୁସଜ୍ଜିତ ବହୁ ରମ୍ୟ ଚିତ୍ରମାନ ।
ତହିଁ ମଧ୍ୟେ ଥିଲା ଚିତ୍ର ଯୀଶୁଖ୍ରୀଷ୍ଟଙ୍କର
ବାଲ ଗୋପାଳ ମୂରତି କ୍ରୋଡ଼େ ମେରୀଙ୍କର * ।
ପ୍ରଭୁପାଦେ ଥିବା ଯୋଗୁଁ ସୁଦୃଢ଼ ଭକତି
ଆଜ୍ଞା କରିଥିଲେ ଯଦୁ କର୍ମଚାରୀ ପ୍ରତି ।
ଯେକାଳେ ଆସିବେ ପ୍ରଭୁ ଉଦ୍ୟାନ ଭବନେ
ଘର ଖୋଲିଦେବ ତାଙ୍କୁ ବିଶ୍ରାମ କାରଣେ ।
ଦିନକରେ ଦେବରାୟ ବସିଣ ସେ ଘରେ
ଛବିମାନ ଦେଖୁଥିଲେ ତନ୍ମୟ ଭାବରେ ।
ଯୀଶୁଙ୍କ ଅଦ୍ଭୁତ ଲୀଳା ହୃଦୟେ ସୁମରି
କ୍ଷଣ ମଧ୍ୟେ ଭାବାବିଷ୍ଟ ପ୍ରଭୁ ନରହରି ।
ଚାହିଁ ଚାହିଁ ଯୀଶୁଙ୍କର ସେହି ଛବି ଖଣ୍ଡ
ଜୀବନ୍ତ ଜ୍ୟୋତିଃ ଆକାର ଧରିଲା ତଦଣ୍ଡ ।
ଚତୁର୍ଦ୍ଦିଗ ପୂର୍ଣ୍ଣ କରି ସେ ଜ୍ୟୋତିଃପୁଞ୍ଜରେ
ତତକ୍ଷଣେ ବିଲୀନ ହେଲା ପ୍ରଭୁଙ୍କ ଦେହରେ ।
ସେ ଜ୍ୟୋତିରାଶି ହୃଦୟେ ପ୍ରବେଶ ମାତ୍ରକେ
ଭାବର ପ୍ରବାହ ଗଲା ବଦଳି କ୍ଷଣକେ ।
ହିନ୍ଦୁୟାନ ଭାବ ଦୂର ହୋଇ ଏକାବେଳେ
ବିରାଜିଲା ଖ୍ରିଷ୍ଟିୟାନ ଭାବ ତାହା ସ୍ଥଳେ ।
ହିନ୍ଦୁ ଦେବଦେବୀ ପ୍ରତି ଶ୍ରଦ୍ଧା ବା ଭକତି
ଦୂରେ ଯାଇ ଖ୍ରୀଷ୍ଟଧର୍ମେ ଶ୍ରଦ୍ଧା ହେଲା ଅତି ।

* ମେରୀ ଯୀଶୁଖ୍ରୀଷ୍ଟଙ୍କ ଜନନୀ

ଖ୍ରୀଷ୍ଟିୟାନ ଭାବେ ଚିତ୍ତ ହୋଇ ପରିପୂର୍ଣ୍ଣ
ତତକ୍ଷଣେ ହୋଇଲା ଏକ ଅଦ୍ଭୁତ ଦର୍ଶନ ।
ସମ୍ମୁଖେ ଦେଖିଲେ ଖ୍ରୀଷ୍ଟ-ପ୍ରାର୍ଥନା ମନ୍ଦିରେ
ଅନୁରାଗେ ଉପବିଷ୍ଟ ପାଦେରୀ ନିକଟରେ ।
ଧୂପଦୀପ ଆଦି ଜାଳି ଯୀଶୁଙ୍କ ଅଗ୍ରତେ
ପ୍ରାର୍ଥନା କରନ୍ତି ତାଙ୍କୁ ଅନ୍ତର ସହିତେ ।
ଅତଃପର ସେହିସ୍ଥାନ ଚର୍ଚ୍ଚେ ଦ୍ରୁତେ ଧରି
ଲେଉଟି ଆଇଲେ ଗୃହେ ପ୍ରଭୁ ନରହରି ।
ତଦାନୀଂ ଏଭାବରେ ହୃଦୟ ମଣ୍ଡିତ
ଆରାଧ୍ୟା ଦେବୀଙ୍କ କଥା ହୋଇଲେ ବିସ୍ମୃତ ।
ଏହି ଭାବ-ପ୍ରବାହଟି ତିନଦିନଯାଏ
ସମ୍ୟକେ ବିରାଜ କଲା ତାଙ୍କର ହୃଦୟେ ।
ତୃତୀୟ ଦିବସେ ପ୍ରଭୁ କରୁଣାସାଗରେ
ଭ୍ରମୁଥିଲେ ଯଦା ପଞ୍ଚବଟୀ ନିକଟରେ ।
ଦେଖିଲେ ଏକ ଅପୂର୍ବ ପୁରୁଷ ପ୍ରବର
ପ୍ରଶାନ୍ତ ହୃଦୟେ ଧୀରେ ଧୀରେ ଅଗ୍ରସର ।
ମନୋରମ ଗୌରବର୍ଣ୍ଣ ସୁନ୍ଦର ଆକୃତି
ଦରଶନେ ମନେ ହେଲା ବିଦେଶୀ ବିଜାତି ।
ଶ୍ରୀମୁଖମଣ୍ଡଳେ ବେନି ବିଶ୍ରାନ୍ତ ଲୋଚନ
ଅପୂର୍ବ ସୌନ୍ଦର୍ଯ୍ୟ ଶୋଭା କରଇ ବର୍ଦ୍ଧନ ।
ଅଳ୍ପକେ ହେଲେହେଁ ଚେପା ନାସିକା ତାଙ୍କର
ମୁଖଶ୍ରୀ ନ କରେ ହ୍ରାସ କିଞ୍ଚିତ ମାତର ।
ସୌମ୍ୟ ଦରଶନ ସେହି ଶ୍ରୀମୁଖମଣ୍ଡଳ
ଅଲୌକିକ ଦେବଭାବେ ଦିଶେ ଚଳ ଚଳ ।
ଦର୍ଶନ ମାତ୍ରକେ ପ୍ରଭୁ ବିମୁଗ୍ଧ ହୋଇଣ
କିଏ ଅଟେ ଏ ପୁରୁଷ ଚିନ୍ତାରେ ମଗନ ।
ଦିବ୍ୟଦେହୀ ତାଙ୍କ ପାଶେ ଅଗ୍ରସର ଯେତେ
ଦେବଗ୍ରସ୍ତେ ଅଧିକରେ ବିହ୍ୱଳ ସେ ତେତେ ।
ସହସା ତାଙ୍କର ପୂତ ହୃଦୟ କନ୍ଦରେ
କିଏ ଯେମନ୍ତେ କହିଦେଲା ଅତି ସ୍ପଷ୍ଟ ସ୍ୱରେ ।
ଈଶ୍ୱରାବତାର ଏହି ପ୍ରଭୁ ଯୀଶୁଖ୍ରୀଷ୍ଟ
ପ୍ରେମମୟ ସାକାର ମୂର୍ତ୍ତି ଯୋଗୀଜନ ଶ୍ରେଷ୍ଠ ।
ପ୍ରାଣୀଙ୍କ ଦୁଃଖେ କଷ୍ଟରେ ହୋଇଣ କାତର
ସହିଲେ ଯେ କେତେ କଷ୍ଟ ନୁହେଁ କହିବାର ।
ଭବସାଗରୁ ପ୍ରାଣୀଙ୍କୁ ଉଦ୍ଧାର ନିମନ୍ତେ
ହୃଦୟ ରୁଧିର ଦେଲେ ନିର୍ବିକାର ଚିତ୍ତେ ।
ଅଜ୍ଞାନ ମାନବ ଯେତେ ନିର୍ଯ୍ୟାତନ ଦେଲେ
ପ୍ରଶାନ୍ତ ହୃଦୟେ ଦେବ ସେ ସବୁ ସହିଲେ ।
ଶେଷ ହେଉ ନ ହେଉଣୁ ଏ ଦୈବୀ ବଚନ
ସେ ଦେବପୁରୁଷ ତାଙ୍କ ପାଶେ ଆଗମନ,
ବାହୁଯୁଗ ପ୍ରସାରଣ ଆଲିଙ୍ଗନ କରି
ଲୀନ ହେଲେ ସେହିକ୍ଷଣି ଶରୀରେ ତାଙ୍କରି ।
ତଦନ୍ତେ ଶ୍ରୀଦେବଗ୍ରସ୍ତ ଭାବାବିଷ୍ଟ ହୋଇ
ଭୂତଳେ ପତିତ ହେଲେ ଚେତନା ହରାଇ ।
ସଗୁଣ ବିରାଟ ବ୍ରହ୍ମେ ଲୀନ ହୋଇ ମନ
ଦିବ୍ୟାନନ୍ଦ ରସାସ୍ୱାଦ କଲେ କିଛୁକ୍ଷଣ ।
ପ୍ରଧାନ ପ୍ରଧାନ ଧର୍ମ ଯେତେ ଏ ମହୀରେ
ଏ ପ୍ରକାରେ ସିଦ୍ଧିଲାଭ କଲେ ସବୁଥିରେ ।
ବୌଦ୍ଧଧର୍ମମତେ କେଭେଁ ସାଧନ ଭଜନ
ନ କଲେହେଁ ଦେବରାଜ କରୁଣାନିଧାନ ।
ବୁଦ୍ଧଦେବ ଅଟନ୍ତି ସେ ଈଶ୍ୱରାବତାର
ଏ ଦୃଢ଼ ବିଶ୍ୱାସ ଥିଲା ହୃଦୟେ ତାଙ୍କର ।
ବୁଦ୍ଧଦେବ ଅବା ତାଙ୍କ ପ୍ରବର୍ତ୍ତିତ ଧର୍ମେ
ପ୍ରଗାଢ଼ ଭକ୍ତି କରନ୍ତେ ପ୍ରଭୁ ଗୁଣଧାମେ ।
ଜଗନ୍ନାଥ ବଳରାମ ସୁଭଦ୍ରା ମୂର୍ତ୍ତିରେ
ଅଦ୍ୟାପି ପ୍ରକଟ 'ଛନ୍ତି ସେହି ଶ୍ରୀକ୍ଷେତ୍ରରେ ।
ଶ୍ରୀମହାପ୍ରସାଦ ତେଣୁ ଯେ କରେ ଭକ୍ଷଣ
ପବିତ୍ର ହୁଅଇ ତାର ଦେହ ବୁଦ୍ଧି ମନ ।
ବିଷୟ ବାସନା ମନୁଁ ହୋଇ ଦୂରୀଭୂତ
ଆଧ୍ୟାତ୍ମିକ ଭାବ କ୍ରମେ ହୁଅଇ ଜାଗ୍ରତ ।
ବିଷୟୀ ମାନବେ ବହୁକ୍ଷଣ ପାଶେ ଥିଲେ
ଗଙ୍ଗୋଦକ ନିରମାଳି ସେବନ୍ତି ସେ କାଳେ ।
ଯେ ଜ୍ଞାନମାର୍ଗ ପ୍ରକଟ ବୈଦିକ ମତରେ
ତା ସଙ୍ଗେ ପ୍ରଭେଦ ନାହିଁ ବୁଦ୍ଧଙ୍କ ଧର୍ମରେ ।
ଜାଣିଥିଲେ ପ୍ରଭୁ ଏହା ଯୋଗଦୃଷ୍ଟି ବଳେ
ଏମନ୍ତ ଭାଷିଲେ ତାଙ୍କ ଭକତ ସକଳେ ।
ଜୈନ ଆଉ ଶିଖଙ୍କର ଧର୍ମପ୍ରବର୍ତ୍ତକ
ମହାବୀର, ତୀର୍ଥଙ୍କର, ଶ୍ରୀଗୁରୁ ନାନକ ।
ସମସ୍ତଙ୍କଠାରେ ତାଙ୍କ ସମାନ ଭକତି
ସ୍ନେହ ଶ୍ରଦ୍ଧା କାହାପ୍ରତି ନ ଥିଲା କମତି ।
ନାନକଙ୍କଠାରୁ ଗୁରୁଗୋବିନ୍ଦ ପର୍ଯ୍ୟନ୍ତ
ଶିଖମାନଙ୍କର ଯେଉଁ ଦଶଗୁରୁ ଖ୍ୟାତ

ସେ ସମ୍ବନ୍ଧେ କହନ୍ତି ଶ୍ରୀ ବ୍ରହ୍ମାଣ୍ଡ ଗୋସାଇଁ
ଜନକ ଋଷିଙ୍କ ସର୍ବେ ଅବତାର ଆଇ ।
ମୁକ୍ତି ଲଭିବା ପୂର୍ବରୁ ରାଜର୍ଷି ଜନକ
ପ୍ରାଣୀ-କଲ୍ୟାଣ ସାଧନେ ହୋଇଲେ ଉତ୍ସୁକ ।
ଗୁରୁ ରୂପେ ଦଶଥର ଜନମ ଲଭିଣ
ଏ ମହୀରେ ଶିଖ ଧର୍ମ କଲେ ସଂସ୍ଥାପନ ।
ସକଳ ପ୍ରକାର ଧର୍ମେ ସିଦ୍ଧିଲାଭ କରି
ଯୋଗବଳେ ଜାଣିଥିଲେ ପ୍ରଭୁ ନରହରି ।
ସର୍ବଶକ୍ତିମାନ ଯେଉଁ ପରମ-ଈଶ୍ୱର
ଶୁଦ୍ଧ-ବୁଦ୍ଧ-ମୁକ୍ତ ଅଟେ ସ୍ୱଭାବ ଯାଙ୍କର ।
ବିଶେଷାବତାର ସେହୁ ତାଙ୍କର ଅଟନ୍ତି
ପ୍ରାଣୀଙ୍କ କଲ୍ୟାଣ ପାଇଁ କାୟ ଧରିଛନ୍ତି ।
ଈଶ୍ୱରଙ୍କଠାରୁ ସେହୁ ସତ୍ୟତ ଅଭିନ୍ନ
ତେଣୁ ତାଙ୍କ ମୁକ୍ତ ନାହିଁ ପ୍ରାଣୀଙ୍କ ସମାନ ।
ସାଧନ ଭଜନ ସେହୁ ଆଚରିଲେ ଯେତେ
ସେ ସକଳ କେବଳ ଯେ ବିଶ୍ୱଜନ ହିତେ ।
ଏ ନବ ଆଲୋକ ପାଇ ମାନବେ ଏ ଭବେ
ଅବଲୀଳାକ୍ରମେ ଭବସିନ୍ଧୁ ତରିଯିବେ ।
ପ୍ରାଣୀ କଲ୍ୟାଣ ସାଧନ କର୍ମ ଯେତେ ଦିନ
ଭଗବାନଙ୍କ କର୍ତ୍ତବ୍ୟ ରୂପେ ଥିବ ଗଣ୍ୟ
ତେତେଦିନ କଳେବର ଧରି ପୁନଃ ପୁନଃ
ଯୁଗେ ଯୁଗେ ତା ସାଧନେ ହେବେ ଅବତୀର୍ଣ୍ଣ ।
ରାଜ୍ୟ ମଧ୍ୟେ ଗଣ୍ଡଗୋଳ ହେଲେ ଉପସ୍ଥିତ
ରାଜକର୍ମଚାରୀ ଯଥା ଧାଇଁଣ ତ୍ୱରିତ,
କଳହ ଉଦ୍ଭୂତ ଦ୍ୱନ୍ଦ୍ୱ ମେଣ୍ଟାଇ ସେଠାରେ
ପୁନଶ୍ଚ ସ୍ଥାପନ୍ତି ଶାନ୍ତି ସର୍ବତୋଭାବରେ ।
ଧର୍ମ ରାଜ୍ୟ କଥା ମଧ୍ୟ ଅଟେ ସେହିପରି
ଏମନ୍ତ ଭାଷିଲେ ପ୍ରଭୁ ଦେବ ନରହରି ।
କଥାର କଥା ତ ଏହା ନୁହଇ କେବଳ
କହିଛନ୍ତି ମଧ୍ୟ ପୁନଃ ଅବତୀର୍ଣ୍ଣ କାଳ ।
ବାୟୁକୋଣେ ଆହୁ ଦୁଇଶତ ବର୍ଷ ପରେ
କଳେବର ଧରିବେ ସେ ପୁନଶ୍ଚ ଧରାରେ ।
ମୁକ୍ତି ଲଭି ନ ପାରିବେ ଯେହୁ ତେତେବେଳେ
ଅପେକ୍ଷା କରିବେ ବହୁ କାଳ ସେ ସକଳେ ।
ଯୋଗାରୂଢ଼ ହୋଇଣ ଯେ ଶ୍ରୀଦେବ ଆବର
ଜାଣିଥିଲେ ତିରୋଧାନ ସମୟ ତାଙ୍କର ।
କହିଥିଲେ ତାଙ୍କ ନିଜ ପତ୍ନୀ ସନ୍ନିଧିତେ
ଯେ କାଳେ ଖାଇବ ମୁହିଁ ଯାହା ତାହା ହାତେ ।
କଲିକତା ସହରରେ ରହିଣ ଆବର
ଅନ୍ୟେ ଅଗ୍ରଭାଗ ଦେବ ଆପଣା ଖାଦ୍ୟର
ଆହାର କରିବ ପାୟସାନ୍ନ ହିଁ କେବଳ
ନିକଟ ଜାଣିବ ତଦା ମୋର ଅନ୍ତକାଳ ।
ଆଧ୍ୟାତ୍ମିକ ରାଜ୍ୟର ବି ଭବିଷ୍ୟ ଘଟଣା
ଜ୍ଞାତ ଥିଲେ କେତେକ ଯେ ପ୍ରଭୁ ମହାମନା ।
ସର୍ବ ଧର୍ମ ମତ ସାଧି ସିଦ୍ଧି ଲଭି ତହିଁ
ଦୃଢ଼ଭାବେ ଜାଣିଥିଲେ ପ୍ରଭୁ ଭବତ୍ରାହୀ ।
ନିରାଟ ସତ୍ୟ ଅଟଇ ସେହି ସବୁ ମତ
"ଯେତେ ମତ, ତେତେ ବିଭୁ ଲଭିବାର ପଥ ।"
ଆବର ବିଷୟଟିଏ ଜାଣିଥିଲେ ଦେବ
ଧର୍ମରାଜ୍ୟେ ମେଣ୍ଟାଇଲା ଯାହା ବୈରଭାବ ।
ବେଦ ଉପନିଷଦାଦି ଗ୍ରନ୍ଥମାନଙ୍କରେ
ତିନୋଟି ପ୍ରଧାନ ମତ ସ୍ଥାପିତ ସଂସାରେ ।
ପ୍ରକୃତରେ ଏଥିମଧ୍ୟେ କି ମର୍ମ ନିହିତ
ନ ଜାଣିଣ ହେଲା ତାର ବହୁ ରୂପ ଅର୍ଥ ।
ଯେ ମତର ଅନୁଗାମୀ ଯେଉଁ ଭାଷ୍ୟକାର
ଟାଣିଓଟାରି ସେ ଭାବେ କଲେ ଅର୍ଥ ତାର ।
ଏମନ୍ତେ ଉପୁଜି ତହିଁ ନାନା ଜଟିଳତା
ନଷ୍ଟକଲା ସମ୍ୟକରେ ଧର୍ମର ଏକତା ।
ଫଳେ ଏକ ଆରେକକୁ ଦେଖି ବୈରଭାବେ
ଗଣ୍ଡଗୋଳ ଭିଆଇଲେ ତାହାର ପ୍ରଭାବେ ।
ଦେବରାୟ ସବୁ ମତ ଆପଣେ ସାଧିଣ
ଧର୍ମରାଜ୍ୟେ ସାମ୍ୟଭାବ କଲେ ସଂସ୍ଥାପନ ।
"ଦ୍ୱୈତ, ବିଶିଷ୍ଟାଦ୍ୱୈତ ଅଥବା ଅଦ୍ୱୈତ
ବିରୋଧ ନୁହଇ କେହି କାହାର ସହିତ ।
ଆଧ୍ୟାତ୍ମିକ ଉନ୍ନତି ବା ମନର ଅବସ୍ଥା
ବିସ୍ତାରଣ ହୋଇଅଛି ଏ ତିନି ବ୍ୟବସ୍ଥା ।
ସାଧାରଣ ପ୍ରାଣୀ ଯେହୁ ବିଷୟେ ଆସକ୍ତ
ତାଙ୍କ ପକ୍ଷେ ଦ୍ୱୈତ ଭାବ ଅଟେ ଯୁକ୍ତିଯୁକ୍ତ ।
ଦ୍ୱୈତଭାବେ ଆରାଧନା ସାକାର ଈଶ୍ୱର
ନାମ ସଂକୀର୍ତ୍ତନ ଆଦି ପ୍ରଶସ୍ତ ତହିଁର ।
ଆଉ ପାହାଚେ ଉଠିଛି ଯାହାଙ୍କର ମନ
ବିଶିଷ୍ଟାଦ୍ୱୈତ ଭାବଟି ତାଙ୍କ ପକ୍ଷେ ଜାଣ ।

ମନ ବୁଦ୍ଧି ସାହାଯ୍ୟରେ ସାଧକ ସକଳ
ବିଭୁଙ୍କର ଲୀଳା ଦେଖିଥାନ୍ତି ସଦା ଖେଳ ।
ବିଭୁ ଯଥା ନିତ୍ୟ, ତାଙ୍କ ଲୀଳା ବି ତଦ୍‌ବତ
ପୃଥକ ନୁହଇ କେହି କାହାଠୁଁ କଳ୍ପିତ ।
ଚିନ୍ମୟ ଅଟନ୍ତି ଶ୍ୟାମ, ଚିନ୍ମୟ ବି ନାମ
ଆଉର ଚିନ୍ମୟ ମଧ ତାହାଙ୍କର ଧାମ ।
ବାକ୍ୟ ମନ ଅତୀତମି ଅଛଇ ଯେ ପଥ
ଅଦ୍ୱୈତ ପନ୍ଥା ନାମରେ ତାହା ଅଭିହିତ ।
ଜୀବ-ଜଗତ ଏଠାରେ ହୋଇ ଅନ୍ତର୍ଦ୍ଧାନ
ଉପଲବ୍ଧି ହୁଏ ସତ୍ ଚିଦାନନ୍ଦ ବ୍ରହ୍ମ ।”
ଏଥିପୂର୍ବେ ଆସିଥିଲେ ଯେତେ ଅବତାର
ସାଧନ ସହାୟେ କେହି ଜୀବନେ ତାଙ୍କର ।
ଉପଲବ୍ଧି କରିଣ ଏ ମହାନ ତତ୍ତ୍ୱ
ପ୍ରଚାରି ନ ଥିଲେ ଭବେ ଏହାର ମାହାତ୍ମ୍ୟ ।
ଏ ଯୁଗରେ ଅବତୀର୍ଣ୍ଣ ହୋଇ ଶ୍ରୀ ଠାକୁରେ
ସାମଞ୍ଜସ୍ୟ ଭାବ ପ୍ରଚାରିଲେ ଜଗତରେ ।
ଆଧ୍ୟାତ୍ମିକ ରାଜ୍ୟେ ତାଙ୍କ କେଉଁ ଉଚ୍ଚସ୍ଥାନ
ବିଚାରି କରନ୍ତୁ ସ୍ଥିର ଏବେ ଗୁଣୀଜନ ।
କର୍ମ ସମ୍ବନ୍ଧେ କହିଲେ ପ୍ରଭୁ ମହାଭାଗ
ସତ୍ତ୍ୱଗୁଣୀଙ୍କର କର୍ମ ସ୍ୱତଃ ହୁଏ ତ୍ୟାଗ ।
ଶତଚେଷ୍ଟା ସତ୍ତ୍ୱେ କର୍ମ କରି ନ ପାରନ୍ତି
କି ଅବା ଈଶ୍ୱର ତାଙ୍କୁ କରି ନ ଦିଅନ୍ତି ।
ଗୃହସ୍ଥ ବଧୂଏ ଯଥା ହେଲେ ଗର୍ଭବତୀ
କ୍ରମେ କ୍ରମେ ହ୍ରାସ ହୁଏ କର୍ମର ପ୍ରବୃତ୍ତି ।
ଅବଶେଷେ ଯେତେବେଳେ ଜନମଇ ସୁତ
ଗୃହକର୍ମ ଏକାବେଳେ ହୁଅଇ ବର୍ଜ୍ଜିତ ।
ସୁତ ଯେଣୁ ସୋହାଗରେ ସଦା ଲସମାନ
ଆଉର ଚିନ୍ତା ମାନସେ ପାଏ ନାହିଁ ସ୍ଥାନ ।
ଇତର ପ୍ରାଣୀଙ୍କ ପକ୍ଷେ ଆରେକ ନିୟମ
ବିଭୁଠି ନିର୍ଭର ରଖି ଆଚରିବେ କର୍ମ ।
ଧନୀଲୋକ ଗୃହେ ଦାସଦାସୀ ଯେ ପ୍ରକାରେ
ହସ୍ତେ କର୍ମ କରି ମନ ରଖିଥାନ୍ତି ଘରେ ।
ପ୍ରାଣୀହିତେ କହିଲେକ ପ୍ରଭୁ ଗୁଣାଧାର
କାର୍ଯ୍ୟ କର ମନ ରଖି ବିଭୁଙ୍କ ପୟର ।

କର୍ମ ଆଚରିଣ ନିତ୍ୟ ସାଧର ଆସ୍ତରେ
ବିଭୁଙ୍କୁ ଧ୍ୟାୟିଣ ନାମ ଜପିବ ନିରତେ ।
ଏ ଭାବେ କଲେକ ସଦା କର୍ମ ଆଚରଣ
କର୍ମଯୋଗର ସାଧନ ହୋଇବ ପୂରଣ ।
ବିବିଧ ସାଧନ କରି ପ୍ରଭୁ ଦେବରାୟ
ଅବଗତ ହେଲେ ବହୁ ଭବିଷ୍ୟ ବିଷୟ ।
ସାଧୁଜନେ ଶୁଣ ଏବେ ଚିତ୍ତ କରି ସ୍ଥିର
ଅତ୍ୟନ୍ତ ନିଗୂଢ଼ କଥା ଦେବେ ଅଗୋଚର ।
“ଯାହାଙ୍କର ଶେଷ ଜନ୍ମ ସେ ସବୁ ଲୋକଙ୍କୁ
ଯେପରି ହେଲେ ଏଠାକୁ ହେବ ଆସିବାକୁ ।”
ଆଉ ଯେଉଁ ଗ୍ରୁପ୍ଫଟୋଛବି* ବସିବାବସ୍ଥାର
ତାକୁ ଦେଖାଇଣ କହିଛନ୍ତି ଶ୍ରୀଠାକୁର ।
“ଏହା ଅତି ଉଚ୍ଚ ଯୋଗାବସ୍ଥାର ମୂରତି
କାଳେ ତାର ପୂଜା ହେବ ଘରେ ଘରେ ନିତି ।”
ଏ କାଳେ ଶ୍ରୀ ଜଗଦମ୍ବା ଜଣାଇଲେ ପୁଣି
“ତାଙ୍କର ବହୁତ ଭକ୍ତ ଜନମ ହେଲେଣି ।
ଯଥା ସମୟେ ସରବେ ତାହାଙ୍କୁ ଭେଟିଣ
ତାଙ୍କ ଉଦାର ମତକୁ କରିବେ ଗ୍ରହଣ ।
ତୁଚ୍ଛେ ଗଢ଼ିଣ ଗୋଟିଏ ନବ ସମ୍ପ୍ରଦାୟ
ପ୍ରଚାରିବେ ବିଶ୍ୱଜନେ ତାଙ୍କ ଭାବଚୟ ।
ଧର୍ମ-ପିପାସୁ ମୁମୁକ୍ଷୁ ପ୍ରାଣୀ ଯେ ସକଳ
ସେ ମଧ ଭେଟିବେ ଆସି ହେବ ଯେବେ ବେଳ ।
ଶ୍ରୀମୁଖ ନିଃସୃତ କଥାମୃତ ପାନ କରି
ଅବହେଲେ ସିବେ ସର୍ବେ ଭବସିନ୍ଧୁ ତରି ।”
ଏମନ୍ତେ ଅଛଇ ତାଙ୍କ ଯେତେକ ଭକତ
ତାଙ୍କୁ ନ ଦେଖିଣ ଏବେ ହୃଦୟ ମଳିନ ।
କେବେ ସେ ଭକତବୃନ୍ଦ ହେବେ ଏକମେଳ
ତାଙ୍କଠି ଅର୍ପିବେ ନିଜ ସାଧନର ଫଳ ।
ଶକତି ସଞ୍ଚାର କରି ସେମାନଙ୍କଠାରେ
ପ୍ରାଣୀହିତ-କ୍ଷମ ତାଙ୍କୁ କରିବେ ମହୀରେ ।
ଏ ନିମନ୍ତେ ବ୍ୟାକୁଳତା ହେଲା ଯେ ପ୍ରକାର
ଶ୍ରୀମୁଖ ନିଃସୃତ ବାଣୀ ଶୁଣ ତାହାଙ୍କର ।
“ଭକ୍ତଙ୍କ ସକାଶେ ଚିତ୍ତ ଯେମନ୍ତ ମଳିନ
କରି ନ ହୁଅଇ ତାର ଇୟତ୍ତା କଳ୍ପିତ ।

* ଗ୍ରୁପ୍ଫଟୋଛବି—Photograph (ଫଟୋଗ୍ରାଫ୍)

ଦିବାଭାଗେ ସେ ଖବର କୌଣସି ପ୍ରକାରେ
ଗୁପ୍ତ ରଖିଥାଏଁ ମୋରେ ହୃଦୟ କନ୍ଦରେ ।
ବିଷୟୀ ଲୋକଙ୍କ କଥା, ବିଷୟ ପ୍ରସଙ୍ଗ
ଶୁଣି ଶୁଣି ସେତେବେଳେ ଆସଇ ବିରାଗ ।
ବିକଳେ ଭାଳଇଁ କେବେ ଆସିବେ ଭକତେ
ଈଶ୍ୱରୀୟ କଥା କହି ତାଙ୍କର ସହିତେ ।
ଏ ସନ୍ତପ୍ତ ପ୍ରାଣ ମୋର କରିବି ଶୀତଳ
ନିରତେ କହିବି କଥା ଶ୍ରବଣ ମଙ୍ଗଳ ।
ଆଧ୍ୟାତ୍ମିକ ଉପଲବ୍ଧି କରିଅଛୁ ଯାହା
ସାନ୍ତ୍ୱନା ଲଭିବ ପ୍ରାଣେ କହି ତାଙ୍କୁ ତାହା ।
କାହାକୁ କହିବି କିସ ଦେବି କିବା ଦୁଃଖ
ନିରନ୍ତର ଭାଳୁଥାଏଁ ଏହି କଥାମାନ ।
ହୃଦୟର ବ୍ୟାକୁଳତା କ୍ରମେ ବୃଦ୍ଧି ପାଇ
ଦିବା ଅବସାନେ ମୋତେ ଅସ୍ଥିର କରଇ ।
ସନ୍ଧ୍ୟାରତି ପାଇଁ ଯେବେ ବାଜଇ ବାଜଣା
ହୃଦୟେ ବଢ଼ଇ ମୋର ଅଧିକ ଯନ୍ତ୍ରଣା ।
ଦେଖୁ ଦେଖୁ ଦିନଟିଏ ହୋଇଗଲା ଅତୀତ
ନ ପାଇଲି ଆଜ ମୁହିଁ କାହାରି ସାକ୍ଷାତ ।
ହୃଦ ଆବେଗରେ ଚଢ଼ି ପ୍ରକୋଷ୍ଠର ଛାତେ
କାନ୍ଦି କାନ୍ଦି ଡାକେ ତାଙ୍କୁ ବଳ ପାଏ ଯେତେ ।
କିଏ ଅଛ କାହିଁ ତୁମ୍ଭେ ଆସ ତ୍ୱରା କରି
ତୁମ୍ଭଙ୍କୁ ନ ଦେଖି ପ୍ରାଣ ବିକଳ ମୋହରି ।"
କ୍ରନ୍ଦନ ଧ୍ୱନିରେ ହୁଏ ଆକାଶ ପୂରିତ
କହି ନ ହୁଅଇ କେତେ କାନ୍ଦିଲି ଏମନ୍ତ ।

କି ପ୍ରକାର ବ୍ୟାକୁଳତା ହେଲା ଅନୁଭୂତ
ତୁଳନାରେ କହିଲେ ସେ ପ୍ରଭୁ ଜଗପୂତ ।
ପୁତ୍ରକୁ ଦେଖିବା ପାଇଁ ଜନନୀ ଅନ୍ତରେ
ଯେ ପ୍ରକାର ବ୍ୟାକୁଳତା ଦୃଷ୍ଟ ଚରାଚରେ ।
ପ୍ରେମିକ-ପ୍ରେମିକା ଦୁହେଁ ମିଳନ ନିମିତ୍ତ
ପ୍ରବଳ ଆକାଂକ୍ଷା ଯଥା ତାଙ୍କ ଚିତ୍ତେ ଜାତ ।
ଏ ସମସ୍ତ ବ୍ୟାକୁଳତା ତାର ତୁଳନାରେ
ଅତି ସାମାନ୍ୟ ବୋଲିଣ ହୁଅଇ ମନରେ ।
ଏମନ୍ତେ କିୟତ୍‌କାଳ ହୋଇଗଲା ଅତୀତ
ଅତଃପର ଏକେ ଏକେ ଭକ୍ତ ଉପସ୍ଥିତ ।
ଭକ୍ତ ସମାଗମ କଥା ଅତ୍ୟନ୍ତ ମଧୁର
ଗାଇବି ତୃତୀୟ ଖଣ୍ଡେ ବିବରଣ ତାର ।
ଦିଅନ୍ତୁ ଶରଣ ନାଥ ! ପ୍ରଭୁ ଭବସ୍ୱାମୀ
କାତରେ କରୁଣା କର ଅହେ ଦୟାବନ୍ଧୁ ।
ଗୁରୁକାର୍ଯ୍ୟ ଭାର ମୂଢ଼ ବହିଅଛୁ ଶିରେ
ଶ୍ରୀପଦ ପଙ୍କଜ ମାତ୍ର ଭରସା ଅନ୍ତରେ ।
ତବ କରୁଣାରେ ମୂକ ହୁଅଇ ବାଚାଳ
ଖଞ୍ଜ ଲଙ୍ଘିଯାଏ ଗିରି ପରବତ ମାଳ ।
ଚିତ୍ତେ ପୋଷି ସେହି ଆଶା ଧଇଲି ଏ କାର୍ଯ୍ୟ
ଯାହା ତବ ଇଚ୍ଛା କର ପ୍ରଭୋ ଦେବରାଜ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଦିବାରାତ୍ର ଗାଅ ସର୍ବେ ଚିତ୍ତ କରି ସ୍ଥିର ।
ଅବହେଳେ ତରିଯିବ ଭବତରଙ୍ଗିଣୀ
ନ ରହିବ ତବ ଦୁଃଖ ଯାତନା କାହାଣୀ ।

ଦ୍ୱିତୀୟ ଖଣ୍ଡର କଥା ଶେଷ ଏହିଠାରେ
'ହରିବୋଲ' 'ହରିବୋଲ' ଦିଅ ସମସ୍ୱରେ ।



# ତୃତୀୟ ଖଣ୍ଡ

# ଗୁରୁଭାବେ ଦିବ୍ୟଲୀଳା

## ପ୍ରଥମ ଅଧ୍ୟାୟ

## ମାଇକେଲ ମଧୁସୂଦନ ଦତ୍ତଙ୍କ ଆଗମନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ସ୍ୱାମୀ
ଅଖଣ୍ଡ ସଚ୍ଚିଦାନନ୍ଦ ପ୍ରଭୁ ଅନ୍ତର୍ଯ୍ୟାମୀ ।
ତବ କରୁଣା ଭିଖାରି ଅଟଇ ଯେ ମୁହିଁ
ମାୟାଜାଲ ଛିନ୍ନ କର ପ୍ରଭୋ ! ଦୟାବନ୍ଧୁ ।
ଶ୍ରୀପଦପଙ୍କଜେ ମୋର ଏତିକ ଜଣାଣ
ଦିବ୍ୟ ନେତ୍ର ପାଇ ସଦା କରେଁ ଲୀଳା ଗାନ ।
ଲେଖନୀରେ ଦିଅ ଶକ୍ତି ପ୍ରଭୋ ନରହରି
ଭଣିବି ତୁମ୍ଭର ଲୀଳା ଅମୃତ ଲହରୀ ।
ସାଧନ ଭଜନ କରି ପ୍ରଭୁ ଶ୍ରୀଅଚ୍ୟୁତ
ସଞ୍ଚିଲେ ଯେ ସୁଧାଭାଣ୍ଡ ପ୍ରାଣୀଙ୍କ ନିମିତ୍ତ ।
ତାହା ଆସ୍ୱାଦନ ପାଇଁ ଲୋକ ଅଗଣନ
ଭୃଙ୍ଗ ସମ ତାଙ୍କ ପାଶେ ହେଲେ ଧାବମାନ ।
ପ୍ରଥମରେ ନାରାୟଣ ଶାସ୍ତ୍ରୀଙ୍କ ସହିତ
ଶ୍ରୀମଧୁସୂଦନ ପ୍ରଭୁ ପାଶେ ଉପସ୍ଥିତ ।
ଦତ୍ତବଂଶେ ସମୁଦ୍ଭବ ଧର୍ମରେ ଖ୍ରୀଷ୍ଟାନ
ମାଇକେଲ ଆଖ୍ୟା ତେଣୁ ନାମରେ ଯୋଜନ ।
ସରଳ ପ୍ରକୃତି ବଙ୍ଗ କବି ଚୂଡ଼ାମଣି
ବହୁ କାବ୍ୟ ପ୍ରସବିଲା ତାଙ୍କର ଲେଖନୀ ।।
ପ୍ରଥମ ଯୌବନ କାଳେ ସେ କବିଶେଖର
ଚାକଚକ୍ୟେ ମୁଗଧ ହେଲେ ଖ୍ରୀଷ୍ଟାନ ଜାତିର ।
ନିଜ ଧର୍ମ ତୁଚ୍ଛ ଜ୍ଞାନେ ପଛୁରେ ଫିଙ୍ଗିଣ
ପଡ଼ିଲେ ଖ୍ରୀଷ୍ଟଙ୍କ ଧର୍ମେ ପତଙ୍ଗ ଯେସନ ।
ସେକାଳେ ଧରମ ରାଜ୍ୟେ ଅତ୍ୟନ୍ତ ଚହଳ
ପାଦେରି ସାହେବଙ୍କର ପ୍ରଭାବ ବହୁଳ ।
ହାଟେ ବା ବଜାରେ ନାନା ସ୍ଥାନେ ରୁଣ୍ଡ ହୋଇ
ପ୍ରଚାରିଲେ ଖ୍ରୀଷ୍ଟଧର୍ମ ଦୁନ୍ଦୁଭି ବଜାଇ ।
ପିତୁଳାଦି ମୂର୍ତ୍ତି ପୂଜା ମାନସ ବିକାର
ବୃଥାରେ କିପାଇଁ କାଳ କ୍ଷେପୁଛ ତହିଁର ।
ସ୍ୱର୍ଗବାସ କରିବାକୁ ଥିଲେ ଅଭିଳାଷ
ଯୀଶୁଙ୍କୁ ଭଜିଲେ ପୂର୍ଣ୍ଣ ହେବ ତବ ଆଶ ।
ଏଣେ ବଡ଼ ବଡ଼ ବ୍ରାହ୍ମ ପ୍ରଚାରକଗଣ
ନିଜ ଧର୍ମମତ ଦମ୍ଭେ କରି ସମର୍ଥନ,
ପ୍ରଚାରିଲେ ଜନ ପାଶେ ଅତି ଆସ୍ଫାଳନେ
ଗମିବାକୁ ଇଚ୍ଛା ଥିଲେ ଶାନ୍ତିନିକେତନେ ।
ଭେଦାଭେଦ ଜ୍ଞାନ ସବୁ କରି ପରିହାର
ଚିନ୍ତେ ବିଶ୍ୱ ସର୍ବେ ଏକ ବ୍ରହ୍ମ ପରିବାର ।
ସାକାରବାଦୀ ଯେତେକ ହିନ୍ଦୁଙ୍କ ସନ୍ତାନ
ଭଜନ ପୂଜନେ ସଦା ରତ ଯାଙ୍କ ମନ ।
କେ କହିଲା ଭଜ କୃଷ୍ଣ ସର୍ବଦେବ ଶ୍ରେଷ୍ଠ
ଅବହେଳେ ପ୍ରାପ୍ତି ହେବ ତା ହେଲେ ବୈକୁଣ୍ଠ ।
କେ ବୋଇଲା ଭଜ ରାମ ଦଶରଥବାଳ
ମାନବ ଜୀବନ ତବ ହୋଇବ ସଫଳ ।
ଯାଙ୍କ ପାଦ ସ୍ପର୍ଶେ ନାବ ହୋଇଲା ସୁବର୍ଣ୍ଣ
ତାଙ୍କ ଗୁଣଗାନେ ହେବ ଦୁଃଖ ବିମୋଚନ ।
କେ ଭାଷିଲା ଶିବଲିଙ୍ଗ ପୂଜ ଭକ୍ତିଭରେ
ଆଶୁତୋଷ ମୁକ୍ତି ଦେବେ ତୁମ୍ଭଙ୍କୁ ଅଚିରେ ।
କେ କହିଲା ଏକମନେ ଭଜ ଗଜାନନ
ରୋଗ ଶୋକ ତାପ କ୍ଷଣେ ହେବ ବିମୋଚନ ।
କେ ଘୋଷିଲା ଭଜ କାଳୀ ଜଗତ ଜନନୀ
ସର୍ବ ମଙ୍ଗଳଦାୟିନୀ ବିଘ୍ନ ବିନାଶିନୀ ।
କେ ଝାଞ୍ଜ ମୃଦଙ୍ଗ ଧରି ହରିଗୁଣ ଗାଇ
ଉଚ୍ଚସ୍ୱରେ ବୋଲେ ଭଜ ଗୌର ନିତାଇ ।
ପ୍ରେମେ ମାତି କେବଣେ ସେ ପ୍ରେମ ଅବତାର
ମାଡ଼ ଖାଇ ହରିନାମ କଲେକ ପ୍ରଚାର ।
ଜ୍ଞାନପନ୍ଥୀ ନେତି ନେତି ବିଚାର କରିଣ
ଭାବିଲେ ମାୟାର ଖେଳ ଏ ସାରା ଭୁବନ ।
ଗତି ମୁକ୍ତି ନାହିଁ ତେଣୁ ସାକାର ଭଜନେ
ଆତ୍ମାରାମ ବ୍ରହ୍ମ ଦେଖି ଚିନ୍ତେ ଅନୁକ୍ଷଣେ ।

ଆପଣା ଆପଣା ମତ ଶ୍ରେଷ୍ଠ ମନେ କରି
ନିନ୍ଦିଲେ ଅପର ମତ ଗୁଣ ନ ବିଚାରି ।
ପ୍ରକୃତରେ ହୀନଗତ ମନ ଯାହାଙ୍କର
ଛିନ୍ନ ହେଲେ ନାନାବିଧମତେ ଏ ପ୍ରକାର ।
ଏମନ୍ତ ଆତଙ୍କ କାଳେ ପ୍ରଭୁ ଚିନ୍ତାମଣି
ଅବତୀର୍ଣ୍ଣ ମର୍ତ୍ତ୍ୟଧାମେ ନରକାୟା ଘେନି ।
ନିଜେ ସାଧି ଦେଖାଇଲେ ଜଗତ ସମ୍ମୁଖେ
ବିଭୁଙ୍କ ଦର୍ଶନ ମାର୍ଗ ଅଟଇ ପ୍ରତ୍ୟେକେ ।
ନିଜ ନିଜ ଧର୍ମ୍ମପଥ କଲେକ ଆଶ୍ରୟ
ଲକ୍ଷ୍ୟ ସ୍ଥାନେ ପ୍ରବେଶିବେ ସରବେ ନିଶ୍ଚୟ ।
ଦକ୍ଷିଣେଶ୍ୱରେ ଅଛନ୍ତି ଯେ ମହାପୁରୁଷ
ପ୍ରଚରନ୍ତି ଏସନ ଯେ କୁଶଳ ସନ୍ଦେଶ ।
ଏହା ଶୁଣି ମାଇକେଲ ଶ୍ରୀମଧୁସୂଦନ
ତାଙ୍କ ଦର୍ଶନ ନିମନ୍ତେ ପାଶେ ଆଗମନ ।
ନମସ୍କାର କରି ତାଙ୍କ ଶ୍ରୀଚରଣ ପ୍ରାନ୍ତେ
ବୋଇଲେ "ଶୁଣାନ୍ତୁ ତତ୍ତ୍ୱ କଥା କିଛି ମୋତେ ।"
ଏମନ୍ତ ବିନୟ ବାଣୀ ଶ୍ରବଣ ମାତ୍ରକେ
ଦ୍ରବୀଭୂତ ଶ୍ରୀପ୍ରଭୁଙ୍କ ହୃଦୟ କ୍ଷଣକେ ।
ତତ୍ତ୍ୱ କଥା କହିବାକୁ ଯେତେ ଚେଷ୍ଟା କଲେ
ପଦେଅଧେ ସୁଦ୍ଧା ତାଙ୍କୁ କହି ନ ପାରିଲେ ।
ଶ୍ରୀଦେବ ବୋଇଲେ ତହୁଁ ଶାସ୍ତ୍ରୀଙ୍କୁ ସମ୍ବୋଧି
"ଜଗତ ଜନନୀ ମୁହଁ ରଖୁଛନ୍ତି ବାନ୍ଧି ।
ଏହାଙ୍କୁ ପୁଛନ୍ତୁ କିପାଁ ସ୍ୱଧର୍ମ୍ମ ତେଜିଣ
ବିଜାତିର ଧର୍ମ୍ମ ମତ କଲେକ ଗ୍ରହଣ ।"
ଶ୍ରୀ ମଧୁସୂଦନ ତହୁଁ ବୋଇଲେ ଉତ୍ତରେ
"ବିଧର୍ମ୍ମ ଘେନିଛି ମୁହିଁ ପେଟ ବିକଳରେ ।"
"ଉଦର ଜ୍ୱାଳାରେ ପଡ଼ି ବିଧର୍ମ୍ମ ଗ୍ରହଣ
ସ୍ତ୍ରୀକୁ ବଳି ସ୍ୱାନକର୍ମ୍ମ ଭବେ ନାହିଁ ଆନ ।"
ଏମନ୍ତ କହିଣ ତାଙ୍କୁ ଶାସ୍ତ୍ରୀ ମହୋଦୟ
ତାଙ୍କ କୃତ କରମକୁ ନିନ୍ଦିଲେ ବେଜାୟ ।
ଅତଃପର ପ୍ରଭୁ ଦେବ ଜଗତର ନାଥ
ସୁଧା କଣ୍ଠେ ଆରମ୍ଭିଲେ ମଧୁର ସଙ୍ଗୀତ ।
ରାମପ୍ରସାଦ ପଭୃତି ଭକ୍ତଗଣଙ୍କର
ଉପଦେଶପୂର୍ଣ୍ଣ ଗୀତ ଭକ୍ତିର ଭଣ୍ଡାର ।
ମଧୁକଣ୍ଠ ସ୍ୱରେ ତାହା ଗାଇ ଭାବଗ୍ରାହୀ
ମଧୁସୂଦନଙ୍କ ପ୍ରାଣ ମନ ନେଲେ ମୋହି ।
ବିଭୁପାଦେ ଭକ୍ତି ଅଟେ ଏକମାତ୍ର ସାର
ଏହା ଜାଣି ବାହୁଡ଼ିଲେ ଗୃହେ କବିବର ।
ରାମକୃଷ୍ଣ-ଲୀଳାମୃତ ଶ୍ରବଣ ମଧୁର
ଏକ ମନେ ଗାଅ ସର୍ବେ ଭକ୍ତ ସହକାର ।
ଶମନ ଶାସନ ଭୟ ଦୂର ହେବ ହେଲେ
ଭବତ୍ରାତା ବିରାଜିବେ ହୃଦୟ କମଳେ ।

---

## ଦ୍ୱିତୀୟ ଅଧ୍ୟାୟ

## ସ୍ୱଦେଶ ଯାତ୍ରା

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ତ୍ରିଲୋକର ପତି
ପତିତପାବନ ହରି ଅଗତିର ଗତି ।
ସ୍ୱଦେଶ ଗମନ କଥା ମଧୁର ଆଖ୍ୟାନ
ଶ୍ରବଣେ କୀର୍ତ୍ତନେ ଚିତ୍ତେ ଜନ୍ମେ ଦିବ୍ୟଜ୍ଞାନ ।
ପୁରୁଷ ରମଣୀ ଭକ୍ତ ସ୍ୱଦେଶରେ ଯେତେ
ଏକମେଳେ ଧାବମାନ ସର୍ବେ ସନ୍ନିହିତେ ।
ଗଦାଇଙ୍କ ଗୁଣଗ୍ରାମ ଚୌଦିଗେ ବିସ୍ତାର
ଦେଖିବାକୁ ସେ କାରଣେ ସମସ୍ତେ ଅସ୍ଥିର ।
ସଂସାର କରମେ ଆଉ ନ ଲାଗଇ ମନ
ଦର୍ଶନ ନିମନ୍ତେ ସଦା ମନ ଛନ୍ନ ଛନ୍ନ ।
ପଇସା କଉଡ଼ି ଯାହା ପଥର ସମ୍ବଳ
ଯାହା ପାଶେ ନ ଥିଲାକ କିଛି ସେ ସକଳ ।
ଚୂଡ଼ା, ମୁଢ଼ି ବା ତଣ୍ଡୁଳ ସଙ୍ଗତେ ଘେନିଣ
ଧାଇଁଲେ ସେ ପାଇବାକୁ ଦିବ୍ୟ ଦରଶନ ।
ଅତି ଦୁର୍ଗମ ହେଲେହେଁ ଆଗମନ ପଥ
ତା ପ୍ରତି ନ ଥାଏ ଲକ୍ଷ୍ୟ କାହାରି କିଞ୍ଚିତ ।
ଶୀତ ବରଷାରେ କ୍ଳେଶ ନ ଥାଏ କାହାର
ଦଳେ ଦଳେ ଧାବମାନ ଗଦାଇ ପାଶର ।
ରିକ୍ତ ହସ୍ତ ନୁହେଁ ପୁଣି ଚିତ୍ତ ତୋଷ ପାଇଁ
ପ୍ରୀତିକର ଭୋଜ୍ୟ ବସ୍ତୁ ସଙ୍ଗେ ଆଣି ଥାଇଁ ।

ଉନଉନ ଉଜ ରଥ ଗୃଲ୍ ପଦବ୍ରଜେ
ପଡ଼ୋଶୀ ଆସନ୍ତି ଦେଖିବାକୁ ଦେବରାଜେ ।
ଧନ୍ୟ ସେହୁ ଗ୍ରାମବାସୀ, ଧନ୍ୟ ତାଙ୍କ ସ୍ନେହ
ଏମନ୍ତେ ଧାଇଁଲେ ଯେହ୍ନେ ପାଶେ ଅହରହ ।
କୁଳବଧୂ ବୁଢ଼ାବୁଢ଼ୀ ଗ୍ରାମେ ଯେ ସକଳ
ଆସି ନ ପାରଣ ତାଙ୍କ ପ୍ରାଣ କଳବଳ ।
ଭକ୍ତ ପ୍ରିୟ ଦେବରାୟ ଭକ୍ତ ତାଙ୍କ ପ୍ରାଣ
ଅନ୍ୟ କେହି ପ୍ରିୟ ନୁହେଁ ଭକତ ସମାନ ।
ଭକ୍ତ ଅଙ୍ଗ ତାଙ୍କ ଅଙ୍ଗ, ଭକ୍ତ ହୃଦେ ବାସ
ଭକ୍ତ ଦୁଃଖେ ଦୁଃଖୀ, ଭକ୍ତ ଉଲ୍ଲାସେ ଉଲ୍ଲାସ ।
ଏଭଳି ଭକ୍ତଙ୍କ ହୃଦ ରଞ୍ଜନ କାରଣ
ସ୍ୱଦେଶେ ଆସନ୍ତି ଧାଇଁ ପ୍ରଭୁ ନାରାୟଣ ।
ସାଧନ ଭଜନ ସରୁ ହୋଇଲେକ ଶେଷ
ଜନ୍ମସ୍ଥାନେ ଉପନୀତ ପ୍ରଭୁ ପରମେଶ ।
ଆଗମନ ବାର୍ତ୍ତା କର୍ଣ୍ଣେ ପଶେ ଯାହାର
ପଡ଼ିଉଠି ଧାଇଁଆସେ ଦର୍ଶନେ ତାଙ୍କର ।
ନରନାରୀ ବାଳବୃଦ୍ଧ ଯୁବକ ଯୁବତୀ
କିବା ଉଚ୍ଚବଂଶୋଦ୍ଭବ କିବା ନୀଚ ଜାତି ।
କିମ୍ବା କୁଳବଧୂ ଯେହ୍ନେ ଷୋଡ଼ଶ ବୟସୀ
ବିସ୍ତର ବସ୍ତାନେ ସବେ ରୁଣ୍ଡ ହେଲେ ଆସି ।
ପ୍ରଭୁଙ୍କଠି ଲଜ୍ଜା ଭୟ ନ ଥାଏ କାହାର
ଦରଶନେ ଲଜ୍ଜାଭୟ ହରନ୍ତି ଶ୍ରୀହରି ।
ଯାହାର ବାସନା ଯାହା ସଙ୍ଗତେ ଆଣିଣ
ଭକ୍ତିଭରେ ପ୍ରଭୁଙ୍କଠି କରନ୍ତି ଅର୍ପଣ ।
ପଡ଼ୋଶୀ ବା ନିକଟସ୍ଥ ଗ୍ରାମବାସୀ ଯେତେ
ଦରଶନେ ଦଳେ ଦଳେ ଆସିଲେ ସମସ୍ତେ ।
ପ୍ରଭୁଙ୍କଠି ଜୀବଜନ୍ତୁ କାର ନାହିଁ ଭୀତି
ନିର୍ଭୟେ ବିହଙ୍ଗ ଉଡ଼ି ଶ୍ରୀଅଙ୍ଗେ ବସନ୍ତି ।
ପ୍ରାଣୀଙ୍କର ତ୍ରାସ ନାଶ ପ୍ରଭୁ ଭଗବାନ
ସର୍ବ ହୃଦେ ପ୍ରବାହିତ ଆନନ୍ଦ ତୋଫାନ ।
ରଙ୍ଗସହ ତତ୍ତ୍ୱ କଥା ହୁଏ ନିରନ୍ତର
ରାତି ଦିନ କିଞ୍ଚିତ ଯେ ନ ଥାଏ ବିଚାର ।
କୃଷୀ, ବ୍ୟବସାୟୀ ଆଉ ମଜୁରିଆ ଭାଇ
ଦିବାଭାଗେ ଯାହାଙ୍କର ସମୟ ନ ଥାଇ ।
ସନ୍ଧ୍ୟା ସମାଗମେ ଯେବେ ଲଭନ୍ତି ବିଶ୍ରାମ
କଥାମୃତ ପାନ ହେତୁ ପାଶେ ଧାବମାନ ।

ଅମିୟ ପୂରିତ ବାଣୀ ଶୁଣିଣ ତାଙ୍କର
ବିସ୍ମୃତ ହୁଅନ୍ତି ସବେ ଆପଣାର ଘର ।
ଏ ପ୍ରକାରେ କଟିଯାଏ ଦ୍ୱିପ୍ରହର ରାତି
ତେବେ ମଧ୍ୟ ନ ହୁଅଇ କ୍ଲାନ୍ତି-ଅନୁଭୂତି ।
କାର୍ଯ୍ୟ ସ୍ଥଳେ ଗମିବାକୁ ହେବ ପ୍ରାତଃକାଳେ
ଆବାସେ ଫେରନ୍ତି ଇଚ୍ଛା ହୃଦୟେ ନ ଥିଲେ ।
ଅନ୍ତରର କଥା ଜାଣି ଜଗତ ଗୋସାଇଁ
କେମନ୍ତେ ରଞ୍ଜିଲେ ମନ ଶୁଣ ମନ ଦେଇ ।
କ୍ଷେତରେ କୃଷକେ ଯହିଁ କାର୍ଯ୍ୟେ ଥାନ୍ତି ରତ
ପ୍ରାତଃକାଳୁ ଉଠି ତହିଁ ଧାବନ୍ତି ଅଚ୍ୟୁତ ।
ବିବିଧ ମଧୁର କଥା କହି ତାଙ୍କ ଆଗେ
ତୋଷନ୍ତି ତାଙ୍କର ମନ ପ୍ରଭୁ ମହାଭାଗେ ।
ସାରଶୁଆ କାକ ଆଦି ବସି ବୃକ୍ଷଡାଳେ
କଳରବ କରୁଥାନ୍ତି ଆନନ୍ଦ ହିଲ୍ଲୋଳେ ।
ସେ ସବୁ ଶ୍ରବଣ କରି ଚନ୍ଦ୍ରାଙ୍କ ନନ୍ଦନ
ଆପଣା ଭବରେ ଆପେ ରହନ୍ତି ମଗନ ।
ହସି ହସି ତଦନ୍ତରେ କୃଷୀଙ୍କୁ ବୁଝାନ୍ତି
କଳରବେ ପକ୍ଷୀମାନେ ଯେ କଥା ବୋଲନ୍ତି ।
ଏମନ୍ତେ ଶ୍ରୀଦେବରାୟ ବିଜେ କରି ଦେଶେ
ଭକ୍ତିଭାବ ଜନ୍ମାଇଲେ କୃଷୀଙ୍କ ମାନସେ ।
ପ୍ରଭୁପାଦେ ଯାହାଙ୍କର ସୁଦୃଢ଼ ବିଶ୍ୱାସ
ଏ ଭବ ସଂସାର ତାଙ୍କୁ ଗୋଷ୍ପଦ ସଦୃଶ ।
ଶୋକ ଦୁଃଖର ତୋଫାନ ବହିଯାଏ ଯେତେ
ସାହା ହୁଅନ୍ତି ତାହାର ପ୍ରଭୁ ଜଗନ୍ନାଥେ ।
ଗସ୍ୱା ବିଷ୍ଣୁ ଲହା ନାମେ ପ୍ରଭୁଙ୍କ ସଙ୍ଗାତ
ଅସୀମ ବିଶ୍ୱାସ ତାର ଶ୍ରୀପାଦେ ନିରତ ।
ଏକଦା ତା ତନୟର ଜ୍ୱର ବେଗ ହୋଇ
ବଞ୍ଚିବାର ଆଶା ଆଉ କିଞ୍ଚିତ ନ ଥାଇ ।
ବଡ଼ ବଡ଼ କବିରାଜ ଡାକ୍ତର ଅଇଲେ
ପ୍ରତିକାର କେହି କିଛି କରି ନ ପାରିଲେ ।
ସୁତର ଅବସ୍ଥା ଦେଖି ଜନକ ଜନନୀ
ଆକୁଳ କ୍ରନ୍ଦନେ ଦୁହେଁ ଫଟାନ୍ତି ଅବନୀ ।
ଏ ସମୟେ ଉପସ୍ଥିତ ପ୍ରଭୁ କୃପାସିନ୍ଧୁ
ଗସ୍ୱା ବିଷ୍ଣୁଙ୍କର ଯେହ୍ନେ ଶୈଶବର ବନ୍ଧୁ ।
ସମସ୍ତ ଘଟଣା ଶୁଣି କରୁଣାସାଗର
ଅଭୟ ପ୍ରଦାନ କଲେ ତାହାଙ୍କୁ ସତ୍ୱର ।

ତନୟେ ନ ଦିଅ ଆଉ କୌଣସି ଔଷଧି
ଜଗଦମ୍ବାଙ୍କ କୃପାରୁ ଦୂର ହେବ ବ୍ୟାଧି ।
ଶ୍ରୀ ପ୍ରଭୁଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି
ଔଷଧ ପ୍ରୟୋଗ ଆଉ ନ କଲେ କାହାରି ।
ଔଷଧାଦି ଯାହା କିଛି ଗୃହେ ରଖିଥିଲେ
ବେଗେ ଯାଇ ସେ ସମସ୍ତ ଫିଙ୍ଗିଦେଲେ ଜଳେ ।
ଏ ସମ୍ବାଦ ପ୍ରାପ୍ତ ହୋଇ ଗ୍ରାମବାସୀ ଯେତେ
ପରସ୍ପରେ କହିଲେକ ଅତି ଆଚମ୍ବିତେ ।
ଯେତେକ୍ଷଣ ରହେ ଶ୍ୱାସ ତେତେକ୍ଷଣ ଆଶ
ଊଣା ନୁହଇ ତ ପିତାମାତାଙ୍କ ବିଶ୍ୱାସ ।
ତହିଁ ପୁଣି ଏକମାତ୍ର ସନ୍ତାନ ତାଙ୍କର
ଔଷଧି ଫିଙ୍ଗିଲେ ଏବେ ମନେ କି ବିଚାର ।
ଯେ ବିଶ୍ୱାସେ ଭବାର୍ଣ୍ଣବ ଗୋଷ୍ପଦ ସମାନେ
ସେ ବିଶ୍ୱାସ ଦୃଢ଼ ଯାର ପ୍ରଭୁଙ୍କ ଚରଣେ ।
ତା ପାଶେ କି ଅବା ଗୁରୁ ଏ ସାମାନ୍ୟ ବ୍ୟାଧି
ଯାହା ଯାର ରହିଛନ୍ତି ପ୍ରଭୁ ଗୁଣନିଧି ।
ଶ୍ରୀମୁଖ ବଚନ କେବେ ନ ହୁଏ ଅନ୍ୟଥା
ଦିନକୟେ ଉପଶମ ବ୍ୟାଧି ଯେ ସର୍ବଥା ।
ସମ୍ପଦ ବିପଦ ସଖା ପ୍ରଭୁ ବିଶ୍ୱପତି
ଶାନ୍ତିର ଭଣ୍ଡାର ଏହି ରାମକୃଷ୍ଣ ପୋଥି ।
କିଛିଦିନ ରହି ପ୍ରଭୁ କାମାରପୁକୁରେ
ଭଣଜା ହୃଦୟ ସଙ୍ଗେ ଗଲେ ତାଙ୍କ ଘରେ ।
ଶିହଡ଼ ଗ୍ରାମରେ ଥାଏ ହୃଦୁର ବସତି
କାମାରପୁକୁର ଯାହା ନୁହେ ଦୂର ଅତି ।
ଆଗମନ ବାର୍ତ୍ତା ଗ୍ରାମେ ପ୍ରଚୁର ମାତ୍ରକ
ଧାବିଲେ ପ୍ରଭୁଙ୍କ ପାଶେ ଲୋକ ଥୋକେଥୋକେ ।
ସନ୍ନ୍ୟାସୀ ବୈରାଗୀ ସାଧୁ ନାନା ପରକାର
ଏକମେଳେ ଜୁଣ୍ଡ ହେଲେ ପ୍ରଭୁଙ୍କ ଛାମୁର ।
ଶୁଣିଲେ ତାଙ୍କଠୁ ନାନା ହିତ ଉପଦେଶ
ଯାହାର ପ୍ରଭାବେ ହେଲେ ଦୂର ମାୟାପାଶ ।
ମନୋମୁଗ୍ଧକର ବାଣୀ ଯେ ଶୁଣଇ ଥରେ
ଭୁଲି ନ ପାରଇ ତାହା ସାରା ଜୀବନରେ ।
ପୁନଃ ପୁନଃ ଧାଇଁଆସି ତାଙ୍କ ସନ୍ନିଧାନ
ପ୍ରଫୁଲ୍ଲ ହୃଦୟେ କଲେ କଥାମୃତ ପାନ ।
ନଟବର ଗୋସ୍ୱାମୀ ନାମେ ପ୍ରତିବାସୀ ଜଣେ
ତାଙ୍କର ଭକତ ଅତି ପ୍ରଭୁଙ୍କ ଚରଣେ ।

ସଦାବେଳେ ତାହାଙ୍କର ପାଶେ ପାଶେ ଥାଇ
ଯୋଗାଡ଼ କରନ୍ତି ନିତ୍ୟ ସେବା ପୂଜା ପାଇଁ ।
ସନ୍ଧ୍ୟା ସମାଗତ ହେଲେ ପ୍ରଭୁଙ୍କୁ ଧରିଣ
ସମାରୋହେ କରନ୍ତି ସେ କୀର୍ତ୍ତନାୟୋଜନ ।
ଶିହଡ଼ ଗ୍ରାମରେ ଥିଲା ଯାହାଙ୍କର ବାସ
ଧରମ ଢଗରେ ସର୍ବେ ପାଷାଣ୍ଡ ସଦୃଶ ।
ଦେଖିଲେ ଚୈତନ୍ୟଭକ୍ତ ଠେଙ୍ଗାବାଡ଼ି ଧରି
ଗ୍ରାମରୁ ତଡ଼ନ୍ତି ନାନା ଉପହାସ କରି ।
ଗଉର ନିତାଇ ବୋଲି ସଙ୍କୀର୍ତ୍ତନ ଯହିଁ
ଏକମେଳେ ଗଣ୍ଡଗୋଳ କରନ୍ତି ସେ ତହିଁ ।
ଏବେ ସର୍ବେ ପ୍ରଭୁଙ୍କର କରୁଣା ଲଭିଣ
ବାଧାବିଘ୍ନ ନ ଦିଅନ୍ତି ଆଉ କଦାଚନ ।
ପ୍ରତିଦିନ ସନ୍ଧ୍ୟାବେଳେ ହୋଇ ଏକତ୍ରିତ
ହରିନାମ ସଙ୍କୀର୍ତ୍ତନେ ନିବେଶନ୍ତି ଚିତ୍ତ ।
ମହାପ୍ରଭୁ ଚୈତନ୍ୟଙ୍କୁ କୃଷ୍ଣଜ୍ଞାନ କରି
ବୈଷ୍ଣବ ଦର୍ଶନ ମାନେ ସମାଦର ଭରି ।
ନଟବରଙ୍କୁ ତାଙ୍କ ମେଣ୍ଟ-ସର୍ଦ୍ଦାର ମଣିଣ
ମହାନନ୍ଦେ କରନ୍ତି ସେ ହରି ସଙ୍କୀର୍ତ୍ତନ ।
ଗ୍ରାମ ମୁଣ୍ଡେ ଥିଲା ଏକ ଶିବଙ୍କ ମନ୍ଦିର
ସରବେ ଜାଣନ୍ତି ତାଙ୍କୁ ଜାଗ୍ରତ ଠାକୁର ।
ପଥର ବିଛଣି ଗୋଟା ମନ୍ଦିର ପ୍ରାଙ୍ଗଣ
ନିତ୍ୟ ନିତ୍ୟ ସେହିଠାରେ କୀର୍ତ୍ତନାୟୋଜନ ।
ଦିନକରେ ଭକ୍ତଗଣ ହୋଇ ସମବେତ
ଗାଉଥିଲେ ସଙ୍କୀର୍ତ୍ତନେ ଏହି ଯେ ସଙ୍ଗୀତ ।
"ସଙ୍କୀର୍ତ୍ତନେ ଆମାର୍ ଗୌର ନାଚେ
ଦେଖବିରେ ବାପ ନରହରି,
ଥେକୋ ଗୌରେର କାଛେ ।
ସୋନାର ବରଣ ଗୌର ଆମାର,
ଧୂଲାୟ ପଡ଼େ ପାଛେ ।"
ଦେବବରସ୍ତୁ ସେ କୀର୍ତ୍ତନ ଶ୍ରବଣ କରିଣ
ମହାଭାବ-ଜଳଧିରେ ହୋଇଲେ ମଗନ ।
ଦୁଆ ଧରି ଭକ୍ତେ ଯେତେ ଗାଇଲେ ସଙ୍ଗୀତ
କ୍ରମେ କ୍ରମେ ପ୍ରଭୁଦେବ ହୋଇଲେ ଉନ୍ମତ୍ତ ।
ଭାବର ପ୍ରାବଲ୍ୟ ଶେଷେ ସମ୍ଭାଳି ନ ପାରି
ପ୍ରାଙ୍ଗଣେ ଗଡ଼ିଲେ କାନ୍ଦି ପ୍ରଭୁ ନରହରି ।

କ୍ଷତବିକ୍ଷତ ଶ୍ରୀଅଙ୍ଗ ମଥୁର ବ୍ରାହ୍ମଣ
ବିଭ୍ରାଟ ମଣିଲେ ତୁଣ୍ଡ ଯେତେ ଭକ୍ତଗଣ ।
କ୍ଷାନ୍ତ ପାଇଁ ଚେଷ୍ଟା କଲେ ଯେତେ ପରକାରେ
ପ୍ରୟାସ ବିଫଳ ହେଲା ସମ୍ପୂର୍ଣ୍ଣ ରୂପରେ ।
ଏକାଳେ ପ୍ରବେଶି ତହିଁ ହୃଦସ୍ଥ ଠାକୁର
କର୍ଣ୍ଣମୂଳେ ବୀଜମନ୍ତ୍ର ଗାଇଲେ ସତ୍ୱର ।
କ୍ଷଣମଧ୍ୟେ ଦେବସ୍ୱସ୍ଥେ ଲଭି ବାହ୍ୟଜ୍ଞାନ
ବାହୁଡ଼ିଲେ ହୃଦୁ ସଙ୍ଗେ ତାଙ୍କର ସଦନ ।
ଅତଃପର ଶୁଣ ମନ ପ୍ରଭୁ କ କୌଶଳେ
ଗ୍ରାମବାସୀଙ୍କୁ ତୁଳସୀ ମାଳ ପିନ୍ଧାଇଲେ ।
ହୃଦସ୍ଥଙ୍କୁ ଆଜ୍ଞା ଦେଇ ପ୍ରଭୁ ଭବଗ୍ରାହୀ
ଆଣିଲେ ତୁଳସୀ ମାଳ ଯା ପାଇଲେ ଯହିଁ ।
ଭକତଙ୍କୁ ଦନକରେ ଏକତ୍ର ଦେଖିଣ
ତୁଳସୀ ମହିମା ପ୍ରଭୁ କଲେକ କୀର୍ତ୍ତନ ।
ଶ୍ରୀମୁଖନିଃସୃତ ବାକ୍ୟେ ବଳଆର ଶକ୍ତି
ଶ୍ରବଣେ ଶ୍ରୋତାଙ୍କ ଚିତ୍ତେ ଉପୁଜିଲା ଭକ୍ତି ।
ବେନିକର ଯୋଡ଼ି ଯେତେ ଭକତ ନିକର
ତୁଳସୀ ଦେବୀ ଉଦ୍ଦେଶ୍ୟେ କଲେ ନମସ୍କାର ।
ବେଳକାଳ ଜାଣି ତହୁଁ ପ୍ରଭୁ ବିଶ୍ୱସାଇଁ
ପ୍ରତ୍ୟେକଙ୍କ ହସ୍ତେ ମାଳ ଖିଏ ଖିଏ ଦେଇ ।
ଆଦେଶିଲେ ସର୍ବେ ଯାଇ ଆପଣା ମନ୍ଦିରେ
ଗୁରୁଦତ୍ତ ମନ୍ତ୍ର ଜପ ସବିଶ ଭାବରେ ।
ଶାଳଗ୍ରାମଙ୍କଠି ଏହି ମାଳକୁ ଛୁଇଁଣ
କଣ୍ଠରେ ପିନ୍ଧିବ ଜାଣି ଅମୂଲ୍ୟ ରତନ ।
ଏମନ୍ତ ଆଦେଶ ପାଇ ଭକତ ନିକର
ପ୍ରୀତପୂର୍ଣ୍ଣ ଚିତ୍ତେ ଗଲେ ଯେ ଯାହାର ଘର ।
ଭକ୍ତ ନଫର ବାଣ୍ଡୁଯ୍ୟା ମାଳ ହସ୍ତେ ଧରି
ବସିଲେ ପ୍ରଭୁଙ୍କ ପାଶେ ଘରକୁ ନ ଫେରି ।
ସୁନ୍ଦର ଶ୍ରୀଧର ମୂର୍ତ୍ତି ସଦନେ ତାଙ୍କର
ପ୍ରତ୍ୟହ ପୂଜନ୍ତି ଯାଙ୍କୁ ଭକ୍ତି ସହକାର ।
ଯଥା ଭାଗ୍ୟବାନ ଦ୍ୱିଜ ତଥା ଭକ୍ତିମାନ
ପ୍ରଭୁଙ୍କ ଚରଣେ ଭକ୍ତି ବିଶ୍ୱାସ ଅସୀମ ।
ହୃଦଭାବ ଜାଣି ପ୍ରଭୁ କରୁଣାସାଗର
ଶ୍ରୀଅଙ୍ଗେ ଧରିଲେ ମୂର୍ତ୍ତି ଶ୍ରୀଧର ଠାକୁର ।
ନଫର ବାଣ୍ଡୁଯ୍ୟା ଦେଖି ସେ ଦିବ୍ୟ ମୂରତି
ହରାଇଲେ ତାଙ୍କ ଜ୍ଞାନ ଦିବ୍ୟାନନ୍ଦେ ମାତି ।
ସାଷ୍ଟାଙ୍ଗେ ପ୍ରଣମି ବୋଲେ ରୁଦ୍ଧ କଣ୍ଠସ୍ୱରେ
"ତୁମ୍ଭେ ମୋର ଇଷ୍ଟଦେବ ପ୍ରଭୁ ପରାତ୍ପରେ ।
ଏ ଜୀବନ ମୋର ଆଜ ହୋଇଲା ସଫଳ
ହୃଦପଦ୍ମେ ନିବସନ୍ତୁ ପ୍ରଭୋ ଆଦମୂଳ !"
ଭାବେ ଗଦ ଗଦ ହୋଇ ଭକତ ଗୋସାଇଁ
ପାଦପଦ୍ମେ ସମର୍ପିଲେ ସେହି ମାଲ୍ୟ ନେଇ ।
ତଦନ୍ତେ ଆଣିଣ ତାହା ଭକ୍ତି ସହକାରେ
ପ୍ରେମାନନ୍ଦେ ନୃତ୍ୟ କରି ପିନ୍ଧିଲେ ଗଳାରେ ।
ଶିହଡ଼ ଗ୍ରାମରେ ଥିଲେ ଅଧିବାସୀ ଯେତେ
ଏବେ କାଳ କଟାଇଲେ ଭକ୍ତିପୂର୍ଣ୍ଣ ଚିତ୍ତେ ।
ତାଙ୍କୁ ଧରି ମଧ୍ୟେ ମଧ୍ୟେ କରୁଣାନିଧାନ
ଆରମ୍ଭିଲେ ଗ୍ରାମଦାଣ୍ଡେ ନଗର କୀର୍ତ୍ତନ ।
ଶ୍ରୀମୁଖ କୀର୍ତ୍ତନ ଅଟେ ଅତୀବ ମଧୁର
ଘରେ ରହି ନ ପାରନ୍ତି କେହି ଆଉ ସ୍ଥିର ।
ଯୂଥେ ଯୂଥେ ଲୋକ ତାଙ୍କ ସଙ୍ଗେ ଯୋଗଦେଇ
ଭୁଞ୍ଜିଲେ ଅପାର ସୁଖ ଏକ ଚିତ୍ତ ହୋଇ ।
'ଖାନାକୁଳ' ଅଧିବାସୀ କେତେକ ପଣ୍ଡିତ
କାର୍ଯ୍ୟ ଉପଲକ୍ଷେ ସେହି ଗ୍ରାମେ ଉପସ୍ଥିତ ।
ଶ୍ରୀପ୍ରଭୁଙ୍କ ନାମ ଶୁଣି ଦର୍ଶନ ନିମିତ୍ତେ
ତାଙ୍କ ପାଶେ ପ୍ରବେଶିଲେ ଅହଂକାର ଚିତ୍ତେ ।
କଥାରେ କଥାରେ ହେଲା ନାନା ତତ୍ତ୍ୱ କଥା
ସୁଧୀଗଣ ଗାଇଗଲେ ଶାସ୍ତ୍ରେ ଲେଖା ଯଥା ।
ନ ବୁଝିଲେ କେହି ତାର ନିଗୂଢ଼ ମରମ
କେବଳ ଆବୃତ୍ତି ଶ୍ଳୋକ ଶୁକ ପକ୍ଷୀ ସମ ।
ତର୍କଯୁକ୍ତ ଶୁଣିବାକୁ ବହୁ ଲୋକ ଝୁଣ୍ଡ
ସୁଧୀଙ୍କ ବଚନେ କାହା ନ ପଶିଲା ମୁଣ୍ଡ ।
ସହାସ୍ୟ ବଦନେ ତହୁଁ ପ୍ରଭୁ ନାରାୟଣ
ସରଳ ଭାଷାରେ ବ୍ୟାଖ୍ୟା କଲେ କଥାମାନ ।
ଯାର ଅର୍ଥ ବୁଝିବାକୁ ସକ୍ଷମ ବାଳକ
ଶ୍ରୋତାଏ ସେ ବ୍ୟାଖ୍ୟା ଶୁଣି ହୋଇଲେ ଅବାକ ।
ଏକ ଆରେକକୁ ପୁଛି କହନ୍ତି ପଣ୍ଡିତେ
ଶାସ୍ତ୍ରାଦି ନ ପଢ଼ି ତଥ୍ୟ ଜାଣିଲେ କେମନ୍ତେ ।
ନିଷ୍ପୃହ ଦଇବୀ ଶକ୍ତି ନିହିତ ଯାଙ୍କଠି
ଏହା କହି ପଦପ୍ରାନ୍ତେ ଲୋଟିଲେ ଏକାଠି ।
ଦିନେ ଦେବସ୍ୱସ୍ଥଙ୍କର ହେଲା ଅଭିଳାଷ
କଷି କଖାରୁ ତିଅଣ ଖାଇବା ସକାଶ ।
ହୃଦସ୍ଥ ମୁଖୁଯ୍ୟା ତାହା ହୋଇ ଅବଗତ
ପ୍ରାତଃକାଳୁଁ ଅନ୍ୱେଷଣେ ହେଲେ ବହିର୍ଗତ ।

ଏକା ନୁହେଁ ସଙ୍ଗେ ଗଲେ କନିଷ୍ଠ ସୋଦର
ପ୍ରଭୁଙ୍କ ଚରଣେ ଯାର ଭକତି ଅପାର ।
ଅକାଳେ ଦୁର୍ଲ୍ଲଭ ଫଳ ପାଇବେ ବା କାହୁଁ
ସେ ନିମିତ୍ତ ଚିନ୍ତାକୁଳ ହୃଦୟ ଆଗହୁଁ ।
ତନ୍ନ ତନ୍ନ କରି ପର ଗୃହେ ଅନ୍ୱେଷିଲେ
କ୍ୱାପି କଖାରୁ ଫଳ ଦେଖି ନ ପାରିଲେ ।
ଉପନୀତ ଶେଷେ ଏକ ଦରିଦ୍ର କୁଟୀରେ
ମାଡ଼ିଛି କଖାରୁ ଗଛ ଯାହାର ପିଢ଼ାରେ ।
ଗୋଟେ ମାତ୍ର ଫଳ ତହିଁ ଯଥା ଆବଶ୍ୟକ
ତାକୁ ଦେବାପାଇଁ ଗୃହସ୍ୱାମୀ ଅନିଚ୍ଛୁକ ।
ଯେତେ ପରକାରେ ହୃଦୁ କଲେ ଅନୁରୋଧ
କଞ୍ଚି ଫଳ ତୋଳିବାକୁ କଲେକ ନିଷେଧ ।
ବୋଇଲା ଏ ଫଳ ଯେବେ ହୋଇବ ସୁପକ୍ୱ
କାଟିଣ ମୁଁ ଖଣ୍ଡେ ଦେବ ଯେନ ମୋର ବାକ୍ୟ ।
ବିଫଳ ହୋଇଣ ହୃଦୁ ଗଲେ ସ୍ଥାନାନ୍ତରେ
ଅନ୍ୱେଷଣ କରିବାକୁ ଆରେକ ପଲ୍ଲୀରେ ।
ଦୁଇ ପଲ୍ଲୀ ମଧ୍ୟେ ଏକ ସାମାନ୍ୟ ପ୍ରାନ୍ତର
ତାକୁ ପାର ହେବାବେଳେ ହୃଦୟ ଠାକୁର
ମଧ୍ୟ ପଥେ ଘଟିଲାକ ଅଦ୍ଭୁତ ଘଟଣା
ଯା ଶ୍ରବଣେ ମାନବର ବୁଦ୍ଧି ହୁଏ ହରା ।
ଧୀରେ ଧୀରେ ଯାନ୍ତି ହୃଦୁ ଚିନ୍ତାରେ ମଗନ
ସହସା ଦେଖିଲେ ଏକ ହନୁ ଧାବମାନ ।
କଞ୍ଚି କଖାରୁ ଗୋଟିଏ ଧରିଣ ତା ହାତେ
ଧାଇଁଆସେ ଊର୍ଦ୍ଧ୍ୱଶ୍ୱାସେ ଦେହେ ଶକ୍ତି ଯେତେ ।
ହୃଦୁକୁ ଯେମନ୍ତ ସେହୁ ଭେଟିଲା ବାଟରେ
ତା ପାଖେ କଖାରୁ ଥୋଇ ପଳାଇଲା ଦୂରେ ।
ହନୁମନ୍ତ ରୂପେ କିଏ ଏହି ଭକ୍ତବୀର
ତାହାର ପଦରେ ମୋର କୋଟି ନମସ୍କାର ।
ଘଟଣା ଦେଖିଣ ହୃଦୁ ଆଶ୍ଚର୍ଯ୍ୟ ଅତ୍ୟନ୍ତ
ଦେଖୁ ଦେଖୁ ଦୃଷ୍ଟିପଥୁଁ ଗଲା ହନୁମନ୍ତ ।
ଅତଃପର ପରସ୍ପର ସମ୍ବାଦ ପାଇଲେ
ଏହି ଫଳ ଯାକୁ ଗୃହସ୍ୱାମୀ ନାସ୍ତି କଲେ ।
କଖାରୁକୁ ନିରେଖିଲେ ହୃଦୁ ତନ୍ନ ତନ୍ନ
କୌଣସି ସ୍ଥାନରେ ତାର ନାହିଁ କ୍ଷତ ଚିହ୍ନ ।
ପୁଲକିତ ଚିତ୍ତେ ତାହା ଧରିଣ ହସ୍ତରେ
ବାହୁଡ଼ିଲେ ଦ୍ୱିଜ ସୁତ ଆପଣା ଆଗାରେ ।
ଜୟ ଜୟ ପ୍ରଭୁଦେବ ଅଯୋଧ୍ୟା ଈଶ୍ୱର
ଜୟ ଜୟ କପିବେଶୀ ଭକତ ପ୍ରବର ।
ଜୟ ଜୟ ବେନି ଭାଇ ହୃଦୁ ରାଜାରାମ
ସଭିଙ୍କ ଚରଣ ଧୂଳି ମାଗଇ ଅଧମ ।
ନାନାବର୍ଣ୍ଣ ଦୃଷ୍ଟ ଯଥା ସୂର୍ଯ୍ୟଙ୍କ କିରଣେ
ପ୍ରଭୁ ଅବତାରେ ଲୀଳା ହୁଅଇ ତେସନେ ।
ନାନା ଢଙ୍ଗେ ନାନା ଭକ୍ତ ଧରି ନାନାରୂପ
ସେବନ୍ତି ବିଭିନ୍ନ ଭାବେ ପ୍ରଭୁ ବିଶ୍ୱାଧିପ ।
ଛଦ୍ମବେଶେ ଭ୍ରାମ୍ୟମାଣ ଭକ୍ତ କୋଟି କୋଟି
ସାଧ୍ୟ କାର କେ ଚିହ୍ନିବ କେ ଅଛି କେଉଁଠି ।
ସନ୍ନିକଟେ ମଡ଼ାଗୋଡ଼ ନାମେ କ୍ଷୁଦ୍ର ଗ୍ରାମ
ତହିଁ ଏକ ଭକ୍ତବୀର ସଦ୍‌ଗୋପ ସନ୍ତାନ ।
ପ୍ରତାପ ହାଜରା ଅଟେ ନାମ ଯେ ତାଙ୍କର
ପ୍ରଭୁଙ୍କ ଦର୍ଶନ ହେତୁ ପ୍ରବେଶ ଏଠାର ।
ବାଲ୍ୟାବଧି ହରିପାଦେ ଅଚଳା ଭକତି
ଯେତେ ଡାକିଲେହେଁ ହରି ନୋହିଲା ପ୍ରାପତି ।
ପ୍ରଭୁଙ୍କୁ ପୁଚ୍ଛିଲେ ଦିନେ ହୋଇଣ କାତର
"କର୍ଣ୍ଣବିହୀନ କି ହରି ବ୍ରହ୍ମାଣ୍ଡ ଠାକୁର ?
ଡାକୁଅଛି ଯେତେ ତାଙ୍କୁ କିଛି ନ ଶୁଣନ୍ତି
ମର୍ମ ସ୍ୱା'ର ବୁଝିବାକୁ ନାହିଁ ମୋ ଶକତି ।"
ମନ୍ଦହାସ୍ୟେ ଦେବରସ୍ୟେ ବୋଇଲେ ଉତ୍ତରେ
କହୁଛି କାରଣ ଶୁଣ ଭକ୍ତ ସହକାରେ ।
"ଦେଖିଛ କି ଆଖୁ କ୍ଷେତେ କୃଷକ କପରି
ସଲିଳ ବୁହାନ୍ତି କେତେ ପରିଶ୍ରମ କରି ।
ପୋଖରୀରୁ କ୍ଷେତଯାଏ ଖୋଳିଥାନ୍ତି ନାଳ
ସେହିବାଟେ ତାଙ୍କ କ୍ଷେତେ ମଡ଼ାନ୍ତି ସଲିଳ ।
ନାଳ ମଧ୍ୟେ କାହିଁ ଯଦି ପଡ଼ଇ ଗଳିଆ
ବୋହିଯାଏ ପାଣିଯାକ ଯେତେ ହୁଏ ବୁହା ।
ସାରାଦିନ ଲାଗି ପାଣି ବହୁଥାନ୍ତି ଯେତେ
ଯାଇ ନ ପାରଇ ତାହା କେବେହେଁ ସେ କ୍ଷେତେ ।
ଧର୍ମପଥେ ଯାର ତଥା ଛିଦ୍ର ବିଦ୍ୟମାନ
ଡାକିବା ନ ଡାକିବା ଯେ ଉଭୟ ସମାନ ।
ଯେତେ ଡାକୁଥାଅ, ତାହା ଲୀନ ଅଧବାଟେ
ଯାଇ ନ ପାରଇ ଜଗଦୀଶ ସନ୍ନିକଟେ ।"
ହାଜରା କହିଲେ ତହୁଁ ଅତୀବ ବିନୟେ
"କିସ ସେହି ଛିଦ୍ର ଅଟେ ପ୍ରଭୁ ଦୟାମୟେ ?"
ଉତ୍ତରେ ବୋଇଲେ ଧୀରେ ବ୍ରହ୍ମାଣ୍ଡ ଠାକୁର
"ବିଶ୍ୱାସ ଭକତି ବିନୁ ନୁହେ ତା ଆଦର ।

ବିଶ୍ୱାସ ଭକତିଶୂନ୍ୟ ଯା ଚିତ୍ତ ଅଟଇ
ତା ଭାଗ୍ୟ ବିଭୁ ସମୀପେ ଯାଇ ନ ପାରଇ ।"
ଜଞ୍ଜିରେ କଡ଼ାକୁ କଡ଼ା ଛନ୍ଦା ଯେ ପ୍ରକାର
ସେହିପରି ଧାବମାନ ଭକତ ନିକର ।
ଗୋଟିକ ପରେ ଗୋଟିଏ ହୋଇଣ ପ୍ରବେଶ
ଦର୍ଶନ ଲଭିଣ ମେଣ୍ଟାଇଲେ ଚିତ୍ତ ଆଶ ।
ଏମନ୍ତେ କ୍ରମଶଃ ହେଲା ଭକ୍ତଙ୍କ ଗହଳ
ମାରୁଳ-ବିଶ୍ରାମ ହେଉ ହିନ୍ଦୁ କଲବଲ ।
କିୟତ୍କାଳ ପାଇଁ ତାଙ୍କୁ ବିଶ୍ରାମ କାରଣ
ରଖିଲେ ଗୋଟିଏ ଘରେ ଆବଦ୍ଧ କରଣେ ।
ଦର୍ଶନ ନ ପାଇ ଲୋକେ ହୋଇଲେ ବିକଳ
ଲୁଗାରେ ରହିବ ବନ୍ଧା ବହ୍ନି କେତେ କାଳ ।
ଏ ଭାବେ କିୟତ୍‌କାଳ ଯାପି ନିର୍ଜ୍ଜନରେ
ପୁନଶ୍ଚ ଆସିଣ ପ୍ରଭୁ ଲୋକ ସମକ୍ଷରେ
ବିତରିଲେ କୃପାକଣା ଶତଗୁଣାଧିକେ
ଚିନ୍ତାମଣି ହସ୍ତେ ପାଇ ଆନନ୍ଦ ପ୍ରତ୍ୟେକେ ।
ମନାନପୁର ନାମରେ ଅନ୍ୟ ଏକ ଗ୍ରାମ
ବାରମାସେ ତେର ଯାତ୍ରା ଯହିଁ ସମ୍ପାଦନ ।
ଖ୍ୟାତ କୀର୍ତ୍ତନୀୟା ଜଣେ ଗୋପାଳ ନାମର
ଉତ୍ସବ ନିମନ୍ତେ ଏବେ ଆହୂତ ସେଠାର ।
କଣ୍ଠସ୍ୱର ତାର ଅଟେ ମଧୁର ଏମନ୍ତ
ଯେ ଶୁଣଇ ତାର ଚିତ୍ତ କ୍ଷଣେ ଦ୍ରବୀଭୂତ ।
ଯେଉଁ ସ୍ଥାନେ ତା କୀର୍ତ୍ତନ ହୁଏ ଆୟୋଜନ
ଲୋକ ଜମା ହୋଇ ତହିଁ ହୁଏ ଲୋକାରଣ୍ୟ ।
ଦୂର ଦୂରାନ୍ତର ଗ୍ରାମେ ଯାଙ୍କର ବସତି
କୀର୍ତ୍ତନ ଶ୍ରବଣ ପାଇଁ ଧାବନ୍ତି ତା କତି ।
ମନାନପୁରରେ ମହୋତ୍ସବ ଉପଲକ୍ଷେ
ଗୋପାଳକୁ ଆଣିଛନ୍ତି ତନ୍ନିଷ୍ଠିତ ଲୋକେ ।
ପ୍ରଚୁର ହୁଅନ୍ତେ ବାର୍ତ୍ତା ଶିହଡ଼ ଗ୍ରାମରେ
ବହିଲା ଆନନ୍ଦ ସ୍ରୋତ ଲୋକଙ୍କ ଅନ୍ତରେ ।
ମନ୍ତ୍ରଣା କଲେକ ସର୍ବେ ଗୋପନେ ଗୋପନେ
ଶ୍ରୀଦେବଙ୍କୁ ନେଇଯିବେ ସଙ୍ଗେ ସେହି ସ୍ଥାନେ ।
କୀର୍ତ୍ତନ ଶୁଣିଲେ ସ୍ୱତଃ ଆନନ୍ଦ ଯାଙ୍କର
ତା କୀର୍ତ୍ତନେ ଭୁଞ୍ଜିବେ ସେ ଆହ୍ଲାଦ ଅପାର ।
ଏମନ୍ତ ବିଚାର ମନେ ସର୍ବେ ଅଗମିଣ
ପ୍ରଭୁ ପାଶେ ଏ ସନ୍ଦେଶ କଲେ ନିବେଦନ ।
ଶ୍ରୀଦେବ କହିଲେ ତହୁଁ ତାହାଙ୍କୁ ଉତ୍ତରେ
"ସର୍ବାଗ୍ରେ ପ୍ରେରିବ ମୁହିଁ ହୃଦୁକୁ ସେଠାରେ ।
ଯିବା ପାଇଁ ମୋତେ ସେହୁ ପରାମର୍ଶ ଦେଲେ
ନିଶ୍ଚୟ ଗମିବି ତହିଁ ଦ୍ୱିଧା ନାହିଁ ଥିଲେ ।"
ମାରୁଳଙ୍କ ଆଜ୍ଞା ପାଇ ହୃଦୟ ଠାକୁର
ଗମିଲେ ମନାନପୁରେ ପ୍ରଦୋଷେ ସତ୍ୱର ।
କୀର୍ତ୍ତନ ହେତୁ ଗୋପାଳ ସଙ୍ଗରେ ଆସିଣ
କରୁଛନ୍ତି ଆବଶ୍ୟକ ପୂର୍ବ ଆୟୋଜନ ।
ଦ୍ୱିଜ ହୃଦୁ ସଙ୍ଗସ୍ଥଳେ ହୋଇ ଉପସ୍ଥିତ
ନିବେଦିଲେ ଆଗମନ କାରଣ ତ୍ୱରିତ ।
ଗୋପାଳ ପ୍ରଭୁଙ୍କ ନାମ ଶ୍ରବଣ ମାତ୍ରକେ
ଦର୍ଶନ ନିମନ୍ତେ ପ୍ରାଣ ବ୍ୟାକୁଳ କ୍ଷଣକେ ।
କୀର୍ତ୍ତନ ଆୟୋଜନ ସ୍ଥଗିତ ରଖାଇ
ବାହାରିଲେ ତତକ୍ଷଣେ ସେ ଦଳବଳ ନେଇ ।
ସେଠାରୁ ଶିହଡ଼ ଗ୍ରାମ ଅର୍ଦ୍ଧକୋଶ ଦୂର
ରାତି ସମାଗତ ପ୍ରାୟ ପ୍ରହର କାଳର
ବାଧାବିଘ୍ନ ନ ମାନିଲେ ଗୋପାଳ କିଞ୍ଚିତ
ଦର୍ଶନ ଲଭିବା ପାଇଁ ଚିତ୍ତ ଆକାଙ୍କ୍ଷିତ ।
ଗୋପାଳେ କହିଲେ ତହୁଁ ହୃଦୟ ଠାକୁର
ସମ୍ବାଦ ପ୍ରେରିବା ଏଠୁଁ ଶିଙ୍ଗା ସାହାଯ୍ୟର ।
ଶିଙ୍ଗା ମୃଦଙ୍ଗ ନାଦ କର ଜୋରେ ଏତେ
ପ୍ରବେଶିବ ତାହା ଯେସନ୍ତେ ମାମୁଁ ସନ୍ନିହିତେ ।
ଖଣ୍ଡିଏ ମୃଦଙ୍ଗ ଆଉ ଶିଙ୍ଗାର ଯେ ରବ
ଅର୍ଦ୍ଧକୋଶୁଁ ଶୁଣାଯିବ ଏ ନୁହେ ସମ୍ଭବ ।
ତଥାପି ସେ ବଜାଇଲେ ଗାଢେ ଜୋର ଯେତେ
ଅନ୍ତର୍ଯାମୀ ଶୁଣିଲେକ ନାଦ ଶୂନ୍ୟ ପଥେ ।
ଦେବଗୃହେ ମଧ୍ୟେ ରହି ଗ୍ରାମବାସୀଗଣ
ହୃଦୁ ଆଗମନ ପାଇଁ ଅତୀବ ଉଦ୍‌ବିଗ୍ନ ।
ଏକାଳେ ଶ୍ରୀଦେବରାଜେ ଭାବାବିଷ୍ଟ ହୋଇ
"ବୋଇଲେକ ଦେଖ ଦେଖ ହୃଦୁ ଆସୁଥାଇ ।
ଶୁଣାଯାଏ ଶିଙ୍ଗା ମୃଦଙ୍ଗର ନିନାଦ
ହୃଦୁ ସହିତ ଗୋପାଳ ଆସିବା ସମ୍ବାଦ ।"
ଆଶ୍ଚର୍ଯ୍ୟ ହୋଇଣ ସର୍ବେ ପଚାରିଲେ ତହୁଁ
"ଆମ୍ଭେ ତ କୌଣସି ଶବ୍ଦ ଶୁଣିପାରୁ ନାହୁଁ ।
ଏକା ଆପଣଙ୍କୁ ଶବ୍ଦ ଶୁଭୁଛି କେସନେ
ଅପାରଗ   ବୁଝିବାକୁ ମର୍ମ ଆମ୍ଭେମାନେ ।"
ଏ ପ୍ରକାରେ ପରସ୍ପର କଲେ ଆନ୍ଦୋଳନ
ଅତି ସ୍ତମ୍ଭୀଭୂତ ହେଲେ ଗ୍ରାମବାସୀଗଣ ।

ବହୁକ୍ଷଣ ପରେ ହୃଦୁ ଅଳ୍ପଦୂରେ ଥାଇ
ଗୋପାଳେ କହିଲେ ବାଦ୍ୟ ବଜାଇବା ପାଇଁ ।
ଏଥର ସରବେ ଶବ୍ଦ ଶ୍ରବଣ କରିଣ
ସତ୍ୟ ମଣିଲେକ ଏବେ ଶ୍ରୀମୁଖ ବଚନ ।
ଶବଦ ଶୁଣିଣ ପ୍ରଭୁ ସମାଧିସ୍ଥ ହେଲେ
ଗୋପାଳ ପ୍ରବେଶ ମାତ୍ରେ ପାଦେ ପ୍ରଣମିଲେ ।
କ୍ରମେ କ୍ରମେ ଭାବଭଙ୍ଗ ହୋଇଲା ଯେମନ୍ତ
କୀର୍ତ୍ତନ ଆରମ୍ଭ କଲେ ଗୋପାଳ ଭକତ ।
ଗୋପାଳ ଗାଆନ୍ତି ଗୀତ ମଧୁକଣ୍ଠ ସ୍ୱରେ
ଶ୍ରୋତାଏ ଶୁଣନ୍ତି ମନଯୋଗ ସହକାରେ ।
ନିମ୍ନ ସଙ୍ଗୀତ ଗୋପାଳ ଗାଇଲେ ଯେପରି
ଗୀତରେ ଉତ୍ତର ଦେଲେ ପ୍ରଭୁ ନରହରି ।
ଗୋପାଳ—"ଭୁବନସୁନ୍ଦର ଗୌର
ନଦିଆରୁ କେ ଆନିଲରେ
ଏମନ ରୂପ ବିଧି ସୃଷ୍ଟି ଦେଖେ ନାହିଁ
ଗଢ଼େଛେ (ବଟେ) କିନ୍ତୁ ବିଧି ଦେଖେ ନାହିଁ
ଦେଖିଲେ ଛେଡ଼େଦିତ ନାହିଁ"—ଇତ୍ୟାଦି ।
ପ୍ରଭୁ—"ଗୋପାଲରେ ଭୁଲ କି ବଲିରେ
ଗୋରା ରୂପ ବିଧିର ଗଡ଼ାନୟ
ସ୍ୱୟଂ ସ୍ୱପ୍ରକାଶ ରୂପ, ବିଧିର ଗଢ଼ାନୟ ।" ଇତ୍ୟାଦି
ଗୌରାଙ୍ଗ ଦେବଙ୍କ ମନମୋହନୀୟା ମୂର୍ତ୍ତି
ବିଧାତା ସ୍ୱହସ୍ତେ ତାହାନକେ ଗଢ଼ିଛନ୍ତି ।
ଏ ଭାବେ ଗୋପାଳ ସଦା; କଲେ କୀରତନ
ଦେବ ବୋଇଲେ ତା ନୁହେ ପ୍ରକୃତ ଆଖ୍ୟାନ ।
ସ୍ୱପ୍ରକାଶ ଗୋରାରୂପ ଭୁବନମୋହନ
ବିଧାତା ଗଠିତ ନୁହେ ତାହା କଦାଚନ ।
ଏ ପ୍ରକାରେ ଗୋରାରୂପ କରିଣ ଅଙ୍କିତ
ମଧୁକଣ୍ଠସ୍ୱରେ ପ୍ରଭୁ ଗାଇଲେ ସଙ୍ଗୀତ ।
ଶ୍ରୀବଦନୁ ଗୌରରୂପ ବର୍ଣ୍ଣନା ଶୁଣିଣ
ଶ୍ରୋତାଏ ସେ ରୂପ ଚିତ୍ତେ କଲେକ ଅଙ୍କନ ।
କୀର୍ତ୍ତନେ ତନ୍ମୟ ଥାଇ ନ ଜାଣିଲେ ବେଳ
ଉପସ୍ଥିତ ହେଲା ପ୍ରାୟ ଘୋର ନିଶାକାଳ ।
ହୃଦୁ ଗୃହେ ହୋଇଅଛି ଭୋଜନାୟୋଜନ
ଅତି ବ୍ୟସ୍ତ ହେଲେ ସେହୁ ବିଳମ୍ବ ଦେଖିଣ ।
ଅନ୍ତର୍ଯାମୀ ଦେବରାୟ ତାହା ଜାଣିପାରି
ସଙ୍କୀର୍ତ୍ତନ ସାଙ୍ଗ କଲେ କଉଶଳ କରି ।
ଗୀତ ସମାପନେ ସର୍ବେ ଆସି ଯୂଥେ ଯୂଥେ
ପ୍ରଣମିଲେ ଶ୍ରୀଚରଣେ ଗୋପାଳ ସହିତେ ।
ଆଗମନ ବାର୍ତ୍ତା ପାଇ ଭକ୍ତ ନଟବର
ଦର୍ଶନ ପାଇଁ ଆଗତ ପ୍ରଭୁଙ୍କ ଗ୍ରାମୁର ।
ଗୋସ୍ୱାମୀ ବ୍ରାହ୍ମଣ ଶ୍ୟାମବଜାରେ ବସତି
ପ୍ରଭୁପାଦେ ତାହାଙ୍କର ଅଚଳା ଭକତି ।
ଯେମନ୍ତ ଗୋସ୍ୱାମୀ ତାଙ୍କ ପତ୍ନୀ ସେହିପରି
ଭକତିରେ ଊଣା କେହି ନୁହଇ କାହାରି ।
ତାଙ୍କର ସୌଭାଗ୍ୟ କଥା ନ ହୁଏ ବଖାଣି
ବିଶେଷରେ କୃପା କଲେ ଯାଙ୍କୁ ଚକ୍ରପାଣି ।
ଏକଦା ପ୍ରଭୁଙ୍କୁ ସେହୁ ନିମନ୍ତ୍ରଣ କରି
ଘେନି ଯାଇଥିଲେ ବାସଭବନେ ତାଙ୍କରି ।
ପାଦପୂଜା କରି ଦୁହେଁ ଭକତି ଭାବରେ
ତୋଷିଲେ ତାଙ୍କର ମନ ବିଶେଷ ଭାବରେ ।
ମାଗିଲେ ତାହାଙ୍କୁ ବର ଯୋଡ଼ି ବେନି କର
ସନ୍ତାନସନ୍ତତି କିଛି ନାହିଁ ତ ଆମ୍ଭର ।
ଆପଣଙ୍କ କୃପା ହେଲେ ଲଭିଣ ସନ୍ତାନ
ଗୃହସ୍ଥାଶ୍ରମରେ ଥାଇ ଯାପିବୁ ଜୀବନ ।
ଭକ୍ତବାଞ୍ଛା କଳ୍ପତରୁ ପ୍ରଭୁ ଭବନାଥ
ବର ଦେଲେ ପୂର୍ଣ୍ଣ ହେବ ତବ ମନୋରଥ ।
ବ୍ୟର୍ଥ ନୁହଇ କଦାପି ଶ୍ରୀମୁଖ ବଚନ
ଗୋସ୍ୱାମୀ ପ୍ରାପତ ହେଲେ ଅଚିରେ ସନ୍ତାନ ।
ସେହିଦିନୁ ପ୍ରଭୁପାଦେ ତାଙ୍କର ଭକତି
କ୍ରମଶରେ ବୃଦ୍ଧିପ୍ରାପ୍ତ ହେଲା ନିତି ନିତି ।
ଆଗମନ ବାର୍ତ୍ତା ପାଇ ଭକ୍ତ ସେ କାରଣେ
ଦର୍ଶନ ନିମିତ୍ତ ଧାବମାନ ସନ୍ନିଧାନେ ।
ଏକା ନୁହେ ସଙ୍ଗେ ପୁଣି ସଙ୍କୀର୍ତ୍ତନ ଦଳ
ଗ୍ରାମସ୍ଥ ତନ୍ତ୍ରୀଏ କୃଷ୍ଣ-ଭକ୍ତ ଯେ ସକଳ ।
ବୈଷ୍ଣବଆଶ୍ରୟୀ ବହୁ ତନ୍ତ୍ରୀ ସେ ଗ୍ରାମରେ
ସାଧୁ ସନ୍ନ୍ୟାସୀ ଦର୍ଶନେ ପ୍ରୀତି ହୃଦୟରେ ।
ସୁନ୍ଦର ସୁଠାମ ରୂପ ଦେଖି ଦେବଙ୍କର
ଗଡ଼ିଲେ ଭକତିଭରେ ପଦ୍ମରେ ତାଙ୍କର ।
ହରି ସଙ୍କୀର୍ତ୍ତନ କରି ଆନନ୍ଦ ହିଲ୍ଲୋଳେ
ଦେବରାୟେ ନଟବର ଗ୍ରାମେ ଘେନିଗଲେ ।
ଉପସ୍ଥିତ ହୋଇ ତହିଁ ପ୍ରଭୁ ଦୟାମୟେ
ଅତିଥି ହୋଇଲେ ଭକ୍ତ ଗୋସ୍ୱାମୀ ଆଳୟେ ।
ଶ୍ରୀଦେବ ବୋଲନ୍ତି "ଗ୍ରାମେ ପ୍ରବେଶ ମାତ୍ରକେ
ଗୌରାଙ୍ଗ ଦେବ ଦର୍ଶନ ଦେଲେ ଅଗ୍ରତକେ

ତାଙ୍କ ସବେ ମାତି ସାତ ରାତି ସାତଦିନ
ନୃତ୍ୟ ସଙ୍କୀର୍ତ୍ତନେ ମତ୍ତ ହେଲ ଅନୁକ୍ଷଣ ।
ମୋ ସୂକ୍ଷ୍ମ ଶରୀର ଏହି ପିଣ୍ଡରୁ ବାହାରି
ନୃତ୍ୟେ ମତ୍ତ ହେଲା ଶ୍ରୀକୃଷ୍ଣଙ୍କ ପଛ ଧରି ।
ଅଗଣିତ ଲୋକ ଆସି ତହିଁ ଜମା ହେଲେ
ଠିଆ ହେବା ପାଇଁ ମଧ୍ୟ ସ୍ଥାନ ନ ପାଇଲେ ।
କେ ଚଢ଼ିଲେ ବୃକ୍ଷଡାଳେ କିଏ ବା ପିଣ୍ଡାରେ
କେ ପୁଣି ଭଙ୍ଗା ଝଣ୍ଟିଆ ପାଚେରି ଉପରେ ।
ଯେଉଁଆଡ଼େ ଗଲା ଲୋକ ଗଲେ ସାଥେ ସାଥେ
ବିଶ୍ରାମ ନାହିଁ ପୋଖରୀ ବସିବା ନିମିତ୍ତେ ।
ଲୋକ ଗହଳ ସତତ ହୋଇଲା ଏମନେ
ଲୁଚି ରହିଲେ ଅନ୍ତମେ ତନ୍ତ୍ରୀର ସଦନେ ।
କ୍ଷଣକାଳ ପରେ ସବେ ତହିଁ ହୋଇ ରୁଣ୍ଡ
ଆରମ୍ଭିଲେ ନୃତ୍ୟ ଗୀତ ଉଦ୍ଦାମ ଉଦ୍ଦଣ୍ଡ ।
ନ ରହିଲା ସ୍ନାନ ଅବା ଭୋଜନର କାଳ
କେବେ ଦିନ ଦିନଦଣ୍ଡା କେବେ ସନ୍ଧ୍ୟାବେଳ ।
ଗ୍ରାମେ ଗ୍ରାମେ ପରସ୍ପର ସଂବାଦ ପ୍ରଚାର
ଆସିଛନ୍ତି ଲୋକ ଏକ ଅଦ୍ଭୁତ ପ୍ରକାର ।
ସାତବାର ମରି ସାତବାର ଜୀଉଛନ୍ତି
ଶତ ଶତ ଲୋକ ଦେଖିବାକୁ ଧାଉଁଛନ୍ତି ।
ଶୋଇବାକୁ ବସିବାକୁ ନ ପାଇଲେ ସ୍ଥାନ
ଯହିଁ ଗଲେ ତହିଁ ରୁଣ୍ଡ ଲୋକ ଅଗଣନ ।
ଶ୍ରୀହରିଙ୍କ ଆକର୍ଷଣ ହୁଏ ଯେତେବେଳେ
ଏମନ୍ତେ ଉନ୍ମତ୍ତ ହୋନ୍ତି ଭବେ ପ୍ରାଣିକୁଳେ ।”
ଗ୍ରାମବାସୀ ହୃଦେ ନିତ୍ୟାନନ୍ଦ ଉପୁଜାଇ
ଫେରିଲେ ଶିହୁଡ଼ ଗ୍ରାମେ ପ୍ରଭୁ ବିଶ୍ୱସାଇଁ ।
ହୃଦୁଙ୍କ କନିଷ୍ଠ ଭ୍ରାତା ଦ୍ୱିଜ ରାଜାରାମେ
କଲହେ ମାତିଣ ଏକ ବିଷୟ କରମେ,
କୌଣସି ଲୋକର ଶିରେ କଲେକ ଆଘାତ
ସେ ବ୍ୟକ୍ତି ତା ନାମେ କଲା କୋର୍ଟେ ଦରଖାସ୍ତ ।
ଶ୍ରୀପ୍ରଭୁଙ୍କୁ ଜାଣି ଅତି ସାଧୁ ସତ୍ୟବାଦୀ
ସାକ୍ଷୀରୂପେ ନିର୍ବାଚନ କଲେ ସେହି ବାଦୀ ।
ରାଜାରାମ କାର୍ଯ୍ୟେ ପ୍ରଭୁ ହୋଇଣ ବିରକ୍ତ
ତାହାକୁ କହିଲେ ତାଙ୍କ ପାରୁ ପରିଯନ୍ତ ।
"ଆପୋଷରେ ମକଦ୍ଦମା ଯଦି ନ ଛାଡ଼ିବୁ
ଅତୀବ ବିପଦେ ତୁହି ନିଶ୍ଚୟ ପଡ଼ିବୁ ।
ସତ୍ୟ ଘଟଣା ଯାହାକୁ ଦେଖିଅଛୁ ମୁହିଁ
କହିବି ହାକିମ ଆଗେ ତୋ ସପକ୍ଷ୍ୟ ଯା ଆଇ ।”
ପ୍ରଭୁଙ୍କ ଆଦେଶ ମାନି ସେ ବିପ୍ର ନନ୍ଦନ
ମକଦ୍ଦମା ମେଣ୍ଟାଇଲେ ଆପୋସେ ତକ୍ଷଣ ।
ଏ ସମ୍ପର୍କେ ଦେବରାୟ ଆସି ବିଷ୍ଣୁପୁରେ
ଦର୍ଶନେ ଗଲେ ମୃଣ୍ମୟୀ ଦେବୀଙ୍କ ମନ୍ଦିରେ ।
ଜାଗ୍ରତା ବୋଲି ସେ ଦେବୀ ଦେଶେ ଦେଶେ ଖ୍ୟାତ
ପୂଜା ମାନସିକ ପାଇଁ ଲୋକ ଆତଯାତ ।
ମନ୍ଦିରେ ପ୍ରବେଶ ପୂର୍ବୁଁ ପ୍ରଭୁ ନାରାୟଣ
ଦେବୀଙ୍କର ଦିବ୍ୟରୂପ କଲେକ ଦର୍ଶନ ।
ମନ୍ଦିର ମଧ୍ୟେ ଯେ ଦେବୀ ପ୍ରତିଷ୍ଠା ଦେଖିଲେ
ସେ ଦେବୀ ନୁହନ୍ତି ଯାଙ୍କ ଦର୍ଶନ ଲଭିଲେ ।
ବିହିତ ସନ୍ଧାନ କରି ହେଲେ ଅବଗତ
ଆଦ୍ୟରେ ଯେ ଦେବୀ ଏଠି ଥିଲେ ପ୍ରତିଷ୍ଠିତ ।
ତାଙ୍କୁ ଭଗ୍ନ କରିବାରୁ ପାଗଳିନୀ ଜଣେ
ନୂତନ ମୂରତି ରାଜା ସ୍ଥାପିଲେ ସେ ସ୍ଥାନେ ।
ଏହି ସମ୍ବାଦ ପାଇ କୌଣସି ଦ୍ୱିଜେଶ
ଭଗ୍ନ ମୂର୍ତ୍ତି ରଖିଥିଲେ ଯତ୍ନେ ତାଙ୍କ ପାଶ ।
ଭଙ୍ଗାମୂର୍ତ୍ତି ଯୋଖି ପୁନଃ ଅନ୍ୟତ୍ର ସ୍ଥାପିଣ
ଭକ୍ତିଭରେ ସେବା ପୂଜା କଲେ ପ୍ରତିଦିନ ।
ଅତଃପର ଦେବରାୟ ହୃଦୟ ଏକତ୍ରେ
ଆସିଲେ ଦକ୍ଷିଣେଶ୍ୱରେ ତାଙ୍କ କାର୍ଯ୍ୟକ୍ଷେତ୍ରେ ।
ରାମକୃଷ୍ଣ ଲୀଳାମୃତ ସୁଧାର ଲହରୀ
ଅକୂଳ ଭବ ଜଳଧି ତରିବାର ତରୀ ।
ଆସିଛନ୍ତି ଏବେ ସେହି ତରୀର କାଣ୍ଡାରୀ
ନାବେ ଶୀଘ୍ର ବସ ମନ ! ଯିବ ହେରୁ ପାରି ।

---

## ତୃତୀୟ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କ ଜନନୀଙ୍କ ଦେହତ୍ୟାଗ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ତ୍ରିଲୋକର ପତି
ପତିତପାବନ ହରି ଅଗତିର ଗତି ।
ରାମକୃଷ୍ଣ ଲୀଳା କଥା ଶ୍ରବଣେ କୀର୍ତ୍ତନେ
ମାତୃପିତୃ ଭକ୍ତି ଚିତ୍ତେ ଉପୁଜଇ କ୍ଷଣେ ।

ଜନନୀ ବିୟୋଗ କଥା ଅମୃତ ଆଖ୍ୟାନ
ତାହାର ବିବୃତି ମନ ! ସାବଧାନେ ଶୁଣ ।
ତିନଭାଇ ମଧ୍ୟେ ଛନ୍ତି ପ୍ରଭୁ ଗଦାଧର
ସ୍ୱର୍ଗଧାମେ ଯାଇଛନ୍ତି ମଧ୍ୟମ ସୋଦର ।
ତାହାଙ୍କର ବଂଶଧର ନନ୍ଦନ ନନ୍ଦିନୀ
ରାମଲାଲ, ଶିବଲାଲ, ଲକ୍ଷ୍ମୀଠାକୁରାଣୀ ।
ଭ୍ରାତୃଷ୍ପୁତ୍ର ରାମଲାଲ ବାଳକ ବୟସ
ନିବସନ୍ତି ଶ୍ରୀମନ୍ଦିରେ ପ୍ରଭୁଦେବ ପାଶ ।
ମହାସାଧ୍ୱୀ ଅତି ବୃଦ୍ଧା ଦେବୀ ଚନ୍ଦ୍ରମଣି
ପଞ୍ଚାଶୀ ବୟସେ ପଦାର୍ପଣ ଗଣି ଗଣି ।
ଜରାଜୀର୍ଣ୍ଣ ହେତୁ ମନ ଆଉର ବୁଦ୍ଧିର
ବିପର୍ଯ୍ୟୟ ଘଟିଥିଲା ବିଶେଷ ଭାବର ।
ମନ୍ଦିରର ସନ୍ନିକଟେ ଥିଲା ଝୋଟକଲ
ଦ୍ୱିପହରେ ବାଜେ ତହିଁ ପ୍ରତ୍ୟହ ବିଗୁଲ ।
ବିଗୁଲ ବାଜିଲେ ଏକ ଘଣ୍ଟାକ ନିମନ୍ତେ
ଭୋଜନ ସକାଶେ କର୍ମଚାରୀ ଛୁଟି ପାନ୍ତେ ।
ବୁଦ୍ଧି ଭ୍ରଂଶ ହେତୁ ବୃଦ୍ଧା ଏ ବିଗୁଲ ଧ୍ୱନି
ବୈକୁଣ୍ଠରେ ଶଙ୍ଖନାଦ ମନେ ମନେ ଗୁଣି,
ଯେତେକ୍ଷଣ ନ ଶୁଣନ୍ତି ଶବଦ ତାହାର
ଭୋଜନେ ବସନ୍ତି ନାହିଁ କୌଣସି ପ୍ରକାର ।
ଜଗର କରିଲେ ବୃଦ୍ଧା କହନ୍ତି ଉତ୍ତରେ
ଶଙ୍ଖ ଧ୍ୱନି ହୋଇ ନାହିଁ ବୈକୁଣ୍ଠଧାମରେ ।
ଭୋଜନେ ବସି ନାହାନ୍ତି ଲକ୍ଷ୍ମୀନାରାୟଣ
ଆହାର କରିବି ମୁହିଁ ଆଗରୁ କେସନ ।
ପୂଜା ପର୍ବ ପାଇଁ କଲ ବନ୍ଦ ଯେ ଦିବସ
ସେଦିନ ତାଙ୍କୁ ଖୋଇବା କଠିନ ପ୍ରୟାସ ।
ପ୍ରଭୁ ଆଉ ହୃଦୁ ନାନା ଉପାୟ ପାଞ୍ଚିଣ
ଭୋଜନେ ବସାନ୍ତି ବହୁ କଷ୍ଟେ ଭୁଲାଇଣ ।
ପ୍ରଭୁଙ୍କ ଭକତି ଅତି ଜନନୀ ପଦରେ
ପ୍ରତ୍ୟହ କରନ୍ତି ତାଙ୍କ ସେବା ସ୍ୱହସ୍ତରେ ।
ଜନନୀଙ୍କଠାରେ ସଦା ଦେବୀସମ ଜ୍ଞାନ
ପାଦଧୂଳି ନ୍ୟନ୍ତି ଶିରେ ନିତ୍ୟ ପ୍ରଣମିଣ ।
ସଦାଳାପ ଶୁଶ୍ରୂଷାଦି କରି ଦୁଇବେଳା
ନିଜ ଗୃହେ ବାହୁଡନ୍ତି ଚନ୍ଦ୍ରାଙ୍କର ବଳା ।
କହୁଣସି ଗୁରୁତର କାର୍ଯ୍ୟ ଉପଲକ୍ଷେ
ଗୃହରୁ ଆସିଲା ଭାଷା ହୃଦୁ ପାଶେ ଡାକେ ।
ସେ କାରଣେ ବିଚଳିତ ତାହାର ଅନ୍ତର
ପ୍ରଭୁ ପାଶେ ନିବେଦିଲେ ଗ୍ରାମର ଖବର ।
ଗୃହେ ଯିବା ପାଇଁ ତେଣୁ ଇଚ୍ଛା ଅନୁମତି
ତହିଁରେ ନୋହିଲେ ରାଜି ପ୍ରଭୁ ଜଗପତି ।
ଯିବା ପାଇଁ ହୃଦୁ ଯେତେ କଲେକ ଜଗର
ସେଥିରେ ନୋହିଲେ ରାଜି ପ୍ରଭୁ ଶ୍ରୀ ଠାକୁର ।
ବିଷଣ୍ଣ ବଦନେ ତହୁଁ ପୁଚ୍ଛିଲେ କାରଣ
ଉତ୍ତରେ କହିଲେ ପ୍ରଭୁ କରୁଣାନିଧାନ ।
"ଆପଣେ ଜାଣିବୁ ରୁହ କାରଣ ତାହାର
ଦୁଇ ଚାରିଦିନ ମାତ୍ର ଅପେକ୍ଷା ତୁ କର ।"
ନ ମାନିଣ ହୃଦୁ ତାଙ୍କ ନିଷେଧ ବଚନ
ମନ୍ଦିର ଅଧ୍ୟକ୍ଷ ପାଶେ କଲେକ ଗମନ ।
କୁହାବୋଲା କରି ତାଙ୍କୁ ନାନା ପରକାରେ
ମଞ୍ଜୁର କରାଇ ନେଲେ ଛୁଟି ତାଙ୍କଠାରେ ।
ଗୃହେ ଯିବା ପାଇଁ ସବୁ ହେଲା ଆୟୋଜନ
ଗଣ୍ଠିରି ଗଣ୍ଠିଲି ସବୁ ହୋଇଲା ବନ୍ଧନ ।
ପ୍ରାତୁଁ ଉଠି ଯିବେ ସେହୁ ଆପଣା ଆଳୟ
ଏକାଳେ ମାନସେ ଏକ ଦୁଶ୍ଚିନ୍ତା ଉଦୟ ।
ଚିନ୍ତାର କାରଣ କିଛି ନ ପାନ୍ତି ଖୋଜିଣ
ବିଷାଦ ଗ୍ରସ୍ତାରେ ଚିତ୍ତ ସମ୍ୟକେ ଅଛନ୍ତି ।
ହୃଦବ୍ୟଥା ନିବେଦିଲେ ପ୍ରଭୁଙ୍କ ଅଗ୍ରତେ
ଯିବା ପାଇଁ ବଳୁନାହିଁ ମୋ ମନ କାହିଁକେ ।
ପ୍ରଭୁଦେବ ତହୁଁ ତାକୁ କହିଲେ ଉତ୍ତରେ
ଭଲକଥା ନ ଯାଇଣ ରହିଲୁ ଏଠାରେ ।
ସୁମଧୁର ଲୀଳାଗାଥା ତମୋବିନାଶନ
ଅତଃପର ଯା ଘଟିଲା ଶୁଣ ସେ ଆଖ୍ୟାନ ।
ସେହିଦିନ ଦେବାରାତ୍ରେ ଦିବା ଅବସାନେ
ଗଙ୍ଗାତୀରେ ଭ୍ରମୁ ଭ୍ରମୁ କିସ ହେଲା ମନେ ।
ଭାବେ ନିମଗନ ହୋଇ କ୍ଷଣକ ମଧ୍ୟରେ
ପିଠୁଲା ପଗାରେ ଠିଆହେଲେ ସେହିଠାରେ ।
କିଛିକ୍ଷଣ ପରେ ଯେବେ ଭାବ ଅବସାନ
ଧୀରେ ଧୀରେ ମାତା ପାଶେ କଲେ ଆଗମନ ।
ସର୍ବାଗ୍ରେ ଜନନୀ ପାଦେ କରିଣ ପ୍ରଣାମ
ବସିଲେ ପଦର ପାଶେ ପ୍ରଭୁ ଗୁଣଧାମ ।
ସ୍ୱଦେଶରେ ପ୍ରତିବାସୀ କିଏ କେ ଜୀବିତ
କାହାର ବା ଅଛୁ କେତେ କନ୍ୟା ଆଉ ସୁତ ।
ସଂସାର ନିର୍ବାହ କିଏ କେମନ୍ତେ କରଇ
କିଏ ବା ସୁପଥେ କିଏ କୁପଥେ ଗମଇ ।

କଥୋପକଥନ କରୁ କରୁ ଏ ପ୍ରକାର
ରଜନୀ ଅତୀତ ହେଲା ପ୍ରଥମ ପ୍ରହର ।
ଶ୍ୟାମାଙ୍କର ସନ୍ଧ୍ୟାଧୂପ ହୋଇଲାକ ଶେଷ
ତେବେ ପୂଜା ନ ଫେରିଲେ ପ୍ରଭୁ ପରମେଶ ।
ଭୋଜନ ସମୟ ଏଣେ ହେଲାରୁ ଅତୀତ
ମାରୁଲେ ଡାକିଲେ ହୃଦୁ ଚିତ୍କାର ବହୁତ ।
ଉତ୍ତରେ କହିଲେ ତାଙ୍କୁ ଜଗତ ଗୋସାଇଁ
ଯାଉଛରେ ହୃଦୁ ଏତେ ଅସ୍ଥିର କପାଇ ।
ବାରମ୍ବାର ହୃଦୁ ତାଙ୍କୁ ଡାକୁଥାନ୍ତି ଯେତେ
ଉତ୍ତର ଦିଅନ୍ତି ଦେବରାୟ ସେହି ମତେ ।
ଏମନ୍ତେ, ଅତୀତ ହେଲା ରାତି ଦ୍ୱିପହର
ମେଲାଣି ମାଗିଲେ ପ୍ରଭୁ ମାତାଙ୍କ ପଯ୍ୟର ।
ଭକ୍ତି ସହକାରେ ପୂଜି ଜନନୀ ଚରଣ
ଫେରିଲେ ଆପଣା ବାସେ ଚନ୍ଦ୍ରାଙ୍କ ନନ୍ଦନ ।
ଆହାରାନ୍ତେ ଦେବରାୟ ଶ୍ରୀଦେବ ଅଚ୍ୟୁତ
ଆପଣା ଶଯ୍ୟାରେ ସୁଖେ ହେଲେ ନିଦ୍ରାଗତ ।
ଭ୍ରାତୃଷ୍ପୁତ୍ର ରାମଲାଲ, ହୃଦୟ ଠାକୁର
ସେ ଦୁହେଁ ଶୋଇଲେ ସୁଖେ ଆପଣା ଶଯ୍ୟାର ।
ଭୋଜନାନ୍ତେ ଚନ୍ଦ୍ରାଦେବୀ କବାଟ କିଳିଣ
ଆପଣା ଶଯ୍ୟାରେ ଏଣେ କଲେକ ଶୟନ ।
କାଳିଆ ମା ନାମେ ଏକ ଦାସୀ ମନ୍ଦିରର
ଚନ୍ଦ୍ରାଙ୍କ ଶୁଶ୍ରୂଷା ପାଇଁ ନିୟୋଗ ଯାହାର ।
ସୁଖେ ନିଦ୍ରାଗଲା ସେହୁ ଗୃହ ବାରଣ୍ଡାରେ
ପ୍ରତ୍ୟହ ଚନ୍ଦ୍ରାଙ୍କୁ ଜଗି ଶୁଏ ଯେଉଁଠାରେ ।
ସହଳ ସହଳ ଉଠି ଚନ୍ଦ୍ରା ପ୍ରତିଦିନ
ଡାକନ୍ତି କାଳିଆ ମାକୁ ଉଠିବା କାରଣ ।
ଦିନକର ଉଇଁଲେଣି ପୂରବ ଗଗନେ
ତଥାପି ଉଠି ନାହାନ୍ତି ଚନ୍ଦ୍ରା ଆଜ ଦିନେ ।
ବେଳ ହେଲା ଦେଖି ନିଦ୍ରା ଭାଙ୍ଗିଲା ତାହାର
ଚକିତେ ଉଠି ଦେଖିଲା ରୁଦ୍ଧ ଅଛି ଦ୍ୱାର ।
ବାରମ୍ବାର ଚନ୍ଦ୍ରାଙ୍କୁ ସେ ଡାକିଲା ତକ୍ଷଣ
ଉଠିବ ନାହିଁ କି ଆଜ ହେଲାଣି ଯେ ଦିନ ।
କୌଣସି ପ୍ରକାର କିଛି ଉତ୍ତର ନ ପାଇ
କାନ ଡେରିଲା କବାଟ ପାଖେ ଠିଆ ହୋଇ
ଘଡ଼ ଘଡ଼ ଶବ୍ଦ ଶୁଣି ଗୃହର ଭିତରେ
ବିପଦ ଆଶଙ୍କା କଲା ଆପଣା ଅନ୍ତରେ ।
ବ୍ୟାକୁଳ ହୃଦୟେ ତହୁଁ ଧାଇଁଣ ବହନ
ପ୍ରଭୁ ପାଶେ ଘଟଣାଟି କଲା ନିବେଦନ ।
ହୃଦୁଙ୍କୁ ସଙ୍ଗତେ ଧରି ପ୍ରଭୁ ଗଦାଧର
ପ୍ରବିଷ୍ଟ ଘଟଣାସ୍ଥଳେ ଆସି ଖରତର ।
କୌଶଳ କରିଣ ହୃଦୁ ଖୋଲିଲା କବାଟ
ନିରେଖିଲେ ବୃଦ୍ଧାଙ୍କର ଅବସ୍ଥା ସଙ୍କଟ ।
ବେଗେ ଧାଇଁ ଆସିଲେକ କବିରାଜ ଜଣେ
ଔଷଧ ବ୍ୟବସ୍ଥା ହେଲା ଅବସ୍ଥା ଦର୍ଶନେ ।
ସଙ୍କାଶ୍ୱନ ଅବସ୍ଥାରେ ବୃଦ୍ଧା ତିନି ଦିନ
ଗଙ୍ଗାଜଳ ଦୁଧ ପିଇ ଧରିଲେ ଜୀବନ ।
ଚତୁର୍ଥ ଦିବସେ ତାଙ୍କୁ ଆଣି ଗଙ୍ଗାତୀରେ
ଗଙ୍ଗାଯାତ୍ରା କରାଇଲେ ବିଧି ଅନୁସାରେ ।
ସନ୍ଧ୍ୟା ପ୍ରାୟ ସମାଗତ ଦିବା ଅବସାନେ
ଦ୍ୱିତୀୟାର ଚନ୍ଦ୍ରୋଦୟ ପଶ୍ଚିମ ଗଗନେ ।
ବାରଶ ଚୌରାଶୀ ସାଲ ଫାଲଗୁନ ମାସ
ଦେବରାଜଙ୍କର ଯାହା ଜନମ ଦିବସ ।
ସେହିଦିନ ଜନ୍ମଦାତ୍ରୀ ଦେବୀ ଚନ୍ଦ୍ରମଣୀ
ସ୍ୱର୍ଗଧାମେ ଚାଲିଗଲେ ତେଜି ଏ ମେଦିନୀ ।
ଫୁଲ ତୁଳସୀ ଚନ୍ଦନ ଆଣି ଶ୍ରୀଠାକୁରେ
ଜନନୀ ପୟର ଧୌତ କଲେ ଗଙ୍ଗାନୀରେ ।
ସୁଗନ୍ଧ ଚନ୍ଦନ ତହିଁ ବୋଳି ଯତନେ
କୁସୁମ ତୁଳସୀ ଦେଇ କାନ୍ଦିଲେ ସଘନେ ।
ଯେ ଦେହରୁ ମୋର ଏହି ଶରୀର ପ୍ରକାଶ
ଆଜ ହେଲା ମାତଃ ! ସେହି ଶରୀର ବିନାଶ ।
ମୁଖାଗ୍ନି ଇତ୍ୟାଦି ଯାହା ଶବର ସତ୍କାର
ସେ କର୍ମ୍ମ ବିହିତ ନୁହେ ସନ୍ନ୍ୟାସୀ ପକ୍ଷର ।
ପ୍ରଭୁଙ୍କ ଆଦେଶମତେ ଭ୍ରାତାଙ୍କ ସନ୍ତାନ
ରାମଲାଲ ଏ କାର୍ଯ୍ୟଟି କଲେ ସମ୍ପାଦନ ।
ଶ୍ରାଦ୍ଧକ୍ରିୟା କର୍ମ୍ମ ଆଦି ଶାସ୍ତ୍ର ଅନୁସାରେ
ତାହା ମଧ୍ୟ ନ୍ୟସ୍ତ ହେଲା ଭ୍ରାତୃଷ୍ପୁତ୍ରଠାରେ ।
ସନ୍ନ୍ୟାସ ଗ୍ରହଣ ହେତୁ ପ୍ରଭୁ ନରହରି
ଅଶୌଚାଦି କ୍ରିୟା କର୍ମ୍ମ ନ ପାରିଲେ ଧରି ।
କେତେ କଷ୍ଟେ ମାତା କଲେ ଲାଳନ ପାଳନ
କିଛି କରି ନ ପାରିଲି ଶୋଧିବାକୁ ଋଣ ।
ଏମନ୍ତ ଚିନ୍ତାରେ ମଗ୍ନ ହୋଇ ଭବନାଥ
ତର୍ପଣ କରିବା ପାଇଁ କଲେ ଯେ ମନସ୍ଥ ।
ଅଦ୍ଭୁତ ଅଟଇ ସେହି ତର୍ପଣ ବିବୃତ
ରାମକୃଷ୍ଣ ପାଦପଦ୍ମେ ରଖ ସଦା ମତ ।

ମନ୍ଥର ଗମନେ ପ୍ରଭୁ କରୁଣାସାଗର
ତର୍ପଣ ହେତୁ ପ୍ରବିଷ୍ଟ ଜାହ୍ନବୀ ଭିତର ।
ଜଳ ଉତ୍ତୋଳନ କାଳେ ଅଞ୍ଜଳି ପୂରାଇ
ଅଙ୍ଗୁଳି ବିସ୍ତାରି ଯାଏ ଫାର୍ଦୀକାର ହୋଇ ।
ବିନ୍ଦୁ ପ୍ରମାଣରେ ଜଳ ନ ରହିଲା ହସ୍ତେ
ଯେତେବାର ଚେଷ୍ଟା କଲେ ଘଟିଲା ଏମନ୍ତେ ।
ଦୁଃଖିତ ହୋଇଣ ତହୁଁ ପ୍ରଭୁ ଗଦାଧର
କ୍ରନ୍ଦନ କରିଲେ ଯେଦେ ଶିଶୁ ସେ ପ୍ରକାର ।
"ଦେଖ ଗୋ ଜନନୀ ! ତବ ଅଭାଗା ସନ୍ତାନ
ତର୍ପଣ ବି କରିବାକୁ ହେଲା ଶକ୍ତିହୀନ ।"
ଏ ପ୍ରକାର କାନ୍ଦି କାନ୍ଦି ହେଲେ ସମାଧିସ୍ଥ
ଜଳମଗ୍ନ ଶଙ୍କା କରି ହୃଦୟ ଧାବିତ ।
ଯତନେ ଧରିଣ ତାଙ୍କୁ କୌଣସି ପ୍ରକାରେ
ଧୀରେ ଧୀରେ ବସାଇଲେ ଭାଗୀରଥୀ ତୀରେ ।
ପ୍ରହରେକ ପରେ ଯେବେ ଭାଙ୍ଗିଲା ସମାଧି
ଅତି କଷ୍ଟେ ଫେରିଲେକ ଗୃହେ ଗୁଣନିଧି ।

ଅପରାଧୀ ହେଲି କି ମୁଁ ଜନନୀ ପାଶରେ
ମଗ୍ନ ହେଲେ ଦେବରାୟ ଏମନ୍ତ ଚିନ୍ତାରେ ।
ଏକାଳେ ଅଇଲେ ଏକ ସୁବିଜ୍ଞ ପଣ୍ଡିତ
ଏ ବିଷୟ ଫେଡ଼ିଲାରୁ ତାଙ୍କ ସନ୍ନିହିତ
ପ୍ରବୋଧ ଦେଇ କହିଲେ ସେହି ମହାଜନ
ଏଥିରେ ନୋହିବେ ଦୋଷୀ କଦାପି ଆପଣ ।
ଆଧ୍ୟାତ୍ମିକ ଉନ୍ନତିର ଶୀର୍ଷେ ପ୍ରବେଶିଲେ
କ୍ରିୟାକର୍ମ ଏକାବେଳେ ଲୋପ ତେତେବେଳେ ।
ସେହି ଅବସ୍ଥାରେ କେବେଁ ପ୍ରାଣିମାନଙ୍କର
ନିୟମ ଲଙ୍ଘନ ଦୋଷ ନ ହୁଏ କାହାର ।
ଏସନ ସିଦ୍ଧାନ୍ତ ଶୁଣି ପ୍ରଭୁ ଦେବରାୟେ
ଶାନ୍ତିଲାଭ କଲେ ନିଜ ସନ୍ତପ୍ତ ହୃଦୟେ ।
ରାମକୃଷ୍ଣ ଲୀଳାମୃତ ରତ୍ନର ଆକର
ପ୍ରେମଭକ୍ତି ଜ୍ଞାନ ମୁକ୍ତି ନିହିତ ଏଥିର ।
ବିଶ୍ୱାସ କୋଦାଳେ ଖୋଳ ମୋ ଅମୂଲ୍ୟ ଖଣି
ମହାଭବେ ଅନ୍ତକାଳେ ହୋଇବ ସେ ଧନୀ ।

---

# ଚତୁର୍ଥ ଅଧ୍ୟାୟ

## ପାରାୟଣ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ତ୍ରିଲୋକର ପତି
ପତିତପାବନ ହରି ଅଗତିର ଗତି ।
ଭକ୍ତ ସମାଗମ କଥା ମଧୁର ଆଖ୍ୟାନ
ଶ୍ରବଣେ କୀର୍ତ୍ତନେ ଚିତ୍ତ-ତମୋବିମୋଚନ ।
ଯେଉଁ ଭକ୍ତ ଯଦୁଙ୍କର ଉଦ୍ୟାନ ଭବନେ
ଯୀଶୁଙ୍କ ଦର୍ଶନ ପ୍ରଭୁ ଲଭିଥିଲେ ଦିନେ ।
ତାଙ୍କ ଗୃହେ ଥିଲେ ଏକ ଭକ୍ତିମତୀ ନାରୀ
ସମ୍ପର୍କେ ଅଟନ୍ତି ସେହୁ ମାଉସୀ ତାଙ୍କରି ।
ପ୍ରଭୁପାଦେ ତାହାଙ୍କର ଭକତି ଅପାର
ମର୍ତ୍ତ୍ୟରେ ବିରଳ ଅତି ଯାର ପଟାନ୍ତର ।
ପୁରାଣ ମଧ୍ୟରେ ସାର ଅଟେ ଭାଗବତ
ଶ୍ରଦ୍ଧା ହେଲା ଚିତ୍ତେ ତାହା ଶ୍ରବଣ ନିମିତ୍ତ ।
ସେ ନିମନ୍ତେ ଯଥାବିଧି କରି ଆୟୋଜନ
ଉଦ୍ୟାନ ଭବନେ ସମ୍ପାଦିଲେ ପାରାୟଣ ।
ଆରେ ମନ ! ପାରାୟଣ କାହାକୁ କହନ୍ତି
ସାବଧାନେ ଶୁଣ ଇହି ତାହାର ବିବୃତି ।

ଗୋଟା ଭାଗବତ ପାଠ ସପ୍ତାହ ମଧ୍ୟରେ
ପାରାୟଣ ଆଖ୍ୟା ତାର ଜନ ସମାଜରେ ।
ପାଠ ସମାପତ ହେଲେ ସପ୍ତମ ଦିବସେ
ସଂକୀର୍ତ୍ତନ ଭୋଗରାଗ ହୁଅଇ ବିଶେଷେ ।
ଗ୍ରନ୍ଥପାଠ ଶେଷ ହେଲା ଯେଉଁ ଦିବସରେ
ବହୁ ଶାସ୍ତ୍ରଜ୍ଞ ପଣ୍ଡିତ ଆଦୃତ ସେଠାରେ ।
ଏହି ଦିନ ଦେବରାୟ ଶାସ୍ତ୍ରୀ ନାରାୟଣ
ଉତ୍ସବ କ୍ଷେତ୍ରରେ ଦୁହେଁ କଲେ ଆଗମନ ।
ପଣ୍ଡିତ କରନ୍ତି ଯହିଁ ଭାଗବତ ପାଠ
ଆସନ ଘେନିଲେ ଶାସ୍ତ୍ରୀ ତାଙ୍କ ସନ୍ନିକଟ ।
ଆରେକ ଗୋସାଇଁ ଜଣେ ତାଙ୍କର ସମୀପ
ବେନିଆଟୋଲାରେ ଘର ନାମ ନବଦ୍ୱୀପ ।
ବୈଷ୍ଣବ ସମାଜେ ତାଙ୍କ ବିଶେଷ ସୁଖ୍ୟାତି
ସୁନାର ଗୌରାଙ୍ଗ ମୂର୍ତ୍ତି ଗୃହେ ପୂଜା ନିତି ।
ତାଙ୍କର କିଞ୍ଚିତ ଦୂରେ ପ୍ରଭୁ ଭାବଗ୍ରାହୀ
ଆସନ ଖଣ୍ଡିଏ ଘେନି ବସିଲେକ ତହିଁ ।
ପରିଚିତ ଲୋକଜନ ସମାଗତ ଯେତେ
ପ୍ରଭୁଙ୍କୁ ବେଷ୍ଟନ କରି ବସିଲେ ସମସ୍ତେ ।

ଅତି ବୃଦ୍ଧ ସୁପଣ୍ଡିତ ପାଠକ ବ୍ରାହ୍ମଣ
ଗ୍ରନ୍ଥ ଶେଷ ପାଇଁ ଦ୍ରୁତେ କରିଲେ ପଠନ ।
ବାକ୍ୟଯୁଦ୍ଧେ ପଣ୍ଡିତଙ୍କ ନିରନ୍ତର ପ୍ରୀତି
ସ୍ଥାନାସ୍ଥାନ ନ ବିଚାରି ତର୍କେ ଯାନ୍ତି ମାତି ।
ବାକ୍ୟଯୁଦ୍ଧ ବିନୁ କିଛି ନ ଲାଗଇ ଭଲ
କଥାରେ କଥାରେ ହୁଏ କଳହ ଗୁମୁଳ ।
ଗ୍ରନ୍ଥର କୌଣସି ଅଂଶ ପଠନ ସମୟ
ପୁଚ୍ଛିଲେକ ତାର ଅର୍ଥ ଶାସ୍ତ୍ରୀ ମହାଶୟ ।
ସେଥିର ସ୍ୱକାର୍ଥ ଯାହା ପାଠକଙ୍କୁ ଜଣା
ବିଶୁଦ୍ଧ ସ୍ୱରରେ ତାହା କଲେକ ବର୍ଣ୍ଣନା ।
ଉତ୍ତରେ କହିଲେ ତାଙ୍କୁ ଶାସ୍ତ୍ରୀନାରାୟଣ
ଏମନ୍ତ ନୁହଇ ତାର ଅର୍ଥ କଦାଚନ ।
ଶାସ୍ତ୍ରବାକ୍ୟୋଦ୍ଧୃତ କରି ପଣ୍ଡିତ ଗୋସାଇଁ
ନିଜ ଅର୍ଥ ସମର୍ଥିଣ ସଦମ୍ଭେ ଗର୍ଜ୍ଜଇ ।
ସେ ଅର୍ଥ କାଟିଣ ଶାସ୍ତ୍ରୀ କହଇ ଦମ୍ଭରେ
ଏ ଭଳି ଅର୍ଥ ତାହାର କେଉଁ ନୋହିପାରେ ।
ଏ ସ୍ୱରରେ ପରସ୍ପରେ ହେଲା ବାକ୍ୟ ରଣ
ପର୍ବତ ଶିଖରେ ଗଜ କଚ୍ଛପ ଯେସନ ।
ବାଦ-ପ୍ରତିବାଦେ କେହି କାହୁଁ ନୁହେ ଊଣା
ନବଦ୍ୱୀପ ଚନ୍ଦ୍ର ଯେ ଦେଖିଣ ଘଟଣା ।
ଅଦ୍ୟାବଧି ହୋଇନାହିଁ ପୋଥି ପାଠ ଶେଷ
ଆଉର ଅଛଇ କାର୍ଯ୍ୟ କର୍ମାଣି ବିଶେଷ ।
ତର୍କେ ଉନ୍ମତ୍ତ ହେଲେ ଏ ବେନି ପଣ୍ଡିତ
ଶୁଭ କାର୍ଯ୍ୟଟି କେମନ୍ତେ ହେବ ସମାଧିତ ।
ଏସନ ଚିନ୍ତାରେ ତାଙ୍କ ମନ ଉଚ୍ଚାଟନ
ଅନ୍ତରେ ଜାଣିଲେ ତାହା ପ୍ରଭୁ ଭଗବାନ ।
ବୃଥା ତର୍କେ ମାତି ମହା କାର୍ଯ୍ୟେ ହୁଏ କ୍ଷତି
କ୍ଷାନ୍ତ ହେବା ପାଇଁ ତେଣୁ ଶାସ୍ତ୍ରୀଙ୍କୁ ବୋଲନ୍ତି ।
ଯେତେ କହିଲେକ ତାଙ୍କୁ ପ୍ରଭୁ ଦୟାମୟ
କର୍ଣ୍ଣେ ନ ଦେଲେ ଶାସ୍ତ୍ରୀ ବଧିର ପରାୟ ।
ବିଷୟ ଧରୁଛି କ୍ରମେ ଗୁରୁତରାକାର
ନବଦ୍ୱୀପ ଗୋସ୍ୱାମୀ ଯେ ଦେଖିଣ ବ୍ୟାପାର ।
ଶାସ୍ତ୍ରୀଙ୍କୁ କହିଲେ ତହିଁ ବହୁତ ବୁଝାଇ
ଯାହା କହୁଛନ୍ତି ଦେବ ଶୁଣ ମନ ଦେଇ ।
ଉତ୍ତରେ କହିଲେ ତାଙ୍କୁ ଶାସ୍ତ୍ରୀ ନାରାୟଣ
"ଶ୍ରବଣ କରିଛି ମୁହିଁ ତାଙ୍କର ବାରଣ ।
ଯଥାର୍ଥ ମୀମାଂସା ସ୍ୱାର ନୋହିବା ପର୍ଯ୍ୟନ୍ତ
ଶାସ୍ତ୍ରୀୟ ତର୍କରୁ କେବେଁ ନ ହେବ ମୁଁ କ୍ଷାନ୍ତ ।"
ଅବିଦ୍ୟାରେ ଯାହାଙ୍କର ଚିତ୍ତ ଜରଜର
ଶାସ୍ତ୍ରାଦି ପଠନେ କେଉଁ ଲାଭ ତାହାଙ୍କର ?
ଚିତ୍ତେ ସ୍ୱଭାବ ହେତୁ ଯଶର ବାସନା
ଅହଂକାର ଦାମ୍ଭିକତା ପାଣ୍ଡିତ୍ୟ ଗାରିମା ।
ପ୍ରତି ପଦେ ପଦେ ଏହା ଅନର୍ଥ ଘଟାଇ
ନିବିଡ଼ ତମିସ୍ରେ ଜ୍ଞାନ ଆଚ୍ଛନ୍ନ କରଇ ।
ଯେ ପ୍ରଭୁଙ୍କୁ ସର୍ବେଶ୍ୱର ମନେ ମନେ ଗୁଣି
ନିରତେ ପୂଜନ୍ତି ଶାସ୍ତ୍ରୀ ତାଙ୍କ ପାଦ ବେନି ।
ବିଦ୍ୟା-ଅଭିମାନେ ଆଜ ହୋଇଣ ଉନ୍ମତ୍ତ
ଅବହେଳା କଲେ ତାଙ୍କ ଆଦେଶ ବହୁତ ।
ମଦେ ଉନ୍ମତ୍ତ ଦେଖି ଶାସ୍ତ୍ରୀଙ୍କୁ ଏପରି
ଆସନ ତେଜି ଉଠିଲେ ପ୍ରଭୁ ନରହରି ।
ସନ୍ନିକଟେ ଆସି ତାଙ୍କ ଓଷ୍ଠକୁ ଧରିଣ
କହିଲେ ତାହାଙ୍କୁ ଶୁଣ ଶାସ୍ତ୍ରୀ ନାରାୟଣ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ଯେବେ ହୋଇଲା ସମର
ପାଣ୍ଡବ ସାରଥି ଥିଲେ ପ୍ରଭୁ ଚକ୍ରଧର ।
ଯାଙ୍କ ଚକ୍ରେ ଚରାଚର ଏ ବିଶ୍ୱ ଜଗତ
ଚକ୍ର ପ୍ରାୟ ଘୂରୁଅଛି ପ୍ରତ୍ୟେକ ମୁହୂର୍ତ୍ତ ।
ଉପସ୍ଥିତ ଥାଇ ସୁଦ୍ଧା ସମର କ୍ଷେତ୍ରରେ
ନ କହିଲେ କିଛି ସେହୁ ଶ୍ରୀକୃଷ୍ଣ ସାରଥିରେ ।'
ଶ୍ରୀକୃଷ୍ଣ ଜାଣନ୍ତି ଶ୍ରୀକୃଷ୍ଣଦେବ ମହାତ୍ମା
ଅର୍ଜ୍ଜୁନେ ବୋଇଲେ ତେଣୁ ଯେତେ ହିତବାଣୀ ।
ହୁତାଶନ ନିର୍ବାପିତ ହୁଏ ଯେସନେ ଜଳେ
ଶାସ୍ତ୍ରୀ ମହୋଦୟ ତେସନ୍ତେ କ୍ଷଣେ ଶାନ୍ତ ହେଲେ ।
ପାଣ୍ଡିତ୍ୟାଭିମାନ ଯାହା ଥିଲାକ ପ୍ରବଳ
ଶ୍ରୀକର ସ୍ପର୍ଶେ ତାହା କ୍ଷଣକେ ଶୀତଳ ।
ନିଷ୍କୃତି ପାଇଣ ଏବେ ପାଠକ ବ୍ରାହ୍ମଣ
ଶୀଘ୍ର ଶୀଘ୍ର ଶେଷ କଲେ ପୁରାଣ ପଠନ ।
ନାମ-କୀର୍ତ୍ତନାରମ୍ଭ ହେଲା ଅତଃପର
ନୃତ୍ୟଗୀତେ ମତ୍ତ ଯେତେ ବୈଷ୍ଣବ ନିକର ।
ଖୋଳ କରତାଳ ଆଉ ଶିଙ୍ଗାର ନିନାଦ
ଶ୍ରବଣେ ପ୍ରଭୁଙ୍କ ଚିତ୍ତେ ଅପାର ଆନନ୍ଦ ।
କୀର୍ତ୍ତନ ଶ୍ରବଣେ ଚିତ୍ତେ ମହାପ୍ରେମ ଜାତ
ମଧୁକଣ୍ଠେ ଆରମ୍ଭିଲେ ଆପଣେ ସଙ୍ଗୀତ ।
ମହାଶକ୍ତିଧର ବାୟୁ ପ୍ରବାହେ ଯେପରି
ସବେଗେ ଦୋଳଇ ତରୁଲତା ଆଦି କରି ।

ସେହିପରି ପ୍ରଭୁଙ୍କର ଶକ୍ତି ସଞ୍ଚାଳନେ
କୀର୍ତ୍ତନେ ଉନ୍ମତ୍ତ ହେଲେ ସରବେ ତକ୍ଷଣେ ।
ହରିବୋଲ ଦେଇ ସର୍ବେ ନୃତ୍ୟ ଆରମ୍ଭିଲେ
ନବଦ୍ୱୀପ ଦୁଇ ବାହୁ ଟେକିଣ ନାଚିଲେ ।
ଗାୟକ ନାଚିଲେ ଗୀତ ଗାଇ ଉଚ୍ଚସ୍ୱରେ
ଝାଞ୍ଜ ମୃଦଙ୍ଗ ସହ ଆଉ ବାଦ୍ୟକାରେ ।
ପୋଥି ଶୁଣିବାକୁ ଆସିଥିଲେ ଲୋକ ଯେତେ
ପ୍ରେମେ ଉନମତ୍ତ ହୋଇ ନାଚିଲେ ସମସ୍ତେ ।
କେବଳ ଦଣ୍ଡାୟମାନ ପାଠକ ବ୍ରାହ୍ମଣ
ତାର ମଧ୍ୟ ବୁଦ୍ଧି ଭ୍ରମ ଏ ଦୃଶ୍ୟ ଦେଖିଣ ।
ପ୍ରତିଜ୍ଞା ତାଙ୍କର ଯାହା ଥିଲା ମନେ ମନେ—
ପ୍ରାଣାନ୍ତେ ନାଚିବେ ନାହିଁ କେବେହେଁ କୀର୍ତ୍ତନେ ।
ନାଚିବାକୁ ଚାହେଁ ଏବେ ପ୍ରବଳ ବାସନା
ନ ବୁଝନ୍ତି ହେତୁ ତାର ବୃଦ୍ଧ ମହାମନା ।
ଯେତେ ଚେଷ୍ଟା କଲେ ବେଗ ସମ୍ବରଣ ପାଇଁ
ଅଧିକ ପ୍ରବଳେ ବେଗ ଚାହେଁ ଉପୁଜାଇ ।
ଯାହାଙ୍କ ବେଗରେ ହୁଏ ବେଗ ଏ ପ୍ରକାର
ସେ ବେଗ ଶ୍ରୀପ୍ରଭୁଙ୍କର ମହା ବଳୀଆର ।
କୋଟି ବ୍ରହ୍ମା କୋଟି ବିଷ୍ଣୁ କୋଟି ପଞ୍ଚାନନ
କୋଟି କୋଟି ଦେବଦେବୀ ଯାଙ୍କଠୁଁ ଉତ୍ପନ୍ନ ।
କୋଟି କୋଟି ଶଶଧର ତାରକା ଭାସ୍କର
ଯାହାଙ୍କ ଇଙ୍ଗିତେ କରେ ଆଲୋକ ବିସ୍ତାର ।
କୋଟି କୋଟି ମୁନିଋଷି ଯତିଗଣ ଆନ
ଯାହାଙ୍କ କୃପାରୁ ମହା ଶକତି ସମ୍ପନ୍ନ ।
ଛଡା ଗୁରୁ ବୃଦ୍ଧ ବିପ୍ର ତାଙ୍କ ତୁଳନାରେ
ତାହାର କି ଶକ୍ତି ସେହି ବେଗ ରୋଧିପାରେ ?
ଅତଃପର ଯା ଘଟିଲା କର ଅବଧାନ
କ୍ଷଣମଧ୍ୟେ ଭାବାବିଷ୍ଟ ପ୍ରଭୁ ଭଗବାନ ।
ପ୍ରଫୁଲ୍ଲ ମୁଖାରବିନ୍ଦେ ଆନନ୍ଦ ଅପାର
ମୁହୁର୍ମୁହୁ ଭାବୋଚ୍ଛ୍ୱାସ ପ୍ରକାଶ ତହିଁର ।
ତା ପ୍ରଭାବେ ମଧ୍ୟେ ମଧ୍ୟେ ଶ୍ରୀଅଙ୍ଗ କମ୍ପନ
କେବେ ବା ପୁଲକ କେବେ ଅଶ୍ରୁ ବିସର୍ଜ୍ଜନ ।
ଅବିରାମ ସ୍ନେହଧାରା ବହି କେତେବେଳେ
ଧରାତଳ ସିକ୍ତ କଲା ପଦାମ୍ବୁଜ ତଳେ ।
ଗୌରଭକ୍ତ ନବଦ୍ୱୀପ ଗୋସ୍ୱାମୀ ବ୍ରାହ୍ମଣ
ଶ୍ରୀପ୍ରଭୁଙ୍କ ଭାବାବିଷ୍ଟ ଦେଖିଣ ଏସନ,
କମଳା ସେବିତ ପାଦ ଧଇଲେ ତାଙ୍କର
ବେନି ନେତ୍ରୁ ବହିଗଲା ଆନନ୍ଦାଶ୍ରୁ ଧାର ।
ଜ୍ଞାନ-ପନ୍ଥୀ ପାଠକ ଏ ଦୃଶ୍ୟ ନିରେଖିଣ
ପ୍ରାଣ ମନେ ବିଗଳିତ ହେଲେ ତତକ୍ଷଣ ।
ଜ୍ଞାନର କଠିନ ଭାବ ଚଳିଁ ହୋଇ ଦୂର
ଭାବ ଗଦଗଦ କଣ୍ଠେ କହିଲେ ପ୍ରଚୁର ।
"ଦୟାମୟ ! କର ଦୟା ଏ ଅଧମ ପ୍ରତି
ଏହା କହି କରଯୋଡ଼ି ବସିଲେ ଯେମତି ।
ଭାବାବେଶେ ଧାଇଁ ଆସି କରୁଣା ନିଧାନ
ବକ୍ଷରେ ସ୍ଥାପିଲେ ତାଙ୍କ ଦକ୍ଷିଣ ଚରଣ ।
ଯେଉଁ ଅତୁଳ ସମ୍ପଦ ଚରଣେ ନିହିତ
ତା ସ୍ପର୍ଶରେ ବିପ୍ରଙ୍କର ତମୋ ଦୂରୀଭୂତ ।
ହୃଦାକାଶେ ଉଦିଲାକ ବିମଳ ଚୈତନ୍ୟ
ଭାବେ ବୁଡ଼ି ଭକ୍ତସହ କଲେ ସ୍ତୁତି ଗାନ ।
ମହାବଳେ ବଳୀୟାନ ହୋଇଣ ଗୋସାଇଁ
ସଙ୍କୀର୍ତ୍ତନେ ନୃତ୍ୟ କଲେ ଉନମତ୍ତ ହୋଇ ।
ରଙ୍ଗ ମଦେ ମତ୍ତହସ୍ତୀ ଯଥା ପଦ୍ମବନେ
ଅପାର ଆନନ୍ଦ ଲଭେ ଅଙ୍ଗ ସଞ୍ଚାଳନେ ।
ପ୍ରଭୁ ସହ ସଙ୍କୀର୍ତ୍ତନେ ତଥା ବିପ୍ରଙ୍କର
ହୃଦମଧ୍ୟେ ଉଛୁଳିଲା ସୁଖ ପାରାବାର ।
ମନେ ହେଲା ସଦା ଯେହ୍ନେ ହରି ରସେ ବୁଡ଼ି
ଅନ୍ୟତ୍ର ନ ଯିବେ ଆଉ ପ୍ରଭୁଦେବେ ଛାଡ଼ି ।
ପାରାୟଣ କର୍ମ ଅଦ୍ୟାବଧି ଅସମ୍ପନ୍ନ
ଏହା ଜାଣି ଦେବ କଲେ ଶକ୍ତି ସମ୍ବରଣ ।
ତହିଁ ସଙ୍ଗେ ସଙ୍ଗେ ସର୍ବେ ହୋଇଲେ ନିରସ୍ତ
ଅକଥ୍ୟ ଦିବ୍ୟ ଆନନ୍ଦେ ଚିତ୍ତ ପରିପ୍ଳୁତ ।
କ୍ରମଶଃ ମହିମା କଥା ସ୍ୱଳ୍ପରେ ବିସ୍ତାର
ଶୁଣ ରାମକୃଷ୍ଣ ଲୀଳା ଭକ୍ତ ସହକାର ।
ମନ୍ଦିର ଉତ୍ତର କୋଣେ ଅସ୍ତ୍ର ଶାସ୍ତ୍ରାଗାର
ଗୋଳା ଗୁଳି ବାରୁଦାଦି ରହିଛି ଯେଠାର ।
ଯୁଦ୍ଧାଦି ସମସ୍ତେ ତାହା ହୁଏ ବ୍ୟବହୃତ
ଜଗିଥାନ୍ତି ତେଣୁ ଶିଖ ସୈନ୍ୟ ଶତ ଶତ ।
ଧର୍ମ୍ମରେ ନାନକପନ୍ଥୀ ଅଟନ୍ତି ଏମାନେ
ନିଜ ଧର୍ମ୍ମ ପ୍ରତି ଅତି ଟାଣ ଅନୁକ୍ଷଣେ ।
ଯେଉଁଠି ସେ ସାଧୁ ସନ୍ଥ ଦର୍ଶନ କରନ୍ତି
ଭକ୍ତି ସହିତେ ବିଶେଷ ସମ୍ମାନ ଦେଖାନ୍ତି ।
ଶ୍ରୀଦେବ ଅଟନ୍ତି ଅତି ଭକ୍ତିପରାୟଣ
ନାନାମତେ କରିଛନ୍ତି ସାଧନ ଭଜନ ।

ତ୍ୟାଗୀ ଯୋଗୀ ଜ୍ଞାନୀ ଭକ୍ତ ସାଧୁ ତାଙ୍କ କୁଳେ
ଦେଖା ନାହିଁ କେଉଣସି ପୁରେ ଧରାତଳେ ।
ଅଗଣନ ଶିଖ ସୈନ୍ୟ ଆସିଣ ଦର୍ଶନେ
ସମାଦରେ ଘେନଯାନ୍ତି ତେଣୁ ମେଗେଜିନେ । *
ଶ୍ରୀମୁଖୁଁ ଶୁଣିଣ ବହୁ ହିତ ଉପଦେଶ
ଭୁଞ୍ଜନ୍ତି ଆପଣା ଚିତ୍ତେ ଅପାର ସନ୍ତୋଷ ।
ପ୍ରଭୁପାଦେ ତେଣୁ ତାଙ୍କ ବିଶେଷ ଭକତି
ଗୁରୁ ନିର୍ବିଶେଷେ ସଦା ସମ୍ମାନ ଦେଖାନ୍ତି ।
ନାରଣ ଶାସ୍ତ୍ରୀଙ୍କୁ ଦିନେ ଘେନି ଭବନାଥ
ସ୍ୱଇଚ୍ଛାରେ ମେଗେଜିନେ ହେଲେ ଉପନୀତ ।
ଦେବଙ୍କୁ ସହସା ତହିଁ ଦର୍ଶନ କରିଣ
ଉଲ୍ଲାସେ ଲୋଟିଲେ ପଦପ୍ରାନ୍ତେ ଶିଖସୈନ୍ୟ ।
ବିହିତ ସମ୍ମାନ ସହ ଆସନ ପ୍ରଦାନ
ସମାଦରେ ବସାଇଲେ ତାଙ୍କୁ ତହିଁ ଘେନି ।
ପ୍ରଭୁ-ଆଗମନ ବାର୍ତ୍ତା ଯେମନ୍ତ ପ୍ରଚାର
ପଡ଼ିଉଠି ଧାଇଁଲେକ ସନ୍ନ୍ୟାସୀ ନିକର ।
ସରବେ ବସିଣ ତାଙ୍କୁ ଚତୁର୍ଦ୍ଦିଗେ ଘେରି
ତତ୍ତ୍ୱକଥା ପଚାରିଲେ ଯା ମନେ ଯେପରି ।
ଧୀରେ ଧୀରେ ଦେବରାୟ ଦେଲେକ ଉତ୍ତର
ତା ଶୁଣି ସଭିଙ୍କ ଚିତ୍ତେ ଆନନ୍ଦ ଅପାର ।
ଏ ସମୟେ ପାଶେ ଥାଇ ଶାସ୍ତ୍ରୀ ନାରାୟଣ
ଜ୍ଞାନତତ୍ତ୍ୱ ଉପଦେଶ କଲେକ ବଖାଣ ।
ତା ଶ୍ରବଣେ ସୈନ୍ୟବୃନ୍ଦ ହୋଇ ଉତ୍ତେଜିତ
ମାରିବା ପାଇଁ ହୁଙ୍କାରି ସମୀପେ ଆଗତ ।
ଯସାସ୍ତ ପ୍ରାଣୀଙ୍କ ମୁଖୁ ତତ୍ତ୍ୱ ଉପଦେଶ
ଧର୍ମ୍ମର ଅବମାନନା ତାଙ୍କର ବିଶ୍ୱାସ ।
ତାହାଙ୍କୁ ବୋଇଲେ ସର୍ବେ ତୁମ୍ଭେ ଅଟ ଶୁଦ୍ର
ଜ୍ଞାନତତ୍ତ୍ୱ ଉପଦେଶେ ଅଧିକାର ନାହିଁ ।
ଶାସ୍ତ୍ରାବମାନନା ତୁମ୍ଭେ କର କି କାରଣ
ଛେଦିବୁ ତୁମ୍ଭର ଶିର ଆମ୍ଭେ ଏହିକ୍ଷଣ ।
ଶିଖଙ୍କୁ କ୍ରୋଧାନ୍ଧ ଦେଖି ପ୍ରଭୁ ନରହରି
ମିଷ୍ଟବାକ୍ୟେ ତୋଷିଲେ ଯେ ମାନସ ତାଙ୍କରି ।
ପ୍ରଭୁପାଦେ ଶିଖଙ୍କର ଯେଉଁ ଦୃଢ଼ ଭକ୍ତି
କଣିକାଏ ପାଇଲେକ ଭବ ତରିଯାନ୍ତି ।
ଶ୍ରୀରାମକୃଷ୍ଣ ଚରିତ ଅମୃତ ଆଖ୍ୟାନ
ଆବର ଘଟଣାଟିଏ କର ଅବଧାନ ।
ସମରସଜ୍ଜାରେ ଦିନେ ସୁସଜ୍ଜିତ ହୋଇ
ବାହାରିଲେ ସୈନ୍ୟଗଣ ଦିଲ୍ଲୀ ଯିବା ପାଇଁ ।
ତାଙ୍କ ସଙ୍ଗେ ସୈନ୍ୟାଧ୍ୟକ୍ଷ ଇଂରାଜ କାପ୍ତାନ
ଅଶ୍ୱେ ଚଢ଼ି ଅଗ୍ରେ ଅଗ୍ରେ କରନ୍ତି ଗମନ ।
ତାଙ୍କର ପଶ୍ଚାତେ ଥାଇ ସମସ୍ତ ସେନାନୀ
ଚାଲୁଛନ୍ତି ଧାଡ଼ି ଧାଡ଼ି ଅତି ଦ୍ରୁତଗାମୀ ।
ଏ ସମୟେ ଶ୍ରୀଦେବଙ୍କୁ ବାଟରେ ଭେଟିଣ
ରୁଣ୍ଡ ହେଲେ ଏକମେଳେ ସରବେ ତକ୍ଷଣ ।
ବନ୍ଧୁକାଦି ଅସ୍ତ୍ରମାନ ତଳେ ଥୋଇଦେଇ
ଦଣ୍ଡବତ ପ୍ରଣମିଲେ ଦଳ ଦଳ ହୋଇ ।
ସନ୍ତୋଷ ହୋଇଣ ତହିଁ ପ୍ରଭୁ ଭଗବାନ
ଆଶୀର୍ବାଦ କଲେ ତାଙ୍କୁ ହସ୍ତ ଉତ୍ତୋଳିଣ ।
ଏପରି କରମ ସାମରିକ ନିୟମରେ
ବିଧି ବହିର୍ଭୂତ ଅଟେ ସର୍ବତୋଭାବରେ ।
ସୈନ୍ୟାଧ୍ୟକ୍ଷ ଆଜ୍ଞା ବିନୁ ଅସ୍ତ୍ରଶସ୍ତ୍ର ତ୍ୟାଗେ
ଅପରାଧୀ ତେଣୁ ସର୍ବେ ରଣନୀତି ଭଙ୍ଗେ ।
ବ୍ୟାପାର ଦେଖି ଅଧ୍ୟକ୍ଷ ଅତୀବ ଆଶ୍ଚର୍ଯ୍ୟ
ପୁଚ୍ଛିଲେ କପାଇଁ କଲ ଏ ଗର୍ହିତ କାର୍ଯ୍ୟ ।
ଉତ୍ତରେ କହିଲେ ଧୀରେ ତାଙ୍କୁ ସୈନ୍ୟଗଣେ
ଆମ୍ଭର ଏ ଧର୍ମ୍ମନୀତି ଶ୍ରୀଗୁରୁ-ଦର୍ଶନେ ।
ଯେତେ କାର୍ଯ୍ୟ ଥାଉ ତାହା ସବୁ ଫିଙ୍ଗି ଦେଇ
ଗୁରୁଙ୍କୁ ପ୍ରଣାମ ଅଗ୍ରେ ଦଣ୍ଡବତ ହୋଇ ।
ଉତ୍ତର ଶ୍ରବଣ କରି କାପ୍ତାନ ସନ୍ତୋଷ
କ୍ଷଣମଧ୍ୟେ ଦୂର ହେଲା ତାଙ୍କ ଚିତ୍ତ ରୋଷ ।
ପ୍ରଭୁଙ୍କ ମହିମା ଅଟେ ଅନନ୍ତ ଅପାର
ଧରାତଳେ କାହିଁ ଥାଉ ତାର ପଟାନ୍ତର ।
ରାମକୃଷ୍ଣ-ଲୀଳାମୃତ ଅମିୟ ଲହରୀ
ଗାଅ ମନ ଭଜ ମନ ଦିବା ବିଭାବରୀ ।
ନ ରହିବ ଆଉ ଯମ ନିର୍ଯ୍ୟାତନ ଭୟ
ହୃଦକଞ୍ଜେ ବିରାଜିବେ ପ୍ରଭୁ ଦୟାମୟ ।

* ମେଗେଜିନେ—ଅସ୍ତ୍ର, ଶସ୍ତ୍ର ଗୋଲାଗୁଳି ଇତ୍ୟାଦି ରଖିବାର ଘର ।

## ପଞ୍ଚମ ଅଧ୍ୟାୟ
## ଶମ୍ଭୁ ମଲ୍ଲିକଙ୍କ ସହିତ ସମ୍ମିଳନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ପତି
ପତିତପାବନ ହରି ଅଗତିର ଗତି ।
ଜ୍ୟୋତିର୍ମୟ କାନ୍ତିଯୁକ୍ତ ସୁଧାଂଶୁ କିରଣ
ସର୍ବସ୍ଥାନେ ସମଭାବେ ହୁଅଇ ପତନ ।
ସଲିଳେ ପଡ଼ିଲେ ତାହା ଉଜ୍ଜ୍ୱଳ ଯେମନ୍ତ
ମୃତ୍ତିକାରେ ନିପତିଲେ ନ ହୁଏ ତେମନ୍ତ ।
ଯେ ବସ୍ତୁ ଅଟଇ ସ୍ୱଚ୍ଛ ଯେଉଁ ପରିମାଣେ
ଶଶାଙ୍କ କିରଣ ତହିଁ ଶୋଭେ ତେତେଗୁଣେ ।
ଭକତ ହୃଦୟ ଅତି ସ୍ୱଚ୍ଛ ନିରମଳ
କପଟତା ଶୂନ୍ୟ ଶୁଦ୍ଧ ବିମଳ ସରଳ ।
ବିଭୁତତ୍ତ୍ୱ-ରଶ୍ମି ଜାଲ ପଡ଼ିଲେ ସେଥିରେ
ମନୋମୁଗ୍ଧକର ଶୋଭା ଚୌଦିଗେ ବିସ୍ତାରେ ।
ବିଭୁପାଦ-ପଦ୍ମେ ଭକ୍ତ ଯେ ଯଥା ଲଭଇ
ତାଙ୍କର ମହିମା ଗୁଣ ତଥା ପ୍ରଚାରଇ ।
ସର୍ବାନ୍ତଃକରଣେ ତାହା ଗାଇଲେ ଶୁଣିଲେ
ଅପାର ସଂସାର ସିନ୍ଧୁ ଲଙ୍ଘି ହୁଏ ହେଲେ ।
ବିଭିନ୍ନ ସ୍ୱଭାବର ଭକ୍ତ କ୍ରମେ ଆଗମିଣ
ଗୋପନେ କେ କଲା ପାଦୁଁ ମକରନ୍ଦ ପାନ ।
କିଏ ବା ଆସ୍ୱାଦ ତାର ଲଭିଣ ଆପଣେ
ପ୍ରଚାରିଲା ତା ମହିମା ଜନ ସନ୍ନିଧାନେ ।
ମଥୁରାଦି ଭକ୍ତ ଯେହୁ ପ୍ରଥମେ ଭେଟିଲେ
ପ୍ରଥମ ଶ୍ରେଣୀର ଭକ୍ତ ସେମାନେ ସକଳେ ।
ଦ୍ୱିତୀୟ ଶ୍ରେଣୀର ଭକ୍ତ ଏବେ ସମାଗତ
ବିଶ୍ୱଗନ୍ଧା ସୁସୌରଭ ପଦ୍ମ ସନ୍ନିହିତ ।
ମହାଭାଗ୍ୟବାନ ଭକ୍ତ ଶ୍ରୀଶମ୍ଭୁ ମଲ୍ଲିକ
ସୁଧୀ-ଶିରୋମଣି ଜାତି ସୁବର୍ଣ୍ଣ ବଣିକ ।
ଇଂରାଜୀ ଭାଷାରେ ଅଭିଜ୍ଞତା ବିଚକ୍ଷଣ
ଖ୍ରୀଷ୍ଟିୟାନ ଧର୍ମ ପ୍ରତି ସମାକୃଷ୍ଟ ମନ ।
କଲିକତା ସହରରେ ତାଙ୍କର ବସତି
ସାହେବଙ୍କ ସଙ୍ଗେ କର୍ମ, ସାହେବୀ ପ୍ରକୃତି ।
ଦୟାରେ ତାଙ୍କର ଚିତ୍ତ ସଦା ବିଗଳିତ
ସୀମା କରି ନ ହୁଅଇ ଦାନ ଯେତେ ନିତ୍ୟ ।

ଦକ୍ଷିଣେଶ୍ୱରରେ କାଳୀ ମନ୍ଦିର ପାଶର
ସୁରମ୍ୟ ଉଦ୍ୟାନ ଏକ ଥିଲା କି ତାଙ୍କର ।
ବହୁ ଧନ ବ୍ୟୟ କରି ଭକ୍ତ ମହାଜନ
ରଚିଥିଲେ ତହିଁ ଏକ ସୁରମ୍ୟ ଭବନ ।
ଅବସର ପାଇଲେକ ମଧ୍ୟେ ମଧ୍ୟେ ଆସି
ଶୁଣନ୍ତି ଶ୍ରୀମୁଖ ବାଣୀ ପଦ ପ୍ରାନ୍ତେ ବସି ।
ଭକ୍ତିଭାବ କ୍ରମେ ଚିତ୍ତ ପ୍ରବଳ ଏମନ୍ତ
ଯାର ପଟାନ୍ତର ଭବେ ବିରଳ ଅତ୍ୟନ୍ତ ।
ଉପନୀତ ହେଲକ୍ଷଣି ତହିଁ ଭଗବାନ
ଗୃହ ମଧ୍ୟେ ଘେନି ଯାନ୍ତେ ଚରଣ ବନ୍ଦିଣ ।
ଶ୍ରୀପାଦୁକା ହସ୍ତେ ପୋଛି ଭକ୍ତ ସହକାରେ
ବିହିତ ଆସନ ଦେଇ ବସାନ୍ତି ସାଦରେ ।
ତଦନ୍ତେ ଚରଣ ପ୍ରାନ୍ତେ ଆପଣେ ବସିଣ
ଅନୁରାଗେ ତତ୍ତ୍ୱକଥା କରନ୍ତି ଶ୍ରବଣ ।
ହରିଗୁଣ ଗାଇ ପ୍ରଭୁ କରୁଣାସାଗର
ହରିଲେ ତାଙ୍କର ମନପ୍ରାଣ ଏ ପ୍ରକାର ।
ଦିନୁ ଦିନୁ ଭକ୍ତବର କ୍ରମଶଃ ଆକୃଷ୍ଟ
ଦିନେ ନ ଦେଖିଲେ ପ୍ରାଣେ ଅତିରେକ କଷ୍ଟ ।
ଦେବରାୟ ତେଣୁ ନିତ୍ୟ ଉଦ୍ୟାନକୁ ଯାଇ
ପୂରାଇଲେ ଭକ୍ତବାଞ୍ଛା ଦରଶନ ଦେଇ ।
ଦିନକରେ ଦେବରାଜ ଅସୁସ୍ଥତା ବଶେ
ଗମନେ ଅକ୍ଷମ ଭକ୍ତ-ଶମ୍ଭୁଙ୍କ ଆବାସେ ।
କି କାରଣେ ନ ଆସିଲେ କରୁଣାନିଧାନ
ହେତୁ ଜାଣିବାକୁ ଶମ୍ଭୁ ଧାଇଁଲେ ଆପଣ ।
ଭକ୍ତପ୍ରିୟ ଅଟନ୍ତି ଯେ ପ୍ରଭୁ ଗୁଣନିଧି
ଭକ୍ତଙ୍କୁ ଦେଖିବା ମାତ୍ରେ ଉପଶମ ବ୍ୟାଧି ।
ତତ୍କ୍ଷଣେ ଶଯ୍ୟାରୁ ଉଠି ପ୍ରଭୁ ନରହରି
ଉଦ୍ୟାନକୁ ବିଜେ କଲେ ସଙ୍ଗେ ତାଙ୍କୁ ଧରି ।
ଅସୁସ୍ଥତା ଜାଣି ଶମ୍ଭୁ ବେଦାନା ଆଣିଣ
ମୁଖାସ୍ୱାଦ ପାଇଁ ଦେଲେ ତାହା ଛଡ଼ାଇଣ ।
କିଞ୍ଚିତ ଭୁଞ୍ଜିଣ ତହୁଁ ପ୍ରଭୁ ପରମେଶ
ପାଞ୍ଚ ଗୋଟିକେ ଥୋଇଲେ ଅବଶିଷ୍ଟ ଅଂଶ ।
ଅତଃପର ମଗ୍ନ ଦୁହେଁ ଈଶ୍ୱର ପ୍ରସଙ୍ଗେ
ଶ୍ରୀଦେବ ବୋଲନ୍ତି, ଶମ୍ଭୁ ଶୁଣେ ଅନୁରାଗେ ।

କିୟତ୍କାଳ ପରେ ହସି ପ୍ରଭୁ ଦୟାମୟ
ଶମ୍ଭୁଙ୍କୁ କହିଲେ ଆଜ ଘେନୁଛୁ ବିଦାୟ ।
ଅତ୍ୟନ୍ତ ଅସୁସ୍ଥ ଅଟେ ଶରୀର ମୋହର
ପୁନଶ୍ଚ ମିଳନ ହେବ କାଲି ପ୍ରଭାତର ।
ବିନୀତ ସ୍ୱରରେ ଶମ୍ଭୁ କଲେକ ପ୍ରାର୍ଥନା
"ଘେନିଯାନ୍ତୁ ତେବେ ଏହି କେତୋଟି ବେଦାନା ।
ଆଣିଥିଲି ଏ ସମସ୍ତ ଆପଣଙ୍କ ପାଇଁ
କାହାକୁ ବା ଦେବି ଆଉ ପୁଣି ଏକୁ ନେଇ ।"
ଭକତବତ୍ସଳ ଭକ୍ତ ମନୋରଥ ଜାଣି
ଦୁଇହସ୍ତେ ଦୁଇଗୋଟି ବେଦାନାକୁ ଘେନି,
ଫାଟକାଭିମୁଖେ କଲେ ମନ୍ଥରେ ଗମନ
ତାଙ୍କର ପଶ୍ଚାତେ ଶମ୍ଭୁ ଭକତ ପ୍ରଧାନ ।
ଯେ ଉଦ୍ୟାନେ ଆତଯାତ ନିତି ଜଗନ୍ନାଥ
ଭଲରୂପେ ଜଣା ତାଙ୍କୁ ଯାତାୟାତ ପଥ ।
ସେହି ଦେବବରେ ଆଜ ପଥଭ୍ରଷ୍ଟ ହୋଇ
ଏଣେତେଣେ ଯାଉଛନ୍ତି ଫାଟକ ନ ପାଇ ।
ସଦ୍ୟ ଘୁମରୁ ଉଠିଣ ବାଳକେ ଯେମନ୍ତ
ଗୃହ ନ ପାରିଣ ପାଦ ପକେ ଇତସ୍ତତଃ ।
ତାଙ୍କର ଅବସ୍ଥା ଅବିକଳ ସେହିପରି
କାରଣ ନ ବୁଝି ଶମ୍ଭୁ ଚିନ୍ତାକୁଳ ଭାରି ।
ବିପଦାଶଙ୍କାରେ ବାହୁ ଧରି ନିଜ ହସ୍ତେ
ଫେରାଇ ଆଣିବା ପାଇଁ ଉଦ୍ୟତ ଯେମନ୍ତେ ।
ଶ୍ରୀକରୁ ବେଦାନାଯାକ ହେଲା ନିପତିତ
ବାହ୍ୟଜ୍ଞାନପ୍ରାପ୍ତ ଏବେ ଶ୍ରୀଦେବ ଅଚ୍ୟୁତ ।
କୌତୂହଳେ ଶମ୍ଭୁ ତାଙ୍କୁ ପୁଛିଲେ କାରଣ
"କି ହେତୁ ଘଟିଲା ପ୍ରଭୋ ! ଅବସ୍ଥା ଏସନ ।"
ଉତ୍ତରେ କହିଲେ ତାଙ୍କୁ ଦେବ ହସି ହସି
"ଗଣ୍ଠିରି ବାନ୍ଧନ୍ତି ନାହିଁ ବିହଙ୍ଗ, ସନ୍ନ୍ୟାସୀ ।
ସାଧୁ ସନ୍ନ୍ୟାସୀ ହୋଇଣ ବାନ୍ଧିଲେ ଗଣ୍ଠିରି
ପଦେ ପଦେ ଘଟଇ ଯେ ବିପଦ ଏପରି ।
ତ୍ୟାଗୀ ହୋଇକରି କେହି କଲେକ ସଞ୍ଚୟ
ଫଳ ତାର ଏ ପ୍ରକାର ହୁଏ ବିଷମୟ ।
ତ୍ୟାଗୀଜନେ ବିଭୁପାଦେ ରଖି ସଦା ମନ
ସାଧନ ଭଜନ କରି ଯାପିବେ ଜୀବନ ।
ଦେହ ଧରି ପ୍ରାଣୀଙ୍କର ଅଛି ତୃଷ୍ଣା କ୍ଷୁଧା
ସେଥିପାଇଁ ଚିନ୍ତାମଗ୍ନ ନୋହିବେ ସର୍ବଦା ।
ଉଦର ପୂରିବ ଯହିଁ ଭିକ୍ଷା ତହିଁ ଶ୍ରେୟ
ସଞ୍ଚୟସ୍ୱାର୍ଥେ ଯିବେ ନାହିଁ ଅନ୍ୟର ଆଳୟ ।
ସଂସାର ଆସକ୍ତ ତେଜି ଯେ ବୋଲାଏ ତ୍ୟାଗୀ
ସଞ୍ଚୟେ ପୁନଶ୍ଚ ହୁଏ କର୍ମଫଳ ଭୋଗୀ ।"
ସଞ୍ଚୟ ସକାଶେ ଦେଖି ପ୍ରଭୁ ବିଶ୍ୱନାଥ
ଉଦ୍ୟାନେ ଭ୍ରମିଲେ କେତେ ହୁଡ଼ି ଯାଇ ପଥ ।
ହସ୍ତଚ୍ୟୁତ ହେବା ମାତ୍ରେ ସଞ୍ଚିତ ବେଦାନା
ଚୈତନ୍ୟ ଲଭିଲେ ତେବେ ପ୍ରଭୁ ଭଗବାନା ।
କାୟମନୋବାକ୍ୟେ ପ୍ରଭୁ ତ୍ୟାଗର ମୂରତି
ତ୍ୟାଗୀର ସଞ୍ଚୟ ହୁଏ ଅବସ୍ଥା ଏମିତି ।
ଯଥାସାଧ୍ୟ ଚେଷ୍ଟା କରି ଶମ୍ଭୁ ବୁଝିବଲେ
ଯଥାର୍ଥ ମରମ ତାର ବୁଝି ନ ପାରିଲେ ।
ଉତ୍‌ଥାପନ ନ କରିଣ ପ୍ରସଙ୍ଗ ଆଉର
ପ୍ରଭୁଙ୍କୁ ବିଦାୟ ଦେଲେ ଭକତ ପ୍ରବର ।
ନିଃସମ୍ବଳ ଶୂନ୍ୟ ହସ୍ତେ ଆଉ ଧନ୍ଦା ନାହିଁ ।
ନିଜପଦେ ବାହୁଡ଼ିଲେ ଗୃହେ ଭବଗ୍ରାହୀ ।
ଆରେକ ଦିବସ ଦେବ ଉଦର ପୀଡ଼ାରେ
ଅତ୍ୟନ୍ତ କାତର ପଡ଼ି ଆପଣା ଶଯ୍ୟାରେ ।
ଏଥର ବାରତା ଶମ୍ଭୁ ଯେମନ୍ତ ପ୍ରାପତ
ଦ୍ରୁତପଦେ ତାଙ୍କ ପାଶେ ହେଲେ ଉପନୀତ ।
ଘେନିଯାଇ ସଙ୍ଗେ ତାଙ୍କୁ ଆପଣା ଉଦ୍ୟାନେ
ସେବନେ ଅଫିମ ଦେଲେ ସୋରିଷ ପ୍ରମାଣେ ।
ଔଷଧ ସେବନେ ପୀଡ଼ା କିଞ୍ଚିତ ଲାଘବ
ଔଷଧାର୍ଥେ ଆଉ ଦିନ ଗଲେ ପ୍ରଭୁଦେବ ।
ଔଷଧ ଖାଇଣ ଫେରି ଆସିବା ସମୟେ
ଅନୁରୋଧ କଲେ ଶମ୍ଭୁ ପ୍ରଭୁ ଦୟାମୟେ ।
"ସମ୍ପୂର୍ଣ୍ଣ ରୂପରେ ବ୍ୟାଧି ଭଲ ହେବାଯାଏ
ସେବନ୍ତୁ ଅଫିମ ନିତ୍ୟ ଟିକିଏ ଟିକିଏ ।
ସେ ନିମିତ୍ତ ନିତି ନିତି ଗମନାଗମନେ
ଶ୍ରୀଅଙ୍ଗରେ କ୍ଳେଶ ହେବ ହେଜନ୍ତୁ ଆପଣେ ।
ଅତଏବ ପଦ୍ମପାଦେ ମୋର ନିବେଦନ
କିଞ୍ଚିତ ରଖନ୍ତୁ ପାଶେ ଏହି ଅହିଫେନ ।"
ଉତ୍ତରେ କହିଲେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର
"ସଞ୍ଚୟ କରିବା ପାଇଁ ଶକ୍ତି ନାହିଁ ମୋର ।
ଔଷଧ ହେଲେହେଁ ତାହା ଅଟଇ ସମ୍ବଳ
ସଞ୍ଚୟେ ହୁଅଇ ନାଶ ମୋର ବୁଦ୍ଧିବଳ ।
ପ୍ରତିଦିନ ଏଠି ଆସି ଖାଇଯିବି ମୁହିଁ
ଏଥିରେ ମୋହର କିଛି କଷ୍ଟ ହେବ ନାହିଁ ।"

ଅତ୍ୟାଶ୍ଚର୍ଯ୍ୟ ଶୁଣି ଶମ୍ଭୁ ତ୍ୟାଗର କାହାଣୀ
ଶୁଣାନାହିଁ ଏହା କେବେ ଏ ସାରା ମେଦନୀ ।
ଏମନ୍ତ ବିଚାରି ଶମ୍ଭୁ ଚିନ୍ତାରେ ମଗନ
ବାସନା ହୋଇଲା ତାହେ ପରୀକ୍ଷା କାରଣ ।
ପ୍ରଭୁଙ୍କ ଅଜ୍ଞାତେ ସେନେ ଅତି କୌଶଳରେ
ବାନ୍ଧିଲେ ଅଫିମ ସ୍ୱଳ୍ପ ପିନ୍ଧିବା ଲୁଗାରେ ।
ସ୍ୱଗୃହେ ଗମନ କାଳେ ପ୍ରଭୁ ଦେବରାୟେ
ବହିର୍ଦ୍ୱାର ନ ପାଇଲେ ପୂରବ ପରାୟେ ।
ଉଦ୍ୟାନେ ଭ୍ରମିଲେ ଚହୁଦିଗେ ଭବନାଥ
ଦୂରୁଁ ନିରେଖିଣ ଶମ୍ଭୁଙ୍କର ବୁଦ୍ଧି ହତ ।
ଦ୍ରୁତପଦେ ଧାଇଁଯାଇ ତାଙ୍କ ସନ୍ନିଧାନ
ଦୂରେ ଫିଙ୍ଗିଦେଲେ ବସ୍ତ୍ରୁ ଅଫିମ କାଢ଼ିଣ
ଗଣ୍ଡଗୋଳ ଅପସରି ଦୃଷ୍ଟି ପରିଷ୍କାର
ଗମିଲେ ଆପଣା ଗୃହେ କରୁଣାସାଗର ।
ମର୍ତ୍ତ୍ୟରେ ଏପରି ତ୍ୟାଗ ଦେଖାନାହିଁ କାହିଁ
ପଞ୍ଚାନନ ପର୍ଯ୍ୟନ୍ତ ଯେ ପରାଭୂତ ଯହିଁ ।
ନିଶ୍ଚୟ ଏ ନରରୂପୀ ଦେବ ଭଗବାନ
ଶମ୍ଭୁଙ୍କ ଚିତ୍ତରେ ଦୃଢ଼ ବିଶ୍ୱାସ ଏସନ ।
ସହର ମଧ୍ୟରେ ଶମ୍ଭୁ ବିଖ୍ୟାତ ବ୍ୟକତି
ଦାତା ବୋଲି ତାହାଙ୍କର ବିଶେଷ ସୁଖ୍ୟାତି ।
ତାଙ୍କ ବାକ୍ୟେ ବାସିନ୍ଦାଙ୍କ ସହଜେ ବିଶ୍ୱାସ
ଧନୀ ମାନୀ ମୂର୍ଖ କିମ୍ବା ପଣ୍ଡିତ ପୁରୁଷ ।
ଯାହାକୁ ଦେଖନ୍ତି ଯହିଁ ତାହାକୁ କହନ୍ତି
ଦକ୍ଷିଣେଶ୍ୱରରେ ଏକ ପୁରୁଷ ଅଛନ୍ତି ।
ତ୍ୟାଗର ସାକାର ମୂର୍ତ୍ତି ଅଟନ୍ତି ଭୁବନେ
ଧନ ଛୁଇଁ ନ ପାରନ୍ତି ଜ୍ଞାନେ କି ଅଜ୍ଞାନେ ।
କାମଗନ୍ଧ ପରି ଶୂନ୍ୟ ଯୋଗୀଙ୍କ ଅଗ୍ରଣୀ
ଏ ପ୍ରକାର ଦେବ-ନର ତ୍ରିଲୋକେ ନ ଜାଣି ।
ଥରେ ଯାଇ ତାଙ୍କୁ ତହିଁ ଦର୍ଶନ କରିଣ
କର୍ଣ୍ଣଲୋଚନର ଦ୍ୱନ୍ଦ୍ୱ କର ସମାଧାନ ।
ଏସନେ କରିଲେ ଶମ୍ଭୁ ମାହାତ୍ମ୍ୟ ପ୍ରଚାର
ଶ୍ରୀରାମକୃଷ୍ଣ ଚରିତ ଅମୃତ ଭଣ୍ଡାର ।
ନିରନ୍ତେ ଆସିଣ ଶମ୍ଭୁ ପ୍ରଭୁ ସନ୍ନିଧାନେ
ଉଦର ପୂରନ୍ତି ହରି-ରସାମୃତ ପାନେ ।
କଥୋପକଥନ ଛଳେ ସେହୁ ଦିନକରେ
ବିନୀତେ ପ୍ରାର୍ଥନା କଲେ ପ୍ରଭୁଙ୍କ ପୟରେ ।
ଆଶୀର୍ବାଦ କରନ୍ତୁ ହେ ପ୍ରଭୋ ବିଶ୍ୱସାଇଁ !
"ଟଙ୍କାକଉଡ଼ି ଗଚ୍ଛିତ ମୋ ପାଶେ ଯା ଥାଇ ।
ଡାକ୍ତରଖାନା, ଅବା ଔଷଧ-ଆଳୟ,
କୂଅ, ବାମ୍ପୀ, ରାସ୍ତାଘାଟ, କିମ୍ବା ଜଳାଶୟ,
ଏମନ୍ତ ଅଛଇ ଯେତେ ଧର୍ମକର୍ମମାନ
ସେ ସବୁ କାର୍ଯ୍ୟରେ ବ୍ୟୟ ହେଉ ତା ଯେସନ ।"
ଉତ୍ତରେ କହିଲେ ପ୍ରଭୁ ଭକତବତ୍ସଳ
"ଅନାସକ୍ତ ହୋଇ କଲେ ଏ କାର୍ଯ୍ୟ ସକଳ,
ପ୍ରାଣୀର ମହୋପକାର ହୁଅଇ ସାଧନ
ଅନାସକ୍ତ ଭାବେ ଏହା କରିବା କଠିନ ।
ହୃଦେ ଥିବ ସଦାବେଳେ ସୁଦୃଢ଼ ବିଶ୍ୱାସ
ଈଶ୍ୱର ଦର୍ଶନଲାଭ ଜନ୍ମର ଉଦ୍ଦେଶ୍ୟ ।
ଔଷଧାଳୟ ସ୍ଥାପନ ପୋଖରୀ ଖନନ
ଜୀବନେ ଚରମୋଦ୍ଦେଶ୍ୟ ନୁହେଁ କଦାଚନ ।
ମନେକର ଦୟାବନ୍ତ ପରମ-ଈଶ୍ୱର
ଉଭା ହୋଇ ଦିନକରେ ସମ୍ମୁଖେ ତୁମ୍ଭର ।
ଆଦେଶିଲେ ତୁମ୍ଭଙ୍କୁ ସେ ଆହେ ଶମ୍ଭୁନାଥ !
ବର ମାଗ ଯା ଅଟଇ ତବ ମନୋରଥ ।
ତା ହେଲେ କି ତାଙ୍କ ପାଶେ କରିବ ପ୍ରାର୍ଥନା
କରିଦିଅନ୍ତୁ କୂଅ, ବାମ୍ପୀ, ଡାକ୍ତରଖାନା ?
ଅଥବା କହିବ ତାଙ୍କୁ ପ୍ରଭୋ ଭଗବାନ !
ଦୟା ବହନ କରିବେ ଯଦି ବର ଦାନ ।
ତବ ପାଦପଦ୍ମେ ଯେହ୍ନେ ସଦା ଭକ୍ତି ଥାଇ
ଅବାଧ ଦର୍ଶନ ମୁହିଁ ନିରନ୍ତେ ଲଭଇ ।
ଏ ଦୁଇ ବସ୍ତୁ ମଧ୍ୟରେ କେଉଁ ଗୋଟି ସାର
ଆପଣ ମାନସେ ହେଜ ତାହା କର ସ୍ଥିର ।
ଏକମାତ୍ର ନିତ୍ୟ ସତ୍ୟ ପ୍ରଭୁ ଭଗବାନ
ଆବର ପଦାର୍ଥ ସବୁ ଅନିତ୍ୟ ଜାଣ ।
ବିଭୁଙ୍କ ଦର୍ଶନଲାଭ ହୋଇଛୁ ଯାହାର
ପ୍ରାଣୀମଧ୍ୟେ ଶ୍ରେଷ୍ଠ ସେହୁ ଘେନ ବାକ୍ୟ ମୋର ।
ତାଙ୍କ ଇଚ୍ଛାହେଲେ କିସ ଡାକ୍ତରଖାନା
କେତେ ଯେ ହୋଇବ କାହିଁ ନୋହିବ କଳନା ।"
ଶ୍ରୀଦେବ ବୋଲନ୍ତି ଶମ୍ଭୁ ଆସିବା ପୂର୍ବରୁ
ଜଗଦମ୍ବା ଦେଖାଇଲେ ତା ରୂପ ଆଗରୁ ।
ବୋଇଲେ ଏ ଭକ୍ତବର ମଥୁରଙ୍କ ପରେ
ରସଦଦାର ସ୍ୱରୂପ ଭେଟିବେ ପାଶରେ ।
କିଏ ସେ ଅଟନ୍ତି ଏହି ଭକତ ପ୍ରବର
ତାଙ୍କର ଚରଣେ ମୋର କୋଟି ନମସ୍କାର ।

ଯାଙ୍କ ଆଗମନ ପୂର୍ବେ ପ୍ରଭୁ ଭଗବାନ
ଦିବ୍ୟନେତ୍ରେ କଲେ ତାଙ୍କ ସ୍ୱରୂପ ଦର୍ଶନ ।
ରାମକୃଷ୍ଣ-ଲୀଳାମୃତ ଅମିୟ ଲହରୀ
ବୁଡ଼ି ରହ ମନ ! ତହିଁ ଦିବସ ଶର୍ବରୀ ।
ଉଇଁବେ ହୃଦୟାକାଶେ ଦେବ ଭଗବାନ
ସଫଳ ହୋଇବ ତବ ମାନବ ଜୀବନ ।

---

## ଷଷ୍ଠ ଅଧ୍ୟାୟ

## ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନଙ୍କ ସହିତ ପ୍ରଥମ ସାକ୍ଷାତ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦି କାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ପତି
ଅପାର କରୁଣାସିନ୍ଧୁ ଅଗତିର ଗତି ।
ପ୍ରଭୁଙ୍କ ଅଦ୍ଭୁତ ଲୀଳା ବର୍ଣ୍ଣନ ଅତୀତ
ସବିଶେଷେ ଗାଇବାକୁ ଶକ୍ତି ମରହିତ ।
ହୀନ ବୁଦ୍ଧି ଅତି ମୁହିଁ, ଦାସ ବୃତ୍ତି ମୋର,
ଜ୍ଞାନ ଭକ୍ତିଶୂନ୍ୟ ଚିତ୍ତ ଅବିଦ୍ୟାଭଣ୍ଡାର ।
ଏଥିରେ ବିମଳପୂତ ଲୀଳାର ଲହରୀ
ସମ୍ୟକ ରୂପରେ ମୁହିଁ ନ ପାରଇ ଧରି ।
ନିର୍ଭର କରଣ ପ୍ରଭୋ ! ତୁମ୍ଭର କୃପାରେ
ଏ ମୂଢ଼ ମାତିଛି ଏହି ଦୁରୂହ ବ୍ୟାପାରେ ।
ଦୀନବନ୍ଧୁ କୃପାସିନ୍ଧୁ ପ୍ରଭୋ ଭଗବାନ !
ଛଳେ ହେଲେ ଅଧମକୁ କର କୃପାଦାନ ।
ତିଳାର୍ଦ୍ଧ କରୁଣା କଣା ହୋଇଲେ ପ୍ରାପତ
ଗୁରୁ କାର୍ଯ୍ୟ ସମ୍ପାଦନେ ହେବ ଶକ୍ତିମନ୍ତ ।
ତବ କରୁଣାର ପ୍ରଭୋ ନାହିଁ ପଟାନ୍ତର
ପ୍ରାଣୀଙ୍କ ଉଦ୍ଧାର ହେତୁ ନିରତେ ତତ୍ପର ।
କିବା ହିନ୍ଦୁ ମୁସଲମାନ ଆବର ଖ୍ରୀଷ୍ଟାନ
ସବୁଠି ସମାନ ଭାବେ କୃପା ବିତରଣ ।
ପ୍ରାଣୀଙ୍କ ଦୁଃଖରେ ପ୍ରଭୁ ହୋଇଣ ବ୍ୟଥିତ
କୃପାଦାନ ହେତୁ ନାନା ସ୍ଥାନେ ପ୍ରଧାବିତ ।
ବିଷମ ଅଟଇ ଏବେ ଏ କାଳର ଗତି
କାହାର ଆକାଙ୍କ୍ଷା ନାହିଁ ଭାଗବତ ଭକ୍ତି ।
ଧରାର ଦୁର୍ଗତି ଦେଖି ପ୍ରଭୁ ନାରାୟଣ ।
ଦ୍ୱାରେ ଦ୍ୱାରେ ଭ୍ରମି କଲେ କୃପା ବିତରଣ ।
ଅଞ୍ଚଳେ ଅମୂଲ୍ୟ ରତ୍ନ ଧରି ନରହରି
ଅନ୍ୱେଷନ୍ତି ଚଉଦିଗେ କେଉଁଠି ଭିଖାରୀ ।
ସେ ରତ୍ନ କଣିକା ଥରେ ଯେ ହୁଏ ପ୍ରାପତ
ବାରମ୍ବାର ପ୍ରଭୁ ପାଶେ ସ୍ୱତଃ ପ୍ରଧାବିତ ।

ବ୍ରାହ୍ମ ସମାଜେ ପ୍ରାର୍ଥନା ଦେଖିବା ସକାଶ
ଦେବଙ୍କ ହୃଦୟେ ଥରେ ହେଲା ଅଭିଳାଷ ।
ଫିଟନ ଗାଡ଼ି ଆଣିଣ ମଥୁର ମୋହନେ
ଘେନଗଲେ ଆଦି ବ୍ରାହ୍ମ ସମାଜ ଦର୍ଶନେ ।
ସମାଜ ମଧ୍ୟରେ ଦେବରାୟ ପ୍ରବେଶିଣ
ଏକ ପାର୍ଶ୍ୱେ ଅଲକ୍ଷିତେ ଘେନଲେ ଆସନ ।
ଜନୈକ ବିଖ୍ୟାତ ବକ୍ତା ଆସି ସେ ଦିବସ
ସମାଜରେ ଦେଉଥିଲେ ଧର୍ମ୍ମ-ଉପଦେଶ ।
ଶ୍ରୋତୃବର୍ଗ ଶୁଣୁଥିଲେ ନୟନ ମୁଦିଣ
ଲୀନ ହୋଇଅଛି ତହିଁ ଯେସନ୍ତେ ତନ ମନ ।
ସ୍ୱଚ୍ଛରୁ ଅତୀବ ସ୍ୱଚ୍ଛ ଦେବଙ୍କ ମାନସ
ସାରା ସୃଷ୍ଟି ଧନ୍ୟ ଏକ ଦର୍ପଣବିଶେଷ ।
ଯେଉଁଠି ଘଟଇ ଯାହା ଯେମନ୍ତ ଭାବରେ
ଅବିକଳ ପ୍ରତିଭାତ ହୁଅଇ ତହିଁରେ ।
କୌତୂହଳେ ପୃଚ୍ଛିଲେକ ପ୍ରଭୁଙ୍କୁ ମଥୁର
ଉପାସନା ଦେଖୁଛନ୍ତି ଏଠି କି ପ୍ରକାର ।
ହସି ହସି ଉତ୍ତରିଲେ ଜଗତ ଗୋସାଇଁ
ଅଙ୍ଗୁଳି ନିର୍ଦ୍ଦେଶ ଦ୍ୱାରା କେଶବେ ଦେଖାଇ ।
ଯେତେ ଲୋକ ସଭାସ୍ଥଳେ ଛନ୍ତି ସମାସୀନ
ତାଙ୍କ ମଧ୍ୟେ ଏ ଯୁବକ ଅନୁରାଗୀ ଜନ ।
ମାଛ ଖୁମ୍ପୁଥିଲେ ଯଥା ପୋଇଟି ଦୋଳଇ
ବିଭୁପାଦେ ଯୁବାଙ୍କ ମନ ତଥା ଆକର୍ଷଇ ।
ଆବର ଯେତେକ ଭକ୍ତ ବସିଛନ୍ତି ତହିଁ
କାର ମନେ ଧର୍ମ୍ମଭାବ କିଛି ମାତ୍ର ନାହିଁ ।
ନେତ୍ର ମୁଦି ନିବସିଣ ଯେ ଯାହା ଆସନେ
ବିଷୟ ଚିନ୍ତନ୍ତି ସର୍ବେ ସର୍ବାନ୍ତଃକରଣେ ।
ଏମନ୍ତେ ଶ୍ରୀପ୍ରଭୁଦେବ ଉପାସନା ଦେଖି
ଫେରିଲେ ଦକ୍ଷିଣେଶ୍ୱରେ ମଥୁରଙ୍କୁ ଡାକି ।
ଅତଃପର ଯେତେବେଳେ ଜଗତ ଗୋସାଇଁ
ଶୁଦ୍ଧ ସତ୍ତ୍ୱ ପ୍ରାଣୀଙ୍କର ଦର୍ଶନ ନ ପାଇ ।

ଦେବୀଙ୍କୁ ପ୍ରାର୍ଥନା କଲେ ଅତୀବ ବ୍ୟାକୁଳେ
ଜଗନ୍ମାତା ଦେଖାଇଲେ ତାହାଙ୍କୁ ଏ କାଳେ ।
ପ୍ରାର୍ଥନା ମନ୍ଦିରେ ବସି ଶ୍ରୀ କେଶବ ସେନ
ଭକ୍ତଭାବେ ଉପାସନା କରନ୍ତି କେସନ ।
କ ଭାବେ ଆସିଣ ସେହୁ ଦେବରାୟ ପାଶ
ତାଙ୍କଠୁଁ ଘେନିଣ ବହୁ ହିତ ଉପଦେଶ ।
ନବୀନ ଆକାରେ ଗଢ଼ି ସମାଜ ତାଙ୍କର
ଭକ୍ତ ମଧ୍ୟେ ନବଭାବ କରିବେ ପ୍ରଚାର ।
ଏଥି ଅନ୍ତେ ତାଙ୍କ ମନେ ବାସନା ଉଦିତ
କେଶବଙ୍କ ସଙ୍ଗେ ଦେଖା ହୋଇବ କେମନ୍ତ ।
ଶାସ୍ତ୍ରୀ ନାରାୟଣେ ଡାକି କହିଲେ ସତ୍ୱରେ
"କେଶବ କିପରି ଲୋକ ଦେଖି ଆସ ଥରେ ।"
ନାରାୟଣ ବାହୁଡ଼ିଣ ଭାଷିଲେ ବିନୀତେ
"ଭକ୍ତ ଭାବେ ସିଦ୍ଧ ସେହୁ ଯା ବୁଝିଲି ଚିତ୍ତେ ।"
ଅତଃପର ଦେବରାୟ ହୃଦୁଙ୍କ ସହିତ
ବିଜେ କଲେ କେଶବଙ୍କ ସାକ୍ଷାତ ନିମିତ୍ତ ।
କଲିକତା ସନ୍ନିକଟେ ବେଲଘର ଗ୍ରାମ
ଯହିଁ ଜୟଗୋପାଳଙ୍କ* ବିଶ୍ରାମ ଆଶ୍ରମ ।
ଶିଷ୍ୟସହ ଭକ୍ତବର ଶ୍ରୀ କେଶବ ସେନ
ସାଧନ ଭଜନେ ତହିଁ ନିଯୁକ୍ତ ଆପଣ ।
ଗାଡ଼ିରେ ବସିଣ ପ୍ରଭୁ କରୁଣାସାଗର
ହୃଦୁଙ୍କ ସହିତେ ପ୍ରବେଶିଲେ ସେ ସ୍ଥାନର ।
ଅତି ତରବରେ ହୃଦୁ ଗାଡ଼ିରୁ ଓହ୍ଲାଇ
ଉଦ୍ୟାନ ଭିତରେ ଗଲେ ଏକମୁହାଁ ହୋଇ ।
ଦେଖିଲେ କେଶବ ତାଙ୍କ ଶିଷ୍ୟଙ୍କ ସହିତ
ବସିଛନ୍ତି ଏକ ପୁଷ୍କରିଣୀ ସନ୍ନିହିତ ।
ଅଗ୍ରସର ହୋଇ ତହିଁ ନିବେଦିଲେ ପାଶେ
"ମାତୁଳ ଆଗତ ତବ ଦର୍ଶନାଭିଳାଷେ ।
ହରିକଥା ହରିଗୁଣ କୀର୍ତ୍ତନ ଶ୍ରବଣେ
ଅତୀବ ଆନନ୍ଦ ଉପୁଜଇ ତାଙ୍କ ମନେ ।
ଈଶ୍ୱର ଭାବରେ ଭୋଳ ଥାନ୍ତି ନିରନ୍ତର
ଭାବ ମହାଭାବ କ୍ଷଣ କ୍ଷଣକେ ତାଙ୍କର ।
ଧର୍ମ ପ୍ରଚାରକ ତୁମ୍ଭେ ଦେଶେ ଦେଶେ ଖ୍ୟାତ
ଦର୍ଶନ କରିବା ପାଇଁ ତେଣୁ ଶ୍ରଦ୍ଧା ଅତି ।
ତବ ମୁଖୁଁ ହରି କଥା ଶ୍ରବଣ ନିମିତ୍ତେ
ଅତ୍ୟନ୍ତ ଆଗ୍ରହ ଜନମିଛି ତାଙ୍କ ଚିତ୍ତେ ।
ଦୟାକରି ଅନୁମତି ଦେଲେ ଅଧମକୁ
ଡାକିଆଣିବ ଯେ ମୁହିଁ ଏ ସ୍ଥାନେ ତାହାଙ୍କୁ ।"
ପ୍ରଫୁଲ୍ଲ ବଦନେ ତହୁଁ ଶ୍ରୀ କେଶବ ସେନ
କହିଲେ "ତ୍ୱରିତେ ତାଙ୍କୁ ଏଠି ଡାକିଆଣ ।"
ହୃଦୟ ସହିତେ ପ୍ରଭୁ ବ୍ରହ୍ମାଣ୍ଡ ଈଶ୍ୱର
ଧୀରେ ଧୀରେ ପ୍ରବେଶିଲେ କେଶବ ପାଶର ।
ଆଡ଼ମ୍ବର ପରିଶୂନ୍ୟ ପ୍ରଭୁ ଜଗତ୍ପତି
ପିନ୍ଧିଛନ୍ତି ଖଣ୍ଡେ ମାତ୍ର ନାଲିପାଡ଼ୀ ଧୋତି ।
କୁଞ୍ଚର ଗୋଟିଏ କାନି ବାମସ୍କନ୍ଧେ ଦେଇ
ଝୁଲୁଥାଏ ପୃଷ୍ଠଦେଶେ ଲମ୍ବମାନ ହୋଇ ।
ପ୍ରଭୁଙ୍କୁ ଏ ବେଶେ ଦେଖି ସଶିଷ୍ୟ କେଶବ
ଭାବିଲେ ତାହାଙ୍କୁ ଅତି ନଗଣ୍ୟ ମାନବ ।
ଦର୍ଶନ ମାତ୍ରକେ ତାଙ୍କୁ ପ୍ରଭୁ ଜଗତ୍ପତି
ପୁଛିଲେ ଗୋଟିଏ ପ୍ରଶ୍ନ ସବିନୟେ ଅତି ।
"ଲୋକମୁଖୁଁ ପରସ୍ପରେ କରୁଛି ଶ୍ରବଣ
ତୁମ୍ଭେମାନେ ଲଭିଅଛ ଈଶ୍ୱର-ଦର୍ଶନ ।
ଦର୍ଶନେ ଚିତ୍ତେ କେବଣ ହୁଏ ଅନୁଭୂତି
ବିଭୁଙ୍କ ସ୍ୱରୂପ ଅବା ଅଟଇ କେମତି ।
ଏ ସବୁ ବିଷୟମାନ ଜାଣିବା ନିମିତ୍ତ
ତବ ସନ୍ନିଧାନେ ମୁହିଁ ହୋଇଛି ଆଗତ ।"
ଉତ୍ତରେ କହିଲେ କିବା ଶ୍ରୀ କେଶବ ସେନ
କୁତ୍ରାପି ମିଳଇ ନାହିଁ ତାର ବିବରଣ ।
କିଛିକ୍ଷଣ ମୌନ ରହି ପ୍ରଭୁ ବିଶ୍ୱସାଇଁ
ଗାଇଲେ ଶ୍ୟାମା-ସଙ୍ଗୀତ ଭାବାବିଷ୍ଟ ହୋଇ ।
(ଗୀତ)—"କେ ଜାନେ ମା କାଲୀ କେମନ
ଷଡ଼ ଦର୍ଶନେ ନା ପାୟ ଦରଶନ ।" ଇତ୍ୟାଦି
ସମାଧିସ୍ଥ ହେଲେ ଦେବ ଗାଉ ଗାଉ ଗୀତ
କେଶବାଦି ମନେ କଲେ ମସ୍ତିଷ୍କ ବିକୃତ ।
ଚୈତନ୍ୟ ଆଣିବା ପାଇଁ ହୃଦୟ ଠାକୁର
ପ୍ରଣବ ଗାଇଲେ କର୍ଣ୍ଣମୂଳେ ବାରମ୍ବାର ।
କର୍ଣ୍ଣରେ ପ୍ରବେଶ ମାତ୍ରେ ସେ ପ୍ରଣବ ଧ୍ୱନି
ଅର୍ଦ୍ଧ ବାହ୍ୟାବସ୍ଥା ପ୍ରାପ୍ତ ହେଲେ ଚିନ୍ତାମଣି ।
ଅପୂର୍ବ ଦିବ୍ୟ ଜ୍ୟୋତିରେ ଶ୍ରୀମୁଖ ଉଜ୍ଜ୍ୱଳ
ସୁମଧୁର ହାସ୍ୟଛଟା ତହିଁରେ କେବଳ ।
ଅତଃପର ସୁଗମ୍ଭୀର ଆଧ୍ୟାତ୍ମିକ କଥା
ଶ୍ରୀମୁଖୁଁ ନିଃସୃତ ହେଲା ପ୍ରସ୍ରବଣ ଯଥା ।

* ଜୟଗୋପାଳ ସେନ-ଉଦ୍ୟାନ-ଭବନ—ବର୍ତ୍ତମାନ ଯାହା ଭାରତାଶ୍ରମ ନାମରେ ପରିଚିତ ।

ତନ୍ମନ ସହକାରେ ସଶିଷ୍ୟ କେଶବ
ଶୁଣିଲେ ସେ କଥାମାନ ହୋଇ ଉଦ୍‌ଗ୍ରୀବ ।
ବିସ୍ତାରିତ ବିବରଣ ମଧ୍ୟ ଯେ ଏହାର
ଅଦ୍ୟାବଧି ଜନ ସମାଜର ଅଗୋଚର ।
ଦୁଇ ଏକ କଥା ମାତ୍ର ଯାହା ଅବଗତ
ସାଧୁଜନେ ଶୁଣ ତାହା ହୋଇ ଏକ ଚିତ୍ତ ।
"ଈଶ୍ୱରଙ୍କ ରୂପ ଅବା ତାଙ୍କର ମହିମା
ମାନବ ବୁଦ୍ଧିରେ କରି ନ ହୁଅଇ ସୀମା ।
ଦିସ୍ଥାବଦ୍ଧ ଯାହା ସେହୁ ଦିଅନ୍ତି ଜଣାଇ
ପ୍ରାଣିଗଣ ଭବେ ତାହା ଅବଗତ ଥାଇ ।
କେବଳ ସାକାର ସେହୁ, କିମ୍ବା ନିରାକାର
ଏସନ ଯେ ଭାବେ, ଭ୍ରମ ଧାରଣା ତାହାର ।
ଏକଦା କେତେକ ଅନ୍ଧ ଏକମେଳ ହୋଇ
ଯାଇଥିଲେ ହସ୍ତୀରୂପ ନିର୍ଦ୍ଧାରଣ ପାଇଁ ।
ପାଦ ଛୁଇଁ କେ ବୋଇଲା ତାହା ସ୍ତମ୍ଭାକାର
ପେଟ ସ୍ପର୍ଶି ଅନ୍ୟ ବୋଲେ ଘୂମ ଯେ ପ୍ରକାର ।
କର୍ଣ୍ଣୋପରେ ପଡ଼ିଲାକ ସ୍ପର୍ଶି ଯାର ହସ୍ତ
ସେ ବୋଇଲା ତାର ରୂପ କୁଲାଟି ଯେମନ୍ତ ।
ଆବର ଯେ ଧରିଥିଲା ତାହାର ଶୁଣ୍ଢକୁ
ସେ ଭାଷିଲା ଖଣ୍ଡିଦେଇ ଏସବୁ ମତକୁ ।
ଖମ୍ବ ଭଳି ନୁହଇତ ତାହା ଗୋଲାକାର
ନିମ୍ନଭାଗ ସରୁ, ମୋଟା ଅଟଇ ଉପର ।
ଈଶ୍ୱରଙ୍କୁ ଭଲରୂପେ ତଥା ନ ଜାଣିଣ
ନାନା ଗଣ୍ଡଗୋଳ ଉତ୍‌ଥାପନ୍ତି ପ୍ରାଣିଗଣ ।
ଆଉ ଏକ ଗଳ୍ପ ମଧ୍ୟ ମନେ ପଡ଼େ ମୋର
ଯହିଁରେ ଏ ବିଷୟଟି ହେବ ପରିଷ୍କାର ।
ଗୋଟିଏ ବୃକ୍ଷରେ ଏକ ସରୀସୃପ ଥିଲା
ତାକୁ ଦେଖିଆସି ଜଣେ ଅନ୍ୟକୁ ବୋଇଲା ।
ଶୌଚେ ଯାଇ ବନେ ମୁହିଁ ଅମୁକ ସ୍ଥାନରେ
ନାଲିରଙ୍ଗ ଜନ୍ତୁଟିଏ ଦେଖିଲି ସେଠାରେ ।
ସେ କହିଲା ତାକୁ ମଧ୍ୟ ଦେଖିଅଛି ମୁହିଁ
ନାଲିରଙ୍ଗ ନୁହେଁ; ସେ ତ ନେଳିଆ ଅଟଇ ।
ଆରେକ ବାହାରି ଖଣ୍ଡିଦେଇ ତାର ମତ
ବୋଲେ ନେଳୀ ନାଲି ନୁହେଁ, ତା ରଙ୍ଗଟି ପୀତ ।
ଆରେକ ଭାଷିଲା ରଙ୍ଗ ଅଟଇ ଶାଗୁଆ
ନେଳୀ ଅବା ନାଲି ନୁହେ କିମ୍ବା ହଳଦିଆ ।
ଏମନ୍ତେ ସେ ଜନ୍ତୁଟିର ରୂପ ସମ୍ବନ୍ଧରେ
ଗଣ୍ଡଗୋଳ ଉପୁଜିଲା ତାହାଙ୍କ ମଧ୍ୟରେ ।
ସେହି ବୃକ୍ଷମୂଳେ ଥିଲା ଯାହାର ବସତି
ମୀମାଂସାର୍ଥେ ଗଲେ ସର୍ବେ ସେହି ଲୋକକତି ।
ସେ କହିଲା ବହୁଦିନୁ ଅଛି ମୁଁ ଏ ସ୍ଥାନେ
ସେହି ଜନ୍ତୁଟିକୁ ମୁହିଁ ଭଲରୂପେ ଜାଣେ ।
ଯାହା ଯେ କହୁଛ ସବୁ ସତ୍ୟ ଯେ ଅଟଇ
ବନ ମଧ୍ୟେ ନାନାରଙ୍ଗ ସେହୁ ଧରୁଥାଇ ।
କେବେ ନାଲି, କେବେ ନେଳୀ, କେବେ ହଳଦିଆ
କେତେବେଳେ ବାଇଗଣୀ, କେବେ ଯେ ଶାଗୁଆ
ଏମନ୍ତେ ସେ ଧରିବାରୁ ନାନାବିଧ ରୂପ
ବହୁରୂପୀ ନାମେ ଖ୍ୟାତ ସେହି ସରୀସୃପ ।
ସେହିପରି ଅଟନ୍ତି ଯେ ପରମ-ଈଶ୍ୱର
ଅନେକ ଅନେକ ରୂପ ଅଛଇ ତାଙ୍କର ।
ସାକାର ଅଟନ୍ତି ସେହୁ ନିରାକାର ପୁଣ
ସାକାର ରୂପଟି ମଧ୍ୟ ଅଟେ ଅଗଣନ ।
ସଗୁଣ ଅଟନ୍ତି ସେହି ବ୍ରହ୍ମାଣ୍ଡର ପତି
ଆବର ନିର୍ଗୁଣ ନିରଞ୍ଜନ ବି ବୋଲନ୍ତି ।"
ଆଧ୍ୟାତ୍ମିକ ତତ୍ତ୍ୱପୂର୍ଣ୍ଣ ବହୁ ଉପଦେଶ
ଏ ପ୍ରକାରେ ପ୍ରଦାନିଲେ ତାଙ୍କୁ ପରମେଶ ।
ଏସନ ସରଳ ଭାବେ ପୁଣି ତା କହିଲେ
କ୍ଷୁଦ୍ର ବାଳକ ପର୍ଯ୍ୟନ୍ତ ବୁଝିବ ତା ହେଲେ ।
ଏ ଭାବେ ଅତି ନିଗୂଢ଼ ତତ୍ତ୍ୱ କଥାମାନ
ପୂର୍ବେ ଶୁଣି ନ ଥିଲେକ କେଭେ ଶ୍ରୋତାଗଣ ।
କଥା ପ୍ରସଙ୍ଗେ ସେହେତୁ ଏମନ୍ତ ବହିଲା
ଲକ୍ଷ୍ୟ ନ ରହିଲା କେତେ ହେଲାଣି ଯେ ବେଳ ।
ସ୍ନାନ ଆହାରାଦି କର୍ମ ସରବେ ବିସ୍ମୃତ
ଉପାସନାର ସମୟ ପୁନଶ୍ଚ ଆଗତ ।
ତେବେ ମଧ୍ୟ ନ ରହିଲା କାହାରି ଯେ ହୋଷ
ଆପଣେ ଜାଣିଣ ତହୁଁ ପ୍ରଭୁ ଜଗଦୀଶ,
ବିଦାୟ ନେବାକୁ ଏବେ କଲେ ଗାତ୍ରୋତ୍‌ଥାନ
ଶ୍ରୋତୃବର୍ଗେ କହି ଅତି ମଧୁର ବଚନ ।
"ଆଳାପ କରିଣ ଆଜ ତୁମ୍ଭ ସଙ୍ଗେ ମୁହିଁ
ଯେ ତୋଷ ଲଭିଲି ବାକ୍ୟେ ନ ହୁଅଇ କହି ।
ଗୋରୁଙ୍କ ପଲରେ ଅନ୍ୟ ପଶୁ ପ୍ରବେଶିଲେ
ତାଡ଼ନା କରନ୍ତି ତାକୁ ସର୍ବେ ଏକ ମେଳେ ।
ଆଉ ଗୋଟେ ଗୋରୁ କିନ୍ତୁ ଆସିଲେ ସେଠାରେ
ଗାଢ ଚଟାଚଟି ପରସ୍ପର ସମାଦରେ ।

ଆଜ ଆମ୍ଭମାନଙ୍କର ଏଠାରେ ମିଳନ
ସେହିପରି ହୋଇଛି ଯେ ମୋର ଅନୁମାନ ।"
ତଦନ୍ତେ କହିଲେ ପୁଣି ରହସ୍ୟେ କେଶବେ
"ତୁମ୍ଭଠାରୁ ଲାଞ୍ଜ ଖସି ପଡ଼ିଅଛି ଏବେ ।"
ନ ବୁଝି ଏକଥା ମର୍ମ ବ୍ରାହ୍ମଭକ୍ତଗଣ
ଠୋ ଠୋ କରି ହସି ଉଠିଲେ ଯେ ତତକ୍ଷଣ ।
କେଶବ ବୋଇଲେ ତହୁଁ ତାଙ୍କୁ ବାଧା ଦେଇ
"ହସ ନାହିଁ ଏ କଥାର ମର୍ମ କିଛି ଥାଇ ।"
ଏସନ ଭାଷିଣ ସେହୁ ପୁଚ୍ଛିଲେ ଠାକୁରେ
"ଦୟା କରି ସ୍ପାର ମର୍ମ ଫେଡ଼ନ୍ତୁ ମୋ ଠାରେ ।"
ଅତଃପର ଦେବଗୃହ ସୁସରଳ ଭାଷେ
କଥାର ମରମ ବ୍ୟାଖ୍ୟା କଲେ ତାଙ୍କ ପାଶେ ।
"ବେଙ୍ଗ ଛୁଆର ଲାଞ୍ଜଟି ଯେତେ ଦିନ ଥାଇ
ସ୍ଥଳେ ଆସି ନ ପାରଇ ସଲିଳେ ରହଇ ।
ସେ ଲାଞ୍ଜର ଯେତେବେଳେ ହୁଅଇ ପତନ
ଜଳ ସ୍ଥଳ ସବୁଠାରେ କରେ ବିଚରଣ ।
ସେହିପରି ମନୁଷ୍ୟଙ୍କ ଅଛି ଗୋଟିଏ ଲାଞ୍ଜ
ଅବିଦ୍ୟା ଅଟଇ ତାହା ଭଲରୂପେ ବୁଝ ।
ଯେତେଦିନ ଅବିଦ୍ୟାରେ ଥାନ୍ତି ନିମଜ୍ଜିତ
ଅନ୍ୟ କିଛି ନ ଜାଣନ୍ତି ସଂସାର ବ୍ୟତୀତ ।
ଅବିଦ୍ୟା ଲାଞ୍ଜଟି ଛିଣ୍ଡି ଯାଏ ଯେତେବେଳେ
ସଂସାରେ ସଚ୍ଚିଦାନନ୍ଦେ ଭ୍ରମେ ଅବହେଳେ ।
ହେ କେଶବ ! ଦେଖୁଛି ମୁଁ ତୁମ୍ଭର ମାନସ
ଏ ପ୍ରକାର ଅବସ୍ଥାରେ ହୋଇଛି ପ୍ରବେଶ ।
ଇଚ୍ଛାକଲେ ରହିପାର ତାକୁ ଏ ସଂସାରେ
କିମ୍ବା ସେହ୍ନ ସତ୍ ଚିତ୍ ଆନନ୍ଦ ସାଗରେ ।"
ଏମନ୍ତେ ଦେଇଣ ନାନା ଧର୍ମ ଉପଦେଶ
ଫେରିଲେ ଦକ୍ଷିଣେଶ୍ୱର ବ୍ରହ୍ମାଣ୍ଡର ଈଶ ।
ତାଙ୍କର ପ୍ରସାଦେ ସେହି ମହାବାକ୍ୟ ବାଣ
ଭେଦିଲା କେଶବ ହୃଦ ଯହିଁ କି ନିଶାଣ ।
କେଶବଙ୍କ ମନ କ୍ରମେ ଏମନ୍ତ ଆକୃଷ୍ଟ
ସତତ ଦର୍ଶନ ପାଇଁ ହୋଇଲେ ସଚେଷ୍ଟ ।
ମଧ୍ୟେ ମଧ୍ୟେ ଦଳବଳ ସହିତ ଆସିଣ
ଦକ୍ଷିଣେଶ୍ୱରେ ଲଭନ୍ତି ପ୍ରଭୁଙ୍କ ଦର୍ଶନ ।
କେତେବେଳେ ଅବା ତାଙ୍କୁ ଘେନି ସଙ୍ଗତରେ
ଦିବ୍ୟ ଆନନ୍ଦ ଭୁଞ୍ଜନ୍ତି କମଳକୁଟୀରେ । *
ସଂକୀର୍ତ୍ତନ ସହ କେବେ ଆସି ଜଳଯାନେ
ଉପସ୍ଥିତ ହୋନ୍ତି ପୁଣି ପ୍ରଭୁ ସନ୍ନିଧାନେ ।
ଅତି ସମାଦରେ ତାଙ୍କୁ ଉଠାଇଣ ନାବେ
ଶୁଣନ୍ତି ତାଙ୍କଠୁ ବ୍ରହ୍ମତତ୍ତ୍ୱ ଭକ୍ତିଭାବେ ।
କ୍ରମଶଃ ସମ୍ବନ୍ଧ ହେଲା ଏସନ ଗମ୍ଭୀର
ପରସ୍ପର ନ ଦେଖିଲେ ବ୍ୟାକୁଳ ଅନ୍ତର ।
ଦେବଗୃହ କିଛୁକାଳ ତାଙ୍କୁ ନ ଦେଖିଲେ
ଧାବନ୍ତି ତାଙ୍କ ଆଳୟେ ଅତୀବ ବ୍ୟାକୁଳେ
ପ୍ରଭୁପାଦେ କେଶବଙ୍କ ହେଲା ଏଡ଼େ ଭକ୍ତି
ଯେ ଦିବସ ତାହାଙ୍କୁ ସେ ଦର୍ଶନେ ଆସନ୍ତି ।
ଫଳମୂଳ ଆଦି ନାନା ଖାଦ୍ୟ ଦ୍ରବ୍ୟମାନ
ହସ୍ତେ ଆଣି ଭକ୍ତିଭରେ କରନ୍ତି ଅର୍ପଣ ।
ଅନୁଗତ ଶିଷ୍ୟସମ ବସି ପାଦପ୍ରାନ୍ତେ
ପିବନ୍ତି ତାଙ୍କର କଥାମୃତ ଏକ ଚିତ୍ତେ ।
ରହସ୍ୟେ କହିଲେ ପ୍ରଭୁ କେଶବଙ୍କୁ ଦିନେ
"ତୁମ୍ଭ ବକ୍ତୃତାରେ ମୁଗ୍ଧ ଅଗଣିତ ଜନେ ।
ବକ୍ତୃତାରେ ଯେ ପ୍ରକାର ଦିଅ ଉପଦେଶ
ସେ ଭାବେ ବକ୍ତୃତା କରି ମୋର ଚିତ୍ତ ତୋଷ ।"
ବିନୀତ ଭାବେ ବୋଇଲେ ତହୁଁ ଶ୍ରୀ କେଶବ
"କମାରଶାଳରେ ସୂଚୀ ବିକି ପ୍ରାପ୍ତ ହେବ ।
ଶ୍ରୀବଦନରୁ ହରି କଥା ଶ୍ରବଣ କରିଣ
ଧନ୍ୟ ହେବ ମୋର ଏହି ମାନବ ଜୀବନ ।
ସେଥିପାଇଁ ତବ ପାଶେ ଧାଇଁଆସେ ମୁହିଁ
ଧନ୍ୟ କରନ୍ତୁ ମୋ ପ୍ରାଣ ହରି କଥା କହି ।"
କ୍ରମେ କ୍ରମେ ଭକ୍ତିଭାବ ବୃଦ୍ଧି ହେଲା ଏତେ
ବ୍ରାହ୍ମଧର୍ମେ ଉତ୍ସବାଦି ଯହିଁ ହୁଏ ଯେତେ ।
ସରବଦା ଶ୍ରୀ କେଶବ ନିମନ୍ତ୍ରଣ ଦେଇ
ଅତି ସମାଦରେ ତାଙ୍କୁ ନିଅନ୍ତି ସେ ଠାଇଁ ।
ଏସନେ ଉତ୍ସବାଦିରେ ତାଙ୍କ ଯୋଗଦାନ
ଉପାସନା ଅଙ୍ଗରୂପେ ହେଲା ପରିଗଣ୍ୟ ।
ପ୍ରଭୁଙ୍କ ସମ୍ପର୍କେ ଆସି ବ୍ରାହ୍ମଧର୍ମମତ
ବିଶେଷ ଭାବରେ ହେଲା ପରିବରଧିତ ।
ଅତଃପର ଦିନକରେ ପ୍ରଭୁ ପରମେଶ
ବାଞ୍ଛା କଲେ କି ଭାବରେ ନବଦ୍ୱୀପ-ଈଶ ।

* 'କମଳକୁଟୀରେ' ଏବଂ ନୌବିହାର—ଏଠାରେ ଦୁହିଁଙ୍କ ଭିତରେ ଯେଉଁ କଥୋପକଥନ ହୋଇଥିଲା ତାହା ଶ୍ରୀ ଶ୍ରୀରାମକୃଷ୍ଣ ଗୀତାମୃତ ପୁସ୍ତକରେ ବର୍ଣ୍ଣିତ ହୋଇଅଛି ।

ମନୋମୁଗ୍ଧକର ହରିନାମ ସଂକୀର୍ତ୍ତନେ
ମୋହିଥିଲେ ଏ ଜଗତେ ଜନସାଧାରଣେ ।
ଏମନ୍ତ ବାସନା ଥିବେ ହୃଦୟ ମାଝରେ
ମନୋରଥ ପରିପୂର୍ଣ୍ଣ ହୋଇଲା କ୍ଷଣକେ ।
ଗୃହରୁ ବାହାର ଆସି ପ୍ରଭୁ ନାରାୟଣ
ଏମନ୍ତ ଚିନ୍ତାରେ ସଦା ଥିଲେ ନିମଗନ ।
ପଞ୍ଚବଟୀ ଆଡ଼େ ତାଙ୍କ ନୟନ ବୁଲାଇ
ଦେଖିଲେ ସେ ଦୂରୁଁ ଏକ କୀର୍ତ୍ତନ ଆସଇ ।
ମହା ସମାରୋହେ ହରିଗୁଣ ଗାନକରି
ଲୋକେ ମାଡ଼ି ଆସୁଛନ୍ତି ତରଙ୍ଗ ଯେପରି ।
ଧୀରେ ଧୀରେ ସେ କୀର୍ତ୍ତନ ହୋଇ ଅଗ୍ରସର
ଫାଟକାଭିମୁଖେ ଗଲା ମନ୍ଦିର ଭିତର ।
ନିମିଷ ମଧ୍ୟରେ ସେହି ଲୋକ ଅଗଣନ
ବାୟୁସଙ୍ଗେ ସେହିସ୍ଥାନେ ତଦଣ୍ଡେ ବିଲୀନ ।
ଶ୍ରୀଦେବ ବୋଲନ୍ତି କୀର୍ତ୍ତନର ମଧ୍ୟସ୍ଥଳେ
ନବଦ୍ୱୀପ-ଈଶ ଗୌରଚନ୍ଦ୍ରେ ଦେଖିଥିଲେ ।
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ ଆଉର ଅଦ୍ୱୈତ
ମଧ୍ୟଭାଗେ ଯାଉଛନ୍ତି ପ୍ରେମେ ଉନମତ୍ତ ।
ତାଙ୍କ ଚତୁର୍ଦ୍ଦିଗେ ଘେରି ଭକ୍ତ ଅଗଣନ
ଆପଣା ଆପଣା ଭାବେ ଅଛନ୍ତି ମଗନ ।
କେହି କେହି ପୁଣି ପ୍ରେମେ ଉନମତ୍ତ ହୋଇ
ଉଦ୍ଦାମ ତାଣ୍ଡବ ନୃତ୍ୟ ଉଲ୍ଲାସେ କରଇ ।
ପ୍ରେମପୂର୍ଣ୍ଣ ଚିତ୍ତେ କାର ଅବଶ ଶରୀର
ଯାଉଛନ୍ତି ଆଶ୍ରାଧରି ଅପର ଲୋକର ।
ଜନସଙ୍ଘେ ଚହଟଇ ଦଶେ ଲୋକାରଣ୍ୟ
ହରିପ୍ରେମେ ମାତି ସର୍ବେ ଉଲ୍ଲସିତ ମନ ।
ଏଥିମଧ୍ୟେ ଦେଖିଲେ ସେ କେତେଗୋଟି ଲୋକ
ସ୍ମୃତିପଟେ ରହିଗଲା ଯାହାଙ୍କର ମୁଖ ।
ସେ ଲୋକମାନଙ୍କୁ ଦେବରାୟ ତଦନ୍ତରେ
ପାଶେ ଆସିବାର ଦେଖି ଭକତ ରୂପରେ ।
ସ୍ଥିର ସିଦ୍ଧାନ୍ତେ ଅନ୍ତରେ ହେଲେ ଉପନୀତ
ପୂର୍ବଜନ୍ମେ ଥିଲେ ଏହୁ ଗୋରାଙ୍କ ଭକତ ।
ରାମକୃଷ୍ଣ ଲୀଳାମୃତ ସୁଧାର ଲହରୀ
ଗାଅ ମନ, ଭଜ ମନ ଦିବସ ଶର୍ବରୀ ।
ଅବହେଳେ ତରିଯିବ ଏ ଭବସାଗର
ବେଲ ଥାଉଁ ଥାଉଁ ବିଭୁପାଦେ ଆଶ୍ରା ଧର ।

---

## ସପ୍ତମ ଅଧ୍ୟାୟ

### ପଣ୍ଡିତ ଦୀନବନ୍ଧୁ ନ୍ୟାୟରତ୍ନଙ୍କ ଆଗମନ ଓ ଲକ୍ଷ୍ମୀନାରାୟଣ ମାଡ଼ୁଆରୀଙ୍କ ଅର୍ଥ ପ୍ରତ୍ୟାଖ୍ୟାନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ପତି
ଅପାର କରୁଣାସିନ୍ଧୁ ଅଗତିର ଗତି ।
ଶ୍ରୀରାମକୃଷ୍ଣ-ଚରିତ ରତ୍ନର ଆକର
ଯାହାର ଯା ବାଞ୍ଛା ପାଏ ଖୋଜିଲେ ତହିଁର ।
ସର୍ବବିଧ ରତ୍ନ ତହିଁ ଅଛି ସୁରକ୍ଷିତ
ବିଶ୍ୱାସେ ଖୋଜିଲେ ତହିଁ ହୋଇବ ପ୍ରାପତ ।
ଗଙ୍ଗାର ଅପର ତୀରେ ଗ୍ରାମ କୋନଗର
ବହୁ ସମ୍ଭ୍ରାନ୍ତ ଭକ୍ତଙ୍କ ବସତି ସେଠାର ।
ମଧ୍ୟେ ମଧ୍ୟେ ଆଗମିଣ ତହିଁ ଦେବରାୟ
ଦର୍ଶନ ଦାନେ ତୋଷନ୍ତି ପଡ଼ୋଶୀ-ହୃଦୟ ।
ଶ୍ରୀମୁଖ-ନିଃସୃତ ବାଣୀ ସୁଧାରସେ ପୂର୍ଣ୍ଣ
ଶ୍ରବଣେ ଉପୁଜେ ଚିତ୍ତେ ସୁଖ-ପ୍ରସ୍ରବଣ ।
ଆସ୍ୱାଦନ ପାଏ ଯେହୁ ଥରେ କୃପାବଳେ
ବିସ୍ମୃତ ନ ହୁଏ କେବେ ତା ଜୀବନ କାଳେ ।
ଶ୍ରୀପ୍ରଭୁଙ୍କ ଆଗମନ ବାର୍ତ୍ତା ପାଇ ଥରେ
ଦୀନବନ୍ଧୁ ନ୍ୟାୟରତ୍ନ ଭେଟିଲେ ସେଠାରେ ।
ନ୍ୟାୟଶାସ୍ତ୍ରେ ସୁପଣ୍ଡିତ ବ୍ରାହ୍ମଣ ସନ୍ତାନ
ବିଦ୍ୟା ଅଭିମାନେ ଚିତ୍ତ ସଦା ପରିପୂର୍ଣ୍ଣ ।
ଭକ୍ତବାଞ୍ଛା କଳ୍ପତରୁ ପ୍ରଭୁ ଅବତାର
ତାଙ୍କ ବିନୟ ଗୁଣର ନାହିଁ ପଟାନ୍ତର ।
ପଣ୍ଡିତଙ୍କ ଚିତ୍ତ ଅହଂକାରେ ପୂର୍ଣ୍ଣ ଜାଣି
ଦରଶନେ ପ୍ରଣମିଲେ ଅଗ୍ରେ ପଦ୍ମପାଣି ।
ଦ୍ୱିଜବର ନ କରିଣ ପ୍ରତି ନମସ୍କାର
ଉପବିଷ୍ଟ ହେଲେ ପ୍ରଭୁ ଦେବଙ୍କ ଛାମୁର ।
ପ୍ରଭୁଙ୍କୁ ପୁଛିଲେ ତହୁଁ ଦମ୍ଭେ ଦ୍ୱିଜୋତ୍ତମ
"ଆପଣେ କି ବିପ୍ରଙ୍କର ଅଟନ୍ତି ପ୍ରଣମ୍ୟ ?"
ମାନସେ କି ଭାବ ରଖି କଲେ ଏ ପ୍ରଶନ
ସାଧୁଜନେ ସାବଧାନେ କର ତା ଶ୍ରବଣ ।

ବିପ୍ରକୁଳେ ଜନ୍ମିଲେହିଁ ପ୍ରଭୁ ଗଦାଧର
ଯଜ୍ଞ ସୂତ୍ର ଫିଙ୍ଗିଦେଇ ଏବେ ଭ୍ରଷ୍ଟାଚାର ।
ଉପବୀତ ତ୍ୟାଗ କଲେ ବ୍ରାହ୍ମଣ ସନ୍ତାନ
ବ୍ରାହ୍ମଣ ମଧ୍ୟରେ ଆଉ ନ ହୁଅନ୍ତି ଗଣ୍ୟ ।
ସାଧନ ଭଜନ କରି ଜଗତ ଗୋସାଇଁ
ଅତି ଉଚ୍ଚ ଅବସ୍ଥାରେ ଅନୁକ୍ଷଣ ଥାଇ ।
କ୍ଷୁଧା ତୃଷ୍ଣା ବିବର୍ଜ୍ଜିତ ଶୂନ୍ୟ ବାହ୍ୟ ଜ୍ଞାନ
ମୁହୁର୍ମୁହୁଃ ସମାଧିରେ ଯେ କାଳେ ମଗନ ।
ସେ କାଳୁ ପଇତା ଏକା ପ୍ରକାର ବର୍ଜ୍ଜିତ
ଲକ୍ଷ୍ୟ ନାହିଁ କେବେ କାହିଁ ହୁଏ ନିପତିତ ।
ଶ୍ରୀଅଙ୍ଗେ ପଇତା ନାହିଁ କଲେକ ଦର୍ଶନ
ନୂତନ ପଇତା ହୃଦୁ ଦ୍ୟନ୍ତି ପିନ୍ଧାଇଣ ।
ଅବସ୍ଥା ବିଶେଷେ ପୁଣି ଆପଣେ ଶ୍ରୀହରି
ତାକୁ ବନ୍ଧନ ବୋଲିଣ ମାନସେ ବିଚାରି ।
ହୃଦୟରେ ଅନୁଭୂତ ଯନ୍ତ୍ରଣା ଏମନ୍ତ
ଶାନ୍ତ ନ ଥାଏ ତାହାକୁ ଫିଙ୍ଗିବା ପର୍ଯ୍ୟନ୍ତ ।
ବିଦ୍ୟାମଦେ ଅଭିମାନୀ ଦ୍ୱିଜ ନ୍ୟାୟ ରତ୍ନ
କର୍କଶ ଭାଷାରେ ଯଦା କଲେ ତାଙ୍କୁ ପ୍ରଶ୍ନ —
'ମହାଶୟ ଅଟନ୍ତି କି ପ୍ରଣମ୍ୟ ମୋହର'
ବିନୀତେ ଉତ୍ତର ଦେଲେ କରୁଣାସାଗର ।
"ହୀନ ଠାରୁ ଅତିହୀନ ଏ ଜଗତେ ମୁହିଁ
ପ୍ରାଣୀ ମାନେ ସର୍ବ ମୋର ନମସ୍ୟ ଅଟଇ ।
ହୀନାପେକ୍ଷା ଅତି ହୀନ ମୁହିଁ ତ୍ରିଭୁବନେ
ମୋଠୁଁ ସର୍ବେ ଶ୍ରେଷ୍ଠ ଏହି ଜ୍ଞାନ ଅନୁକ୍ଷଣେ ।"
କଥାକୁ ବୁଲଇ ତହୁଁ କହେ ଦ୍ୱିଜବର
"ଏହା ହେଲା ନାହିଁ ମୋର ପ୍ରଶ୍ନର ଉତ୍ତର ।
ମୋର ଯଜ୍ଞସୂତ୍ର ଅଛି ଆପଣଙ୍କ ନାହିଁ
ପ୍ରଣମ୍ୟ ଅଟନ୍ତି କି ନା ପୃଚ୍ଛେ ସେଥିପାଇଁ ।
ସନ୍ନ୍ୟାସ ଧରମ ଯେହୁ କରନ୍ତି ଗ୍ରହଣ
ତାଙ୍କ ପକ୍ଷେ ସୂତ୍ର ତ୍ୟାଗ ଶାସ୍ତ୍ରର ବିଧାନ ।
ଉପବୀତ ନ ଥିଲେ ହେଁ ସାଧୁ ସନ୍ଥଙ୍କର
ପ୍ରଣମ୍ୟ ଅଟନ୍ତି କାଳେ କାଳେ ପ୍ରାଣୀଙ୍କର ।
ଆପଣେ କି କରିଛନ୍ତି ସନ୍ନ୍ୟାସ ଗ୍ରହଣ ?"
ଉତ୍ତରେ ସ୍ୱୀକାର କଲେ ପ୍ରଭୁ ନାରାୟଣ ।
ଏମନ୍ତ ବିନୀତ ଭାବେ କହିଲେ ଏକଥା
ନ୍ୟାୟରତ୍ନ ବିଗଳିତ ହୋଇଲେ ସର୍ବଥା ।
ବିଦ୍ୟା ଅଭିମାନ କ୍ଷଣେ ହୋଇ ଚୂର୍ଣ୍ଣୀଭୂତ
ସାଷ୍ଟାଙ୍ଗ ପ୍ରଣାମ କଲେ ଭକତି ସହିତ ।
ତଦନ୍ତେ ଶ୍ରୀ ଦେବଶ୍ରଷ୍ଠ ନାନା ରଙ୍ଗ ରସେ
ତୋଷିଲେ ଶ୍ରୋତାଙ୍କ ମନ ହିତ ଉପଦେଶେ ।
ଅତ୍ୟନ୍ତ ଦୁର୍ଭେଦ୍ୟ ଯେଉଁ ଜ୍ଞାନ ତତ୍ତ୍ୱମାନ
ସରଳ ଭାଷାରେ ତାକୁ କହିଲେ ଏସନ ।
ଉପସ୍ଥିତ ଶ୍ରୋତୃବର୍ଗ ହୋଇ ବିମୋହିତ
ଯୂଥେ ଯୂଥେ ଗଡ଼ିଲେକ ପ୍ରଭୁ ପଦପ୍ରାନ୍ତ ।
ଭକ୍ତ ସମାଗମ କଥା ଶ୍ରବଣ ମଙ୍ଗଳ
ଜ୍ଞାନ ଭକତି ଉଭୟ ଯହିଁ ଅଛି ଠୁଳ ।
ସାଧୁଜନେ ସାବଧାନେ ଶୁଣ ଅତଃପର
ଅର୍ଥଦାନ କଥା ଲକ୍ଷ୍ମୀ ମାଡ଼ୁଆରୀଙ୍କର ।
ଏ ଜାତିର ନରଙ୍କର ଧର୍ମ୍ମକର୍ମ୍ମେ ମତି
ସାଧୁସେବା ପାଇଁ ଚିତ୍ତେ ଅନୁରାଗ ଅତି ।
ପ୍ରଚୁର ଅର୍ଥ ଉପାସ୍ତ କରନ୍ତି ଯେପରି
ସତ୍କାର୍ଯ୍ୟେ କରନ୍ତି ମଧ୍ୟ ବ୍ୟସ୍ତ ସେହିପରି ।
ଦୃଷ୍ଟାନ୍ତ ସ୍ୱରୂପ ଦେଖ ତୀର୍ଥ ମାନଙ୍କରେ
ଗଢ଼ିଛନ୍ତି ଧର୍ମଶାଳା ବିବିଧ ପ୍ରକାରେ ।
ଲକ୍ଷ୍ମୀ ମାଡ଼ୁଆରୀ ଜଣେ ଧନୀ ମହାଜନ
ଶୁଣିପାରି ପ୍ରଭୁଙ୍କର ଗୁଣାନୁକୀର୍ତ୍ତନ
ଦର୍ଶନ ଲଭି ନିମନ୍ତେ ଚିତ୍ତେ କରି ଆଶ
ଦକ୍ଷିଣେଶ୍ୱରରେ ଦିନେ ହୋଇଲେ ପ୍ରବେଶ ।
ଗୀତା ଆଦି ଧର୍ମଶାସ୍ତ୍ର କେତେକ ପଢ଼ିଣ
ସେ ଦିଗରେ ଅର୍ଜ୍ଜିଥିଲେ ଯତ୍କିଞ୍ଚିତ ଜ୍ଞାନ ।
ପ୍ରଭୁସଙ୍ଗେ ସେ ସମ୍ବନ୍ଧେ ଆଲୋଚନା କରି
ସନ୍ଦେହ ଭଞ୍ଜନ କଲେ ଲକ୍ଷ୍ମୀ ମାଡ଼ୁଆରୀ ।
ସରଳ ପ୍ରକୃତି ଆଉ ଧର୍ମ୍ମ ତୃଷ୍ଣାତୁର
ଦେଖିଣ ତାହାଙ୍କୁ ପ୍ରଭୁ ଦୟାଳୁ ଠାକୁର ।
ତାଙ୍କ ପ୍ରତି କୃପା କଲେ ସଦୟ ହୋଇଣ
କୃପା ଲଭି ଧନ୍ୟ ହେଲେ ଲକ୍ଷ୍ମୀ ନାରାୟଣ !
ଅବଶେଷେ ତାଙ୍କଠାରେ ଏମନ୍ତ ଆକୃଷ୍ଟ
କିଛିଦିନ ନ ଦେଖିଲେ ପ୍ରାଣେ ଅତି କଷ୍ଟ ।
ଯେତେବେଳେ ଅଳପକେ ପାନ୍ତି ଅବସର
ତତ୍ତ୍ୱକଥା ଶୁଣିବାକୁ ଧାବନ୍ତି ପାଶର ।
ପ୍ରଭୁଙ୍କର ହୀନବେଶ ଦର୍ଶନ କରିଣ
ବିଷମ ବେଦନା ପ୍ରାପ୍ତ ଲକ୍ଷ୍ମୀ ନାରାୟଣ ।
ମନେ ମନେ ତେଣୁ ଦିନେ କଲେକ ବିଚାର
ଧନ ଦେଇ ଅର୍ଥାଭାବ ମୋଚିବେ ତାଙ୍କର ।

କିନ୍ତୁ ଅତୀବ କଠୋର ତ୍ୟାଗ ଦରଶନେ
ସେ କଥା ପ୍ରକାଶ ପାଇଁ ଶଙ୍କା ଜାତ ମନେ ।
ଦର୍ଶନେ ଆସନ୍ତି ଯେବେ ଲୋଡ଼ନ୍ତି ସୁଯୋଗ
ସୁବିଧା ନ ଦେଖି ବାହୁଡ଼ନ୍ତି ମହାଭାଗ ।
ଦିନକରେ ଛିନ୍ନ ଦେଖି ବିଛଣା ଚଦର
ତାହାଙ୍କୁ କହିଲେ ଲକ୍ଷ୍ମୀ ଯୋଡ଼ି ବେନିକର ।
"ଛିନ୍ନବସ୍ତ୍ର ବ୍ୟବହାର ଆପଣ ପକ୍ଷରେ
ଶୋଭା ପାଉନାହିଁ ପ୍ରଭୋ ! କୌଣସି ପ୍ରକାରେ ।
ଆଦେଶ କଲେକ ଥରେ ଏ ଅଧମ ପ୍ରତି
ନୂତନ ଚଦର ଆଣି ବଦଳି ଦିଅନ୍ତି ।"
ଉତ୍ତରେ ଭାଷିଲେ ଧୀରେ ପ୍ରଭୁ ନରହରି
"ଯାହା ଲୋଡ଼ା ଦ୍ୟନ୍ତି ସବୁ ପୁରୀ-ଅଧିକାରୀ ।"
ପୁନର୍ବାର ଭକ୍ତ ଲକ୍ଷ୍ମୀ କଲେ ନିବେଦନ
"ସାଧୁସେବା ନ ଜାଣନ୍ତି ଏଠା ଲୋକମାନ ।
ସାଧୁ ସନ୍ନ୍ୟାସୀଙ୍କ ଲୋଡ଼ା ଯାହା ଯେତେବେଳେ
ନ ମାଗୁଣୁ ଆଗୁଁ ଖଞ୍ଜାଥାନ୍ତି ସେ ସକଳେ ।
ଆମ ଦେଶେ'ଛନ୍ତି ଯେତେ ଧନୀ ମହାଜନ
ସାଧୁ ସେବାରେ ତାଙ୍କର ବ୍ୟୟ ବହୁଧନ ।
ସେ ନିମନ୍ତେ ଅଛି ଏକ ପ୍ରଥା ପ୍ରଚଳିତ
ଯେ ଯା' ଆୟରୁ ରଖନ୍ତି କିଞ୍ଚିତ ସଞ୍ଚିତ ।
ଧର୍ମାର୍ଥେ ସେ ସବୁ ହୁଏ ଯଥାବିଧି ବ୍ୟୟ
ଯାହା ଲୋଡ଼ା ଆଗୁଁ ଖଞ୍ଜା ଥାଏ ସମୁଦାୟ ।
ବାସନା ହେଉଛି ତେଣୁ ହୃଦୟେ ମୋହର
ସେଥିରୁ ଆଣିଣ ଟଙ୍କା ଦଶ ସହସର ।
କୋମ୍ପାନି କାଗଜ କିଣି ରଖନ୍ତି ଗଚ୍ଛିତେ
ସୁଧରୁ ହୁଅନ୍ତା ବ୍ୟୟ ଆବଶ୍ୟକ ମତେ ।"
ହଳାହଳ ବିଷମୂର୍ତ୍ତି ଏ ପ୍ରକାର ବାଣୀ
ଶ୍ରବଣ ମାତେ ବିରକ୍ତ ପ୍ରଭୁ ଚିନ୍ତାମଣି ।
କହିଲେ "ଦେଖାଅ ନାହିଁ ଅର୍ଥ ପ୍ରଲୋଭନ
ଅନର୍ଥର ମୂଳ ଅଟେ ଅବିଦ୍ୟା କାଞ୍ଚନ ।
ପରମାର୍ଥ ପଥେ ଏହା କଣ୍ଟକ ସଦୃଶ
କଉଣସି ଲୋଡ଼ା ନାହିଁ ତହିଁ ସେ ସକାଶ ।
ଅଣୁମାତେ ରହେ ଯାର ଥାଏ ଅର୍ଥ ଲୋଭ
କରି ନ ପାରଇ ସେହୁ ବିଷ୍ଣୁପଦ ଲାଭ ।
ଏମନ୍ତ ଗର୍ହିତ କଥା କେବେଁ ନ କହିବ
କୌଣସି ବିଷୟେ ମୋର ନ ଥାଏ ଅଭାବ ।
ଶରୀର ରକ୍ଷା ନିମିତ୍ତ ଆବଶ୍ୟକ ଯାହା
ଶ୍ୟାମାଙ୍କ କୃପାରୁ ମୋତେ ମିଳୁଅଛି ତାହା ।"
ଯେତେ ପରକାର ପ୍ରଭୁ ଏସନ ଭାଷିଲେ
ଲକ୍ଷ୍ମୀ ମାଡ଼ୁଆରୀ ତାହା କିଛି ନ ଶୁଣିଲେ ।
ପୁନଃ କହିଲେ "'ଛନ୍ତି ତ ସହଧରମିଣୀ
ତାଙ୍କ ନାମେ ସେ କାଗଜ ଦେବି ତେବେ କିଣି ।"
ଶ୍ରୀ ଦେବ ବୋଇଲେ ତାଙ୍କ ସମ୍ମତି ନ ପାଇ
"ଏ ବିଷୟେ ଉତ୍ତର ମୁଁ ଦେଇ ନ ପାରଇ ।"
ଏସନ ଭାଷିଣ ଦେବ ପତ୍ନୀ ପାଶେ ଆସି
ଫେଡ଼ିଲେ ସମସ୍ତ କଥା ତାଙ୍କ ପାଶେ ବସି ।
ସବୁ ବିଷୟ ଶୁଣିଣ ଶ୍ରୀ ସାରଦା ଦେବୀ
ଉତ୍ତରିଲେ ପତିଙ୍କୁ ଯେ କିଛିକ୍ଷଣ ଭାବି ।
ଯଥା ତ୍ୟାଗୀ ଯୋଗୀବର ପ୍ରଭୁ ଶ୍ରୀ ଠାକୁର
ପତ୍ନୀ ମଧ୍ୟ ତ୍ୟାଗଶୀଳା ସେହି ପରକାର ।
ଦେବୀ ବୋଇଲେ "ଏ ଟଙ୍କା କି କରିବି ମୁହିଁ
ମୋ ନିଜର କଉଣସି ଅଭାବ ତ ନାହିଁ ।
ଯଦ୍ୟପି ବା ତୁମ୍ଭପାଇଁ କରିବି ଗ୍ରହଣ
ତୁମ୍ଭ ସେବା ହେତୁ ବ୍ୟୟ କରିବଟି ପୁଣ ।
ତା ହେଲେ ବି ତୁମ୍ଭ ନେବା ତୁଲେ ଏହା ହେବ
ଯାହାପାଇଁ ଖ୍ରୀନ ସେହି ଦୋଷ ହିଁ ଲାଗିବ ।
ଅତଏବ ମୋ ପକ୍ଷରେ ନ ନେବାହିଁ ଶ୍ରେୟ
ବିଚାର କରନ୍ତୁ ଭାବ ଆହେ ଦେବରାୟ ।"
ଯଥାର୍ଥ ଉତ୍ତର ପାଇ ପ୍ରଭୁ ଶ୍ରୀଠାକୁରେ
ତୋଷ ଚିତ୍ତେ ବାହୁଡ଼ିଲେ ଆପଣା ମଠରେ ।
ଲକ୍ଷ୍ମୀ ନାରାୟଣେ ତହୁଁ କହିଲେ ଶ୍ରୀହରି
"ଏ ଟଙ୍କାର ଆବଶ୍ୟକ ନାହିଁ ବି ତାଙ୍କରି ।"
ପୁନଃ ବୋଲେ "ଲକ୍ଷ୍ମୀ ବନ୍ଧୁ ବାନ୍ଧବ ତ ଥିବେ
ତାଙ୍କ ନାମେ ସେ କାଗଜ କିଣି ଦେବ ତେବେ ।"
ଦେବରାୟ ଉତ୍ତରିଲେ ଲକ୍ଷ୍ମୀ ମହାଜନେ
"ତେବେ ସୁଦ୍ଧା ମୋର ଟଙ୍କା ଥିବ ଏହା ଜ୍ଞାନେ ।
ଅବିଦ୍ୟାର ପ୍ରତିମୂର୍ତ୍ତି କାମିନୀ କାଞ୍ଚନ
ସ୍ପର୍ଶମାତ୍ରେ ଜାଳିଦିଏ ଯୋଗେଶଙ୍କ ମନ ।
ବିଷଧର ସର୍ପ ଯଦି ଦଂଶେ ଅଙ୍ଗ ଅଂଶ
ସାରା ଶରୀରଟି ବିଷେ ହୁଅଇ ବିନାଶ ।
କାଞ୍ଚନେ ଆସକ୍ତ ଥିଲେ ଅଣୁ ପ୍ରମାଣରେ
ଗୋଟାମନ ମାତିବସେ ନିମିଷ ମଧ୍ୟରେ ।
ହଳାହଳ ବିଷମୂର୍ତ୍ତି ଅଟଇ କାଞ୍ଚନ
ଗ୍ରହଣେ ଅକ୍ଷମ ମୁହିଁ ଜାଣ ସେ କାରଣ ।"

ଯେତେ ପରକାରେ ଦେବ ତାଙ୍କୁ ବୁଝାଇଲେ
ଲକ୍ଷ୍ମୀ ନାରାୟଣ ତାହା କିଛି ନ ମାନିଲେ ।
କହିଲେ "ଆଣିଛି ମୁହିଁ ଟଙ୍କା ତୁମ୍ଭପାଇଁ
ଆଉ ନେବି ନାହିଁ ଏହା ଘରକୁ ଫେରାଇ ।"
ଏସନ ଭଣିଣ ଯଦା ଲକ୍ଷ୍ମୀ ନାରାୟଣ
ବାହାର କରିଲେ ନୋଟ ଗୋଛାଏ ତକ୍ଷଣ ।
'ମାଆ' 'ମାଆ' ବୋଲି ତହୁଁ ପ୍ରଭୁ ନରହରି
କାତରେ କାନ୍ଦିଲେ କ୍ଷୁଦ୍ର ବାଳକ ଯେପରି ।
କାନ୍ଦି କାନ୍ଦି କ୍ଷଣ ମଧ୍ୟେ ସମାଧିରେ ମଗ୍ନ
ପାର୍ଥିବ ଜଞ୍ଜାଳ ସବୁ ଏବେ ତହିଁ ଲୀନ ।
ଆନନ୍ଦ କୌମୁଦୀ ଛଟା ପରମ ସୁନ୍ଦର
କ୍ରୀଡ଼ା କଲା ଶ୍ରୀ ବଦନେ ଅତି ମନୋହର ।
ଅତି ନିରାପଦ ସ୍ଥାନ ଜଗଦମ୍ବା କୋଳ
କୌଣସି ପ୍ରକାର ଯହିଁ ନାହିଁ ଗଣ୍ଡଗୋଳ ।
ଅର୍ଥ ଦେଖି ପ୍ରଭୁ ତ୍ରସ୍ତ ଯେଉଁ ପରିମାଣ
ତତୋଧିକ ତ୍ରସ୍ତ ହେଲେ ଲକ୍ଷ୍ମୀନାରାୟଣ ।
ମନେ ମନେ ଗୁଣିଲେ ସେ ବିଷମ ପ୍ରମାଦ
ଶ୍ରୀଚରଣେ କଲି ମୁହିଁ ମହା ଅପରାଧ ।
ଭଲ କାର୍ଯ୍ୟ କରି ବସି ବିପରୀତ ଫଳ
ତାଙ୍କ ମନେ ଅନୁତାପ ଏମନ୍ତ ବହୁଳ ।
ଧୀରେ ଧୀରେ ନୋଟ ଯାକ ପୁନଶ୍ଚ ଗୋଟାଇ
ଆପଣା ବସ୍ତ୍ରରେ ତାହା ରଖିଲେ ଲୁଚାଇ ।
କିଛିକ୍ଷଣ ପରେ ଯେବେ ଭାଙ୍ଗିଲା ସମାଧି
ବିରକ୍ତ ହୋଇ କହିଲେ ପ୍ରଭୁ ଗୁଣନିଧି ।
"ଏମନ୍ତ ଗର୍ହିତ କଥା ମୁହେଁ ଯେ ଧରିବ
ଏଠାକୁ ତାହାର ଆଉ ଆସିବା ନୋହିବ ।"
ସୂକ୍ଷ୍ମବୁଦ୍ଧି ଲକ୍ଷ୍ମୀ ତହୁଁ କହିଲେ ଉତ୍ତରେ
"ନିଆ ଦିଆ ଭାବ ତେବେ ଅଛି ତୁମ୍ଭଠାରେ ।
ପ୍ରବେଶ କରି ନାହାନ୍ତି ଜ୍ଞାନର ଚରମ"
"ଅସମ୍ଭବ ନୁହେ" ବୋଇଲେକ ଗୁଣଧାମ ।
"ନ ହେଉ ମୋହର ପଛେ ଜ୍ଞାନର ଉନ୍ମେଷ
ପ୍ରଲୋଭନ ନ ଦେଖାଅ ଏପରି ମୋ ପାଶ ।"
ମଙ୍ଗଳ ନିଦାନ ବାଣୀ ପ୍ରଭୁଙ୍କ ଚରିତ
ଏ ପ୍ରକାରେ ସେ ଦିନର ଚିତ୍ର ସମାପତ ।
କତିପୟ ମାଡ଼ୁଆରି ଭକ୍ତ ଆଉ ଦିନେ
ଦର୍ଶନ ଆଶେ ଅଇଲେ ପ୍ରଭୁ ସନ୍ନିଧାନେ ।
ତାଙ୍କ ମଧ୍ୟେ ଯାହାଙ୍କର ଧର୍ମ କର୍ମେ ମନ
ଧର୍ମ ପ୍ରସଙ୍ଗରେ ପଚାରିଲେ ନାନା ପ୍ରଶ୍ନ ।
କି କି ପ୍ରଶ୍ନ କଲେ ସେହି ଭକତ ନିକରେ
ପ୍ରଭୁ ଭଗବାନ କିବା କହିଲେ ଉତ୍ତରେ ।
ସାବଧାନେ ଶୁଣ ମନ ! ତାର ବିବରଣ
ସୁଧାରସେ ପୂର୍ଣ୍ଣ ସେହି ତତ୍ତ୍ୱ କଥାମାନ ।
ପ୍ରଶ୍ନ—'ମୁଁ ତୁମ୍ଭର ଦାସ' ଭକ୍ତେ ବୋଲନ୍ତି ଏପରି
'ମୁଁ ବୋଲାଏ କିଏ, ଅବା କି ନାମ ତାହାରି ?'
ଉତ୍ତର—ଜୀବାତ୍ମା ଅଥବା ଲିଙ୍ଗ ଶରୀର ଯା ନାମ
ମୁଁ ଶବ୍ଦ ଅନ୍ତରୁ ସେହି କରେ ଉଚ୍ଚାରଣ ।
ମନ ବୁଦ୍ଧି ଚିତ୍ତ ଆଉ ଅହଂକାର ନେଇ
ପ୍ରାଣୀର ଲିଙ୍ଗ ଶରୀର ଗଢ଼ା ହୋଇ ଥାଇ ।
ପ୍ରଶ୍ନ—ଜୀବାତ୍ମା କହନ୍ତି କା'କୁ କିଏ ସେ ବୋଲାଇ
ମୃତ୍ୟୁପରେ ପ୍ରାଣୀଙ୍କର କି ଅବା ହୁଅଇ ?
ଉତ୍ତର—ଅଷ୍ଟ ପାଶ ବିଜଡ଼ିତ ହେଲେ ଆତ୍ମାରାମ
ଜୀବାତ୍ମା ବୋଲିଣ ତାର ହୁଅଇ ଯେ ନାମ ।
ମୃତ୍ୟୁକାଳେ ପ୍ରାଣୀଙ୍କର ଭାବନା ଯେପରି
ଗୀତାମତେ ପୁନର୍ଜନ୍ମ ହୁଅଇ ସେପରି ।
ମୃତ୍ୟୁକାଳେ ମୃଗଚିନ୍ତା କରିଣ ଭରତ
ମୃଗ ହୋଇ ଜନ୍ମିଥିଲେ ସେହି ନରନାଥ ।
ସେହେତୁ ଈଶ୍ୱର ଲାଭ କରିବା ନିମନ୍ତେ
ସାଧନ ଭଜନ ଆଦି ଆବଶ୍ୟକ ଏତେ ।
ଦିନରାତି ବିଭୁଙ୍କର ଚିନ୍ତା କରୁଥିଲେ
ସେ ଚିନ୍ତା ଆସିବ ମୃତ୍ୟୁବେଳେ ଅବହେଳେ
ପ୍ରଶ୍ନ—ବିଷୟେ ପ୍ରତି ବୈରାଗ୍ୟ ହୁଅଇ କିମ୍ପାଇ
ସେଥିର ମରମ କିଛି ବୁଝି ନ ପାରଇ ।
ଉତ୍ତର—ସତ୍ୟ ନିତ୍ୟ ବସ୍ତୁ ଏକ ବ୍ରହ୍ମ ସନାତନ
ଅନିତ୍ୟ ଅସତ ବସ୍ତୁ ଏ ସଂସାର ଜାଣ ।
ମାୟାରେ ଜଡ଼ିତ ହୋଇ ପ୍ରାଣୀମାନଙ୍କର
ଅସତକୁ ସତ ବୋଧ ହୁଏ ନିରନ୍ତର ।
ସତକୁ ଅସତ ପୁଣି ଭାବି ସେହିମତେ
ତଦନୁରୂପ କରମ କରନ୍ତି ନିରତେ ।
ମାୟାମୋହ ବୋଲି ଯାକୁ ଶାସ୍ତ୍ରରେ ବୋଲଇ
ସତ୍‌ଜ୍ଞାନ ଜନମିଲେ ବୈରାଗ୍ୟ ଆସଇ ।
ପ୍ରଶ୍ନ—ନିରତେ କରୁଛି ନାନା ଶାସ୍ତ୍ର ଅଧ୍ୟୟନ
ଧାରଣା ହୁଅଇ ନାହିଁ ତାହା କି କାରଣ ?
ଉତ୍ତର—ସାଧନ ବିହୀନ ହୋଇ କଲେକ ପଠନ
ବୃଥା ଶ୍ରମ ହୁଏ, ତାର ଫଳ ନ ଫଳଣ ।

'ସ୍ୱର୍ଗ' 'ସ୍ୱର୍ଗ' ବୋଲି ଯେତେ କଲେକ ଚିତ୍କାର
ଅନୁଭବ ନ ହୁଅଇ ମାଦକତା ତାର ।
ନିଶା ଅନୁଭୂତ ଯଦି କାମନା ଅନ୍ତରେ
ଘୋରିଘାରି ପିଇଦିଅ କୌଣସି ପ୍ରକାରେ ।
ଏ ଭବ-ସଂସାର କଣ୍ଟା ତରୁଟି ସମାନ
ହସ୍ତ ଦେଲେ ମାତ୍ରେ ହୁଏ ଶୋଣିତ କ୍ଷରଣ ।
କଣ୍ଟା ନିର୍ମୂଳ କରିବା ଚାହେଁ ଥିଲେ ଆଣ
ଗଛକୁ ଓପାଡ଼ି ନିଆଁ କର ସନ୍ନିବେଶ ।
ଗଛକୁ ଓପାଡ଼ି ତବ ସମ୍ମୁଖରେ ଥୋଇ
ବାରମ୍ବାର ବଳ ହେଲେ ପୋଡ଼ିଯାରେ ରୁଇ ।
ନ ପୋଡ଼ିବ ସେହି ଗଛ କହୁଣସି କାଳେ
ନିଆଁ ଲଗାଇ ତାହାକୁ ଧ୍ୱଂସ ନ କରିଲେ ।
ଜ୍ଞାନାଗ୍ନି କୌଣସି ରୂପେ କରି ଆହରଣ
ଦଗ୍ଧ କର ଏ ସଂସାର-କଣ୍ଟକ ତେସନ ।
ସାଧନାବସ୍ଥାରେ ଯେତୁ କରିଥାଏ ଶ୍ରମ
ଈଶ୍ୱର ଦର୍ଶନ ପ୍ରାପ୍ତି ତାହାର ସୁଗମ ।
ବାଙ୍କ କାଟି ଅନୁକୂଳ ପବନ ବହିଲେ
ତା ପ୍ରଭାବେ ବହିଯାଏ ତରି ଅବହେଳେ ।
ମୋଟା କାଚ ଦେଖାଇଲେ ସୂର୍ଯ୍ୟଙ୍କ କିରଣେ
କାଗଜାଦି ପୋଡ଼ିଯାଏ ତହିଁରେ ତକ୍ଷଣେ ।
ମେଘାଚ୍ଛନ୍ନ ହେଲେ ପୁଣି ସେହି ଦିବାକର
ଶକତ ନ ଥାଏ ତାର କହୁଁତ ମାତର ।
କାମିନୀକାଞ୍ଚନ ତଥା ମେଘମାଳ ପରି
ଜ୍ଞାନ-ସୂର୍ଯ୍ୟଙ୍କୁ କିରଣେ ରଖିଛି ଆବୋରି ।
କାମିନୀକାଞ୍ଚନ ତେଜି ତପସ୍ୟାଦି କଲେ
ଜ୍ଞାନସୂର୍ଯ୍ୟ ପ୍ରତିଭାତ ହୃଦୟ କମଳେ ।
ଅବିଦ୍ୟାଦି ଅହଂକାର ଚାହେଁ ଯାହା ଥାଏ
ସମୂଳେ ତାହାକୁ ଦଣ୍ଡେ ଦଗ୍ଧ କରିଦିଏ ।
ପ୍ରଶ୍ନ—କାହ୍ନବୀ ଗର୍ଭରେ ଯେତୁ ଶରୀର ତେଜଇ
ସେତୁ କି କେବଳ ଭବେ ମୁକତି ଲଭଇ ?
ଉତ୍ତର—ଜ୍ଞାନ ହେଲେ ପ୍ରାଣୀଙ୍କର ହୁଅଇ ମୁକତି
ଯେଉଁଠାରେ ମୃତ୍ୟୁ ହେଉ, ତହିଁ ନାହିଁ କ୍ଷତି ।

ପ୍ରଶ୍ନ—କାଶୀଧାମେ ବାସ କରି ମୃତ୍ୟୁ ହୁଏ ଯାର
ମୁକତି ଲଭଇ ସେହି କିବା ହେତୁ ତାର ।
ଉତ୍ତର—ମୃତ୍ୟୁକାଳେ ମହେଶ୍ୱର ସେହି ସ୍ଥାନଟିରେ
ପ୍ରାଣୀ ପାଶେ ଉଭା ହୋଇ ସାକାର ରୂପରେ ।
କହନ୍ତି ଭକତ ଚିତ୍ତ ତୋଷିବା କାରଣ
ଏ ସାକାର ରୂପ ମୋର କର ହେ ଦର୍ଶନ ।
ଅଖଣ୍ଡ ସଚ୍ଚିଦାନନ୍ଦ ମୋହର ସ୍ୱରୂପ
ଦେଖ ଦେଖ ଲୀନ ତହିଁ ଏ ସାକାର ରୂପ ।
କହୁଁ କହୁଁ ଏ ପ୍ରକାରେ କାଶୀ ବିଶ୍ୱନାଥ
ନିମିଷ ମଧ୍ୟରେ ହୁଅନ୍ତି ଯେ ଅନ୍ତର୍ହିତ ।
ଚଣ୍ଡାଳ ଲଭଇ ଯଦି ପ୍ରକୃତରେ ଭକ୍ତି
ପୁରାଣମତେ ନିଶ୍ଚୟ ଲଭଇ ସେ ମୁକ୍ତି ।
ନାମଜପ ଏ ମତରେ ଅଟଇ ପ୍ରଶସ୍ତ
ଆବଶ୍ୟକ ନାହିଁ ଯାଗଯଜ୍ଞାଦି ସମସ୍ତ ।
ବେଦମତ କିନ୍ତୁ ଅଟେ ସମ୍ପୂର୍ଣ୍ଣ ପୃଥକ
ଯାଗଯଜ୍ଞ ତନ୍ତ୍ରମନ୍ତ୍ର ତହିଁ ଆବଶ୍ୟକ ।
ବିଧିମତେ ନ କରିଲେ ମନ୍ତ୍ର ଉଚ୍ଚାରଣ
ଦେବାଦେବୀ ନ କରନ୍ତି ସେ ପୂଜା ଗ୍ରହଣ ।
ବିଧି ସହ କର୍ମ-ଅନୁଷ୍ଠାନ କଳିକାଳେ
ସହଜ ନୁହଇ ପ୍ରାଣୀ ପକ୍ଷେ କେତେବେଳେ ।
ଅନ୍ନଗତ ପ୍ରାଣ ଏବେ ଅଟନ୍ତି ମାନବେ
କର୍ମ କରିବାକୁ ବେଳ କାହୁଁ ବା ପାଇବେ,
ଦଶମୂଳାଦି ପାଚନ କରୁ କରୁ ଏଣେ
ଶମନ ସଦନେ ରୋଗୀ ଯିବା ପ୍ରାପ୍ତ ତେଣେ ।
"ଫିବର ମିକ୍ସ୍ଚର" ତେଣୁ ବ୍ୟବସ୍ଥା ଏକାଳେ
ଗତ୍ୟନ୍ତର ନାହିଁ ଆଉ ତାକୁ ଛାଡ଼ିଦେଲେ ।
ସେ ହେତୁ ପ୍ରଶସ୍ତ ଏବେ ନାରଦୀୟ ଭକ୍ତି
ଭଜନେ କୀର୍ତ୍ତନେ ନାମ ହେବ ଗତିମୁକ୍ତି ।
ରାମକୃଷ୍ଣ-ଲୀଳାମୃତ ଅମିୟ ଲହରୀ
ଗାଅ ମନ ଭଜ ମନ ଦିବା ବିଭାବରୀ ।
ପାଇବୁ ଅମୂଲ୍ୟ ରତ୍ନ ପୂରିବ ତୋ ଆଶ
କପାଳି ହେଉଛୁ ଆରେ ଏପରି ହତାଶ ।

# ଅଷ୍ଟମ ଅଧ୍ୟାୟ

## ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କ ଦର୍ଶନ ନିମନ୍ତେ ଦକ୍ଷିଣେଶ୍ୱର ମନ୍ଦିରରେ କେଶବଚନ୍ଦ୍ର ସେନଙ୍କ ଆଗମନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ପତି
ଅପାର କରୁଣାସିନ୍ଧୁ ଅଗତିର ଗତି ।
ରାମକୃଷ୍ଣ ଗୁଣଗାଥା ସୁଧା ପାରାବାର
ଏ ମର୍ତ୍ତ୍ୟମଣ୍ଡଳେ ନାହିଁ ତାର ପଟାନ୍ତର ।
ଭକ୍ତ ସବୁ ଶୁଣ ସେହି ମଧୁର ଆଖ୍ୟାନ
ଶ୍ରୀ ଗୁରୁଚରଣ ଭଜ ଚିତ୍ତେ ଅନୁକ୍ଷଣ ।
କେଶବଙ୍କ ସଙ୍ଗେ କ୍ରୀଡ଼ା ହେଲା ଯେ ପ୍ରକାର
ଶ୍ରବଣେ କୀର୍ତ୍ତନେ ଚିତ୍ତେ ଭକତି ସଞ୍ଚାର ।
ବ୍ରାହ୍ମଧର୍ମ-ଅବଲମ୍ବୀ ଶ୍ରୀ କେଶବ ସେନ
ଅତି ଗଣ୍ୟମାନ୍ୟ ବ୍ୟକ୍ତି ସାଧୁ ମହାଜନ ।
ବୈଦ୍ୟ ବ୍ରାହ୍ମଣ ବଂଶରେ ଜନମ ତାଙ୍କର
ପିତୃଗଣ କୃଷ୍ଣଭକ୍ତ ଥିଲେ ବରାବର ।
ବଂଶଗତ ଧର୍ମ ପ୍ରତି ଅନ୍ତରେ ଅପ୍ରୀତି
ବାଲ୍ୟାବଧି ହୃଷ୍ଟ ସଦା ସ୍ୱତନ୍ତ୍ର ପ୍ରକୃତି ।
ଭାରତେ ଇଂରାଜୀ ଭାଷା ଏକାଳେ ଚଳନ
ଉଚ୍ଚ ବିଦ୍ୟାଳୟେ କଲେ ତାହା ଅଧ୍ୟୟନ ।
ବିଶେଷ ବ୍ୟୁତ୍ପତ୍ତି ଲଭ କରି ସେ ଭାଷାରେ
ଖ୍ରୀଷ୍ଟଧର୍ମେ ଅନୁରାଗ ବଢ଼ିଲା ଚିତ୍ତରେ ।
ବାଇବେଲ ଆଦି ନାନା ଧରମ ପୁସ୍ତକ
ଅଧ୍ୟୟନ କରିବାରେ ହୋଇଲେ ଉତ୍ସୁକ ।
ସେ ସକଳ ପାଠ କରି ଧରମ ଦିଗରେ
କ୍ରମେ କ୍ରମେ ଆକର୍ଷିତ ମନ ବିଶେଷରେ ।
ଅନ୍ୟାନ୍ୟ ବହୁତ ଗ୍ରନ୍ଥ ପଢ଼ି ତା ସହିତ
ତତ୍ତ୍ୱ ଅନ୍ୱେଷଣେ ଏବେ ନିମଜ୍ଜିଲେ ଚିତ୍ତ ।
ସତ୍ୟଲାଭ ଜୀବନରେ ଘଟିବ କୀଦୃଶ
ଅନୁରାଗେ ପ୍ରାର୍ଥନା ସେ କଲେ ବିଭୁ ପାଶ ।
ଆପଣେ ଶାସନ କରି ସୂକ୍ଷ୍ମ ବୁଦ୍ଧି ବଳେ
ବିଭୁପାଦେ ଭକ୍ତିପାଇଁ ଯତ୍ନବାନ ହେଲେ ।
ଧୀରସ୍ଥିର ବୁଦ୍ଧି ତାଙ୍କ ଅକପଟ ମତି
ବନିଭାବ ପରି ଶୂନ୍ୟ ସରଳପ୍ରକୃତି ।
ଅଲ୍ପଭାଷୀ ମିଷ୍ଟଭାଷୀ ନିରଜନପ୍ରିୟ
ଅସହ୍ୟ ମଣିଲେ ଯେତେ ସଂସାର ବିଷୟ ।
ସହାଧ୍ୟାୟୀ ପ୍ରିୟ ବନ୍ଧୁ ସମସ୍ତଙ୍କ ପାଶ
ମନୋଗତ ଧର୍ମଭାବ କଲେକ ପ୍ରକାଶ ।
କିଏ ବା ବୁଝିବ ସେହି ଗୂଢ଼ତତ୍ତ୍ୱ କଥା
ବୁଦ୍ଧିବଳେ ସମକକ୍ଷ ନୋହିଲେ ସର୍ବଥା ।
ତୀବ୍ର ବୈରାଗ୍ୟ ଆଉ ବିବେକ କାହାଣୀ
ବିପରୀତ ବୁଝିଥାନ୍ତି ସାଂସାରିକ ପ୍ରାଣୀ ।
ଅନ୍ତରର ଭାବ କେହି ବୁଝି ନ ପାରିଣ
ଉପହାସ ଛଳେ ତାହା ଦେଲେ ଉଡ଼ାଇଣ ।
ବସ୍ତ୍ରମଧ୍ୟେ କେତେଦିନ ବହ୍ନି ଲୁଚିଥିବ
ନିଜ ତେଜେ ପ୍ରତିଭାତ ଆପଣେ କେଶବ ।
ନାନା ଜାତି ନାନା ଧର୍ମ ଭାରତେ ପ୍ରଚୁର
ନାନା ସମ୍ପ୍ରଦାୟେ ଭକ୍ତ ବିବିଧ ଆଚାର ।
ସର୍ବେ ଗାଉଛନ୍ତି ନିଜ ନିଜର ପ୍ରାଧାନ୍ୟ
ଅନ୍ୟାନ୍ୟ ଧର୍ମକୁ କରି ଅତି ତୁଚ୍ଛ ଜ୍ଞାନ ।
ଶ୍ୱେତଦ୍ୱୀପ ଅଧିବାସୀ ମିଶନେରୀ କୁଳେ
ଏ ସମୟେ ଏ ଭାରତେ ଆସି ଦଳେ ଦଳେ,
ଖ୍ରୀଷ୍ଟଧର୍ମ ପ୍ରଚାରିଲେ ଅତୀବ ଦମ୍ଭରେ
ବହୁ ହିନ୍ଦୁ ପରିବାର ମଜ୍ଜିଲେ ତହିଁରେ ।
ଏମନ୍ତ ଦର୍ଶନ କରି ଶ୍ରୀରାମମୋହନ
ବ୍ରାହ୍ମ ନାମେ ନବ ଧର୍ମ କଲେ ଉଦ୍ଭାବନ ।
ବହୁଶାସ୍ତ୍ର ପାରଦର୍ଶୀ ବ୍ରାହ୍ମଣ କୁମର
ବିଦ୍ୟାବୁଦ୍ଧି ବଳେ କଲେ ସେ ଧର୍ମ ପ୍ରଚାର ।
ବେଦାନ୍ତ ଭିତ୍ତିରେ ଗଢ଼ା ସେ ଧରମ ମତ
ଖ୍ରୀଷ୍ଟିୟାନୀ ଆଚାରାଦି ସଂଯୁକ୍ତ ବହୁତ ।
ଦିନୁ ଦିନୁ ହୋଇଲା ଯେ ଏହାର ଉନ୍ନତି
ବହୁ ହିନ୍ଦୁ ପରିବାର ଗଲେ ତହିଁ ମାତି ।
ତାଙ୍କ ପରେ ନେତା ହେଲେ ଦେବେନ୍ଦ୍ରଠାକୁର
ଧନୀ ମାନୀ ଗଣ୍ୟବ୍ୟକ୍ତି ସହର ମଧ୍ୟର ।
ତାଙ୍କ ଗୁଣେ ମୁଗ୍ଧ ହୋଇ ଶ୍ରୀ କେଶବ ସେନ
ଯୋଗଦେଲେ ସେ ସମାଜେ ଆସିଣ ବହନ ।
ଉତ୍ତର-ରଥେ ସାରଥି ଅର୍ଜୁନ ଯେପରି
ଦେବେନ୍ଦ୍ର କେଶବ ଯୋଗ ଘଟିଲା ସେପରି ।

କିବା ଏହି ବ୍ରାହ୍ମ ଧର୍ମ, କିବା ତା ଉଦ୍ଦେଶ୍ୟ
ସାବଧାନେ ଶୁଣ ମନ କରି ସନ୍ନିବେଶ ।
ନିତ୍ୟ ନିରଞ୍ଜନ ବିଭୁ ସତ୍ୟ ସନାତନ
ନିର୍ଗୁଣ ଅଚିନ୍ତ୍ୟ କିନ୍ତୁ ଆକାର ବିହୀନ ।
ପୁରୁଷପ୍ରଧାନ ସେହି ବିଶ୍ୱ ଚରାଚରେ
ପୂର୍ଣ୍ଣବ୍ରହ୍ମ ନିତ୍ୟାନନ୍ଦ ବ୍ୟାପ୍ତ ସବୁଠାରେ ।
ଇନ୍ଦ୍ରିୟ ବିହୀନ କିନ୍ତୁ ନୁହନ୍ତି ନିଷ୍କ୍ରିୟ
ବ୍ରହ୍ମାଣ୍ଡେ କରନ୍ତି ସୃଷ୍ଟିପାଳନ ପ୍ରଳୟ ।
ଅଖଣ୍ଡ ଅନାଦି ବିଭୁ ସର୍ବ ଶକ୍ତିମନ୍ତ
ମୁକ୍ତିଦାନ ଅନ୍ତଃଶୂନ୍ୟ ସର୍ବ ଗୁଣବନ୍ତ ।
ନ୍ୟାୟ ପରାୟଣ ସେହି ମଙ୍ଗଳ ନିଧାନ
ବ୍ରାହ୍ମମତେ ନିରାକାର ବ୍ରହ୍ମଟି ଏସନ ।
ସାକାର ମତରେ ଯାଙ୍କ ନ ଥାଏ ବିଶ୍ୱାସ
ସେ ମତାବଲମ୍ବୀ ପ୍ରତି ଅଶ୍ରଦ୍ଧା ବିଶେଷ ।
ଏ ମତରେ ଶ୍ରୀ କେଶବ ହୋଇଣ ଦୀକ୍ଷିତ
କର୍ତ୍ତବ୍ୟାନୁରୋଧେ ଏବେ ପ୍ରଚାରେ ଉଦ୍ୟତ ।
ନାନା ସ୍ଥାନେ କହି କହି ଧର୍ମ ପ୍ରସଙ୍ଗରେ
କହିବାର ଶକ୍ତିବୃଦ୍ଧି ହେଲା ଧୀରେ ଧୀରେ ।
ସୁବକ୍ତା ବୋଲିଣ ଖ୍ୟାତି ରଟିଲା ଚୌଦିଗେ
ମସ୍ତକ ନୋଇଁଲେ ସର୍ବେ ତାହାଙ୍କର ଆଗେ ।
ଇଂରାଜୀରେ ତେଜ ପୂର୍ଣ୍ଣ ବକ୍ତୃତା ଶୁଣିଣ
ଚମକି ଉଠିଲେ ଶ୍ୱେତ ମିଶନେରୀଗଣ ।
ଯୁକ୍ତିପୂର୍ଣ୍ଣ ତାହାଙ୍କର ବକ୍ତୃତା ଏପରି
ପ୍ରତିବାଦେ ନ ରହିଲା ଶକତି କାହାରି ।
ସ୍ୱଭାବ ଯେମନ୍ତ ଶାନ୍ତ, କଥା ତଦବତ
ମଧୁରତା ପରିପୂର୍ଣ୍ଣ ତାହା ଅବିରତ ।
ଥରେ ମାତ୍ର ଯେ ଶୁଣିଛି ବକ୍ତୃତା ତାଙ୍କର
ବାରମ୍ବାର ଶୁଣିବାକୁ ଅଭିଳାଷ ତାର ।
ମଞ୍ଚେ ଛିଡ଼ା ହୋଇ ଯେବେ ଦିଅନ୍ତି ବକ୍ତୃତା
ଉଦ୍‌ଗାରନ୍ତି ତରଳାଗ୍ନି ସମ ସେହି କଥା ।
ଅନର୍ଗଳ ବହିଯାଏ ମୁଖୁଁ ବାକ୍ୟଧାର
ମନେହୁଏ ବାଗ୍‌ଦେବୀଙ୍କ ବରପୁତ୍ର ପରା ।
ସ୍ୱଭାବ ଚରିତ୍ର ନାନା ସଦ୍‌ଗୁଣେ ମଣ୍ଡିତ
ଦେଖିଲେକ ମନେହୁଏ ଈଶ୍ୱର ପ୍ରେରିତ ।
ବିଶ୍ୱବିଦ୍ୟାଳୟେ ଉଚ୍ଚ ଶିକ୍ଷାର୍ଥୀ ନିଚୟ,
ସମ୍ଭ୍ରାନ୍ତବଂଶଜ ଜମିଦାରଙ୍କ ତନୟ ।
ରାଜ ଦରବାରେ ବହୁ କର୍ମଚାରୀଗଣ
କେଶବଙ୍କ ସେ ବକ୍ତୃତା ଶ୍ରବଣ କରିଣ,
ବଂଶଗତ ଜାତି ଧର୍ମେ ଦେଇ ଜଳାଞ୍ଜଳି
ତାଙ୍କ ଦଳଭୁକ୍ତ ହେଲେ ଘେନି ପଦଧୂଳି ।
ବହୁ ଜ୍ଞାନୀ ଧନୀଜନ ଭେଟିଣ ଏସନେ
କେଶବଙ୍କ ଦଳପୁଷ୍ଟ କଲେ ଦିନେ ଦିନେ ।
ଦଳର ଆକାର କ୍ରମେ ବଢ଼ିଲା ଯେପରି
ନାନା ସ୍ଥାନେ ହେଲା ଶାଖା ସମିତି ତାହାରି ।
ଉପଯୁକ୍ତ ପ୍ରଚାରକ ସେଠାକୁ ପ୍ରେରଣ
ବ୍ରାହ୍ମଧର୍ମ ମୁଖୋଜ୍ଜ୍ୱଳ କଲେ ଯେ ଏସନ ।
କେତେବେଳେ ଦାଣ୍ଡେହାଟେ କୀର୍ତ୍ତନେ ଉନ୍ମତ୍ତ
କେବେ ବା ସମାଜେ ବସି ଭଜନରେ ରତ ।
କେତେବେଳେ ଆସି ପୁଣ ଭକ୍ତଙ୍କ ଆବାସେ
ମହୋତ୍ସବ ସମ୍ପାଦନ୍ତି ଦିବସ ବିଶେଷେ ।
ଦେଶ ବିଦେଶେ କ୍ରମଶଃ ମାହାତ୍ମ୍ୟ ପ୍ରଚାର
ବକ୍ତୃତା କାରଣେ ଗଲେ ଲଣ୍ଡନ ସହର ।
ଉପସ୍ଥିତ ତ୍ୟାଗୀମାନେ ସଂଖ୍ୟାର ଅତୀତ
ବକ୍ତୃତା ଶୁଣିବା ପାଇଁ ହେଲେ ପ୍ରଧାବିତ ।
ଅନେକେ ଆସିଣ ପୁଣି ତାଙ୍କର ସଦନେ
କଥୋପକଥନ କରି ଅତି ତୋଷ ମନେ ।
ରାଣୀ ଭିକ୍ଟୋରିଆ ବ୍ରିଟେନର ଅଧୀଶ୍ୱରୀ
ଖବର କାଗଜେ ତାଙ୍କ ଖ୍ୟାତି ପାଠକରି ।
ରାଜ ପ୍ରାସାଦକୁ ତାଙ୍କୁ ନିମନ୍ତ୍ରି ଆଣିଣ
ଆଦର ସହିତେ ଦେଲେ ସମାନ ଆସନ ।
ଧୀର ଚିତ୍ତେ ହେଜ ଏବେ ସାଧୁ ମହାଜନେ
କେତେ ବଡ଼ ଶକ୍ତିଶାଳୀ ଶ୍ରୀକେଶବ ସେନେ ।
ବେଲ ଘର ଉଦ୍ୟାନରେ କେଶବ ସହିତେ
ଦେବରାୟ ଗଲେ ଯେବେ ଦର୍ଶନ ନିମିତ୍ତେ ।
ସେ କାଳେ ସୌଭାଗ୍ୟ ରବି ଉଇଁଲା ତାଙ୍କର
କେଶବଙ୍କ ପାଦେ ମୋର କୋଟି ନମସ୍କାର ।
କଥୋପକଥନ କରି ପ୍ରଭୁ ସଙ୍ଗତରେ
କେଶବଙ୍କ ମନ ପ୍ରାଣ ଆକୃଷ୍ଟ ତହିଁରେ ।
ଜ୍ଞାନ ଚଇତନ୍ୟ ଏବେ ହୃଦାକାଶେ ସ୍ଫୁଟ
ପୁନଶ୍ଚ ଦର୍ଶନ ପାଇଁ ବ୍ୟଗ୍ର କଲା ଅତି ।
ଜାଣିବାକୁ ଦେବଙ୍କର ଭିତରି ଖବର
ବାଛି ବାଛି ଦୁଇ ଶିଷ୍ୟ ପ୍ରେରିଲେ ସତ୍ୱର ।
ସେ ସରବେ ପ୍ରବେଶିଣ ଦକ୍ଷିଣେଶ୍ୱରରେ
ଦିନକୟ ଅବସ୍ଥାନ କଲେ ସେହିଠାରେ ।

ସଦାବେଳେ ପ୍ରଭୁଙ୍କର ସଙ୍ଗେ ସଙ୍ଗେ ରହି
କାର୍ଯ୍ୟକଳାପ ତାଙ୍କର ନିରେଖିଲେ ତହିଁ ।
ଅନନ୍ତ ଭାବ ଆଧାର ପ୍ରଭୁ ଚିନ୍ତାମଣି
ତାଙ୍କୁ ବା ବୁଝିବେ କ'ଣ ସାଧାରଣ ପ୍ରାଣୀ ।
ଯେ କ୍ଷଣେ ଯେ ଭାବ ଚିତ୍ତେ ହୁଅଇ ଉଦିତ
କାର୍ଯ୍ୟକଳାପଟି ସେହି ତଥା ଆଚରିତ ।
କେତେବେଳେ ଗଙ୍ଗାଧର ମହେଶଙ୍କ ନାମ
କେତେବେଳେ ପୁଣି ସୀତାରାମ ସୀତାରାମ ।
ରାଧାକୃଷ୍ଣ କହୁ କହୁ ପୁଣି କେତେବେଳେ
ଆନନ୍ଦାଶ୍ରୁ ବହିମାନ ନେତ୍ରୁଁ ଅବିରଳେ ।
ଭକ୍ତଭାବେ କେତେବେଳେ ଶ୍ୟାମା ସ୍ତୁତି ଗାନ୍ତି
କେବେ ପୁଣି ତାଙ୍କୁ ଗାଳି ଗୁଲଜ କରନ୍ତି ।
ବ୍ୟାକୁଳ ହୃଦୟେ କେବେ ଶିଶୁଙ୍କ ସମାନ
ଶ୍ୟାମା ଶ୍ୟାମା ବୋଲି କେତେ କରନ୍ତି ରୋଦନ ।
ଗଉର ନିତାଇ କହି ପୁଣି କେତେବେଳେ
ତାଳଦେଇ ନାଚନ୍ତି ଯେ ଆନନ୍ଦ ହିଲ୍ଲୋଳେ ।
ସମାଧିରେ ମଜ୍ଜି କେବେ ଦେହ ଭାବ ଶୂନ୍ୟ
କାୟା ପଡ଼ି ରହେ ମୃତ ପିଣ୍ଡଟି ଯେସନ ।
ଶ୍ୟାମା ଶ୍ୟାମା ନାମ କେବେ ଏକତ୍ରେ ମିଳାଇ
ଗାବନ୍ତି ମଧୁର ଗୀତ ଭାବାବିଷ୍ଟ ହୋଇ ।
କେତେବେଳେ ବସ୍ତ୍ରଦ୍ୱାରା ଗାତ୍ର ଆଚ୍ଛାଦନ
କେବେ ବା ଉଲଙ୍ଗ ପୁଣି ବାଳକ ସମାନ ।
କୋମଳ ଶଯ୍ୟାରେ କେବେ ପଲଙ୍କେ ଶାୟିତ
କେବେ ବା ଭୂତଳେ ପଡ଼ି ଧୂଳି ଧୂସରିତ ।
ଭାଗ୍ୟବନ୍ତ କେଶବଙ୍କ ଶିଷ୍ୟ ତିନି ଜଣ
ଏମନ୍ତ ବିବିଧ ଭାବ ଦର୍ଶନ କରିଣ ।
ବହୁତ ବିଚାର କରି କଲେ ଶେଷେ ସ୍ଥିର
ସଦ୍‌ଗୁରୁ ଅଭାବୁଁ ଯାଙ୍କ ଦଶା ଏ ପ୍ରକାର ।
ନିଶ୍ଚୟ ଅଟନ୍ତି ଏହି ସାଧୁ ମହାଜନେ
ଉପଦେଷ୍ଟା ବନ୍ଧୁ ଧନ ହୁଅନ୍ତି ଏସନେ ।
ଆମ୍ଭ ଗୁରୁଙ୍କ ଶିଷ୍ୟତ୍ୱ କଲେକ ସ୍ୱୀକାର
ନିଶ୍ଚୟ ମଙ୍ଗଳ ହେବ ସର୍ବତୋଭାବର ।
ଏ ପ୍ରକାର ପରାମର୍ଶ କରି ଶିଷ୍ୟ ତିନେ
କହିଲେ ଅନ୍ତମେ ଆସି ପ୍ରଭୁ ସନ୍ନିଧାନେ ।
"ଆଚାର୍ଯ୍ୟ ଶ୍ରୀ କେଶବଙ୍କ ଯେବେ ନେବେ ଶରଣ
ଚତୁର୍ବର୍ଗ ଫଳ ତେବେ ଲଭିବେ ଆପଣ ।"
ଏମନ୍ତ ଶୁଣିଣ ଦେବ କରୁଣାସାଗର
ନିମ୍ନଲିଖିତ ସଙ୍ଗୀତେ ଦେଲେ ତା ଉତ୍ତର ।
ଗୀତ—"ଆମାର କି ଫଲେର ଅଭାବ
ତୋରା ଏଲି ବିଫଲ ଫଲ ଯେ ନିୟେ ।
ପେୟେଛି ଯେ ଫଲ ଜନମ ସଫଲ
ରାମକଳ୍ପତରୁ ହୃଦୟେ ରୋପିୟେ ।
ଶ୍ରୀରାମ-କଳ୍ପତରୁ ବୃକ୍ଷ ମୂଲେ ରଇ
ଫଲେର ଯେ ଫଲ ବାଞ୍ଛା କରି
ସେ ଫଲ ପ୍ରାପ୍ତ ହଇ ।
କଥା କଇ, ଏ ଫଲ ଗ୍ରାହକ ନଇ
ଯାବ ତୋଦେର ପ୍ରତିଫଲ ଦିୟେ ।"
ଦ୍ୱିରୁକ୍ତି ନ କରି ଆଉ ଶିଷ୍ୟ ତିନି ଜଣ
ଫେରିଗଲେ ଶ୍ରୀ କେଶବ ଚନ୍ଦ୍ର ସନ୍ନିଧାନ ।
ତିନିହେଁ ଯାଇ ସେହୁ ଯାହା ନିରେଖିଲେ
ଆମୂଳ ବୃତ୍ତାନ୍ତ ତାର ନିବେଦନ କଲେ ।
ନିଜ ତୀକ୍ଷ୍ଣ ବୁଦ୍ଧିବଲେ ଜ୍ଞାନୀ ଶ୍ରୀ କେଶବ
ବୁଝିନେଲେ କ୍ଷଣେ ତାର ମରମ ସରବ ।
ଦର୍ଶନ ନିମିତ୍ତ ଏବେ ହୃଦୟ ବ୍ୟାକୁଳ
ଆଇଲେ ଦକ୍ଷିଣେଶ୍ୱରେ ଘେନି ଶିଷ୍ୟକୁଳ ।
ପ୍ରଭୁଙ୍କୁ ଦେଖି କେଶବ ଯଥା ପୁଲକିତ
କେଶବଙ୍କୁ ପାଇ ତଥା ପ୍ରଭୁ ଆନନ୍ଦିତ ।
ସାକାର ଆଦର ନିରାକାର ଯେଉଁ ରୂପ
ସେ ସବୁର ମୂଳାଧାର ପ୍ରଭୁ ବିଶ୍ୱାଧିପ ।
ସାକାର ମଧ୍ୟରେ ଯେତେ ବିଭିନ୍ନ ଆକାର
ସବୁହିଁ ଅଟଇ ନିଜ ସ୍ୱରୂପ ତାଙ୍କର ।
ନାନା ଦେଶୁଁ ନଦନଦୀ ପ୍ରବାହିତ ହୋଇ
ଅକୂଳ ସାଗରେ ଆସି ଯେସନେ ପଡ଼ଥାଇ ।
ଯେତେ ଯେତେ ଧର୍ମମତ ଭବେ ପ୍ରଚଳିତ
ସବୁର ଆଧାର ସେହି ଚନ୍ଦ୍ରାଙ୍କର ସୁତ ।
ତାଙ୍କଠି ନ ଥାଏ କିଛି ଭିନ୍ନାଭିନ୍ନାଚାର
ଯବନ ଖ୍ରୀଷ୍ଟାନ ହିନ୍ଦୁ ସର୍ବେ ଏକାକାର ।
ସୁବିଶାଳ ତରୁ ଯେସନେ କାନନ ମଧ୍ୟରେ
ଅଗଣ୍ୟ ଶାଖାପ୍ରଶାଖା ଚୌଦିଗେ ବିସ୍ତାରେ ।
ଫଳଫୁଲ ସଯାଦରେ ଦିଶେ ମନୋରମ
ଯେ ପକ୍ଷୀ ଆସଇ ତହିଁ ଲଭଇ ବିଶ୍ରାମ ।
ଆଶ୍ରୟ ଦାତା ଅଟନ୍ତି ତେସନେ ଦେବରାୟେ
ପ୍ରସାରିତ ପଦ୍ମପାଦ କଳ୍ପତରୁ ପ୍ରାୟେ ।
କେଶବଙ୍କୁ ଦରଶନ ମାତ୍ରେ ଦେବଙ୍କର

ଆହ୍ଲାଦରେ ପୂର୍ଣ୍ଣ ହେଲା ହୃଦୟ କନ୍ଦର ।
କେଶବଙ୍କୁ ସମ୍ବୋଧନ କହିଲେ ତା ପରେ
"ଶ୍ୟାମାଙ୍କର ଖାସ କୃପା ଆଜ ତୁମ୍ଭଠାରେ ।
ଶ୍ରୀ ମନ୍ଦିରେ ବିରାଜିତା ଜଗତଜନନୀ
ଦରଶନ କରିଆସ ତାହାଙ୍କୁ ପ୍ରଣମି ।"
କେଶବ କହିଲେ ତହୁଁ ବିନୀତ ସ୍ୱରରେ
"ମନପ୍ରାଣ ସମର୍ପିଛି ବିଶ୍ୱପିତାଠାରେ ।"
ହୃଦଭାବ ଜାଣିପାରି ପ୍ରଭୁ ନାରାୟଣ
ଉତ୍ତରେ କହିଲେ ତାଙ୍କୁ ମଧୁର ବଚନ ।
"କାହା ସ୍ତନପାନ କରି ତୁମ୍ଭର ଏ ଦେହ
ପରିପୁଷ୍ଟ କରିଅଛ ଭାବି ମୋତେ କହ ।
ମାତୃ ସ୍ତନପାନେ ଯଦି ଏ ବପୁ ଗଠିତ
ଆଦ୍ୟମାତା ନ ମାନିବ ତେବେ କି ନିମିତ୍ତ ?
ମାତାଙ୍କୁ ଧରିଣ ଶିଶୁ ଯାନ୍ତି ପିତା ପାଶେ
ସେ ମାତାଙ୍କୁ ତେଜିଅଛ ତୁମ୍ଭେ କି ସକାଶେ ?"
ଭକ୍ତିଭରେ ଶ୍ରୀ ପ୍ରଭୁଙ୍କୁ କହିଲେ କେଶବ
"କିଏ ତବ ମାତା ମୋତେ କହନ୍ତୁ ହେ ଦେବ !"
ଉପଯୁକ୍ତ ପାତ୍ର ପାଇ ପ୍ରଭୁ ବିଶ୍ୱସାଇଁ
ଉତ୍ତରେ କହିଲେ ତହୁଁ କେଶବେ ବୁଝାଇ ।
ବ୍ରହ୍ମାଣ୍ଡଉଦରୀ ମାତା ଜଗତଜନନୀ
ବ୍ରହ୍ମମୟୀ ଶକ୍ତି ସିଦ୍ଧି-ଶାନ୍ତି-ସ୍ୱରୂପିଣୀ ।
ନିର୍ଗୁଣ ନିଷ୍କ୍ରିୟ ବ୍ରହ୍ମ ଇନ୍ଦ୍ରିୟାଦି ପାର
ବିକାର ବିହୀନ ସେହୁ ଆଉ ନିରାକାର ।
ତାଙ୍କଠୁଁ ଉଦ୍ଭୂତ ପ୍ରାଣରୂପା ସେହି ଶକ୍ତି
ବ୍ରହ୍ମରୂପ ଛଡ଼ା ଅନ୍ୟ କିଛୁ ସେ ନୁହନ୍ତି ।
ସ୍ଥିର ସିନ୍ଧୁ ପ୍ରାପ୍ତ ଯେଉଁ ବ୍ରହ୍ମ ପରାତ୍ପର
ତରଙ୍ଗ ଆକାରେ ଶକ୍ତି ଖେଳନ୍ତି ତହିଁର ।
ଶକ୍ତିରେ ବ୍ରହ୍ମାଣ୍ଡ ସୃଷ୍ଟି, ଶକ୍ତି ତାଙ୍କ ବଳ
ତାଙ୍କ ସ୍ଥିତିର ଶକ୍ତିନେ ଶକ୍ତିହିଁ କେବଳ ।
ନିରାକାର ବ୍ରହ୍ମ ଯେଉଁ ବଳ ସାହାଯ୍ୟରେ
ସୃଜନ୍ତି ଏ ଚରାଚର ବିଶ୍ୱ ନିରନ୍ତରେ
ତାହାହିଁ ଶକତି ନାମେ କଥିତ ହୁଅଇ
ଯାହା ଯୋଗୁଁ ସାରା ସୃଷ୍ଟି କାର୍ଯ୍ୟ କରୁଥାଇ ।
ଶକ୍ତିଶୂନ୍ୟ ହେଲେ ବ୍ରହ୍ମ ହୁଅନ୍ତି ନିଷ୍କ୍ରିୟ
ସେକାଳେ ତାଙ୍କର ସ୍ଥିତି ପ୍ରାଣୀଙ୍କ ଦୁର୍ଜ୍ଞେୟ ।
ଶକ୍ତିହିଁ ସମ୍ବଳ ସେହି ବ୍ରହ୍ମ ଦରଶନେ
ପ୍ରତିବିମ୍ବେ ବସ୍ତୁଜ୍ଞାନ ଯେମନ୍ତ ଦର୍ପଣେ ।
ଦର୍ପଣ ସ୍ୱରୂପା ଶକ୍ତି ସାହାଯ୍ୟ ବ୍ୟତୀତ
ଜାଣି ନ ପାରନ୍ତି କେହି ଗୂଢ଼ ବ୍ରହ୍ମତତ୍ତ୍ୱ ।
ଶକ୍ତି ସ୍ୱରୂପିଣୀ ଶ୍ୟାମା ବିରାଟ ମୂରତି
ତାଙ୍କୁ ସୀମାରେ ଆବଦ୍ଧ କରନାହିଁ ଭ୍ରାନ୍ତି ।"
ଶ୍ରୀମୁଖ ବଚନ ଶୁଣି ପୁଛିଲେ କେଶବ
"ତେବେ କିପାଁ କହନ୍ତୁ ହେ ପ୍ରଭୁ ଆଦିଦେବ !
ଅନନ୍ତ ଅପାର ଯେଉଁ ବିରାଟ ମୂରତି
ପ୍ରତିମାରେ ତାଙ୍କୁ ସୀମାବଦ୍ଧ କରିଛନ୍ତି ?"
ଉତ୍ତରେ କହିଲେ ପ୍ରଭୁ କରୁଣା ନିଧାନ
"ପୃଥିବୀରୁ ଦିବାକର ବଡ଼ ବହୁ ଗୁଣ ।
କିନ୍ତୁ ଦୂରେ ଥିବା ହେତୁ ତାହାର ଆକାର
ଥାଳିଆ ସମାନେ ଦୃଷ୍ଟ ହୁଏ ନିରନ୍ତର ।
ଦୂରେ ସ୍ଥିତ ଯୋଗୁଁ ତେଣୁ ବିରାଟ ମୂରତି
ପ୍ରତିମା ଆକାରେ ପ୍ରାଣୀ ରୂପ କଳ୍ପିଛନ୍ତି ।
ସୀମାବଦ୍ଧ ହେଲେ ମଧ୍ୟ ବ୍ରହ୍ମ ଏ ପ୍ରକାରେ
ଆକାରେ ନୁହନ୍ତି କ୍ଷୁଦ୍ର ସେହୁ ପ୍ରକୃତରେ ।
ଆକାର ବିରାଟ ଯଥା, ଦୟା ସେହିପରି
ସତ୍ୟାସତ୍ୟ ବୁଝ ନିଜେ ଥରେ ଭାବିକରି ।
ପିତା ବୋଲି ଡାକିଛ ତ ତାଙ୍କୁ ଏତେକାଳ
ବ୍ରହ୍ମମୟୀ ମାତା ଡାକି ବୁଝ ଫଳାଫଳ ।"
ବାରମ୍ବାର ବନ୍ଦି ଶ୍ରୀ କେଶବ ଚରଣ
ଯାଙ୍କ ସହ ପ୍ରଭୁଙ୍କର ସୌହାର୍ଦ୍ଦ୍ୟ ଏସନ ।
କଥୋପକଥନ କରୁ କରୁ ଏ ପ୍ରକାରେ
ଦିନମଣି ଅସ୍ତାଚଳେ ଗଲେ ଧୀରେ ଧୀରେ ।
ଗୃହେ ଯିବାପାଇଁ ବ୍ୟସ୍ତ ହୋଇ ଶିଷ୍ୟଗଣ
ମନୋଭାବ କେଶବଙ୍କୁ କଲେ ନିବେଦନ ।
ଅତି ଦୀନଜନ ସମ ବିନୀତ ଭାବରେ
ମେଲଣି ମାଗିଲେ ସେହୁ ପ୍ରଭୁଙ୍କ ପଦ୍ମରେ ।
ଶଶବ୍ୟସ୍ତ ହୋଇ ତହୁଁ ପ୍ରଭୁ ନରନାଥ
ଗୋଟିଏ ଠୋଲାରେ ଆଣି ମିଷ୍ଟାନ୍ନ କିଞ୍ଚିତ ।
ସ୍ୱଳପ ସ୍ୱଳପ ସମସ୍ତଙ୍କ ହସ୍ତେ ଦେଇ
ଜଳଯୋଗ କରାଇଲେ ପ୍ରଭୁ ବିଶ୍ୱସାଇଁ ।
ତଦନ୍ତେ ଶିଷ୍ୟଙ୍କ ସହ ଶ୍ରୀ କେଶବସେନ
ବିଦାୟ କଲେକ ଦେବ ଆନନ୍ଦିତ ମନେ ।
ପ୍ରଭୁଙ୍କଠି ଶ୍ରୀ କେଶବ ଆକୃଷ୍ଟ ଏସନ
ଦେହ ଯେନ ନିଜାଳୟେ କଲେହେଁ ଗମନ,
ହୃଦୟ ରହିଲା ଲାଗି ପ୍ରଭୁଙ୍କ ଚରଣେ

ଚୁମ୍ବକାକର୍ଷଣେ ଲୁହା ସ୍ୱଚୀଷ୍ଟି ଯେସନେ ।
ଗୃହେ ରହି ନ ପାରନ୍ତି ଆଉ ସ୍ଥିର ହୋଇ
ଘନ ଘନ ଆତଯାତ ଶିଷ୍ୟଗଣ କଲେ ।
ଅନ୍ୟାନ୍ୟ ଭକ୍ତଙ୍କ କ୍ରମେ ହେଲା ସନ୍ନିବେଶ
ପରେ ପରେ ଗାଇବା ଯେ ସେଥିର ସନ୍ଦେଶ ।
ଶ୍ରୀରାମକୃଷ୍ଣ ଚରିତ ଅମୃତ ଲହରୀ
କେଶବ ବାରତା ଶୁଣ ଚିତ୍ତ ସ୍ଥିର କରି ।
ଦଳବଳ ଘେନି ପୁଣି କେଶବ ପବେଶ
ଚରଣ ଦର୍ଶନ ଲୋଭେ ଏକମାତ୍ର ଆଶ ।
ହସ୍ତେ ଧରି ଆଣିଛନ୍ତି ଦୁଇଗୋଟି ବେଲ
ତହିଁ ସଙ୍ଗେ ଅଛି ପୁଣି ଗୋଟେ ଫୁଲମାଳ ।
ଦର୍ଶନ ମାତ୍ରକେ ପାଦେ ପ୍ରଣାମ କରିଣ
ବେଲ ଆଉ ଫୁଲ କଲେ ଚରଣେ ଅର୍ପଣ ।
କରୁଣାସାଗର ପ୍ରଭୁ ଭବ କର୍ଣ୍ଣଧାର
ଭୂମିଷ୍ଠ ହୋଇଣ କଲେ ପ୍ରତି ନମସ୍କାର ।
ତଦନ୍ତେ କହିଲେ ଦେବ ଶ୍ରୀ କେଶବସେନେ
"ମନ ଧାଏଁ ଆଜ ତବ ବକ୍ତୃତା ଶ୍ରବଣେ ।"
କେଶବ କହିଲେ ତହୁଁ ବିନୀତେ ଉତ୍ତର
"ଏଠାରେ ବକ୍ତୃତା ଦେବା ଧୃଷ୍ଟତା ମାତର ।"
ହସିରେ କହିଲେ ତାଙ୍କୁ ତହୁଁ ପ୍ରଭୁଦେବ
"ଚିତ୍ତେ କେଭେ ନ ଆଣିବ ଏ ପ୍ରକାର ଭାବ ।
ଗଞ୍ଜେଡ଼ିଏ ଧୂମପାନ କରନ୍ତି ଯେକାଳେ
ଦେଖିଥିବ ସେମାନଙ୍କ ରୀତି କେତେବେଳେ ।
ଜଣେ ଦମେ ଟାଣିନେଇ ଚିଲମ ତା ପରେ
ଆଦରେ ବଢ଼ାଇ ଦିଏ ଅନ୍ୟର ହସ୍ତରେ ।
ଭକ୍ତଜନଙ୍କ ସ୍ୱଭାବ ଅଟଇ ତେମନ୍ତ
ସ୍ନେହ ଡୋରେ ପରସ୍ପର ଆବଦ୍ଧ ଅତ୍ୟନ୍ତ ।
କେତେବେଳେ ତୁମ୍ଭେ କହ ହରିଗୁଣ ଗାଥା
ତୋଷିବ ମୋହର ମନ ପ୍ରାଣକୁ ସର୍ବଥା ।
କେତେବେଳେ ଅବା ମୁହିଁ ହରିଗୁଣ ଗାଇ
ତୋଷିବି ତୁମ୍ଭର ମନପ୍ରାଣ ହରି ନେଇ ।
କେସନ ଅଟଇ ମୋର ମନର ସ୍ୱଭାବ
ଦୃଷ୍ଟାନ୍ତେ ବୁଝାଇ କହେଁ ଶୁଣ ହେ କେଶବ !
ତେଲଙ୍ଗୀ ବାଜାରେ ଥାଏ ଦୁଇଟି କାହାଳି
ଗୋଟେ ଏକସୁରା, ଅନ୍ୟେ ସାତସ୍ୱରା କେଳି ।
ବ୍ରହ୍ମ ବ୍ରହ୍ମ ହେବ କହିଁ ଧରି ଏକସୁର
ସାତସୁର ନଳୀ ମୁହିଁ ଧରିଣ ହସ୍ତର ।

ଶାନ୍ତଦାସ୍ୟ ସଖ୍ୟ ଆଦି ସବୁ ଭାବ ଘେନି
ଭଜିବ ହରଷେ ମୁହିଁ ପ୍ରଭୁ ଚିନ୍ତାମଣି ।
ସଚ୍ଚିଦାନନ୍ଦ ସାଗରେ ବୁଡ଼ି ଅନୁକ୍ଷଣ
ବିଳାସ କରିବ ତହିଁ ମୋ ଭାବ ଏସନ ।"
ଶ୍ରୀମୁଖ ବଚନ ଶୁଣି କେଶବ ସ୍ତମ୍ଭିତ
ଜ୍ଞାନଭକ୍ତି ଏକତ୍ରରେ ଯହିଁ ସମ୍ମିଳିତ ।
କେଶବ କହିଲେ ଧୀରେ ପ୍ରଭୁ ମୁଖ ଚାହିଁ
"ଗୋପନରେ କେତେ ଦିନ ଥିବ ଆଉ ରହି ।
କ୍ରମେ କ୍ରମେ ଏ ସ୍ଥାନରେ ଜମି ଲୋକଗଣ
ଲୋକେ ଲୋକାରଣ୍ୟ ହେବ ଏହି ପୂତସ୍ଥାନ ।"
କେଶବ ବଚନ ଶୁଣି କହିଲେ ଶ୍ରୀହରି
"ଲୋକଙ୍କର କୋଳାହଳ ଡରଇ ମୁଁ ଭାରି ।
ଖାଇପିଇ ସୁଖେ ଥାଏଁ ଶମ୍ଭୁନାମ ଗୁଣି
ଆଉର କୌଣସି ଚିନ୍ତା ସଂସାରେ ନ ଜାଣି ।
ଭକ୍ତ ହନୁମନ୍ତ ଯଦା କହିଥିଲେ ଥରେ
ରାମନାମ ଚିନ୍ତଇ ମୁଁ ହରଷେ ଅନ୍ତରେ ।
ବାର ତିଥି ନକ୍ଷତ୍ରାଦି ଏ ସବୁ ବିଷୟ
ସମ୍ପୂର୍ଣ୍ଣ ରୂପରେ ମୋର ଅଟଇ ଅଜ୍ଞେୟ ।
ମୋହର ସ୍ୱଭାବ ମଧ୍ୟ ଅଟେ ସେହିପରି
ସାର ମାତ୍ର ବ୍ରହ୍ମବସ୍ତୁ ଚିତ୍ତେ ଦୃଢ଼େ ଧରି ।
ଲେକଚର ଡାକହାକ ଧରମ ପ୍ରଚାର
ଅଜ୍ଞାତ ଅଟଇ ମୋର ଏ ସବୁ ବ୍ୟାପାର ।"
"ସେ ଭାର ନେଉଛୁ ମୁହିଁ" କେଶବ ଭାଷିଲେ
"ସର୍ବେ ଆସି ରୁଣ୍ଡ ହେବେ ଏଠି ଯଥାକାଳେ ।"
କେଶବ ବଚନ ଶୁଣି କହିଲେ ଶ୍ରୀଦେବ
"କେଶୁଠାରୁ ହୀନ ମୁହିଁ ନଗଣ୍ୟ ମାନବ ।
ଦୟା କରି ନିଜେ ଯେହୁ ଆସିବେ ଏ ସ୍ଥାନେ
ପରିଚୟ ଦେବେ ତାଙ୍କ ଉଦାରତା ଗୁଣେ ।"
କେଶବ କହିଲେ "ଯାହା କହନ୍ତୁ ଆପଣ
ବିଫଳ ନୋହିବ ତବ ମର୍ତ୍ତ୍ୟେ ଆଗମନ ।"
ଏ ପ୍ରକାରେ କିଛୁକାଳ ହୋଇଲା ଅତୀତ
ତା ପରେ ଗାଇଲେ ଦେବ କୀର୍ତ୍ତନ ସଙ୍ଗୀତ ।
(ଗୀତ) "ହରିନାମ ନମ୍‌ରେ ଜୀବ ଯଦି ସୁଖେ ଥାକ୍‌ବ
ସୁଖେ ଥାକ୍‌ବ ବୈକୁଣ୍ଠେ ଯାବ ।
ଓରେ ମୋକ୍ଷରସ ସଦା ପାବ ।
(ହରିନାମ ଗୁଣେରେ)

ଯେ ନାମ୍ ଶିବ୍ ଜପେନ୍ ପଞ୍ଚମୁଖେ
ଆଜି ସେହି ହରିନାମ୍ ଦିବ ତୋକେ ।"
ଗୀତ ଗାଇ ଗାଇ ଦେବ ଉନ୍ମତ୍ତ ହୋଇଣ
ନୃତ୍ୟ କରି କ୍ଷଣମଧ୍ୟେ ସମାଧିରେ ମଗ୍ନ ।
କିଛୁକ୍ଷଣ ପରେ ଦେହେ ଚେତା ଆସିଲାରୁ
ଭାଷିଲେ ମଙ୍ଗଳ ବାଣୀ ପ୍ରଭୁ ଜଗଦ୍‌ଗୁରୁ ।
"ଯାହାର ଯେ ମତ ପଥ ତହିଁ ଅଛି ପ୍ରୀତ
ସେ ପଥେ ଗମିଲେ ତାର ଈଶ୍ୱର ପ୍ରାପତ ।
ଏତେ ଲୋକ ଆସିଅଛ ତୁମ୍ଭେ ଏହି ସ୍ଥାନେ
କେହି ଘୋଡ଼ାଗାଡ଼ି ଚଢ଼ି, କେହି ନାବଯାନେ ।
କେହି କେହି ଆସିଛ ଯେ ପୁଣି ପଦବ୍ରଜେ
ଆଉର କେତେକ ପୁଣି ବାଷ୍ପୀୟ ଜାହାଜେ ।
ଗମନାଗମନ ପଥ ହେଲେହେଁ ପୃଥକ
ଉଦ୍ଦେଶ୍ୟ ଅଟଇ କିନ୍ତୁ ସମସ୍ତଙ୍କ ଏକ ।
କେହି ଅବା ଆଗେ ଆସି ପ୍ରବିଷ୍ଟ ହୋଇଛ
କେହି ପୁଣି ଆସିଛ ଯେ ଧରି ତାଙ୍କ ପଛ ।
ଅହଂକାର ଅଭିମାନ ଉପାଧି ନିଚୟ
ଯେଉଁ ପରିମାଣେ ଯା'ଠୁ ହୋଇଅଛି କ୍ଷୟ ।
ଅନାଦି କାରଣ ବିଭୁ କରୁଣା ନିଧାନ
କ୍ରମେ କ୍ରମେ ତାହାର ଯେ ତେତେ ସନ୍ନିଧାନ ।
ଢିପ ଜମିରେ ବରଷା ଜଳ ନିପଡିଲେ
ଜମା ହୋଇ ନ ରହଇ ତାହା କେତେବେଳେ ।
ଖାଲଜମି ହେଲେ ପାଣି ପଡ଼ିବା ମାତର
ଜମା ହୋଇ ରହଇ ଯେ ସାଗର ଆକାର ।
ଭଗବାନଙ୍କ ଅପାର କରୁଣା ସଲିଳ
ଅହଂକାରାଚ୍ଛନ୍ନ ଚିତ୍ତେ ନ ରହଇ ଠୁଳ ।
ଅହଂକାର ପରି ଶୂନ୍ୟ ଦୀନହୀନ ଭାବେ
ଭଗବାନଙ୍କୁ ଡାକିଲେ ଦେଖାଦ୍ୟନ୍ତି ତେବେ ।
ଆହାର ବିହାରେ ଥିବ ଅତି ସାବଧାନ
ନୋହିଲେ ଅଳ୍ପକେ ଚିତ୍ତେ ଜନ୍ମେ ଅଭିମାନ ।
ସିଲେହିପେଟିଆ ରୋଗୀ ଯା ପ୍ରାଣ ଦୋଳଇ
କଳାଧଡ଼ି ଲୁଗା ଖଣ୍ଡେ ଯଦି ସେ ପିନ୍ଧଇ ।
ରସିକତା ଭାବ ମନେ ସଞ୍ଚାର ହୋଇଣ
ରସରସିଆ ସଙ୍ଗୀତ କରଇ ସେ ଗାନ ।
ସେହିପରି ବୁଟ୍ ଯୋତା ପାଦରେ ଦେଲାରୁ
ଇଂରାଜୀ ଭାଷାରେ କଥା ବାହାରେ ମୁହଁରୁ ।
ଯେଉଁ ଭକତ ଅଟଇ ସାମାନ୍ୟ ଆଧାର
ଗେରୁଆ ପିନ୍ଧିଲେ ତାର ମନେ ଅହଂକାର ।
ସାମାନ୍ୟ ବିଷୟେ ହେଲେ ସ୍ୱଳପକେ ଝୁଟି
କ୍ରୋଧ ଅଭିମାନ ତାକୁ ଧରଇ ଆକଟି ।
ବ୍ୟାକୁଳତା ବ୍ୟତିରେକେ ବିଭୁଙ୍କ ଦର୍ଶନ
ସମ୍ଭବ ନୁହଇ କେବେ ଭଲରୂପେ ଜାଣ ।
ଭୋଗ ଲାଳସା ସମ୍ୟକେ ନ ହେଲେକ ଶେଷ
ବିଭୁ-ବ୍ୟାକୁଳତା ଚିତ୍ତେ ନ ପାଏ ପ୍ରକାଶ ।
କାମିନୀ କାଞ୍ଚନ ମଧ୍ୟେ ସଦା ବାସ ଯାର
ଭୋଗ ବାସନାଟି ଶେଷ ହୋଇ ନାହିଁ ତାର ।
ଭଗବତ ବ୍ୟାକୁଳତା ତେଣୁ ତାର ଚିତ୍ତେ
ଜନ୍ମେ ନାହିଁ କେତେବେଳେ ବୁଝଁ ଭଲମତେ ।
ଯାଇଥିଲି ଥରେ ମୁହିଁ ଭଗିନୀ ସଦନେ
ତା ଶିଶୁ ତନୟ ଅଙ୍କା ଅଦ୍ୟାପି ମୋ ମନେ ।
ତିନି ପାଞ୍ଚ ବରଷର ସେ କ୍ଷୁଦ୍ର ସନ୍ତାନ
ଦିବାଭାଗେ ମୋ ପାଖରେ ଖେଳେ ଅନୁକ୍ଷଣ ।
କ୍ରୀଡ଼ାରେ ରହଇ ସଦା ଏପରି ଉନ୍ମତ୍ତ
ଭୁଲେ ନାହିଁ ମାତା ପାଶେ ଗମନ ନିମିତ୍ତ ।
ଦିବା ଅବସାନେ ସନ୍ଧ୍ୟା ସମାଗତ ଯେବେ
ମାତା ପାଶେ ଯିବାପାଇଁ ଉଚ୍ଛନ୍ନ ସେ ତେବେ ।
ଭୁଲାଇବା ପାଇଁ ତାକୁ ଯେତେ ଚେଷ୍ଟା କରେ
ମାତା ମନେ ପଡ଼ିଲାରୁ ଅସ୍ଥ କି ସେ ଧରେ !
ଖେଳିବାକୁ ତାକୁ ଆଉ ନ ଲାଗଇ ଭଲ
ମାତା ପାଶେ ଯିବାପାଇଁ ହୁଅଇ ବ୍ୟାକୁଳ ।
ଭୋଗଶେଷ ହେଲେ ତଥା ପ୍ରାଣୀମାନଙ୍କର
ବିଭୁପାଇଁ ବ୍ୟାକୁଳତା ଜନ୍ମେ ଏ ପ୍ରକାର ।
ସାଂସାରିକ କ୍ରୀଡ଼ା ଆଉ ଭଲ ନ ଲାଗଇ
ନିରତେ ରୋଦଇ ବିଭୁପାଶେ ଯିବାପାଇଁ ।"
କଥୋପକଥନ କରୁ କରୁ ଏ ଭାବରେ
ଧରଣୀର ମୁଖାଚ୍ଛନ୍ନ ହେଲା ଯେ ତମିରେ ।
କେଶବ ପ୍ରଭୃତି ଯେତେ ଥିଲେ ବ୍ରାହ୍ମ ଭକ୍ତ
ଜଳପାନ କରି ଏବେ ଗମନେ ଉଦ୍ୟତ ।
ହସି ହସି ଦେବସ୍ୱେ କହିଲେ କେଶବେ
"ଲୁଚକାଳି ଖେଳ ତଥା ଜାଣିଥିବ ସର୍ବେ ।
ବୁଢ଼ୀକୁ ଛୁଇଁଲେ ଥରେ କୌଣସି ରୂପରେ
ଚୋର ହେବା ଭୟ ଆଉ ନ ଥାଏ ଅନ୍ତରେ ।
ଯା ଭାଗ୍ୟେ ଘଟଇ ତଥା ଈଶ୍ୱର ପ୍ରାପତ
ସଂସାରେ ନ ଥାଏ ତାର କଉଣସି ଭୀତ ।

ବିଭୁଲାଭ ପରେ ପ୍ରାଣୀ ହୁଅନ୍ତି ନିର୍ଲିପ୍ତ
ପଙ୍କରେ ପଙ୍କୁଆ ମାଛ ରହନ୍ତି ଯେମନ୍ତ ।
ପଙ୍କ ମଧ୍ୟେ ସଦାବେଳେ କରଇ ସେ ବାସ
ଗାଏ ନ ଲାଗଇ କିନ୍ତୁ ପଙ୍କର ଆଭାସ ।"
କେଶବେ କହିଲେ ପୁନଃ ଶ୍ରୀ ଦେବ ଅଚ୍ୟୁତ
"ଦେଖ ହେ କେଶବ ରାତି ହେଲାଣି ବହୁତ ।
ଗୃହେ ଫେରି ନ ଯାଇଣ ରହ ହେ ଏଠାରେ"
ସହାସ୍ୟେ କହିଲେ ତହୁଁ କେଶବ ଉତ୍ତରେ ।
"କାର୍ଯ୍ୟକର୍ମ ଗୃହରେ ଯେ ଅଛଇ ବହୁତ
ନ ଗଲେ ଘଟିବ ତହିଁ ବିଶେଷ ବ୍ୟାଘାତ ।"
କେଶବେ କହିଲେ ହସି ପ୍ରଭୁ ବିଶ୍ୱଦେବ
"ଆଇଁସ ଗନ୍ଧ ନୋହିଲେ ନିଦ୍ରା କି ନୋହିବ ?
ଏକଦା ଗୋଖଣୀ ଜଣେ ଯାଉଁ ଯାଉଁ ବାଟେ
ରାତିରେ ଆଶ୍ରୟ ନେଲା ମାଲୀଘରେ ଗୋଟେ ।
କୁସୁମ ତୋଳିଣ ଯେଉଁ ଗୃହେ ରଖିଥିଲା
ଗୋଖଣୀକୁ ସେହି ଘରେ ଶୋଇବାକୁ ଦେଲା ।
କୁସୁମ ଗନ୍ଧରେ ତାକୁ ନୋହିଲା ଯେ ନିଦ
ଛଟପଟ ହୋଇ କରେ ଧୂମ୍ ଧାମ୍ ଶବ୍ଦ ।
ମାଲୁଣୀ ଆସିଣ ତହୁଁ ପୁଛିଲା କାରଣ
ଛଟପଟ ହେଉ ତୁଅ କିପାଁ ନ ଶୋଇଣ ?"
ଗୋଖଣୀ କହିଲା ତାକୁ ବିନୀତ ଉତ୍ତର
'କୁସୁମ ଗନ୍ଧରେ ଘୁମ ହେଉନାହିଁ ମୋର ।
ମାଛ ପାଛୁଆ ମାଉସୀ ! ଥିବ ଯଦି ଘରେ
ହାତଯୋଡ଼ି କହୁଅଛୁ ଆଣି ଦିଅ ମୋରେ ।"
ମାଲୁଣୀ ଯାଇଣ ତ୍ୱରା ତାହାର ଗୃହକୁ
ଆଇଁସ ପାଛୁଆ ଗୋଟେ ଆଣି ଦେଲା ତାକୁ ।
ପାଛୁଆରେ ଭଲରୂପେ ପାଣି ଛିଞ୍ଚିଦେଇ
ଗୋଖଣୀ ତା ନାସାପାଶେ ଯତ୍ନେ ଦେଲାଥୋଇ ।
ଆଇଁସ ଗନ୍ଧ ଆଘ୍ରାଣ କଲାରୁ ଏମନ୍ତେ
ନିଦ୍ରା ଅଭିଭୂତା ହେଲା ଗୋଖଣୀ ତୁରନ୍ତେ ।
କେଶବ ପ୍ରଭୃତି ଯେତେ ବ୍ରାହ୍ମଭକ୍ତ ଥିଲେ
କଥା ଶୁଣି ହସି ହସି ତହିଁ ଗଡ଼ିଗଲେ ।
ଏଥିଅନ୍ତେ ଶ୍ରୀ କେଶବ ସାଷ୍ଟାଙ୍ଗେ ପ୍ରଣମି
ପାଦସ୍ପର୍ଶି ପ୍ରଭୁଙ୍କଠୁ ଘେନିଲେ ମେଲାଣି ।
ଶ୍ରୀ କେଶବ ଶିଷ୍ୟବୃନ୍ଦେ ଘେନି ଆଉ ଦିନେ
ଆସିଲେ ଦକ୍ଷିଣେଶ୍ୱରେ ପ୍ରଭୁଙ୍କ ଦର୍ଶନେ ।
ମନୋଭାବ ଜାଣିପାରି କରୁଣା ନିଧାନ
ବିଶ୍ୱପ୍ରେମ କଥା ତହିଁ କଲେ ଉତ୍ଥାପନ ।
"ଏ ବିଶ୍ୱବ୍ରହ୍ମାଣ୍ଡ ଜଗନ୍ମାତାଙ୍କଠୁ ଜାତ
ସମସ୍ତ ପଦାର୍ଥେ ସେହୁ 'ଛନ୍ତି ପ୍ରକାଶିତ ।
ବ୍ରହ୍ମମୟୀଙ୍କର ଏବା ସ୍ୱରୂପ ଆକାର
ବିଶ୍ୱପ୍ରେମେ ଜଣାଯାଏ ତାର ସମାଚାର ।
ଆତ୍ମପ୍ରେମେ ବିଶ୍ୱପ୍ରେମେ ନାହିଁ ଭିନ୍ନାଭିନ୍ନ
ଏକତ୍ର ମିଳିତ ଯହିଁ ଭଲମନ୍ଦ ଜ୍ଞାନ ।
ସାନ ବଡ଼, ଲଘୁ ଗୁରୁ, ସୁଧା ହଳାହଳ
ପାପପୁଣ୍ୟ, ପୂର୍ଣ୍ଣ ଶୂନ୍ୟ, ଅଭିନ୍ନ ସକଳ ।
ଜୀବେ ଶିବେ ସମଜ୍ଞାନ ହୁଅଇ ଏଠାରେ
ଜଡ଼ ବା ଚେତନ ସବୁ ଦିଶେ ଏକାକାରେ ।
କହୁ କହୁ ଏ ପ୍ରକାରେ ବିଶ୍ୱପ୍ରେମ କଥା
ଆପଣେ ନିମଗ୍ନ ତହିଁ ଶ୍ରୀଦେବ ସର୍ବଥା ।
ଉଚ୍ଛୁଳିଲା ମହାସିନ୍ଧୁ ପ୍ରେମ ପାରାବାର
ପ୍ରେମର ମୂରତି ପ୍ରଭୁ ପ୍ରେମେ ଜରଜର ।
ଗୋଟା ଅଙ୍ଗ ଟଳମଳ ନାହିଁ ଅନ୍ୟ ଜ୍ଞାନ
ଏକାଳେ ଘଟିଲା ଏକ ଅଦ୍ଭୁତ ଘଟଣ ।
କଉଣସି ଲୋକ ଜଣେ ଧରିଣ କୁଠାର
ହାଣୁଥିଲା ସନ୍ନିଧାନେ ଶାଖା ପାଦପର ।
ଦରଶନ ମାତ୍ରେ ତାହା ପ୍ରଭୁ ନରହରି
ଆର୍ତ୍ତନାଦ କଲେ ହୃଦ-ଯାତନାରେ ଭରି ।
"କି କଲା କି କଲା ଏହୁ ଜନନୀଙ୍କୁ ମୋର
ଖଣ୍ଡ ଖଣ୍ଡ କାଟି କରି କଲା ଗର ଗର ।"
ଯନ୍ତ୍ରଣାରେ ହେଲେ ଶେଷେ ଅସ୍ଥିର ଏମନ୍ତ
ଅଶ୍ରୁଧାରା ଅନର୍ଗଳ ନେତ୍ରୁ ପ୍ରବାହିତ ।
କାନ୍ଦୁ କାନ୍ଦୁ ଏ ପ୍ରକାରେ ପ୍ରଭୁ ଭଗବାନ
ଗଭୀର ସମାଧି ଜଳେ ହେଲେ ନିମଗନ ।
ରହୁଁ ରହୁଁ ବାହ୍ୟଜ୍ଞାନ ଲୋପ ଏକାବେଳେ
ବ୍ୟାପାର ଦେଖି କେଶବ ସ୍ତମ୍ଭୀଭୂତ ହେଲେ ।
ଆଭାସେ ପାଇଲେ ବିଶ୍ୱ ଜନନୀ ସ୍ୱରୂପ
ଆତ୍ମପ୍ରେମେ ବିଶ୍ୱପ୍ରେମ ଯୋଜନା କି ରୂପ ।
ବିଶ୍ୱଜନନୀଙ୍କଠାରେ କେଡ଼େ ଗାଢ଼ ପ୍ରେମ
ଧାରଣା କରନ୍ତେ ତାହା ମାନବେ ଅକ୍ଷମ ।
ବିଶ୍ୱପ୍ରେମ ଅନୁରାଗେ ପ୍ରଭୁ ଶ୍ରୀ ଠାକୁର
ଭାଳିଲେ ବିଶ୍ୱକୁ ଅଙ୍ଗପ୍ରତ୍ୟଙ୍ଗ ତାଙ୍କର ।
ତରୁରେ ଆଘାତ ଦେଖି ବେଦନ୍ତି ଶ୍ରୀହରି
ବିଶ୍ୱମାତା ଅଙ୍ଗେ ଘାତ ହୁଅଇ ଯେପରି ।

ବିଶ୍ୱଜନନୀଙ୍କ ଅଙ୍ଗ ଯେମନ୍ତେ ତାଙ୍କ ଅଙ୍ଗ
କେଶବ ନିର୍ବାକ ଦେଖି ଅଦ୍ଭୁତ ପ୍ରସଙ୍ଗ ।
ହୃଦୟେ ତାଙ୍କର ଏବେ ହେଲା ଦୃଢ଼ୀଭୂତ
ଚୌଦ ପାଆ ଦେହେ ବିଭୁ କେମନ୍ତେ ବିରାଜିତ ।
ବ୍ରାହ୍ମ ଶିରୋମଣି ଭକ୍ତ ଶ୍ରୀ କେଶବସେନ
ଚତୁର୍ଦ୍ଦିଗେ କଲେ ପ୍ରଭୁ-ମାହାତ୍ମ୍ୟ ବ୍ୟାଖ୍ୟାନ ।
ଦାଣ୍ଡେଘାଟେ ପରଶିଲେ ତାଙ୍କ ସୁଧା ନାମ
କେବେ ବା ଅମିୟପୂର୍ଣ୍ଣ ପୂତ ଗୁଣଗ୍ରାମ ।
ବହିରଙ୍ଗ ଭକ୍ତ ମଧ୍ୟେ କେଶବ ସମାନ
ଉଚ୍ଚାଧାର ଭକ୍ତ ଆଉ ନ ହୁଏ ଦର୍ଶନ ।
ପ୍ରଭୁ-ବାକ୍ୟେ ତାହାଙ୍କର ଅତି ଦୃଢ଼ ଭକ୍ତି
ସର୍ବଦା ଶିଷ୍ୟଙ୍କୁ ଧରି ଦର୍ଶନେ ଆସନ୍ତି ।
କେବେ ଅବା ଦେବରାୟେ ନିମନ୍ତ୍ରଣ କରି
ଭକ୍ତିଭରେ ଘେନିଯାନ୍ତି ଗୃହକୁ ତାଙ୍କରି ।
ପୂର୍ବେ ଥିଲା କେଶବଙ୍କ ଯେଉଁ ଧର୍ମ୍ମଭାବ
ପ୍ରଭୁଙ୍କ ସଂସର୍ଗେ ଆସି ଦୂର ସେ ସରବ ।
ଥରକରେ ଦେବରାୟେ ନିମନ୍ତ୍ରଣ କରି
ଶ୍ରୀ କେଶବ ଘେନିଗଲେ ସଦନେ ତାଙ୍କରି ।
ଦେବରାୟ ଯଦା ତହିଁ ହେଲେ ଉପସ୍ଥିତ
ବିହିତ ଆସନ ଦେଲେ ବସିବା ନିମିତ୍ତ ।
ବ୍ରହ୍ମାର ଦୁର୍ଲ୍ଲଭ ରତ୍ନ ଦେଖନ୍ତି ସକଳେ
ଏକସରେ ଗୋଷ୍ଠି-ବର୍ଗ ପରିବାର ମେଳେ ।
ଭକ୍ତିଭାବେ ଯଥାବିଧି ଶ୍ରୀପଦ ସେବନ
କରଯୋଡ଼ି ନିବେଦିଲେ ଶ୍ରୀ କେଶବ ସେନ ।
ଅନୁଗ୍ରହ ହେଲେ ପ୍ରଭୋ ! ମୋ ଘର ଭିତର
ବୁଲାଇ ଦେଖାନ୍ତି ଚିତ୍ତେ ବାସନା ମୋହର ।
କେଶବଙ୍କ ଅଭିଳାଷ ବୁଝି ନାରାୟଣ
ତଦଣ୍ଡେ ଉଠିଲେ ସଙ୍ଗେ ତେଜିଣ ଆସନ ।
କେଶବ କହନ୍ତି ଏଠି ଭୋଜନ କରଉଁ
ପବିତ୍ର କରନ୍ତୁ ସ୍ଥାନ ଶ୍ରୀଚରଣ ଦେଇ ।
ପୁନଶ୍ଚ ବୋଲନ୍ତି ତାଙ୍କୁ ଘେନି ସ୍ଥାନାନ୍ତରେ
ଶୟନ କରଇ ମୁହିଁ ଏହି ସ୍ଥାନଟିରେ ।
ବାରେକ ଦେଇଣ ଏଠି ପଙ୍କଜଚରଣ
ପବିତ୍ର କରନ୍ତୁ ପ୍ରଭୋ କରୁଣାନିଧାନ !
ପୁନଶ୍ଚ ବୋଲନ୍ତି ଅନ୍ୟ ଘରେ ଘେନିଯାଇ
ଅତ୍ୟନ୍ତ ନିର୍ଜ୍ଜନ ସ୍ଥାନ ବିଭୁ ଚିନ୍ତା ପାଇଁ ।
ଏଠାରେ ପ୍ରତ୍ୟହ ବସି କରଇଁ ମୁଁ ଧ୍ୟାନ
ପଦଧୂଳି ଦେଇ ପୂତ କରନ୍ତୁ ଏ ସ୍ଥାନ ।
ଏ ପ୍ରକାରେ ଶ୍ରୀଦେବଙ୍କ ସଙ୍ଗେ ସଙ୍ଗେ ଥାଇ
ସବୁ ଘର ଦେଖାଇଲେ ତାହାଙ୍କୁ ବୁଲାଇ ।
ଆଉ ଦେଇଥିଲେ ହୃଦେ କେତେ ଉଚ୍ଚାସନ
ଗୋଟିଏ କଥାରେ ମିଳେ ତାହାର ପ୍ରମାଣ ।
"ଶ୍ରୀ ଠାକୁରେ ଅଛନ୍ତି ଯେ ମହାମୂଲ୍ୟ ନିଧି
ଆଉ ଏକ ନ ଦେଖଇ କାହିଁ ଅଦ୍ୟାବଧି ।
ସ୍ୱାଙ୍କ ଭଳି ରତନକୁ କାଚ ବାକସରେ
ଯତ୍ନେ ରଖିବା ହିଁ ଶ୍ରେୟ ଅଟେ ମୋ ମତରେ ।
ତାଙ୍କ ଦେହେ ଯେମନ୍ତେ କିଛୁ ଆଞ୍ଚ ନ ଲାଗଇ
ଅବହିତ ଥିବେ ସର୍ବେ ସଦା ସେଥିପାଇଁ ।"
ଏମନ୍ତ ଯେ ପ୍ରଭୁଭକ୍ତ ଶ୍ରୀ କେଶବ ସେନ
ଭକ୍ତିଭରେ ବନ୍ଦଇ ମୁଁ ତାଙ୍କର ଚରଣ ।
କେଶବଙ୍କ ଦଳେ ଯେତେ ତାଙ୍କ ଧର୍ମ୍ମଭାଇ
ତାଙ୍କ ମଧ୍ୟେ ସର୍ବଶ୍ରେଷ୍ଠ ବିଜୟ ଗୋସାଇଁ ।
ଅଦ୍ୱୈତ ଗୋସ୍ୱାମୀ ବଂଶେ ଜନମ ଘେନିଣ
ପରମ ବୈଷ୍ଣବାଗ୍ରଣୀ ଥିଲେ ମହାଜନ ।
ରାଧାକୃଷ୍ଣ ମୂର୍ତ୍ତି ତାଙ୍କ ଗୃହେ ପ୍ରତିଷ୍ଠିତ
ନିତ୍ୟ ସେବା ପାଇଁ ଝଞ୍ଜା ଦରବ ନହୃତ ।
ସାକାର ପୂଜାରେ କିନ୍ତୁ ବିଜୟଙ୍କ ମନ
ବାଳୁତ ବୟସୁଁ ଅବିଶ୍ୱାସେ ପରିପୂର୍ଣ୍ଣ ।
କ୍ରମେ କ୍ରମେ ବୟୋବୃଦ୍ଧି ହେଲା ଯେତେ ଯେତେ
ତତ୍ତ୍ୱପିପାସା ବଢ଼ିଲା ହୃଦୟରେ ତେତେ ।
ବ୍ରାହ୍ମଧର୍ମ୍ମ ପ୍ରତି ଶେଷେ ଅନୁରାଗୀ ହୋଇ
ତହିଁ ଝାସ ଦେଲେ ଜାତିକୁଳେ ଜାଳ ଦେଇ ।
ପ୍ରଭୁ ପାଦେ କେଶବଙ୍କ ଭକତି ଦେଖିଣ
ଆକୃଷ୍ଟ ହୋଇଲା ମଧ୍ୟ ଗୋସ୍ୱାମୀଙ୍କ ମନ ।
ତାଙ୍କ ସହ କ୍ରୀଡ଼ା କଲେ ଯେ ଭାବେ ଅଚ୍ୟୁତ
ପର ଅଧ୍ୟାୟରେ ମୁହିଁ ଗାଇବ କିଞ୍ଚିତ ।
ଏହି ସେ ବିଜୟ ପୁଣ୍ୟଧାମେ ଯାହାଙ୍କର
'ଜଟିଆ ବାବାଜୀ ମଠ' ନରେନ୍ଦ୍ର କୂଳର ।
ବ୍ରାହ୍ମଧର୍ମ୍ମ ନେତା ମଧ୍ୟେ ଆଉ କେତେ ଜଣ
ପ୍ରଭୁଙ୍କ ଚରଣେ ଯାଙ୍କ ଭକତି ଅସୀମ ।
ପ୍ରଥମ ମଣି-ମଲ୍ଲିକ ଭକତପ୍ରବର
ଦ୍ୱିତୀୟ ଯେ ଶ୍ରୀ ପ୍ରତାପଚନ୍ଦ୍ର ମଜୁମଦାର ।
ତୃତୀୟ ତ୍ରୈଲୋକ୍ୟ ଶର୍ମ୍ମା ଚିରଞ୍ଜୀବୀ ନାମ
ଯାଙ୍କ ମଧୁକଣ୍ଠେ ମୁଗ୍ଧ ପ୍ରଭୁ ଗୁଣଧାମ ।

ତାଙ୍କ ଗୀତ ଶୁଣିବାକୁ ପ୍ରଭୁ ଦେବଙ୍କର
ଚିତ୍ତରେ ଆଗ୍ରହ ଅତି ଥାଏ ନିରନ୍ତର ।
ଚତୁର୍ଥ ଶ୍ରୀ ବେଣୀପାଲ ବସନ୍ତି ସିଁ ଥିରେ
ମହାଧନୀ କାଶୀଶ୍ୱର ମିତ୍ର ପଞ୍ଚମରେ ।
ଷଷ୍ଠରେ ନିତ୍ୟାଣ ସେନ ବଙ୍ଗଦେଶେ ବାସ
ପ୍ରଭୁ ପାଦପଦ୍ମେ ଯାଙ୍କ ଭକତି ବିଶେଷ ।
ସପ୍ତମେ ଅମୃତ ଲାଲ ବସୁ ମହୋଦୟ
ବହୁଗୁଣ ସମନ୍ୱିତ ପବିତ୍ର ହୃଦୟ ।
ଅଷ୍ଟମେ ଶ୍ରୀ ଶିବନାଥ ଶାସ୍ତ୍ରୀ ମହାଜନ
ବ୍ରାହ୍ମଧର୍ମ ନେତା ସୁଧୀ ସାଧକ ସଜ୍ଜନ ।
ପ୍ରଭୁଙ୍କଠି ଯେଉଁ ଉଚ୍ଚ ଭାବ ତାହାଙ୍କର
ଏ ମହାମଣ୍ଡଳେ ନାହିଁ ତାର ପଟାନ୍ତର ।
ଦିନକରେ ଭକ୍ତ ରାମ କୌତୂହଳୀ ହୋଇ
ପଚାରିଲେ ତାଙ୍କ ମନୋଭାବ ଜାଣିବା ପାଇଁ ।
"ପ୍ରଭୁ ସଙ୍ଗେ ମିଶାମିଶି କଲ ଏତେ ଦିନ
କି ଧାରଣା ତବ ମନେ ତାହାଙ୍କୁ ଦେଖିଣ ?"
ଉତ୍ତରେ କହିଲେ ଶାସ୍ତ୍ରୀ "କି କହିବି ମୁହିଁ
ତାଙ୍କ ତୁଲେ ପୁଣ୍ୟ ଆତ୍ମା ଭବେ ଦେଖାନାହିଁ ।
ପ୍ରଚାର ଯେ କରୁଛନ୍ତି ଯେଉଁ ଧର୍ମଭାବ
ଶ୍ରୀରଣତ ବର୍ଷାଧିକ ଥିବ ତା ପ୍ରଭାବ ।
ଧର୍ମର ଅଭାବ ଆଉ ନ ଥିବ ଏ ଭବେ
ଧର୍ମମାର୍ଗେ ଅଗ୍ରସର ହୋଇବେ ସରବେ ।"
ସତ୍‌ଶୁଦ୍ଧ ବୁଦ୍ଧିଯୁକ୍ତ ପଣ୍ଡିତପ୍ରବର
ବାରମ୍ବାର ବନ୍ଦଇ ମୁଁ ଚରଣ ତାଙ୍କର ।
ଆବର ବହୁ ସମ୍ଭ୍ରାନ୍ତ ଗଣ୍ୟମାନ୍ୟ ବ୍ୟକ୍ତି
ଯେଉଁମାନେ ଧରିଥିଲେ କେଶବଙ୍କ ପଂକ୍ତି ।
ତାହାଙ୍କ ସହିତ ନିତ୍ୟ କରି ଆତଯାତ
ପ୍ରଭୁପାଦେ ତାଙ୍କ ଚିତ୍ତ ହେଲା ଆକର୍ଷିତ ।
ପରସ୍ପରେ ହେଲା ଶେଷେ ଏ ପ୍ରକାର ମେଳ
ସରବେ ଭାବିଲେ ଦେବରାୟ ତାଙ୍କ ଦଳ ।
ଆଦି ସମାଜର ନେତା ଦେବେନ୍ଦ୍ର ଠାକୁର
ଖ୍ୟାତ ଯେ ମହର୍ଷି ନାମେ ଜନ ସମାଜର ।
ତାଙ୍କ ସାକ୍ଷାତ ନିମନ୍ତେ ପ୍ରଭୁ ଦେବରାୟେ
ଅତି ଆକାଂକ୍ଷିତ ହୋଇ କୌଣସି ସମୟେ,
ତାଙ୍କ ସହପାଠୀ ମଥୁରଙ୍କୁ ସଙ୍ଗେ ଧରି
ବିଜେ କରିଥିଲେ ମଧ୍ୟ ଆବାସେ ତାଙ୍କରି ।
ତାଙ୍କୁ ଦେଖିଣ କହିଲେ ବ୍ରହ୍ମାଣ୍ଡ ଠାକୁର
"ତୁମ୍ଭେ ତ ଜନକ ରାଜା ଏ କଳିଯୁଗର ।
ତାଙ୍କ ତୁଲେ ଯୋଗଭୋଗ ଉଭୟ ରଖିଣ
ଏ ସଂସାରେ କରୁଅଛ ଜୀବନ ଯାପନ ।"
ପ୍ରଭୁଙ୍କର ଅନୁରୋଧେ ଶ୍ରୀ ଦେବେନ୍ଦ୍ରନାଥ
ବେଦାନ୍ତ ଗ୍ରନ୍ଥରୁ ପାଠ କଲେ ବହୁ ତଥ୍ୟ ।
ଅତଃପର ସେ ସମ୍ବନ୍ଧେ ଉଭୟ ମଧ୍ୟରେ
ଆଲୋଚନା ହେଲା ତହିଁ ବହୁ ବିଷୟରେ ।
ଅବଶେଷେ ବ୍ରାହ୍ମ ନେତା ଅତି ପ୍ରୀତ ହୋଇ
ପ୍ରଭୁଙ୍କୁ କହିଲେ "ଆଜ ଧନ୍ୟ ମଣିଲଇଁ ।
ସମାଜେ ଯେବାଳେ ହେବ ଉତ୍ସବାୟୋଜନ
ତଦା ମୁଁ ପ୍ରେରିବି ତବ ପାଶେ ନିମନ୍ତ୍ରଣ ।
ଶ୍ରୀମୁଖୁଁ ଶୁଣିଣ ବହୁ ହିତ ଉପଦେଶ
ସଭ୍ୟବୃନ୍ଦ ଲଭିବେ ଯେ ପରମ ସନ୍ତୋଷ ।
ଶ୍ରୀପାଦେ ଗୋଟିଏ କଥା ନିବେଦନ ମୋର
ପରିଧାନେ ଥିବ ଧୋତି ଦେହରେ ଚଦର ।"
ଉତ୍ତରେ କହିଲେ ପ୍ରଭୁ ଜଗତ ଗୋସାଇଁ
"କୌଣସି ବିଷୟେ ମୋର ଆସ୍ପୃହା ନ ଥାଇ ।
ଆଦେଶ ଦିଅନ୍ତି ଯଥା ଜଗତ ଜନନୀ
କାର୍ଯ୍ୟେ ଆଚରଇ ସଦା ତାଙ୍କ କଥା ମାନି ।
ଅଧୁନା ହୋଇଛୁ ମୋର ସ୍ୱଭାବ ଯେସନ
ବାବୁ ବେଶ ବାନ୍ଧିବାକୁ ଅକ୍ଷମ ସମ୍ପୂର୍ଣ୍ଣ ।"
ନିରେଖି ଶ୍ରୀ ଦେବଙ୍କର ଆଲୁବାଲୁ ବେଶ
ସଭ୍ୟଗଣ କରିବେ ଯେ ନାନା ଉପହାସ ।
ଏସନ ଶୁଣିଣ ମନେ ମହର୍ଷି ଠାକୁର
ନିମନ୍ତ୍ରଣୁଁ କ୍ଷାନ୍ତ ହେଲେ ଦୁଃଖ ସହକାର ।
ରାମକୃଷ୍ଣ-ଲୀଳାମୃତ ଅମିୟ ଲହରୀ
ଗାଅ ମନ, ଭଜ ମନ, ଦିବସ ଶର୍ବରୀ ।
ଅବହେଳେ ତରିଯିବ ଭବ ତରଙ୍ଗିଣୀ
ଗୋବିନ୍ଦ ପଦାରବିନ୍ଦ ଚିନ୍ତେ ସାର ମଣି ।



# ନବମ ଅଧ୍ୟାୟ

## ଶ୍ରୀ ବିଜୟକୃଷ୍ଣ ଗୋସ୍ୱାମୀଙ୍କ ସହିତ ମିଳନ ଓ କଥୋପକଥନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ପ୍ରଭୁ ଜଗପତି
ଅପାର କରୁଣାସିନ୍ଧୁ ଅଗତିର ଗତି ।
ବିଜୟ ଗୋସ୍ୱାମୀ କଥା ଶୁଣ ଅତଃପର
ପରିଚୟ ଦେଇଅଛୁ ପୂର୍ବେ ଯାହାଙ୍କର ।
'ଅଦ୍ୱୈତ' ଗୋସ୍ୱାମୀ ବଂଶେ ଜନମ ଲଭିଣ
ବ୍ରାହ୍ମଦଳଭୁକ୍ତ ହେଲେ ଏହି ମହାଜନ ।
ଆର୍ଥିକ ଅବସ୍ଥା ତାଙ୍କ ନ ଥିଲା ସ୍ୱଚ୍ଛଳ
ବ୍ରାହ୍ମ ସମାଜେ ଗୃହକଷ୍ଟ କରି ଚଳାଚଳ ।
ନିଜ ବାହୁବଳେ ଲଭି ବହୁତ ସୁଖ୍ୟାତି
ଜନ ସମାଜରେ ହେଲେ ଗଣ୍ୟମାନ୍ୟ ଅତି ।
ବିଜୟ କେଶବ ଦୁଇ ଧର୍ମାର୍ଥୀ ଥାଇ
ପ୍ରଚାରିଲେ ବ୍ରାହ୍ମଧର୍ମ ଏକମେଳ ହୋଇ ।
ସମାଜର ରୀତି ଲଙ୍ଘି ଶ୍ରୀକେଶବ ସେନ
କୁଚବିହାର ରାଜାଙ୍କୁ କଲେ କନ୍ୟା ଦାନ ।
ସେଥିଯୋଗୁଁ ସମାଜରେ ପଡ଼ିଲା ଚହଳ
ଦଳାଦଳି ହୋଇ ନିଜ ମଧ୍ୟେ ଗଣ୍ଡଗୋଳ ।
ବ୍ରାହ୍ମଯାକ ଦୁଇଦଳେ ହୋଇଣ ବିଭକ୍ତ
ବିଭିନ୍ନ ନାମରେ ଦୁହେଁ ହେଲେ ପରିଚିତ ।
ବିଜୟ ପ୍ରଭୃତି ଯେହୁ ସ୍ୱାଧୀନ ସ୍ୱଭାବ
ସାଧାରଣ ସମାଜ ହିଁ ତାଙ୍କ ଦଳ ଡାକ ।
କେଶବଙ୍କ ପକ୍ଷ ଯେହୁ କଲେ ସମର୍ଥନ
ଗଢ଼ିଲେ ସମାଜ ଏକ ସେ ନବବିଧାନ ।
ଏ ବେନି ଦଳଙ୍କ ପ୍ରଭୁପାଦେ ସମଭକ୍ତି
ପୂର୍ବ ପ୍ରାୟ ଆତଯାତ ସରବେ କରନ୍ତି ।
ଶ୍ରୀମୁଖରୁ ହିତ ବାଣୀ କରିଣ ଶ୍ରବଣ
ତାଙ୍କ ପ୍ରତି ସେ ସରବେ କ୍ରମେ ଶ୍ରଦ୍ଧାପନ୍ନ ।
ଏ ଦୁଇ ନେତାଙ୍କୁ ଦିନେ ଏକ ସ୍ଥାନେ ପାଇ
ହସି ହସି କହିଲେକ ଜଗତ ଗୋସାଇଁ ।
"ତୁମ୍ଭମାନଙ୍କ ମଧ୍ୟେ ଯେ କଳହ ବିବାଦ,
ତା ଦେଖି ପଡ଼ୁଛି ମନେ ରାମ-ଶିବ ଯୁଦ୍ଧ ।
ଶ୍ରୀରାମଚନ୍ଦ୍ରଙ୍କ ଗୁରୁ ଥିଲେ ମହେଶ୍ୱର
ଗୁରୁ ଶିଷ୍ୟ ମଧ୍ୟେ ହେଲା ଯୁଦ୍ଧ ଘୋରତର ।
ଯୁଦ୍ଧପରେ ଦୁହିଁଙ୍କର ହେଲା ପୁଣି ପ୍ରୀତି
ଈର୍ଷାଭାବ ନ ରହିଲା ପରସ୍ପର ପ୍ରତି ।
ଅନୁଚରବର୍ଗ ଥିଲେ ଯେତେ ଦୁହିଙ୍କର
ଭାବ ପୀରତି ନୋହିଲା ତାହାଙ୍କ ମଧ୍ୟର ।
ମହେଶଙ୍କ ଅନୁଚର ଭୂତପ୍ରେତଗଣ
ଶ୍ରୀରାମଙ୍କ ଅନୁଚର ବାନରେ ଯେ ପୁଣ ।
ଏମାନଙ୍କ ମଧ୍ୟେ କେଭେ ନୋହିଲାକ ମେଳ
ନିରନ୍ତେ ବିବାଦେ ମାତି ଯାପିଲେ ଯେ କାଳ ।
ଯାହାଙ୍କ ସହିତେ ଥାଏ ଘନିଷ୍ଠ ସମ୍ବନ୍ଧ
ବେଳେ ବେଳେ ତାଙ୍କ ମଧ୍ୟେ ଘଟିଥାଏ ଦ୍ୱନ୍ଦ୍ୱ ।
ଲବକୁଶ ଦୁହେଁ ରାମଚନ୍ଦ୍ରଙ୍କର ସୁତ
ସେ ପୁଣି ପିତାଙ୍କ ସଙ୍ଗେ ଯୁଦ୍ଧେ ହେଲେ ରତ ।
ମାତା କନ୍ୟା ଦୁହିଁଙ୍କୁ ଯେ ଦେଖିବ ଆଦର
ମଙ୍ଗଳ ଓଷା କରନ୍ତି ପୃଥକ ପ୍ରକାର ।
ମାତାର ମଙ୍ଗଳେ ହୁଏ କନ୍ୟାର ମଙ୍ଗଳ
କନ୍ୟାର ମଙ୍ଗଳ ହେଲେ ମାତାର ମଙ୍ଗଳ ।
ଏହା ବୁଝି ନ ପାରିଣ ଚାଲନ୍ତି ସେ ଦୁହେଁ
କାହା ସହିତେ କାହାର ସମ୍ବନ୍ଧ ନ ଥାଏ ।
ତୁମ୍ଭେ ବେନି ନେତାଙ୍କର ଅନ୍ତରର ଭାବ
ତାଦୃଶ ଅଟଇ ମୁହିଁ ଭାବୁଛି କେଶବ !
ତୁମ୍ଭର ଯେମନ୍ତ ଅଛି ସମାଜ ବା ଦଳ
ବିଜୟର ଲୋଡ଼ା ମଧ୍ୟ ତଥା ଅବିକଳ ।
ଏହାହିଁ ଅଟଇ ଭବେ ବିଭୁଙ୍କର ଲୀଳା
ନୋହିଲେ ଚଳଇ ନାହିଁ ସଂସାରର ଖେଳା ।
ଜଟିଳାକୁଟିଳା ଲୋଡ଼ା ହୁଏ ଏଥିପାଇଁ
ତା ନ ହେଲେ ଲୀଳା ପରିପୁଷ୍ଟ ନ ହୁଅଇ ।
ବିଶିଷ୍ଟ ଅଦ୍ୱୈତବାଦୀ ଥିଲେ ରାମାନୁଜ
ଅଦ୍ୱୈତବାଦୀ ତାଙ୍କର ଗୁରୁ ମହାରାଜ ।
ଗୁରୁଶିଷ୍ୟ ମଧ୍ୟେ ତେଣୁ ନିରନ୍ତେ ଅମେଳ
କଥାରେ କଥାରେ ବାଦ ବିତଣ୍ଡା ବହୁଳ ।
ଗୁରୁ ଯା ବୋଲନ୍ତି ଶିଷ୍ୟ ଖଣ୍ଡନ୍ତି ତୁରନ୍ତ
ଶିଷ୍ୟ କଥା ଗୁରୁ ମଧ୍ୟ ଖଣ୍ଡନ୍ତି ତେମନ୍ତ ।

ଏମନ୍ତ ବାଦବିତଣ୍ଡା ହୋଇଲେହେଁ ଅନେକ
ତଥାପି ଅନ୍ତର ଭାବ ଆପଣାର ଲୋକ ।
ଏସନ କହିଣ ଦେବ ବହୁତ ପ୍ରକାରେ
ମେଳ କରାଇଣ ଦେଲେ ତାହାଙ୍କୁ ଶେଷରେ ।
ଚିତ୍ତ ମଳିନତା ଏବେ ହୋଇଲା ଦୂରୀଭୂତ
ପରସ୍ପର ମଧ୍ୟେ ମୈତ୍ରୀଭାବ ସଂସ୍ଥାପିତ ।
ଉଭୟ ଦଳ ଭକ୍ତଙ୍କ ପ୍ରଭୁପାଦେ ଭକ୍ତି
ପୂର୍ବପ୍ରାୟ ଆତଯାତ ସବେ କରନ୍ତି ।
ଶ୍ରୀଦେବଙ୍କ ହିତବାଣୀ କରିଣ ଶ୍ରବଣ
ତାଙ୍କଠି ସରବେ ହୋଇଲେ ଅତି ଶ୍ରଦ୍ଧାପନ୍ନ ।
ଏ ପ୍ରକାରେ ଆତଯାତ ବ୍ରାହ୍ମଭକ୍ତ ଯେତେ..
ବିଜୟ ଆକୃଷ୍ଟ ଅତି ପ୍ରଭୁପଦେ ପ୍ରୀତେ ।
ସତ୍ୟନିଷ୍ଠାଦି ତାଙ୍କର ଥିଲା ବହୁଗୁଣ
ଯହିଁରେ ଆକୃଷ୍ଟ ହୋଇଲେ ଶ୍ରୀଦେବ ଆପଣ ।
ବିଜୟଙ୍କୁ ନ ଦେଖିଲେ ଦେବ କିଛିକାଳ
ତାଙ୍କର ହୃଦୟ ହୁଏ ଅତୀବ ବ୍ୟାକୁଳ ।
ସଂବାଦ ପ୍ରେରଣ ତାଙ୍କୁ ଆଣନ୍ତି ଡକାଇ
ଅଥବା ଆପଣେ ଯାନ୍ତି ତାଙ୍କ ଗୃହେ ଧାଇଁ ।
ବିଜୟଙ୍କୁ ବହୁଦିନ ପ୍ରଭୁ ନ ଦେଖିଣ
ମନପ୍ରାଣ ତାହାଙ୍କର ଅତି ଉଚାଟନ ।
ଏହି ସଂବାଦ ବିଜୟ ହୋଇଣ ପ୍ରାପତ
କତିପୟ ବ୍ରାହ୍ମଭକ୍ତ ସେନି ଉପସ୍ଥିତ ।
ସରବେ ଶ୍ରୀପାଦପଦ୍ମେ ନମସ୍କାର କରି
ବସିଲେ ଭକ୍ତଙ୍କ ମଧ୍ୟେ ଯଥାସ୍ଥାନ ଧରି ।
ଭକ୍ତବୃନ୍ଦେ ଏକମେଳେ ଭକ୍ତି ସହକାରେ
ଶୁଣନ୍ତି ଅମିୟବାଣୀ ଉଦ୍‌ଗ୍ରୀବ ଚିତ୍ତରେ ।
ନାନା କଥା କହୁ କହୁ ଭାଷିଲେ ଶ୍ରୀଦେବ
ସଦାବେଳେ ଅଚୈତନ୍ୟ ଆନ୍ତି ବଦ୍ଧ ଜୀବ ।
ସଂସାରେ ଭୁଞ୍ଜନ୍ତି ଦୁଃଖ କଷ୍ଟ ଅନିବାର
ଚେତନା ଆସଇ ନାହିଁ ତଥାପି ତାଙ୍କର ।
କୌଣସି କାରଣୁ ଛାଡ଼ି ନିଜ ଦାରାସୁତ
ଦୂରେ କାଞ୍ଚିତ ସମସ୍ତ କଲୋକ ବାହିତ,
ହୃଦୟ ଭିତରେ ସଦା ହୁଏ କଲବଲ
ପୁଣି ନ ଦେଖିବାଯାଏ ପ୍ରାଣ ଅସମ୍ଭାଳ ।
ବିଷ୍ଠାପୋକ ସମ ଅଟେ ତାଙ୍କର ସ୍ୱଭାବ
ବିଷ୍ଠାରେ ଥାଇଣ ପ୍ରାଣେ ଆନନ୍ଦ ଅନୁଭବ ।
ବିଷ୍ଠାରୁ ଆଣିଣ ତାଙ୍କୁ ଥୋଇଲେ ପାଶରେ
ପ୍ରାଣନାଶ ହୁଏ ତାର ମୁହୂର୍ତ୍ତି ମଧ୍ୟରେ ।
ପ୍ରଭୁଙ୍କ ବଚନ ତୀକ୍ଷ୍ଣ ଶରର ସମାନ
ବିଜୟ ଗୋସ୍ୱାମୀ ହୃଦେ ବିନ୍ଧିଲା ତକ୍ଷଣ ।
କାତରେ ପୁଚ୍ଛିଲେ ତହୁଁ ପ୍ରଭୁ ମୁଖ ଚାହିଁ
"ତେବେ କି ବଦ୍ଧ ପ୍ରାଣୀଙ୍କ ଗତି ମୁକ୍ତି ନାହିଁ ?
କି ଉପାୟେ ପ୍ରଭୋ ! ସେହୁ ଲଭିବେ ମୁକତି
ସେ ପଥ ନିର୍ଦ୍ଦେଶି ହର ତାଙ୍କର ଦୁର୍ଗତି ।"
ଉତ୍ତରେ କହିଲେ ପ୍ରଭୁ ରାମକୃଷ୍ଣ ରାୟ
"ସ୍ଥିର ଚିତ୍ତେ ଶୁଣ ଯାହା ତହିଁ କି ଉପାୟ ।
ବିଭୁଙ୍କ କୃପାରୁ ତୀବ୍ର ବୈରାଗ୍ୟ ଜନ୍ମିଲେ
କାମିନୀ-କାଞ୍ଚନାସକ୍ତି ଦୂର ହୁଏ ହେଲେ ।
ତୀବ୍ର ବୈରାଗ୍ୟ ଯାହାର ଚିତ୍ତେ ଜନମଇ
ବିଭୁଙ୍କ ନିମନ୍ତେ ସେହୁ ବ୍ୟାକୁଳ ହୁଅଇ ।
ମାତା ଯେସନ୍ତେ ସୁତ ପାଇଁ ବ୍ୟାକୁଳ ଅତ୍ୟନ୍ତ
ତୀବ୍ର ବୈରାଗ୍ୟ ଜନ୍ମିଲେ ପ୍ରାଣୀଏ ତେମନ୍ତ ।
ଭଗବାନ ବିନ୍ତୁ ସେହୁ ନ ଜାଣଇ ଆନ
ସଂସାରାଶ୍ରମକୁ ସଦା କରେ କୂପ ଜ୍ଞାନ ।
ଏ କୂପରେ ପଡ଼ି ମୁହିଁ ପ୍ରାଣେ ଯିବି ନାଶ
ଅନୁକ୍ଷଣ ଚିତ୍ତେ ତାର ଜାଗଇ ଏ ତ୍ରାସ ।
ଆତ୍ମୀୟସ୍ୱଜନ ଯେତେ ସଂସାରେ ତାହାର
ତାଙ୍କୁ ସେ ଭାଳଇ କାଳସର୍ପ ସେ ପ୍ରକାର ।
ସେ ହେତୁ ସେ ସେମାନଙ୍କ ସମ୍ପର୍କ ତୁଟାଇ
ଗୃହ ତେଜି ନିରଜନେ ବସତି କରଇ ।
ପରିବାରଙ୍କ ଭରଣପୋଷଣ ନିମିତ୍ତେ
କେବେ ହେଲେହେଁ ଭାବିତ ନ ହୁଅଇ ଚିତ୍ତେ ।
ବିଭୁଙ୍କ ଦର୍ଶନ ଲଭ ଲକ୍ଷ୍ୟ ମାତ୍ର ଏକ
ଆଉର ବିଷୟ କେଉଁ ନ ଭାଳେ ତିଳେକ ।
ରହି ସମ୍ଭାଳି ବିଭୁଙ୍କ ଭଜନ କୀର୍ତ୍ତନ
ଏ ସବୁ ଅଟଇ ମନ୍ଦ ବୈରାଗ୍ୟ ଲକ୍ଷଣ ।
ଗୃହରେ ସମସ୍ତ ବନ୍ଦୋବସ୍ତ କରିଦେଇ
ବିଭୁଙ୍କ ଚିନ୍ତାରେ ପରେ ନିମଜ୍ଜିବି ମୁହିଁ ।
ଏ ଭାବ ନ ଥାଏ ତାର ହୃଦୟେ କିଞ୍ଚିତ
ବଳବାନ ରାଗ ଯେଣୁ ଅନ୍ତରେ ଜାଗ୍ରତ ।
ଉଦାହରଣ ସାହାଯ୍ୟେ କହୁଛି ବୁଝାଇ
ତୀବ୍ର ବୈରାଗ୍ୟର ରୀତି କିପରି ଅଟଇ ।
ଅନାବୃଷ୍ଟି ହେତୁ ଥରେ କୌଣସି ଦେଶରେ
ପ୍ରମାଦ ଗଣିଲେ କୃଷୀ ପାଣି ଅଭାବରେ ।

କିଛୁଦୂରରେ ନଦୀ-ଗର୍ଭେ ଥିଲା ବହୁ ଜଳ
ପରାମର୍ଶ କରି ତହୁଁ କୃଷୀଏ ସକଳ,
ମାହାରା ଖୋଳିଣ ଜଳ ଆଣିବା ସକାଶେ
କାର୍ଯ୍ୟେ ଲାଗିଗଲେ ସର୍ବେ ମନ ସନ୍ନିବେଶେ ।
ଅଣ୍ଟା ବାନ୍ଧି ଜଣେ ତହୁଁ ହୋଇଣ ବାହାର
ପ୍ରତିଜ୍ଞା କଲାକ ଅନ୍ୟ କୃଷୀଙ୍କ ଆଗର ।
ନାଲ ଖୋଳି କ୍ଷେତ୍ରେ ଜଳ ଆଣି ନ ପାରିଲେ
ଗୃହେ ମୁଁ ଫେରିବି ନାହିଁ ଆଜ କେତେବେଳେ ।
ଏପରି ପ୍ରତିଜ୍ଞା କରି କାର୍ଯ୍ୟେ ଲାଗିଗଲା
ବେଳକାଳ ପ୍ରତି କିଛୁ ଲକ୍ଷ୍ୟ ନ ରଖିଲା ।
ବେଳ ଗଡ଼ିଯିବା ଦେଖି ଗୃହିଣୀ ତାହାର
କନ୍ୟା ହସ୍ତେ ତେଲ ଦେଇ ପ୍ରେରିଲା ଖବର ।
ବୋଲିବୁ ରେ ଅତିଶୀଘ୍ର ସ୍ନାନ ଶେଷ କରି
ଖାଇବାକୁ ଆସିବେକ ନ କରିଣ ଡେରି ।
ପିତାଙ୍କ ସମୀପେ କନ୍ୟା ପ୍ରବେଶ ହୋଇଣ
ତେଲ ଦେଇ ସବୁ କଥା କଲା ନିବେଦନ ।
ଜନକ ବୋଇଲା ତହୁଁ କନ୍ୟାକୁ ବୁଝାଇ
କାର୍ଯ୍ୟ ଶେଷ ହୋଇନାହିଁ, ଫେରି ଯାଇଲେ ରୁହ ।
ବେଳ ପ୍ରାପ୍ତ ଦ୍ୱିପ୍ରହର ହୋଇଲା ଅତୀତ
ତଥାପି ନ ହେଲା କୃଷୀ ଗୃହେ ପ୍ରତ୍ୟାଗତ ।
ବେଳ ତ ହେଲାଣି ଏତେ ଆଉ କେତେକ୍ଷଣ
ହାଣ୍ଡି ଘେନି ବସିଥିବ ନ କରି ଭୋଜନ ।
ଖାଇପିଇ ପୁଣି ଯାଇ କାର୍ଯ୍ୟେ ଲାଗିଥିଲେ
ହୋଇ ନ ଥାନ୍ତା କାହାରି କଷ୍ଟ କେତେବେଳେ ।
ନିଜେ ଯାଇ ଥରେ ତାଙ୍କୁ କହିବ ତ ବୁଝାଇ
ଏହା ପାଞ୍ଚି ବାହାରିଲା ତରବର ହୋଇ ।
ପତି ପାଶେ ପ୍ରବେଶିଣ ମଧୁର ଭାଷାରେ
ବୁଝାଇଲା ତାହାକୁ ଯେ ନାନା ପରକାରେ ।
ବେଳ ଗଡ଼ିଯାଇ ଦେଖ ମଧ୍ୟାହ୍ନ ଅତୀତ
ସ୍ନାନ କଲ ନାହିଁ ତୁମ୍ଭେ ଆଜ ଏ ପର୍ଯ୍ୟନ୍ତ ।
ଭାତ ତିଅଣାଦି ସବୁ ଗଲା ଥଣ୍ଡା ହୋଇ
ଅକାରଣେ ଡେରି ଡେରି କରୁଛ କିପାଇଁ ।
ଖାଇପିଇ କାର୍ଯ୍ୟ କଲେ ନ ଥିଲା ତ କ୍ଷତି
ସବୁ କଥାରେ ତୁମ୍ଭର ବଢ଼ାବଢ଼ି ଅତି ।
ପତ୍ନୀର ବଚନ ଶୁଣି ପତି କ୍ରୋଧଭରେ
ଗାଳିଗୁଲଜ ଦେଲା ଯେ କଟୁ ବଚନରେ ।
ବୋଇଲା ତୋହର ବୁଦ୍ଧିଶୁଦ୍ଧି ନାହିଁ କିଛି
ଜଳାଭାବେ ଧାନଗଛ ମରି ଯାଉଅଛି ।
ଫସଲ ନ ହେଲେ ପିଲାକବିଲା ମୋହର
ଅନ୍ନାଭାବେ ଇହଧାମ ତେଜିବେ ସତ୍ୱର ।
ଆମେ ବି ଖାଇବା କଣ ଭାବି ଦେଖ ଥରେ
ସଭିଏ ମରିବୁ ପିନ୍ଧା ଶୁଖି ଅନାହାରେ ।
ସେ ହେତୁ ପ୍ରତିଜ୍ଞା ଆଜ କରିଅଛି ମୁହିଁ
କାର୍ଯ୍ୟ ଶେଷ ନ କରିଣ ଗୃହେ ଯିବି ନାହିଁ ।
ପାଣି ନ ମାଡ଼ିବ ମୋର କ୍ଷେତେ ଯେତେକ୍ଷଣ
ସ୍ନାନାହାର ନ କରିବି ମୁହିଁ କଦାଚନ ।
ଉଚିତବାଚ୍ୟ କରିଲାରୁ ଗୃହିଣୀ ତାହାର
କ୍ରୋଧେ [illegible]ବୀଙ୍କୁ ତାଙ୍କୁ ହୋଇଲା ତିଆର ।
[illegible]ତର କ୍ରୋଧ[illegible] ପତ୍ନୀ ଅତ୍ୟ ଭୀତା ହୋଇ
ଊର୍ଦ୍ଧ୍ୱଶ୍ୱାସେ ଗୃହକୁ ଯେ ଆଇଲା ପଳାଇ ।
ଅତ୍ୟନ୍ତ କଠୋର ଶ୍ରମ କରି ସାରାଦିନ
ନାଲଖୋଳା କାର୍ଯ୍ୟ କଲା ପ୍ରଦୋଷେ ସମ୍ପନ୍ନ ।
କଳକଳ ନାଦେ କ୍ଷେତେ ପ୍ରବେଶିଲା ଜଳ
ତା ଦେଖିଣ କୃଷୀ ହେଲା ଆନନ୍ଦେ ଉତ୍ଫୁଲ୍ଲ ।
ମହାନନ୍ଦେ କୃଷୀ ତହୁଁ ବାହୁଡ଼ି ଆବାସେ
ପତ୍ନୀକୁ ମାଗିଲା ତେଲ ସ୍ନାହାନ ସକାଶେ ।
ଅତଃପର ସ୍ନାନ ସାରି ଅତୀବ ଆନନ୍ଦେ
ସନ୍ତୋଷେ ଭୋଜନ କରି ଶୋଇଲା ନିର୍ଦ୍ୱନ୍ଦେ ।
ତୀବ୍ର ବୈରାଗ୍ୟେ ଦୃଢ଼ତା ରହଇ ଏମନ୍ତ
ଯା ଚିତ୍ତେ ଉଦୟ ହୁଏ ସେହି ଭାଗ୍ୟବନ୍ତ ।
ଆଉ ଏକ କୃଷୀ ମଧ ତାହାର ସଦୃଶ
ନାଲ ଖୋଳୁଥିଲା ପାଣି ଆଣିବା ସକାଶ ।
ପ୍ରିୟପତ୍ନୀ ତାର ପାଶେ ହୋଇ ଉପସ୍ଥିତ
ତାହାକୁ କହିଲା ବେଳ ହେଲାଣି ବହୁତ ।
ଏ ଓଳି ସେତିକି ଥାଉ ଗୃହେ ଫେରିଆସ
ବାକିତକ ଆରଓଳି କରିଦେବ ଶେଷ ।
ଉଚିତବାଚ୍ୟ ନ କରିଣ ସେହି କୃଷୀଟାଇ
ପତ୍ନୀ ସଙ୍ଗେ ଫେରିଗଲା କୋଡ଼ିକାଙ୍କ ନେଇ ।
ସେ କୃଷୀର କ୍ଷେତ୍ରେ ଆଉ ନ ମାଡ଼ିଲା ଜଳ
ମନ୍ଦ ବୈରାଗ୍ୟ ଏପରି ଅଟେ ଅବିକଳ ।
କାର୍ଯ୍ୟରେ ନ ଥାଏ ତାର ଦୃଢ଼ତା କିଞ୍ଚିତ
ସହି ସମ୍ଭାଳି ଭଜନେ ହୁଅଇ ଯେ ରତ ।
ସାଧନ ଭଜନେ ଚିତ୍ତେ ଦୃଢ଼ତା ନ ଥିଲେ
ବସ୍ତୁ ଲଭି ନ ପାରିବେ କେହି କେତେବେଳେ ।”

ତଦନ୍ତେ କହିଲେ ପ୍ରଭୁ ବିଜୟଙ୍କୁ ଚାହିଁ
"କେତେଦିନ ହେଲା କପାଁ ତବ ଦେଖା ନାହିଁ ।"
ଉତ୍ତରେ କହିଲେ ତହୁଁ ବିଜୟ ବିନୟେ
"କି କରିବି ଗୁରୁ ନାହିଁ ପ୍ରଭୁ ଦୟାମୟେ ।
ଆସିବାକୁ ମୋର ଇଚ୍ଛା ଥାଏ ଷୋଳପଣ
ଆସି ନ ପାରଇ ଯେଣୁ ଅଟେ ପରାଧୀନ ।
ଉଦର ଜ୍ୱାଳାରେ ହୋଇ ଅତି ହରବର
ବ୍ରାହ୍ମ ସମାଜେ କରିଛୁ ଚାକିରି ସ୍ୱୀକାର ।"
ଉତ୍ତରେ କହିଲେ ତାଙ୍କୁ ପ୍ରଭୁ ନରହରି
"କାମିନୀକାଞ୍ଚନ ଅଟେ ମାନବର ବୈରି ।
କାମିନୀ ସକାଶେ ଲୋକେ ହୁଏ [illegible]
କାଞ୍ଚନ କରାଏ ଶେଷେ [illegible] ସ୍ୱୀକାର ।
ଏସନେ ହୁଅଇ ନଷ୍ଟ ନିଜ ସ୍ୱାଧୀନତା
କାର୍ଯ୍ୟ କରି ନ ହୁଅଇ ମନ ଇଚ୍ଛେ ଯଥା ।
ସଂସାରେ ଆବଦ୍ଧ ଯେତେ ମାନବ ନିକର
କାମିନୀକାଞ୍ଚନ ମୂଳ ଅଟଇ ତାହାର ।
ଏ ସମ୍ବନ୍ଧେ ଗଳ୍ପଟିଏ ପଡ଼ଇ ମୋ ମନେ
ଏକ ଚିତ୍ତ ହୋଇ ସର୍ବେ ଶୁଣ ସାବଧାନେ ।
'ଗୋବିନ୍ଦଜୀଉ ଠାକୁର' ଛନ୍ତି ଜୟପୁରେ
ପୂଜକ ନିଯୁକ୍ତ ଯେତେ ତାଙ୍କର ସେବାରେ ।
ବିଭା କରି ନ ପାରିବେ ସେହୁ କଦାଚନ
ଏ ପ୍ରକାର ଥିଲା ଏକ ସେଠାରେ ବାରଣ ।
ଧରିବାକୁ ବ୍ରହ୍ମଚର୍ଯ୍ୟ ବ୍ରତ ସେ ସରବେ
ଅତି ନିର୍ଭୀକ ତେଜସ୍ୱୀ ହୋଇଲେ ଏ ଭବେ ।
କୌଣସି କାରଣେ ଥରେ ତାଙ୍କ ନୃପବର
ଡାକି ପଠାଇଲେ ତାଙ୍କୁ ପ୍ରାସାଦେ ନିଜର ।
ନୃପ ପାଶେ ନ ଗମିଣ ସେ ପୂଜକଗଣ
ଓଲଟି ବୋଇଲେ ତାଙ୍କୁ ଆସିବା କାରଣ ।
ଯୁବକଙ୍କ ବ୍ୟବହାର ଦେଖିଣ ଅଦ୍ଭୁତ
ଉପାୟ ଚାହିଁଲେ ନୃପ ଆପଣା ମାନସ ।
ଅମାତ୍ୟଙ୍କ ସଙ୍ଗେ ତହୁଁ ବହୁତ ବିଚାରି
ସମସ୍ତଙ୍କୁ ଏକାବେଳେ ଦେଲେ ବିଭା କରି ।
ରାଜାଙ୍କ ପାଖକୁ ଏବେ ଆସିବା ନିମିତ୍ତ
ପ୍ରୟୋଜନ ହୁଏ ନାହିଁ ପେଶିବାକୁ ଦୂତ ।
ସ୍ୱୟଂ ସେ ତାଙ୍କ ସମୀପେ ଆପେ ଏବେ ଧାଇଁ
ଅର୍ଥ ସାହାଯ୍ୟ ଲୋଡ଼ନ୍ତି ନାନା କାର୍ଯ୍ୟ ପାଇଁ ।
ଆଜି ତନୟର ବ୍ରତ, କାଲି ବିଦ୍ୟାରମ୍ଭ
ତାହା ପରେ ଘରତୋଳା, ଅର୍ଥର ଅଭାବ ।
ପ୍ରସାଦ ଫୁଲ ତୁଳସୀ ଧରିଣ ହସ୍ତରେ
ଆଶୀର୍ବାଦ କରି ଭିକ୍ଷା ମାଗନ୍ତି ଗ୍ରାମୁରେ ।
ଦେଶେ ପ୍ରଚଳିତ ଅଛି ଆଉ ଏକ କଥା
ବାରଶତ ବାବାଜୀଙ୍କୁ ତେର ଶତ ମାତା ।
ଏହା ଅଟଇ ଆରେକ ମଧୁର ଆଖ୍ୟାନ
ଏକ ଚିତ୍ତ ହୋଇ ଶୁଣ ତାର ବିବରଣ ।
ନିତ୍ୟାନନ୍ଦ ଗୋସ୍ୱାମୀଙ୍କ ବୀରଭଦ୍ର ସୁତ
ତାହାଙ୍କର ଥିଲେ ପୁଣି ଶିଷ୍ୟ ତେରଶତ ।
ସାଧନ କରିଣ ସର୍ବେ ଯେବେ ସିଦ୍ଧ ହେଲେ
ବୀରଭଦ୍ର ମନେ ମନେ ପ୍ରମାଦ ଗଣିଲେ ।
ଏହାକୁ ବୋଲିବେ ଯାହା ଘଟିବ ତୁରନ୍ତ
ସଂସାରେ ଅନିଷ୍ଟ ହେବ ଏଥିରେ ବହୁତ ।
ଅଜ୍ଞାନବଶତଃ କେହି ତାଙ୍କର ଚରଣେ
ଅପରାଧ କରିଲେକ କୌଣସି କାରଣେ ।
କୋପବଶେ ବଦନରୁ ଯା ହେବ ବାହାର
ନିଶ୍ଚୟ ଫଳିବ, ଦ୍ୱିଧା ନାହିଁ ତ ଏଥିର ।
ଏସନ ଆଶଙ୍କା କରି ବୀରଭଦ୍ର ସ୍ୱାମୀ
ଶିଷ୍ୟଙ୍କୁ କହିଲେ ଡାକି ଶୁଣ ମୋର ବାଣୀ ।
ଜାହ୍ନବୀ ତଟରେ ସର୍ବେ ଏକ ଚିତ୍ତ ହୋଇ
ଏକାସନେ ବସି ସନ୍ଧ୍ୟାହ୍ନିକ କର ଯାଇ ।
ଗୁରୁଙ୍କ ଆଦେଶ ଶିରେ ଧରିଣ ସରବେ
ଧ୍ୟାନେ ନିବସିଲେ ତହିଁ ତନ୍ମୟ ଭାବେ ।
ଅନ୍ତରର ଭାବ କ୍ରମେ ହୋଇ ଗାଢ଼ତର
ସମାଧିରେ ମଗ୍ନ ହେଲେ ସରବେ ସେଠାର ।
ଜୁଆର ଭଟ୍ଟା ହୋଇଣ ଗଲା ମଥାପରେ
ଚେତନା ଆସିଲା ନାହିଁ ତଥାପି କାୟରେ ।
ଏ ପ୍ରକାରେ କିୟତ୍କାଳ ହୋଇଲା ଅତୀତ
ଅତଃପର ଯେତେବେଳେ ଚେତନା ପ୍ରାପତ ।
ଗୁରୁ ବାକ୍ୟ ମର୍ମ୍ମ ବୁଝି ଏକଶତ ଶିଷ୍ୟ
ତାଙ୍କ ପାଶେ ନ ଫେରିଣ ହେଲେ ନିରୁଦ୍ଦେଶ ।
ଅବଶିଷ୍ଟ ବାରଶତ ଲେଉଟି ଆସିଣ
ଉପସ୍ଥିତ ହେଲେ ତାଙ୍କ ଗୁରୁ ସନ୍ନିଧାନ ।
ଗୁରୁ ତହୁଁ ଆଦେଶିଲେ ପ୍ରେମ ସହକାର
ଏହି ଯେ ଅଛନ୍ତି ତେରଶତ ଶିଷ୍ୟା ମୋର ।
ତୁମ୍ଭ ପାଦ ସେବା ସେହୁ କରିବେ ନିରତ
ପରିଣୟ କରି ତାଙ୍କୁ ନିଜ ଇଚ୍ଛାମତ ।

ଆଜ୍ଞା ଶିରୋଧାର୍ଯ୍ୟ କରି ସେ ଶିଷ୍ୟ ନିକର
ସେବା ଦାସୀରୂପେ ତାଙ୍କୁ କଲେକ ସ୍ୱୀକାର ।
ପୂର୍ବର ତପୋବଳ କ୍ରମେ ହେଲା କ୍ଷୟ
ଶୌର୍ଯ୍ୟ ବୀର୍ଯ୍ୟ ତେଜ ଶୂନ୍ୟ ହୋଇଲା ହୃଦୟ ।
ବାମା ସଙ୍ଗେ ବାସ କରି ଶକ୍ତି ହେଲା ନାଶ
ଅନ୍ତରେ ରହିଲା ନାହିଁ ସ୍ୱାଧୀନତା ଲେଶ ।
ଦାସତ୍ୱ ସ୍ୱୀକାର କଲେ ହୁଅନ୍ତି ଯେସନ
ନିଜେ ତୁମ୍ଭେ ଭୁକ୍ତଭୋଗୀ କି କହିବ ଆନ ।
ଇଂରାଜୀ ପଢ଼ିଣ ଦେଖ ଦେଶର ଯୁବକ
କେତେ କେତେ ପାଶ କରି ସୁପଣ୍ଡିତ ଲୋକ ।
ଚାକିରୀ ସ୍ୱୀକାର କରି ସେ ସୁଧୀନିକର
ଦୁଇବେଳା ଖାଉଛନ୍ତି ଜୋତାର ପ୍ରହାର ।
ଲାଞ୍ଛନା ନିର୍ଯ୍ୟାତନାଦି ସହୁଛନ୍ତି ଯେତେ
କଲ ନ ହୁଅଇ ତାହା ଅଶ୍ରୁ ପରିମିତେ ।
ତେବେ ବୁଝା ସେଥିପ୍ରତି ସବେ ଅଚୈତନ୍ୟ
ପ୍ରେୟସୀ କାମିନୀ ଅଟେ ଏହାର କାରଣ ।
ପରିଣୟ କରି ଭଲେ ଖୋଲିଛନ୍ତି ହାଟ
ହାଟ ଭାଙ୍ଗି ନ ପାରିଣ ଏବେ ଛଟପଟ ।
ତୀବ୍ର ବୈରାଗ୍ୟ ସାହାଯ୍ୟେ କାହୁଣସି ରୂପେ
ଯାଇପାରି ଅରେ ଯଦି ବିଭୁଙ୍କ ସମୀପେ ।
ନ ରହିବ ଆଉ ତବ କାମିନୀ ଆସକ୍ତି
ଗୃହେ ବାସ କଲେ ମଧ୍ୟ ଥିବ ନାହିଁ କ୍ଷତି ।
ଶ୍ରେଷ୍ଠ ବଡ଼ ଅଛି ଦୁଇ ଚୁମ୍ବକ ପଥର
ଛୁଞ୍ଚିଟିଏ ଥୋଇ ଦେଲେ ସମ୍ମୁଖ ତାହାର ।
ବୃହତ ପଥର ତାକୁ ଟାଣି ନେବ ଜୋରେ
ଶକ୍ତିହୀନ ରହିବ ଯେ କ୍ଷୁଦ୍ର ତା ପାଖରେ ।
ବିଭୁ ଅଟନ୍ତି ପ୍ରକାଣ୍ଡ ଚୁମ୍ବକ ପ୍ରସ୍ତର
ତା ତୁଲେ କାମିନୀ ଅଟେ ଅତୀବ କ୍ଷୁଦ୍ରତର ।
ତୁମ୍ଭଙ୍କୁ ଟାଣିବେ ଯେବେ ପ୍ରଭୁ ଭଗବାନ
ନାରୀର କି ସାଧ୍ୟ, ତହିଁ ଦେବ ବାଧା ଦାନ ?"
ବିନୀତେ ପୁଚ୍ଛିଲେ ତହୁଁ ବ୍ରାହ୍ମଭକ୍ତ ଜଣେ
"ଘୃଣା କରିବୁ କି ତେବେ ତାଙ୍କୁ ଆମ୍ଭେମାନେ ?"
ଉତ୍ତରେ କହିଲେ ପ୍ରଭୁ କରୁଣାସାଗର
"ବିଭୁ ଲଭିବାକୁ କ୍ଷମ ହେବ ଯେଉଁ ନର ।
ନାରୀଙ୍କୁ ଜାଣିଣ ସେହୁ ଦେବୀଙ୍କର ଅଂଶ
ନିରତେ କରନ୍ତି ତାଙ୍କୁ ଭକତି ବିଶେଷ ।
କାମ ଚକ୍ଷୁ ନ ଥାଏକ ଆଉ ତାହାଙ୍କର
ମାତା ପାଶେ ଶିଶୁ ହେବ କପାଁ ସନ୍ତାନର ।"
ବିଜୟେ କହିଲେ ପୁଣି ପ୍ରଭୁ ପରମେଶ
ଇଚ୍ଛା ହୁଏ ତୁମ୍ଭଙ୍କୁ ଯେ ଦେଖିବା ସକାଶ ।
ଅବସର ପାଉଥିବ ତୁମ୍ଭେ ଯେତେବେଳେ
ଆସିବାକୁ ନ କରିବ ତ୍ରୁଟି କେବେବେଳେ ।"
ଅତି ବିନୟେ ବୋଇଲେ ବିଜୟ ଗୋସାଇଁ
"ସମାଜର କାର୍ଯ୍ୟ ଯୋଗୁଁ ଆସି ନ ପାରଇ ।
ସାମାନ୍ୟ ସୁବିଧା ମୁହିଁ ପାଇବି ଯେ କାଳେ
ନିଶ୍ଚୟ ଭେଟିବି ଆସି ଶ୍ରୀଚରଣ ତଳେ ।"
ଅତଃପର କହିଲେ ଶ୍ରୀ କରୁଣା ନିଧାନ
"ଶୁଣ [illegible] ! ତୁମ୍ଭେ ମୋହର ବଚନ ।
ଅଯୋଗ୍ୟର କାର୍ଯ୍ୟ [illegible] ଅତ୍ୟନ୍ତ
ଶିକ୍ଷାଦାନ ବ୍ୟର୍ଥ ବିଭୁ ଆଦେଶ ବ୍ୟତୀତ ।
ବିଭୁ ଆଜ୍ଞା ନ ଲଭିଣ ଉପଦେଶ ଦେଲେ
ସେ କଥା ଶୁଣନ୍ତି ନାହିଁ କେହି କେତେବେଳେ ।
ସେ କଥାରେ ନ ଥାଏକ ଶକ୍ତି କଣିକର
ଯାହାକି ସାଧିବ ଶ୍ରୋତାଙ୍କର ଉପକାର ।
ସାଧନ ଭଜନ କରି ଶ୍ରମ ସହକାରେ
ବିଭୁଙ୍କ ଦର୍ଶନ ଲଭି କୌଣସି ପ୍ରକାରେ ।
ତାଙ୍କର ଆଦେଶ ଯେବେ କଲେ ଶିକ୍ଷାଦାନ
ତହିଁରେ ହେବ ପ୍ରାଣୀଙ୍କ ମହତ କଲ୍ୟାଣ ।
ଆଦେଶ ଦିଅନ୍ତି ଯାକୁ ପ୍ରଭୁ ଜଗତ୍ପତି
ନିହିତ କରନ୍ତି ତାଠି ଆପଣା ଶକତି ।
ସେ ଐଶୀ ଶକତି ବଳେ ଶକ୍ତିବନ୍ତ ହେଲେ
ଏ ଗୁରୁ କାର୍ଯ୍ୟ ସାଧନେ କ୍ଷମ ହେବ ହେଲେ ।"
ବିଜୟ ପୁଚ୍ଛିଲେ ପୁନଃ ପ୍ରଭୁଙ୍କ ଶ୍ରୀମୁଖରେ
"ଉପଦେଶ ଦାନ ପ୍ରଥା ଯଥା ସମାଜରେ ।
ତହିଁରେ କି କେତେବେଳେ ଏ ମାନବଗଣ
ପାଇ ନ ପାରିବେ ଏ ସଂସାରୁ ପରିତ୍ରାଣ ?"
ଉତ୍ତରେ କହିଲେ ତାଙ୍କୁ ବ୍ରହ୍ମାଣ୍ଡର ପତି
"ପ୍ରାଣୀର କି ସାଧ୍ୟ ଦେବ ବନ୍ଧନରୁ ମୁକତି ?
ଭୁବନମୋହିନୀ ମାୟା ଯାଙ୍କଠୁ ସମ୍ଭୂତା
ମୁକ୍ତିଦାନେ ଅଛି ମାତ୍ର ତାଙ୍କରି କ୍ଷମତା ।
ନିଜେ ଲଭି ନାହିଁ ଯେହୁ ବିଭୁଙ୍କ ଦର୍ଶନ
କିମ୍ବା ଶିକ୍ଷା ଦେବା ପାଇଁ ଆଦେଶ ବଚନ ।
କି ଅବା ତାଙ୍କ ଶକ୍ତିରେ ନୁହେ ଶକ୍ତିମନ୍ତ
କି ସାଧ୍ୟ କରିବ ସେହୁ ବନ୍ଧନରୁ ମୁକ୍ତ ?

ପଞ୍ଚବଟୀ ସମୀପରେ ଦେଖିଥିଲି ଥରେ
ଧଣ୍ଡସାପ ଧରିଅଛି ବେଙ୍ଗକୁ ମୁହଁରେ ।
ଯନ୍ତ୍ରଣାରେ ବେଙ୍ଗ ଛାଡ଼େ ଅତିଶୟ ରଡ଼ି
ଗିଳି ନ ପାରଇ ସର୍ପ ହେଉଥାଏ ଭିଡ଼ି ।
ସକରୁଣ ରାବ ଶୁଣି ଗଲି ତାର ପାଶ
ଦେଖିଲି ଯେ ଦୁହିଁଙ୍କର ଯନ୍ତ୍ରଣା ଅଶେଷ ।
ଜାତିବାଲା ସାପ ଯଦି ସେହୁ ହୋଇଥାନ୍ତା
ତିନି ଡାକେ ବେଙ୍ଗର ଯେ ପ୍ରାଣ ଯାଇଥାନ୍ତା ।
ବେଙ୍ଗକୁ ଧରିଛି ଯେଣୁ ବିଷହୀନ ସାପ
ସେ ହେତୁ ଯେ ଦୁହିଁଙ୍କର ଯନ୍ତ୍ରଣା ଅମାପ ।
ସଦ୍‌ଗୁରୁ ତିନି ଥର ଦେଲେକ ଆଦେଶ ।
ପ୍ରାଣୀ ଚିତ୍ତୁ ଅହଂକାର ଏକାବେଳେ ନାଶ ।
କଞ୍ଚା ଗୁରୁ କେତେବେଳେ ତାର ଶିଷ୍ୟଙ୍କର
ଦୂର କରି ନ ପାରଇ ଚିତ୍ତୁଁ ଅହଂକାର ।
ସଂସାର ବନ୍ଧନ ତାର ନ ତୁଟଇ କେବେ
ଯନ୍ତ୍ରଣାରେ ଜଳବଳ ହରତେ ଏ ଭବେ ।"
ପୁନଶ୍ଚ ପୁଚ୍ଛିଲେ ଧୀରେ ବିଜୟ ଗୋସାଇଁ
"ବଦ୍ଧ ହୋଇଛୁଁ ଏମନ୍ତେ ସଂସାରେ କପାଇଁ ?
ଚରଣାନ୍ତଦାତା ଯେଉଁ ପରମ-ଈଶ୍ୱର
ଦର୍ଶନ ନ ପାଉଁ କିମ୍ପା ଆମ୍ଭେ ତାହାଙ୍କର ?"
ଉତ୍ତରେ କହିଲେ ପ୍ରଭୁ ଭକତବତ୍ସଳ
"ପ୍ରାଣୀଙ୍କର ଅହଂକାର ଅଟଇ ତାର ମୂଳ ।
ମାୟାରୂପୀ ଅହଂକାର ସର୍ବତୋଭାବନର
ଆଚ୍ଛନ୍ନ ରଖିଛି ପ୍ରାଣୀ ହୃଦୟ ମନ୍ଦିର ।
ଅହଂକାର ଦୂର ହେଲେ ତୁଟିବ ଜଞ୍ଜାଳ
ହୃଦୟ ମନ୍ଦିର ହେବ ବିଶୁଦ୍ଧ ବିମଳ ।
ଈଶ୍ୱରଙ୍କ କୃପାବଳେ ଯଦ୍ୟପି କାହାର
"ମୁଁ ଅକର୍ତ୍ତା ଏ ଭାବଟି ଉପୁଜେ ଚିତ୍ତର ।
ଜୀବନ୍ମୁକ୍ତ ହୋଇଯାଏ ସେହୁ ଏକାବେଳେ
ଭୟଭୀତ ନ ଥାଏକ ତାର ହୃଦେ ତିଳେ ।
ପ୍ରାଣୀର 'ଅହଂ' ବା ମାୟା ଜଳଦ ସମାନ
ଈଶ୍ୱରଙ୍କୁ ନିରନ୍ତର ରଖିଛି ଆଚ୍ଛନ୍ନ ।
ମେଘମାଳ ଆବରିଲେ ସୂର୍ଯ୍ୟଙ୍କୁ ଯେପରି
ମାନବେ ନ ପାନ୍ତି ଆଉ ଦର୍ଶନ ତାଙ୍କରି ।
ପୁଣି ତାହା ଯେତେବେଳେ ହୁଏ ଅପସୃତ
ଉଜ୍ଜ୍ୱଳ କିରଣେ ଭାନୁ ହୋନ୍ତି ପ୍ରତିଭାତ ।
ଗୁରୁଙ୍କ କୃପାରେ ଅହଂ ବୁଦ୍ଧି ହେଲେ ନାଶ
ହୃଦୟ ମନ୍ଦିରେ ଭାନୁ ହୁଅନ୍ତି ପ୍ରକାଶ ।
ବସିଲେ ହିଁ ତୁମ୍ଭେ ମୋର ଅତି ସନ୍ନିଧାନ
ଗାମୁଛାରେ ମୋ ମୁହଁକୁ କଲେ ଆବରଣ ।
ଦେଖି ନ ପାରିବ ତୁମ୍ଭେ ମୋତେ କେତେବେଳେ
ଗାମୁଛାଟି ବ୍ୟବଧାନ ଯେଣୁ ମଧ୍ୟସ୍ଥଳେ ।
ଶ୍ରୀହରି ଥିଲେକ ସଦା ପ୍ରାଣୀ ସନ୍ନିକଟେ
ମାୟାଯୋଗୁଁ ନ ଦିଶନ୍ତି ଆମ୍ଭ ନେତ୍ରପଟେ ।
ସଚ୍ଚିଦାନନ୍ଦ ହିଁ ହୋଇଛନ୍ତି ଏହି ପ୍ରାଣୀ
ଉପାଧିରେ ଭୁଲିଛନ୍ତି ସ୍ୱରୂପ ନ ଜାଣି ।
ଉପାଧିବିଶେଷେ ଦେଖ ପ୍ରାଣୀର ସ୍ୱଭାବ
ବଦଳିଯାଇଣ ଧରେ ଭିନ୍ନ ଭିନ୍ନ ଭାବ ।
କଳାଧଡ଼ି ଲୁଗା ଖଣ୍ଡେ କଲେ ପରିଧାନ
ରସିକତା ଭାବ ଚିତ୍ତେ ହୁଏ ଉଦ୍ଦୀପନ ।
ବୁଲିଗଲାବେଳେ ଖଣ୍ଡେ ବାଡ଼ି ଥିଲେ ହାତେ
ମୁହଁରୁ ବାହାରେ ପ୍ରେମ-ରସ-ଗୀତ ଯେତେ ।
କିମ୍ବା ତାର ଆଉ ତିନି ବନ୍ଧୁଙ୍କୁ ଡାକିଣ
ତାସ ପଶା ଖେଳି କାଳ କରଇ କ୍ଷେପଣ ।
ବୁଟ୍ ଜୋତା ପିନ୍ଧିଲେକ ଅତି ରୁଗ୍ଣ ବ୍ୟକ୍ତି
ତାହାର ହୁଅଇ ପୁଣି ଆରେକ ପ୍ରକୃତି ।
ଚାଲିଯାଏ ଧପ ଧପ ମୁହେଁ ଗାଇ ଗୀତ
ଠିକ୍ ଶ୍ୱେତଦ୍ୱୀପବାସୀ ଇଂରେଜ ଯେମନ୍ତ ।
ହସ୍ତରେ କାହାରି ଯଦି କଲମ ପଡ଼ଇ
ଚର ଚର ଘଷିଯାଏ କାଗଜ ବିଛୁଇ ।
ଟଙ୍କାର ଅଛଇ ଏକ ଅଲୌକିକ ଗୁଣ
ସ୍ୱଭାବକୁ କରିଦିଏ ପରିବର୍ତ୍ତନ ।
ଯାହାଠାରେ ଥାଏ ତାର କେତେ ଅହଂକାର
ମଣିଦପଣିଆ ତାଠୁଁ ହୋଇଯାଏ ଦୂର ।
ଏକଦା ଗୋଟିଏ ବେଙ୍ଗ ଟଙ୍କାଟିଏ ପାଇ
ଗର୍ତ୍ତମଧ୍ୟେ ରଖିଥିଲା ତାହାକୁ ଲୁଚାଇ ।
ସେ ବାଟରେ ଯାଉ ଯାଉ ଦିନେ ଏକ ହାତୀ
ନ ଜାଣି ସେ ଗର୍ତ୍ତ ଡେଇଁ ଗଲାକ ଯେମତି ।
କ୍ରୋଧବଶେ ବେଙ୍ଗ ତାର ଗର୍ତ୍ତରୁ ବାହାରି
ଗୋଇଠା ଦେଖାଇ ତାକୁ ଗାଳି ଦେଲା ଭାରି ।
"ଆରେ ରେ ପାମର ତୋର ଦମ୍ଭ ପୁଣି ଏତେ
ମୋତେ ଡେଇଁ ଯିବା ପାଇଁ ଭରସିଲୁ ଚିତ୍ତେ ।"
କେତେ ବଳିଆର ଦେଖ ଟଙ୍କାର ପ୍ରଭାବ
ବେଙ୍ଗ ଭଳି ପ୍ରାଣୀ ଚିତ୍ତେ ଆଣିଲା ଗରବ ।

ଅହଂକାର ଦୂର ହେବା ଅତୀବ କଠିନ
ନାଶଯାଏ କେବଳ ତା ଅରଜିଲେ ଜ୍ଞାନ ।
ସେ ଜ୍ଞାନ ଲଭିଲେ ପ୍ରାଣୀ ହୋନ୍ତି ସମାଧିସ୍ଥ
ଅତୀବ କଠିନ କିନ୍ତୁ ଏ ଗନ୍ତବ୍ୟ ପଥ ।
ସପ୍ତମ ଭୂମିରେ ଯାର ମନ ପ୍ରବେଶଇ
ବେଦମତେ ସେହି ପ୍ରାଣୀ ସମାଧି ଲଭଇ ।
କି ଅବା ସେ ସପ୍ତଭୂମି ଶୁଣ ତା ଆଖ୍ୟାନ
ସର୍ବ ଦୁଃଖ ହରଇ ଯା କଲେକ ଶ୍ରବଣ ।
ନାଭି, ଲିଙ୍ଗ, ଗୁହ୍ୟ ଯେଉଁ ଅଛି ଭୂମି ତ୍ରୟ
ମନ ତହିଁ ଭ୍ରମୁଥାଏ ସରବ ସମୟ ।
ଯେତେବେଳ ଯାଏ, ଏଥି ତାହାର ବସତି
କାମିନୀ କାଞ୍ଚନେ ସଦା ତାହାର ଆସକ୍ତି ।
ହୃଦୟରେ ନିବସଇ ମନ ଯେତେବେଳେ
ବିଭୁଙ୍କର ଜ୍ୟୋତିଃଦୃଷ୍ଟ ହୁଅଇ ସେ କାଳେ ।
ସେ ଜ୍ୟୋତିଃ ମାଧୁରୀ ଦେଖି ବୋଲଇ ଚକିତେ
ଏ କି ଅଲୌକିକ ଜ୍ୟୋତିଃ ଲୋଚନ ଅଗ୍ରତେ ।
ତଦୂର୍ଦ୍ଧ୍ୱେ ଉଠିଣ ଯେବେ କଣ୍ଠେ କରେ ବାସ
ହରି କଥା ଶୁଣିବାକୁ ହୁଏ ଅଭିଳାଷ ।
ଊର୍ଦ୍ଧ୍ୱେ ଉଠି ଭ୍ରୂମଧ୍ୟରେ କଲେକ ବସତି
ସଚ୍ଚିଦାନନ୍ଦଙ୍କ ରୂପ ଦେଖାଯାଏ ତଥି ।
ଦିବ୍ୟାନନ୍ଦ ଜାତ ହୋଇ ହୃଦୟ ମଧ୍ୟର
ଆଲିଙ୍ଗନ ପାଇଁ ଚେଷ୍ଟା କରେ ବାରମ୍ବାର ।
ମନୋରଥ କିନ୍ତୁ କେଭେ ନ ହୁଏ ପୂରଣ
ଲଣ୍ଠନ ମଧ୍ୟରେ ଦୃଷ୍ଟ ଆଲୋକ ଯେସନ ।
ଛୁଇଁଲି ଛୁଇଁଲି ମନେ ହୁଏ ସଦାବେଳେ
ସ୍ପର୍ଶ କରି ନ ପାରଇ ତାହା କେତେବେଳେ ।
ସପ୍ତମ ଭୂମିରେ ଯଦା ପ୍ରବେଶଇ ମନ
ଅହଂ ନାଶ ହୋଇ ଏଠି ସମାଧିରେ ଲୀନ ।"
ଏ ମଧୁ ଆଖ୍ୟାନ ଶୁଣି ବିଜୟ ଗୋସାଇଁ
ସନ୍ଦେହ ଭଞ୍ଜନ ହେତୁ ପୁନଃ ପୃଚ୍ଛିଲାଇଁ ।
"ସମାଧିରେ ହୁଏ ଯେଉଁ ବ୍ରହ୍ମଙ୍କ ଦର୍ଶନ
ତାହାର ସ୍ୱରୂପ ପ୍ରଭୋ ! କରନ୍ତୁ ବର୍ଣ୍ଣନ ।"
ଉତ୍ତରେ ବୋଇଲେ ପ୍ରଭୁ ରାମକୃଷ୍ଣ ସ୍ୱୟ
"ମୁଖେ କହି ନ ହୁଅଇ ସେ ସବୁ ବିଷୟ ।
ପ୍ରାଚୀନକାଳରୁ ଅଛି ଯେମନ୍ତ ପ୍ରବାଦ
କଳାପାଣି ଗଲେ ପୋତ ନ ମିଳେ ସମ୍ବାଦ ।
ସମୁଦ୍ରର ଗଭୀରତା ମାପିବା ନିମନ୍ତେ
ଲବଣ ପିତୁଳା ତହିଁ ପଶିଲା ଯେମନ୍ତେ ।
ଦ୍ରବ ହୋଇ ସମୁଦ୍ରରେ ହୋଇଗଲା ଲୀନ
ଗଭୀରତାର ସମ୍ବାଦ କିଏ ଦେବ ପୁଣ ।
ସପ୍ତମ ଭୂମିରେ ହୁଏ ମନର ବିନାଶ
ତହିଁ ଯା ଦେଖଇ କିଏ ଦେବ ସେ ସନ୍ଦେଶ ।
ଯେଉଁ 'ଅହଂ'ବଳେ ପ୍ରାଣୀ ହୁଅନ୍ତି ସଂସାରୀ
କାମିନୀ କାଞ୍ଚନେ ବଡ଼େ ଆସକ୍ତ ଆତୁର ।
ସେ ଅହଂ ଜ୍ଞାନଟି ଅଟେ ଅତିଶୟ ମନ୍ଦ
ଜୀବ ଆଉ ଆତ୍ମା ମଧ୍ୟେ ଘଟାଏ ପ୍ରଭେଦ ।
ସଲିଳ ଉପରେ ବାଡ଼ି ପଡ଼ିଲେ ଯେମନ୍ତ
ବେନିଖଣ୍ଡ ହୋଇ ଜଳ ପୃଥକ ଲକ୍ଷିତ ।
ପ୍ରକୃତରେ ଜଳ ଏକ ପୃଥକ ନୁହଇ
ବାଡି ଖଣ୍ଡ ହେତୁ ତାହା ଦ୍ୱିଭାଗ ଦିଶଇ ।
ସେହିପରି ବ୍ରହ୍ମମୟ ଅଟଇ ଜଗତ
ଅହଂ ଭାବ କରୁଅଛି ତାହାକୁ ବିଭକ୍ତ ।
ମୁହୂର୍ତ୍ତକ ପାଇଁ ତାହା ବେନିଖଣ୍ଡ ହୋଇ
ପୁନରପି ପୂର୍ବ ପ୍ରାପ୍ତ ଅଖଣ୍ଡ ଦିଶଇ ।
ବିଭୁଙ୍କର ଭକ୍ତ ମୁହିଁ, ବିଭୁଙ୍କର ଦାସ
ଆବର ଶିଶୁଙ୍କଠାରେ ଯେ 'ଅହଂ' ପ୍ରକାଶ ।
ଏ ଢଙ୍ଗ 'ଅହଂ' ଭାବରେ ଦୋଷ ଯେ ନ ଥାଏ
ଯେଣୁ ଏହା କ୍ଷଣସ୍ଥାୟୀ ଜଳରେଖା ପ୍ରାୟେ ।"
ବିନୀତେ ପୃଚ୍ଛିଲେ ପୁନଃ ଗୋସ୍ୱାମୀ ବିଜୟ
"ତା ହେଲେ ବଜ୍ଜାତ ଅହଂ ଅଟେ ବର୍ଜନୀୟ ।
ଦାସ ମୁହିଁ ଏହି ଭାବ ଅନ୍ତରେ ପୋଷିଲେ
ପ୍ରମାଦ ନ ପଡ଼େ ପ୍ରାଣୀଠାରେ କେତେବେଳେ ?"
ଉତ୍ତରେ କହିଲେ ତାଙ୍କୁ ପ୍ରଭୁ ପରମେଶ
'ମୁହିଁ ଦାସ' ଏ ଅହଂରେ ନ ଥାଏକ ଦୋଷ ।
'ବିଭୁଙ୍କର ଦାସ' ମୁହିଁ ବିଭୁଙ୍କ ଭକତ
ଏ ଅଭିମାନେ ମିଳନ୍ତି ଶ୍ରୀଦେବ ଅଚ୍ୟୁତ ।"
ବିନୀତେ ପୃଚ୍ଛିଲେ ପୁନଃ ବିଜୟ ଗୋସାଇଁ
"ସବୁ ହିଁ ମଣିଲି ସତ୍ୟ ପ୍ରଭୋ ବିଶ୍ୱସାଇଁ !
'ଯେଉଁ ଦାସ ଅହଂ' ବଳେ ହୁଏ ବିଭୁ ଲାଭ
ତାର କାମକ୍ରୋଧାଦିର କୀଦୃଶ ସ୍ୱଭାବ ?"
ଉତ୍ତରେ କହିଲେ ପ୍ରଭୁ ସର୍ବ ଗୁଣଧାମ
"ଶୁଣ ଏବେ କହୁଅଛି ତାର ଗୁଣ ଗ୍ରାମ ।
ଠିକ ଠିକ ଭାବ ଯଦି ଚିତ୍ତେ ଉପୁଜଇ
କାମକ୍ରୋଧାଦି କେବଳ ନାମ ମାତ୍ରେ ଥାଇ ।

ବିଭୁଙ୍କ ପୁଣ୍ୟ ଦର୍ଶନ ଲଭ କଲା ପରେ
'ମୁଁ ଭକ୍ତ' ଏ ଅହଂ ଯଦି ଥାଏ ତାହାଠାରେ ।
କିମ୍ବା ଯଦି 'ଦାସ ଅହଂ' ଥାଏ ତାର ଚିତ୍ତେ
କ୍ଷତି କରି ନ ପାରଇ ଅନ୍ୟର କିଞ୍ଚିତେ ।
ସ୍ୱର୍ଣ୍ଣମଣି ସ୍ପରଶିଲେ ଲୌହ ତରବାରି
ତତକ୍ଷଣେ ହୁଅଇ ସ୍ୱର୍ଣ୍ଣ ଆକାର ତାହାରି ।
ତରବାରର ଆକାର ରହଇ ତଦ୍ବତ
ହିଂସା କାର୍ଯ୍ୟେ ନ ହୁଅଇ ଆଉ ବ୍ୟବହୃତ ।
ନାରକେଳ ବୃକ୍ଷଟିରୁ ବାହୁଙ୍ଗା ଖସିଲେ
ଗାତ୍ରୁ ତାର ନ ଲିଭଇ ଦାଗ କେତେବେଳେ ।
ସେ ଦାଗ ଦେଖିଲେ ସଦା ହୁଅଇ ସ୍ମରଣ
ଏଠାରେ ବାହୁଙ୍ଗା ତାର ଥିଲାକ ସଂଲଗ୍ନ ।
ବିଭୁ ଲଭ ସେହିପରି ହୋଇଥାଏ ଯାର
ଅହଂକାର ଚିହ୍ନମାତ୍ର ରହଇ ତାଠାର ।
ଆକାରେ କେବଳ ଥାଏ ତାଠି କ୍ରୋଧ କାମ
ସ୍ୱଭାବ ହୁଅଇ ତାର କ୍ଷୁଦ୍ର ବାଳସମ ।
ସତ୍ତ୍ୱ ରଜଃ ତମୋଗୁଣ ଥାଏ ଶିଶୁଠାର
ବଶୀଭୂତ ରହେ ନାହିଁ କିନ୍ତୁ ସେ ତାହାର ।
ଭଲ ଦ୍ରବ୍ୟ ଦେଖିଲେକ କରଇ ସେ ଅଳି
କସ୍ୱଳ୍ପକାଳ ପରେ ପୁଣି ସବୁ ଯାଏ ଭୁଲି ।
ବହୁ ମୂଲ୍ୟ ପାଟ ଲୁଗା ଯଦି ପିନ୍ଧିଥାଏ
ସାମାନ୍ୟ ଲୁଣ୍ଡେଇ ଦେଲେ ତାହା ଦେଇ ଦିଏ ।
ପ୍ରଥମେ ମାଗିଲାକ୍ଷଣି ହୁଏ ଅସମ୍ମତ
ଲୋଭ ଯେହ୍ନେ ଥାଏ ତାର ତହିଁ ଅପ୍ରମିତ ।
ବୋଲେ କିଣି ଦେଇଛନ୍ତି ବାପା ଏହା ମୋତେ
କାହାରିକୁ ଦେବ ନାହିଁ ମୁହିଁ କଦାଚିତେ ।
ଶିଶୁଠାରେ ସାନ ବଡ଼ ନ ଥାଏ ଯେ ଜ୍ଞାନ ।
ସକଳ ପ୍ରାଣୀ ତାଠାରେ ଅଟନ୍ତି ସମାନ ।
ତାହାଠି ନ ଥାଏ ମଧ୍ୟ ଜାତିର ବିଚାର
ଅବାଧେ ଭୁଞ୍ଜଇ ଯାର ତାର ସଙ୍ଗତର
ମାତା କହିଛନ୍ତି ତାକୁ ଏ ଅଟେ ତୋ ଭାଇ
ଏକପତେ ଖାଏ ବସି ହେଲେହେଁ ବଢ଼େଇ ।
ଘୃଣା ବା ଶୁଚି ଅଶୁଚି ନ ଥାଏ ଅନ୍ତରେ
ଝାଡ଼ାଫେରି ନ ମାଜଇ ହାତକୁ ମାଟିରେ ।
ସମାଧି ଲଭିଲେ ମଧ୍ୟ କେତେକ ଭକତ
'ଭକ୍ତ ମୁଁ' ଏ ଅଭିମାନ ପୋଷନ୍ତି ନିରତ ।
'ତୁମ୍ଭେ ମୋର ପ୍ରଭୁ ଅଟ' 'ମୁଁ ତୁମ୍ଭର ଦାସ'
'ମୁଁ ତୁମ୍ଭର ଭକ୍ତ ଅଟେ,' 'ତୁମ୍ଭେ ମୋର ଈଶ'
ଏ ପ୍ରକାର ଅହଂକାର ଭକତଙ୍କ ଚିତ୍ତେ
ବିଭୁଲଭ ପରେ ମଧ୍ୟ ରହନ୍ତି କିଞ୍ଚିତେ ।
ସମୂଳେ କେବେହେଁ ତାର ନାଶ ନ ଘଟଇ
ଏଥିରେ କିଞ୍ଚିତ ମାତ୍ର ସନ୍ଦେହ ନ ଥାଇ ।
ଏ ପ୍ରକାର ଅଭିମାନ ନ ହୁଅଇ ହାନି
ସୁଫଳ ପ୍ରଦାନେ ତାହା ଅନ୍ତିମରେ ପୁଣି ।
ଯେଣୁ ତା ଅଭ୍ୟାସ କଲେ ହୁଏ ବିଭୁ ପ୍ରାପ୍ତି
ଶାସ୍ତ୍ରବାକ୍ୟେ ଭକ୍ତିଯୋଗ ଏହାକୁ ବୋଲନ୍ତି ।
ଭକତି ମାର୍ଗକୁ ମଧ୍ୟ ଦୃଢ଼େ ଧରିଥିଲେ
ତହିଁରେ ବି ଭକତଙ୍କୁ ବ୍ରହ୍ମଜ୍ଞାନ ମିଳେ ।
ବ୍ରହ୍ମଜ୍ଞାନ ନ ଲୋଡ଼ନ୍ତି ଭକତନିକର
ଦାସ ଭାବେ ଅତି ପ୍ରୀତି ଚିତ୍ତେ ତାହାଙ୍କର ।
ମାତା ପିତା ତୁମ୍ଭେ ପ୍ରଭୋ ! ତୁମ୍ଭ ବିଶ୍ୱସାଇଁ
ତୁମ୍ଭର ଅଜ୍ଞାନ ସୁତ ମୁହିଁ ଯେ ଅଟଇ ।
ଏ ପ୍ରକାର ଅଭିମାନେ ଥାନ୍ତି ଉଲ୍ଲସିତ
ଇଚ୍ଛା ନ କରନ୍ତି ତେଣୁ ବର୍ଜ୍ଜନ ନିମିତ୍ତ ।"
ଏମନ୍ତ ବ୍ୟାଖ୍ୟା ଶୁଣିଣ ବିଜୟ ଗୋସାଇଁ
ପୁନଶ୍ଚ ପୁଚ୍ଛିଲେ ଧୀରେ ଯୋଡ଼କର ହୋଇ ।
"ନିରତେ କରନ୍ତି ଯେହୁ ବେଦାନ୍ତ ବିଚାର
ସେହୁ ତ ଲଭନ୍ତି ପୁଣି ଦର୍ଶନ ତାଙ୍କର ।"
ଉତ୍ତରେ କହିଲେ ପ୍ରଭୁ ରାମକୃଷ୍ଣ ରାୟ
"ସେଥିରେ ମିଳଇ ମଧ୍ୟ ଦର୍ଶନ ନିଶ୍ଚୟ ।
ଜ୍ଞାନଯୋଗ ଅଟଇ ଯେ ସେ ପନ୍ଥାର ନାମ
ଏହାକୁ ଜାଣିବ ତୁମ୍ଭେ ଅତୀବ କଠିନ ।
ପୂରବେ ମୁଁ କହିଅଛୁ ଆଖ୍ୟାନ ଏହାର
ସପ୍ତମ ଭୂମିରେ ମନ ପ୍ରବେଶଇ ଯାର ।
ସମାଧି ଅବସ୍ଥା ସେହୁ ଲଭିଣ ସେ କାଳେ
ଚିଦାନନ୍ଦ ସୁଖ ଭୁଞ୍ଜେ ହୃଦୟ କମଳେ ।
ନିତ୍ୟ ସତ୍ୟ ବସ୍ତୁ ଏକ ବ୍ରହ୍ମ ସନାତନ
ଜଗତ ସଂସାର ମିଥ୍ୟା ଆଉ ସାରହୀନ ।
ଏ ଭାବ ହୃଦୟେ ଯାର ହୁଏ ଦୃଢ଼ୀଭୂତ
ତାର ମନ ଲୀନ ହୋଇ ସମାଧି ପ୍ରାପତ ।
କଳିଯୁଗେ ପ୍ରାଣୀଙ୍କର ଅନ୍ନଗତ ପ୍ରାଣ
ଦେହ ମନ ସେ କାରଣେ ଅତି ଶକ୍ତିହୀନ ।
ବ୍ରହ୍ମ ସତ୍ୟ ଜଗନ୍ମିଥ୍ୟା ଏ ମହତ ଭାବ
ଧାରଣା କରିବା ତେଣୁ ନୁହଇ ସମ୍ଭବ ।

ଦେହ ବୁଦ୍ଧି-ଭାବ ଚିତ୍ତୁ ନ ହେଲେ ଅନ୍ତର
ସେ ଭାବ ଧାରଣା ପାଇଁ ଅକ୍ଷମ ଏ ନର ।
'ମୁଁ ନୁହଇ ଦେହ, ମନ, ଚତୁର୍ବିଂଶ ତତ୍ତ୍ୱ
ମୁଁ ଅଟେ ଯାବତ ସୁଖ ଦୁଃଖର ଅତୀତ ।
ମୋର ପୁଣି ଜରା, ଶୋକ, ରୋଗ, ମୃତ୍ୟୁ ନାହିଁ
ହୃଦୟେ ଏପରି ବୋଧ କଠିନ ଅଟଇ ।
ବିଚାର କରୁଥା ତୁମ୍ଭେ ମନେ ମନେ ଯେତେ
ଦେହ ବୁଦ୍ଧି ପୁଣି ଆସେ ତା ପର ମୁହୂର୍ତ୍ତେ ।
ଦେହ ଅଭିମାନ ଯେଣୁ ନ ଯାଏ ସମୂଳେ
ଭକ୍ତିଯୋଗ ହିଁ ପ୍ରଶସ୍ତ ତେଣୁ କଳିକାଳେ ।
ବିଭୁଙ୍କ ଦର୍ଶନ ଲାଭ କରିବା ନିମନ୍ତେ
ଏମନ୍ତ ସହଜ ପନ୍ଥା ନାହିଁ ଏ ଜଗତେ ।
ଶୁଦ୍ଧଚିତ୍ତେ ବିଭୁଙ୍କର ନାମ ଗୁଣଗାନ
ଏ ଯୁଗର ଅଟଇ ଯେ ମହତ ସାଧନ ।
ଚିନି ଖାଇବା ନିମନ୍ତେ ଇଚ୍ଛନ୍ତି ଭକତେ
ଚିନି ହେବା ପାଇଁ ଆଶା ନ ପୋଷନ୍ତି ଚିତ୍ତେ ।
'ତୁମ୍ଭେ ପ୍ରଭୋ ଭଗବାନ, ମୁଁ ତୁମ୍ଭର ଦାସ
ଏ ସେବା ସେବକ ଭାବେ ମୋର ଚିର ଆଶ ।
ଗଙ୍ଗାର ଅଟଇ ଢେଉ ବୋଲନ୍ତି ସରବେ
ଢେଉର ଅଟଇ ଗଙ୍ଗା ନ କହନ୍ତି କେବେ ।
'ଯେ ବ୍ରହ୍ମ ପୁରୁଷୋତ୍ତମ ଅନାଦି କାରଣ
ମୁଁ ଅଟଇ ସେହି ପୂର୍ଣ୍ଣବ୍ରହ୍ମ ସନାତନ ।'
ଦେହାତ୍ମା ବୁଦ୍ଧି ଯା ଚିତ୍ତେ ସଦା ଜାଗରିତ
ତା ପକ୍ଷେ ଏ ଅଭିମାନ ନୁହଇ ବିହିତ ।
ଏଥିରେ ତାହାର କେବେ ନୋହିବ କଲ୍ୟାଣ
ପରନ୍ତୁ ବିଶେଷ ଭାବେ ହାନି ହେବ ଜାଣ ।
ଧର୍ମ ମାର୍ଗେ ନୋହିପାରି କିଛି ଅଗ୍ରସର
ଅଧଃପତନ ହୁଅଇ ଅନ୍ତିମେ ତାହାର ।
ଆପଣା ଅବସ୍ଥା ପ୍ରତି ନଜର ନ ରଖି
ଅପରକୁ ଠକୁ ଠକୁ ନିଜେ ଯାଏ ଠକି ।
ଭକ୍ତ ହେବା ମାତ୍ରେ ବିଭୁ ଦେବେ ଦରଶନ
ଏପରି ନ ଭାବ ତୁମ୍ଭେ ଚିତ୍ତେ କଦାଚନ ।
ଭକ୍ତି ପୁଣି ଦୁଇଭାଗେ ବିଭକ୍ତ ହୁଅଇ
ବୈଧୀ ଭକ୍ତି, ରାଗଭକ୍ତି, ନାମ ଯାର ଦୁଇ ।
ପ୍ରଥମରେ ଶୁଣ ବୈଧୀ ଭକ୍ତିର ଲକ୍ଷଣ
ନାନା ଉପାୟରେ ପୂଜା ଏଥିର ବିଧାନ ।

ଏତେ ଥର ନାମ ଜପ, ତୀର୍ଥ ପର୍ଯ୍ୟଟନ,
ବ୍ରତ, ଉପବାସ, ଆଉ ଏତେ ବଳିଦାନ ।
ଏହା ଆଚରି ଆଚରି ଯଥା ସମୟରେ
ରାଗ ଭକ୍ତି ଉପୁଜଇ ସାଧକ ଚିତ୍ତରେ ।
ରାଗ ଭକତି ଆରେକ ନାମେ ହୁଏ ଖ୍ୟାତ
ପ୍ରେମାଭକ୍ତି ବୋଲି ଯାହା ଶାସ୍ତ୍ରରେ ବର୍ଣ୍ଣିତ ।
ଏ ରାଗ ଭକ୍ତି ଜନମେ ହୃଦୟେ ଯାହାର
ସଂସାର ଆସକ୍ତି ତାର ଛାଏଁ ହୁଏ ଦୂର ।
ବିଭୁପାଦେ ସ୍ନେହ ଶ୍ରଦ୍ଧା ପ୍ରେମ ଉପୁଜିଣ
ଟାଳିଦିଏ ତାଙ୍କ ପାଦେ ଷୋଳପଣ ମନ ।
ଏ ପ୍ରେମ ରାଗ ଭକତି ହେଲେ ବଳବତୀ
ବିଭୁଙ୍କ ଦର୍ଶନ ଲଭେ ପ୍ରାଣୀ କ୍ଷମ ହୋନ୍ତି ।
ଏ ରାଗ ଭକତି ପୁଣି କାହାରି କାହାରି
ମନକୁ ଉପୁଜେ ଚିତ୍ତେ କର୍ମ ନ ଆଚରି ।
ଭକତ ପ୍ରହ୍ଲାଦେ ଦେଖ ଦୃଷ୍ଟାନ୍ତ ତାହାର
ଆଶୈଶବୁ ରାଗ ଭକ୍ତି ବିଭୁଙ୍କ ପସ୍ତର ।
ଦକ୍ଷିଣା ପବନ ଯେବେ ପ୍ରବଳ ହୁଅଇ
ବିଞ୍ଚଣାର ଲୋଡ଼ା ଆଉ କିଛିତ ନ ଥାଇ ।
ବିଭୁଙ୍କ ପସ୍ତରେ ପ୍ରେମ ଜନ୍ମିବା ସକାଶ
ଜପ ତପ ବ୍ରତାଦିର ଲୋଡ଼ା ଯେ ବିଶେଷ ।
ସେ ପ୍ରେମ ଜନମେ ଯଦି ମନକୁ କାହାର
ବୈଧୀ କର୍ମେ ଆଉ କିବା ପ୍ରୟୋଜନ ତାର ?
ହରି ପ୍ରେମେ ଅନୁକ୍ଷଣ ମତୁଆଲି ଥାଇ
ହରି ବିନୁ ଅନ୍ୟ କର୍ମ କିଛି ନ ଜାଣଇ ।
ଯେତେ କ୍ଷଣ ବିଭୁପାଦେ ନ ଜନ୍ମିଛି ପ୍ରୀତି
କଞ୍ଚା ଭକତି ନାମରେ ତାବତ ଯେ ଖ୍ୟାତି ।
ଏ କାଳେ ହରିଙ୍କ କଥା, ସନ୍ତ ଉପଦେଶ
ଧାରଣା କରିବା ପାଇଁ ଅକ୍ଷମ ମନୁଷ୍ୟ ।
ବିଭୁପାଦେ ଭକତର ପ୍ରେମ ଉପୁଜିଲେ
ପକ୍କା ଭକତି ବୋଲିଏ ତାହା ତେତେବେଳେ ।
ସେ କାଳେ ହରିଙ୍କ କଥା ଉପଦେଶମାନ
ଧାରଣେ ସମର୍ଥ ହୋନ୍ତି ଭବେ ପ୍ରାଣୀଗଣ ।
ସିଲ୍‌ଭର ନାଇଟ୍ରେଟ କାଚେ ବୋଳା ଥିଲେ
ଯେ ଛବି ତୋଳିବ ତାହା ଉତୁରିବ ଭଲେ ।
ସେ ପଦାର୍ଥ ପୋଛି ଦେଲେ ଗାତରୁ ତାହାର
ଉଠେ ନାହିଁ ଆଉ ଛବି କୌଣସି ପ୍ରକାର ।

* ସିଲ୍‌ଭର ନାଇଟ୍ରେଟ୍—ଫଟୋଗ୍ରାଫ ତୋଳିବାର ଏକ ପ୍ରକାର ରାସାୟନିକ ଦ୍ରବ୍ୟ ।

ପକ୍‌କା ଭକ୍ତ ଚିତ୍ତେ ଯାର ଜନମେ ତାଦୃଶ
ଦୃଢ଼େ ଧରି ପାରଇ ସେ ହିତ ଉପଦେଶ ।
କଞ୍ଚା ଭକ୍ତ ଯେତେକ୍ଷଣ ଥାଏ ବଳବତୀ
ହିତ କଥା ଧରିବାକୁ ନ ଥାଏ ଶକତି ।"
ଶ୍ରୀମୁଖ ବଚନ ଶୁଣି କହିଲେ ବିଜୟ
"ଆରେକ ସନ୍ଦେହ ଚିତ୍ତେ ପ୍ରଭୋ ଦୟାମୟ ।
କେବଳ ଭକତି ବଳେ ଏ ମାନବଗଣ
ଲଭି ପାରିବେ କି କେବେ ଈଶ୍ୱର-ଦର୍ଶନ ?"
ଉତ୍ତରେ ଭାଷିଲେ ତହୁଁ ବ୍ରହ୍ମାଣ୍ଡ ଗୋସାଇଁ
ଭକତିରେ ଦରଶନ ନିଶ୍ଚୟ ମିଳଇ ।
ପକ୍‌କା ଭକ୍ତ ରାଗଭକ୍ତ-ପ୍ରେମାଭକ୍ତ ହେଲେ
ଶ୍ରୀହରିଙ୍କ ଦରଶନ ଅକ୍ଳେଶରେ ମିଳେ ।
ସେ ଭକତି ବଳେ ଜନ୍ମେ ବିଭୁପାଦେ ପ୍ରୀତି
ପରସ୍ପର ପ୍ରେମେ ବନ୍ଧା ସ୍ୱାମୀ ସ୍ତ୍ରୀ ଯେମତି ।
ଅଥବା ଜନନୀ ପୁତ ଯଥା ପରସ୍ପର
ପୂତ ସ୍ନେହରେ ଆବଦ୍ଧ ଆତ୍ମ ନିରନ୍ତର ।
ଯାର ଚିତ୍ତେ ଉପୁଜଇ ଏ ରାଗ ଭକତି
ମମତା ନ ଥାଏ ତାର ଦାରାସୁତ ପ୍ରତି ।
ତା ବଦଳେ ଦୟାଭାବ ହୁଅଇ ତା ଠାର
ବିଦେଶ ସଦୃଶ ବୋଧ ହୁଏ ଏ ସଂସାର ।
ମନେ ହୁଏ ଏ ଜଗତ ମହା କର୍ମଭୂମି
କର୍ମ କରିବାକୁ ତହିଁ ଆସିଛନ୍ତି ପ୍ରାଣୀ ।
ପଲ୍ଲୀରେ ଆଇଣ ଯେସନ୍ତେ ପ୍ରକୃତ ବସତି
କାର୍ଯ୍ୟ କରିବା ଉଦ୍ଦେଶ୍ୟେ ସହରରେ ସ୍ଥିତି ।
ବିଭୁପ୍ରେମ ଉପୁଜଇ ହୃଦୟେ ଯେ କାଳେ
ସଂସାରାସକ୍ତ ନ ଥାଏ ଆଉ ତେତେବେଳେ ।
ଲେଶମାତ୍ର ସେ ଆସକ୍ତି ଥାଏ ଯାର ଚିତ୍ତେ
ବିଭୁ ଦର୍ଶନ ନ ପାଏ କହିଣସିମତେ ।
ସାମାନ୍ୟରେ ଓଦା ଥିଲେ ଦିଆସିଲି କାଠି
ଯେତେ ଘଷିଲେହେଁ ବହ୍ନି ନ ଫୁଟଇ ତାଠି ।
ଘଷି ଘଷି କାଠିଯାକ ସବୁ ପାଏ ଶେଷ
ତଥାପି ନ ଜ୍ୱଳେ ତାହା, ବିଫଳ ପ୍ରୟାସ ।
ବିଷୟ ରସରେ ସିକ୍ତ ମାନସ ଯାହାର
ତା ସ୍ୱଭାବ ଅବିକଳ ସେହି ପରକାର ।
ଯେତେ ସେ ଯେଉଁଠୁ ଶୁଣୁ ହରିଗୁଣ ଗାଥା
ନ ପାଏ କୌଣସି ଫଳ, ସବୁ ଯାଏ ବୃଥା ।
କୃଷ୍ଣପ୍ରେମେ ଉନମତ୍ତ ରାଧିକା ଯେ କାଳେ
ସମସ୍ତ ପଦାର୍ଥ କୃଷ୍ଣମୟ ନିରେଖିଲେ ।
ସଖୀଙ୍କୁ କହିଲେ 'ଦେଖ ଦେଖ ସଖୀବୃନ୍ଦ !
ସକଳ ପଦାର୍ଥେ ବିରାଜନ୍ତି ଶ୍ରୀଗୋବିନ୍ଦ ।'
ସଖୀଏ କହିଲେ 'ତାଙ୍କୁ ଶୁଣ ଗୋ ଶ୍ରୀମତୀ
ଦେଖି ପାରୁ ନାହୁଁ କିଛୁ ଆମ୍ଭେ ମୂଢ଼ମତି ।'
ରାଧିକା ବୋଇଲେ 'ଶୁଣ ମୋହର ବଚନ
ନେତ୍ରେ ମାରି ଦିଅ ଆଗେ ଅନୁରାଗାଞ୍ଜନ ।
ତା ହେଲେ ଦେଖିବ ସର୍ବେ ମୋହର ସଦୃଶ
ସବୁଠାରେ ବିରାଜନ୍ତି ମୋର ପ୍ରାଣ-ଈଶ ।
ଏ ପ୍ରକାର ଅନୁରାଗ ଯାହାର ହୁଅଇ
ନିରାକାର ସାକାର ସେ ଦ୍ୱିରୂପ ଦେଖଇ ।'
ବିଜୟ କହିଲେ ତହୁଁ ବିନୟେ ବଚନ
"କେସନେ ଲଭିବ ସେହି ବିଭୁଙ୍କ ଦର୍ଶନ ?"
ଉତ୍ତରେ ଭାଷିଲେ ଦେବ କରୁଣାସାଗର
"ଚିତ୍ତଶୁଦ୍ଧି ବିନୁ ଦେଖା ନ ମିଳେ ତାଙ୍କର ।
ଛୁଞ୍ଚ ଯଦି କର୍ଦ୍ଦମରେ ଆବୃତ ରହଇ
ଚୁମ୍ବକ ତାହାକୁ କେବେ ଟାଣି ନ ପାରଇ ।
ଯତ୍ନସହ ଧୌତ କଲେ ସେଥିରୁ କର୍ଦ୍ଦମ
ତକ୍ଷଣେ ଚୁମ୍ବକ ତାକୁ କରେ ଆକର୍ଷଣ ।
ବିଷୟ କର୍ଦ୍ଦମେ ମନ ଆଚ୍ଛନ୍ନ ଯାହାର
ସେ ମନ ଟାଣି ନ ହୁଏ ବିଭୁଙ୍କ ପସୁର ।
ଅନୁତାପେ କାନ୍ଦ କାନ୍ଦ ବୋଲ ବିଭୁ ପାଶ
"ହେ ପ୍ରଭୋ ! ଜଗତନାଥ ବ୍ରହ୍ମାଣ୍ଡର ଈଶ ।
ତୁମ୍ଭଙ୍କୁ ପାସୋରି ମୁହିଁ ଏ ଭବ ସଂସାରେ
କାମିନୀ କାଞ୍ଚନେ କାଳ ଯାପିଲି ହେଳାରେ ।
ଲେଉଟାଇ ଦିଅନ୍ତୁ ନାଥ ! ଚିତ୍ତବୃତ୍ତି ମୋର
ଅହର୍ନିଶ ଚିନ୍ତେ ତବ ପାଦ ଯେ ପ୍ରକାର ।
ଅଧମେ କରନ୍ତୁ ଦେବ ! କୃପାକଣା ଦାନ
ଦୁଷ୍କର୍ମ ନ କରେଁ ଯେସନ୍ତେ ଆଉ କଦାଚନ ।
ଅଶ୍ରୁନୀର ବୁହାଇଲେ ଏମନ୍ତେ ନିରତ
ମନର ମଇଳାଯାକ ହୋଇଯିବ ଧୌତ ।
ଏ ଭାବେ ନିର୍ମଳ ହେବ ମନ ଯେତେବେଳେ
ଈଶ୍ୱର ତାହାକୁ ଟାଣିନେବେ ତେତେବେଳେ ।
ସେ କାଳେ ସମାଧି ଲଭି ସାଧକ ଭକତ
ବିଭୁଙ୍କ ଦର୍ଶନ ପାଇ ହୋଇବ କୃତାର୍ଥ ।
ଗୋଟିଏ ବିଷୟ କିନ୍ତୁ ରଖିବ ସ୍ମରଣ
ହଜାର ଚେଷ୍ଟା କରନ୍ତୁ ଏ ମାନବଗଣ ।

ତାଙ୍କ କୃପା ନୋହିଲେକ କେହି କେତେବେଳେ
ଦର୍ଶନ ପାଇବେ ନାହିଁ ଏ ମହୀମଣ୍ଡଳେ ।
ସହଜେ ମିଳଇ ନାହିଁ କୃପା ତାହାଙ୍କର
ଦୂର କରିବାକୁ ହେବ ଚିତ୍ତୁ ଅହଂକାର ।
'ମୁଁ କରତା, ସବୁ କାର୍ଯ୍ୟ କରଇ ଯେ ମୁହିଁ'
ଏ ଜ୍ଞାନ ଥିଲେ ଦର୍ଶନ ନ ପାଇବେ କେହି ।
ଭଣ୍ଡାରଘରର ଭାର ଅନ୍ୟଠାରେ ଥିଲେ
ଗୃହକର୍ତ୍ତା ନ ଆସନ୍ତି ତହିଁ କେତେବେଳେ ।
କର୍ତ୍ତାଙ୍କୁ ବୋଲଇ ଯଦି ପାଶେ ଆସି କେହି
ଅମୁକ ଦରବ ମୋର ଆବଶ୍ୟକ ଥାଇ,
ଆପଣ ଭଣ୍ଡାର ଘରେ ବିଜେ କରି ଥରେ
ବାହାର କରି ଦିଅନ୍ତୁ ତାହା ନିଜ କରେ ।
କରତା ବୋଲନ୍ତି ଯାଅ ଭଣ୍ଡାରୀର ପାଶ
ପ୍ରୟୋଜନ ନାହିଁ ମୋର ଯିବା ସେ ସକାଶ ।
ପ୍ରାଣୀଙ୍କ ହୃଦୟ ତଥା ମହତ ଭଣ୍ଡାର
ପ୍ରଭୁହି କରଇ ତହିଁ ଯଦା ଅହଂକାର ।
ପ୍ରକୃତ ଯେ ଅଧିକାରୀ ବ୍ରହ୍ମାଣ୍ଡଗୋସାଇଁ
ବିଜେ ନ କରନ୍ତି ଆଉ ସହଜେ ସେଠାଇଁ ।
ଜ୍ଞାନ ସୂର୍ଯ୍ୟ ଅଟନ୍ତି ଯେ ପ୍ରଭୁ ଭଗବାନ
ତାଙ୍କଠାରୁ କଣିକାଏ ପାଇଣ କିରଣ,
ଜ୍ଞାନାଲୋକେ ଏ ଜଗତ ହୁଏ ପ୍ରତିଭାତ
ନାନା ବିଦ୍ୟା ଅରଜନେ ପ୍ରାଣୀ ଶକ୍ତିମନ୍ତ ।
ସେ ଆଲୋକ ବଳେ ଏହି ମହୀ ଚଳାଚଳ
ପରସ୍ପର ଜଣାଶୁଣା ହୋନ୍ତି ପ୍ରାଣିକୁଳ ।
ତାଙ୍କ ଆଲୋକକୁ ଯଦି ବିଭୁ ନିଜ ପ୍ରତି
ଦୟାବନ୍ତ ଥରେ ମାତ୍ର ଦେଖାଇ ଧରନ୍ତି ।
ପ୍ରାଣିଗଣ ଯେବେ ତାଙ୍କ ଦର୍ଶନ ଲଭିଣ
ମାନବ ଜନମ ଲଭି ଭବେ ହୋନ୍ତି ଧନ୍ୟ ।
ଯେବେ ଲଣ୍ଠନ ଧରିଣ ସିପାହୀ ଯାଉଣି
ନିବିଡ ତମିରେ ପଥେ ଭ୍ରମଇ ଅଟକଳିଣ ।
ସ୍ପଷ୍ଟ ଦେଖୁଥାଏ ସେହୁ ସରବ ପଦାର୍ଥ
ତାକୁ ଦେଖିବାକୁ କେହି ନୁହନ୍ତି ସମର୍ଥ ।
ଯଦି ଇଚ୍ଛ ସିପାହୀର ମୁଖ ଦେଖିବାକୁ
ତା ପାଶେ ଯାଇ ପ୍ରାର୍ଥନା କର ତେବେ ତାକୁ ।
"ସିପାହୀ ସାହେବ ଥରେ କରୁଣା କରିଣ
ନିଜ ମୁଖ ଆଡ଼େ ଧର ତୁମ୍ଭର ଲଣ୍ଠନ ।
ବାରେକ ଦେଖିଣ ତବ ମୁଖ ଅରବିନ୍ଦ
ମେଣ୍ଟୁ ଆମ୍ଭମାନଙ୍କର ହୃଦୟର ଦ୍ୱନ୍ଦ୍ୱ ।"
ବିଭୁଙ୍କ ପାଶେ ତେସନ କର ପ୍ରାରଥନା
ସଦୟ ହୋଇଣ ଥରେ ପ୍ରଭୋ ଭଗବାନା !
ଜ୍ଞାନାଲୋକ ବର୍ତ୍ତି ଧର ନିଜ ମୁଖ ପ୍ରତି
ଦର୍ଶନ ଲଭିଣ ଆମ୍ଭେ ଲଭୁଁ ଗତି ମୁକ୍ତି ।
ଆଲୁଅ ନ ଜାଳି ଗୃହ ଯେ ରଖେ ଅନ୍ଧାର
ଦାରିଦ୍ର୍ୟର ଚିହ୍ନ ତାହା ଜାଣ ନିଷ୍ଠୁର ।
ହୃଦମଧ୍ୟେ ଜାଳି ଦେଲେ ଜ୍ଞାନର ଆଲୋକ
ତା ହେଲେ ଦେଖି ପାରିବ ତାଙ୍କ ପଦ୍ମମୁଖ ।
ଥରେ ଅଧେ ତାଙ୍କ ଯଦି ନ ପାଅ ଦର୍ଶନ
ହତାଶ ନୋହିବ କେବେ ତହିଁ କଦାଚନ ।
ବାରବର୍ଷ ଲାଗି ଯଦି ଅନାବୃଷ୍ଟି ହୁଏ
ଥିଲାବାଲା ଚାଷୀ ଚାଷ ଛାଡ଼ି ନ ପଳାଏ ।"
ଏମନ୍ତେ ଶୁଣିଣ ନାନା ମର୍ମସ୍ପର୍ଶୀ ବାଣୀ
ପ୍ରଭୁପାଦେ ବିଜୟଙ୍କ ମନ ହେଲା ଟାଣି ।
ଯେତେବେଳେ କିଞ୍ଚିତରେ ପାନ୍ତି ଅବସର
ଧାବନ୍ତି ଦର୍ଶନ ହେତୁ ପ୍ରଭୁଙ୍କ ପାଶର ।
ଶ୍ରୀମୁଖୁଁ ଶୁଣିଣ ନାନା ହିତ ଉପଦେଶ
ବଦଳିଗଲା ଯେ ଶେଷେ ତାଙ୍କର ମାନସ ।
ବୈରାଗ୍ୟ ଭାବ କ୍ରମଶଃ ଉଦିଣ ହୃଦୟେ
ଅଥୟ କଲା ଯେ ତାଙ୍କୁ ସରବ ସମୟେ ।
କ୍ରମେ କ୍ରମେ ମନ ଯେତେ ହେଲା ଅଗ୍ରସର
ବିଭୁଙ୍କ ଦର୍ଶନ ଲାଗି ହୃଦୟ ଅସ୍ଥିର ।
ବ୍ରାହ୍ମ ସମାଜରେ ଥିଲା ଯେ କର୍ମ ବନ୍ଧନ
ହଳାହଳ ବିଷଜ୍ଞାନେ କଲେ ତା ବର୍ଜନ ।
ସହରର କୋଲାହଳ ତେଜି ଏକାବେଳେ
ନିର୍ଜନରେ ଥାଇ ଜପତପ ଆରମ୍ଭିଲେ ।
ନିରାକାର ବ୍ରାହ୍ମମତ ତେଜିଣ ଏସନ
ଗୋସ୍ୱାମୀ ଅଇଲେ ପ୍ରେମ ଭକ୍ତି ପଥେ ପୁନଃ ।
ଜୀବନ ଅନ୍ତିମ ଭାଗେ କ୍ଷେତ୍ରବାସ କରି
ତେଜିଲେ ଏ ମର କାୟା ପ୍ରଭୁଙ୍କୁ ସୁମରି ।
ବହୁ ଜଟା ଥିବା ହେତୁ ତାଙ୍କ ମସ୍ତକରେ
'ଜଟିଆ ବାବାଜୀ' ନାମେ ଖ୍ୟାତ ସେ ପୁରୀରେ ।
ରାମକୃଷ୍ଣ-ଲୀଳାମୃତ ସୁଧାର ଭଣ୍ଡାର
ଗାଅ ମନ, ଭଜ ମନ, ରୁହ ନିରନ୍ତର ।
ସଂସାର ଜଞ୍ଜାଳ ପାଶ ହୋଇ ଅବହେଳେ
ଦର୍ଶନ କରିବୁ ହରି ହୃଦୟ-କମଳେ ।

# ଦଶମ ଅଧ୍ୟାୟ

## କାପ୍ତାନ ଶ୍ରୀମାନ ବିଶ୍ୱନାଥ ଉପାଧ୍ୟାୟଙ୍କ ଆଗମନ

ଜୟ ଜୟ ରାମକୃଷ୍ଣ ପ୍ରଭୁ ନିରଞ୍ଜନ
ଅନାଦିକାରଣ ବିଭୁ ବ୍ରହ୍ମ ସନାତନ ।
ଜୟ ଜୟ ରାମକୃଷ୍ଣ ବ୍ରହ୍ମାଣ୍ଡର ପତି
ଅପାର କରୁଣାସିନ୍ଧୁ ଅଗତିର ଗତି ।
ବିଶ୍ୱନାଥ ଉପାଧ୍ୟାୟ ନାମେକ ବ୍ରାହ୍ମଣ
ଅତଃପର ପ୍ରବେଶିଲେ ପ୍ରଭୁ ସନ୍ନିଧାନ ।
ନେପାଳ ସୈନ୍ୟ ବିଭାଗେ ପିତା ତାହାଙ୍କର
ସୁବେଦାର ଥାଇ ଶିବେ ଭକତି ଅପାର ।
କଥିତ ହୁଅଇ ଯେବେ ଗମନ୍ତି ଯୁଦ୍ଧରେ
ଏକ ହସ୍ତେ ଶିବଲିଙ୍ଗ ବନ୍ଧୁକ ଅପରେ ।
ଯଥା ପିତା ତଥା ପୁତ୍ର ଶୁଦ୍ଧ ନିଷ୍ଠାଚାରୀ
ବେଦବେଦାନ୍ତ ଗୀତାଦି କଣ୍ଠସ୍ଥ ତାଙ୍କରି ।
ଓକିଲତି ପାଶ କରି ସେ ବ୍ରାହ୍ମଣ ସୁତ
ନେପାଳ ରାଜ ଅଧୀନେ ଚାକିରି ସ୍ୱୀକୃତ ।
କଲିକତାରେ ତାଙ୍କ ଯେ କାଷ୍ଠ କାରବାର
ଦରବାରୁ ପ୍ରାପ୍ତ ତାର ତତ୍ତ୍ୱାମଣା ଭାର ।
କ୍ରମଶଃ ଲଭିଣ ସେହି କାର୍ଯ୍ୟରେ ଉନ୍ନତି
କାପ୍ତାନ ଉପାଧି ଶେଷେ ହୋଇଲେ ପ୍ରାପତି ।
ଅତ୍ୟନ୍ତ ଅଦ୍ଭୁତ ଅଟେ ସେଥିର ଆଖ୍ୟାନ
ଶେଷରେ ଗାଇବି ମୁହିଁ ତାର ବିବରଣ ।
ବହୁଗୁଣେ ଅଲଙ୍କୃତ ଥିଲେ ମହାଶୟ
ସଂକ୍ଷେପରେ ଶୁଣ ମନ ତାର ପରିଚୟ ।
ନାନାଶାସ୍ତ୍ର ଅଧ୍ୟୟନ କରି ପ୍ରତିଦିନ
ସତ୍ୟାନୁସନ୍ଧାନେ ରତ ହେଲେ ଅନୁକ୍ଷଣ ।
ନିତ୍ୟସତ୍ୟ ବସ୍ତୁ ତହିଁ କୁହାପି ନ ପାଇ
ନୈରାଶ୍ୟ ସାଗରେ ଚିତ୍ତ ନିମଜ୍ଜିଲା ଯାଇ ।
ଏକାଳେ ଦେଖିଲେ ଏକ ଅଦ୍ଭୁତ ସ୍ୱପନ
ଦିବ୍ୟଦେହୀ ଜଣେ ଆସି ତାଙ୍କ ସନ୍ନିଧାନ,
ବାରମ୍ବାର ଡାକିଲେ ଯେ ମୃଦୁମନ୍ଦ ହାସେ
ତାଙ୍କ ପାଖୁଁ ସତ୍ୟ ବସ୍ତୁ ଗ୍ରହଣ ସକାଶେ ।
ହଠାତ୍ ଭାଙ୍ଗିଣ ଘୁମ ଉଠିଲେ ଚମକି
ଭାଳିଲେ ଏପରି ସ୍ୱପ୍ନ ଦେଖିଲି କାହିଁକି ।
ଅବିରତ ଚିନ୍ତାକରି ଦ୍ୱିଜ ଏ ପ୍ରକାର
ସନ୍ଧାନ ନ ପାଇ ତାର ବ୍ୟାକୁଳ ଅନ୍ତର ।
ଦୈବଯୋଗେ ଦିନକରେ କାର୍ଯ୍ୟ ଅନୁରୋଧେ
ପ୍ରବେଶ ଦକ୍ଷିଣେଶ୍ୱରେ ପ୍ରଭୁଙ୍କ ସନ୍ନିଧେ ।
ତାହାଙ୍କୁ ଯେମନ୍ତ ଦ୍ୱିଜ କଲେକ ଦର୍ଶନ
ଚହ୍ନିଲେ ସ୍ୱପନ ଦୃଷ୍ଟ ଏହି ମହାଜନ ।
ଚରଣେ ପ୍ରଣମି ଅତି ଭକ୍ତି ସହକାର
ତତ୍ତ୍ୱଜ୍ଞାନ ଭିକ୍ଷାକଲେ ଯୋଡ଼ି ବେନିକର ।
ଜ୍ଞାନର ନିଗୂଢ଼ ତତ୍ତ୍ୱ ଯାହାକି ଅଜ୍ଞେୟ
କହିଲେ ସରଳ ଭାଷେ ପ୍ରଭୁ ଦୟାମୟ ।
ବେଦାଧ୍ୟାୟୀ ବିଶ୍ୱନାଥ ବିସ୍ମିତ ହୋଇଣ
ଶୁଣିଲେ ତନ୍ମୟ ହୋଇ ସେ ସବୁ ଆଖ୍ୟାନ ।
ବେଦବେଦାନ୍ତରେ ଯାହା କରିଥିଲେ ପାଠ
ସେ ସମସ୍ତ ତତ୍ତ୍ୱ ତାଙ୍କ ବଚନେ ପ୍ରକଟ ।
ଏମନ୍ତେ ଆକୃଷ୍ଟ ହୋଇ ଦ୍ୱିଜ ବିଶ୍ୱନାଥ
ମଧ୍ୟେ ମଧ୍ୟେ ଦରଶନ ହେତୁ ପ୍ରଧାବିତ ।
କେତେବେଳେ ନିମନ୍ତ୍ରଣ କରିଣ ତାହାଙ୍କୁ
ସମାଦରେ ଘେନିଯାନ୍ତେ ଆପଣା ଗୃହକୁ ।
ପ୍ରଭୁପାଦେ ନାଥଙ୍କର ଭକତି ଅପାର
ଶ୍ରୀଚରଣ ସେବିବାକୁ ସତତ ତତ୍ପର ।
ଶ୍ରୀଦେବ ବୋଲନ୍ତି ଥରେ ତାଙ୍କ ଗୃହେ ଯାଇ
ପାଇଖାନାରେ ପଡ଼ିଲି ଅଚେତନ ହୋଇ ।
ଏଡ଼େ ବଡ଼ ନିଷ୍ଠାଚାରୀ ବେଦଜ୍ଞ ବ୍ରାହ୍ମଣ
ପାଦସେବା କଲା ନିଜେ ସେଠାରେ ବସିଣ ।
ଭୋଜନେ ବସଇ ତାର ଗୃହେ ଯେତେବେଳେ
ସେବନ୍ତି ବିଞ୍ଚଣା ଆଣି ଦ୍ୱିଜ ଯେ ସେକାଳେ ।
ଏମନ୍ତ ପଣ୍ଡିତ ବିଜ୍ଞ ଭକତ ବ୍ରାହ୍ମଣ
ଟଙ୍କା କଉଡ଼ିରେ ଥାନ୍ତି ପତ୍ନୀର ଅଧୀନ ।
ମାସିକ ଯା ରୋଜଗାର ହୁଅଇ ତାଙ୍କର
ସମର୍ପି ଦିଅନ୍ତି ସବୁ ପତ୍ନୀଙ୍କ ପୟର ।
ଯା କରିବେ ଗୃହଲକ୍ଷ୍ମୀ ତାହା ଶିରୋଧାର୍ଯ୍ୟ
ଶକ୍ତି ନାହିଁ କରିବାକୁ ବ୍ୟତିକ୍ରାନ୍ତ କାର୍ଯ୍ୟ ।
ଦିନକରେ ଦେବରାୟ ତାଙ୍କ ଘର ଦେଇ
ଥଇଲେ ରାମଙ୍କ ସଦନକୁ ଯିବାପାଇଁ ।

କିୟତ୍‌କାଳ ତାଙ୍କ ସଙ୍ଗେ ବାକ୍ୟାଲାପ କରି
ଯିବାପାଇଁ ଗାତ୍ରୋତ୍ଥାନ କଲେକ ଶ୍ରୀହରି ।
ଉପାଧ୍ୟାୟ ବିଶ୍ୱନାଥ ହୋଇ ଅନୁଗାମୀ
ଆସିଲେ ଯେ ଦ୍ୱାରଦେଶେ ଦେବାକୁ ମେଲାଣି ।
ଶ୍ରୀଦେବ କହିଲେ ତହୁଁ ଦ୍ୱିଜବରେ ଚାହିଁ
ଭଡ଼ାକରି ଆସିଅଛୁ ଏ ଗାଡ଼ିରେ ମୁହିଁ
ଭଡ଼ାଟା ଯଦ୍ୟପି ତୁମ୍ଭେ ଦିଅନ୍ତ ଏଠାରେ
ଭାବନା ନ ଥାନ୍ତା ମୋର ସେହି ବିଷୟରେ ।
ଶ୍ରୀମୁଖ ବଚନ ଶୁଣି ତହୁଁ ଦ୍ୱିଜବର
ଭଡ଼ା ଆଣିବାକୁ ଗଲେ ଗୃହ ଅଭ୍ୟନ୍ତର ।
ପତ୍ନୀପାଖେ ପ୍ରବେଶିଣ ତା ମାଗିଲାକ୍ଷଣି
କମ୍ପମାନ ହେଲା ସେହି ଟଙ୍କା କଥା ଶୁଣି ।
ଏମନ୍ତେ ବିଫଳ ହୋଇ ଦ୍ୱିଜ ବିଶ୍ୱନାଥ
ପ୍ରଭୁଙ୍କୁ କହିଲେ ଭଡ଼ା ଦେବେ ରାମଦତ୍ତ ।
ଧନ୍ୟ ନାରୀ ଜାତି, ଧନ୍ୟ ମୋହିନୀ ଶକତି
ଯାହାବଳେ ବଶୀଭୂତ ବଡ଼ ଜ୍ଞାନୀ ଯତି ।
ଭାଗବତ ଗୀତା ପାଠ, ବେଦ ଅଧ୍ୟୟନ
ପତ୍ନୀଙ୍କ ପଦାରବିନ୍ଦେ ସବୁ ସମର୍ପଣ ।
କଥୋପକଥନ ଯାହା ହେଲା ଅତଃପର
ସାବଧାନେ ଶୁଣ ଏବେ ଭକ୍ତ ସହକାର ।

ଶ୍ରୀରାମକୃଷ୍ଣ—
ନରନାରୀ ଛନ୍ତି ଯେତେ ଏ ଭବ ସଂସାରେ
ପୁରୁଷ ପ୍ରକୃତି ସର୍ବେ ବିଭିନ୍ନ ଆକାରେ ।
ରାମଚନ୍ଦ୍ରଙ୍କୁ ନାରଦ କହିଥିଲେ ଦିନେ
ହେ ରାମ ! ପୁରୁଷ ଯେତେ ଅଛନ୍ତି ଭୁବନେ ।
ସର୍ବେ ହୋଇଛନ୍ତି ତବ ଅଂଶରୁ ସମ୍ଭୂତ
ଏଥିରେ ସନ୍ଦେହ ନାହିଁ ଅଣୁ ପରିମିତ ।
ରମଣୀ ମାନଙ୍କେ ଭବେ ବିଦ୍ୟମାନା ଯେତେ
ସୀତାଦେବୀଙ୍କ ଅଂଶରୁ ସମ୍ଭୂତା ସମସ୍ତେ ।

ବିଶ୍ୱନାଥ—
ଦୟା ବହି ଭାଷିଲେ ଯା ହେ ଦେବ ଅଚ୍ୟୁତ !
ସେ ଭାବ କେବଳ ମାତ୍ର ତୁମ୍ଭଠି ଲକ୍ଷିତ ।
ପୁରୁଷ ମାତ୍ରକେ ଜନ୍ମ ରାମଙ୍କ ଅଂଶରେ
ତେଣୁ ତାଙ୍କୁ ଦେବ ଜ୍ଞାନ ତବ ହୃଦୟରେ ।
ନାରୀ ମାତ୍ରେ ସୀତାଦେବୀ ଅଂଶରୁ ସମ୍ଭୂତ
ରମଣୀଠି ଦେବୀଜ୍ଞାନ ତେଣୁ ଅବିରତ ।
କିନ୍ତୁ ଯେ ଯୁବକେ ତବ ସମୀପେ ଆସନ୍ତି
ତାଙ୍କୁ ଦେଖି ମୋ ହୃଦୟ ବ୍ୟଥିତ ଯେ ଅତି ।
ଇଂରାଜୀ ପଢ଼ିଣ ସେହୁ ସର୍ବେ ଭ୍ରଷ୍ଟାଚାର
ଆଚଯାତେ ଅପବାଦ ରଟିବ ତୁମ୍ଭର ।

ଶ୍ରୀରାମକୃଷ୍ଣ--
ଶ୍ରଦ୍ଧା ସହ ଆସୁଛନ୍ତି ଯେ ଯୁବକଗଣ
ବାରଣ କରିବା ପାଇଁ ନ ବଳଇ ମନ ।
ଆରେକ ଗୋଟିଏ କଥା ଶୁଣ ଦ୍ୱିଜବର !
ସ୍ନେହର କାରଣ ନାହିଁ ତାଙ୍କଠାରୁ ମୋର ।
ବିଷୟବୁଦ୍ଧିରେ ପୂର୍ଣ୍ଣ ଯେଉଁ ପ୍ରାଣୀ ଚଉ
ତାଙ୍କଠାରୁ ବହୁଦୂରେ ବ୍ରହ୍ମାଣ୍ଡର ନାଥ ।
ବିଷୟବୁଦ୍ଧିବିହୀନ ଯେ ସବୁ ମାନବ
ତାଙ୍କ ହାତ ମୁଠାମଧ୍ୟେ ପ୍ରଭୁ ବିଶ୍ୱଦେବ ।
ଜପ ତପ ଆଦି ପ୍ରାଣୀ କରନ୍ତୁ ହଜାରେ
ବିଷୟବୁଦ୍ଧିର ଗନ୍ଧ ଥିଲେକ ଅନ୍ତରେ ।
ସେ ଜପ ତପରେ ନାହିଁ କଉଣସି ଫଳ
ବୃଥା ଶ୍ରମ, ବୃଥା ଯାଏ ବହୁମୂଲ୍ୟ କାଳ ।
ଶୂକରର ମାଂସ ଯେହ୍ନ ଭକ୍ଷଣ କରିଣ
ବିଭୁପାଦେ ସ୍ଥାପିପାରେ ଦୃଢ଼େ ତାର ମନ,
ଧନ୍ୟ ଅଟେ ସେହି ପ୍ରାଣୀ ଏ ମର୍ତ୍ତ୍ୟମଣ୍ଡଳେ
ବିଭୁ-ଦର୍ଶନ ଲଭିବ ନିଶ୍ଚେ ଦିନେ ହେଲେ ।
ଯେ ସବୁ ଯୁବକବୃନ୍ଦ ମୋ ପାଶେ ଆସନ୍ତି
ଚରିତ୍ର ଗୁଣରେ ସର୍ବେ ସମାନ ନୁହନ୍ତି ।
କେହି ଭ୍ରଷ୍ଟାଚାରୀ, କେହି ନିତ୍ୟ ଶୁଦ୍ଧ ମୁକ୍ତ
କେହିବା ସାଧକ, କେହି ଅନୁରକ୍ତ ଭକ୍ତ ।

ବିଶ୍ୱନାଥ —
ତା ହେଲେ ହେ ଦେବରାଜ ! ସେମାନଙ୍କ ପ୍ରତି
ନ ଥିବ ତୁମ୍ଭର ଚିତ୍ତେ ସମଭାବେ ପ୍ରୀତି ।

ଶ୍ରୀରାମକୃଷ୍ଣ—
ତୁମ୍ଭେ ଦେବଜ୍ଞ ପଣ୍ଡିତ କି କହିବି ଆନ
ଆପ ମାନେ ନାରାୟଣ ଶାସ୍ତ୍ରର ବଚନ ।
ସକଳ ଅଟଇ ଜଳ ନାହିଁତ ସନ୍ଦେହ
ଗୁଣଭେଦେ ବ୍ୟବହାର୍ଯ୍ୟ ହୁଏ ସେ ସମୂହ
ପାନାର୍ଥେ କୌଣସି ଜଳ ହୁଏ ବ୍ୟବହୃତ
ସ୍ନାନକାର୍ଯ୍ୟ ପର୍ଯ୍ୟନ୍ତ ଯେ କାହିଁରେ ସାଧିତ ।
ଶୌଚକ୍ରିୟାଦିରେ ମାତ୍ର କେହି ଚଳନୀୟ
ଆଉ କେତେ ଏକାବେଳେ ଅଟେ ଅସ୍ପର୍ଶୀୟ ।

ତବ ପତ୍ନୀ କନ୍ୟା ଯେହ୍ନେ ସମ୍ମୁଖେ ମୋହର
ସାକ୍ଷାତ ଦେଖୁଛୁ ଜଗଦମ୍ବା ସେ ପ୍ରକାର ।
ଶାସ୍ତ୍ରାଦି ପଠନୁଁ ଏବେ ବିରତ ହୋଇଣ
ସାଧନ ଭଜନ ମାର୍ଗେ ନିବେଶ ହେ ମନ ।
ବିଶ୍ୱନାଥ —
ଶିରୋଧାର୍ଯ୍ୟ ଅଟେ ପ୍ରଭୋ ! ତୁମ୍ଭର ଆଦେଶ
ପୂଜାପାଠେ କିନ୍ତୁ ମୋର ଆନନ୍ଦ ବିଶେଷ ।
ଏ ଭବ ଜଳଧି ଜଳୁଁ ଉଦ୍ଧାର ନିମିତ୍ତ
ଆଉର ଉପାୟ ନାହିଁ କରମ ବ୍ୟତୀତ ।
ଶ୍ରୀରାମକୃଷ୍ଣ —
କରମ କି କରୁଥିବ ତୁମ୍ଭେ ଚିରକାଳ
ଯେ ନିମନ୍ତେ କର୍ମ ଏବେ ଭୁଞ୍ଜ ତାର ଫଳ ।
ମହୁମାଛି ଯେତେ କ୍ଷଣ ଗୁଣୁ ଗୁଣୁ ସ୍ୱରେ
ଭ୍ରମୁଥାଏ ଅବିରତ ପୁଷ୍ପ ଚୌଦିଗରେ ।
ତଦବଧି ନ ପାଏ ସେ ମଧୁର ଆସ୍ୱାଦ
ମଧୁପାନେ ମତ୍ତ ହେଲେ ନ ଥାଏ ଶବଦ ।
ବିଶ୍ୱନାଥ —
ସତ୍ୟକଥା କହୁଛି ମୁଁ ପ୍ରଭୋ ଜଗତ୍ପତେ !
ସେ ପ୍ରକାର ଦୃଢ଼ ଭାବ ନାହିଁ ମୋର ଚିତ୍ତେ ।
ପୂଜା କର୍ମ କରମାଣି କରଇ ମୁଁ ଯାହା
ତେଜି ନ ପାରିବି କେଭେ ତବ ତୁଲେ ତାହା ।
ଶ୍ରୀରାମକୃଷ୍ଣ —
ଅହଂକାର ଯାହା ଚିତ୍ତେ ଥାଏ ବିଦ୍ୟମାନ
କରି ନ ପାରଇ ସେହୁ ଈଶ୍ୱର ଦର୍ଶନ ।
ବ୍ରତ ବିବାହ ଇତ୍ୟାଦି କାର୍ଯ୍ୟମାନଙ୍କରେ
ଭଣ୍ଡାରର ଜିମା ଥାଏ ଜଣକ ପାଖରେ ।
ଭଣ୍ଡାର ଗୃହରେ ସେହୁ ଥାଏ ଯେତେ କ୍ଷଣ
ସେଠାକୁ ନ ଯାନ୍ତି ଗୃହସ୍ୱାମୀ ତେତେକ୍ଷଣ ।
କିନ୍ତୁ ସେହୁ ଯେତେବେଳେ ତେଜିଣ ଭଣ୍ଡାର
କାର୍ଯ୍ୟାନ୍ତରେ ଚାଲିଯାଏ ଆରେକ ସ୍ଥାନର ।
ଗୃହକର୍ତ୍ତା ତେତେବେଳେ ଆସିଣ ଆପଣେ
ନିର୍ବାହ କରଇ କାର୍ଯ୍ୟ ବସିଣ ତା ସ୍ଥାନେ ।
ନାବାଳକ ଯେତେବେଳେ ତାହାର ସମ୍ପତ୍ତି
ବୁଝାସୁଝା କରିବାକୁ ଅପାରଗ ଅତି,
ସରକାର ନେଇ ତାର ସମୁଦାୟ ଭାର
ନିଯୁକ୍ତ କରଇ ଜଣେ ଦକ୍ଷ ରିସିଭର ।
ଅହଂକାର ସମୂଳରେ ଦୂରୀଭୂତ ହେଲେ
ଘେନନ୍ତି ସମସ୍ତ ଭାର ପ୍ରଭୁ ଆଦିମୂଳେ ।
ବଇକୁଣ୍ଠ ଧାମେ ଥରେ ଲକ୍ଷ୍ମୀ ନାରାୟଣ
ମହୋଲ୍ଲାସେ କରୁଥିଲେ କଥୋପକଥନ ।
ସହସା ଦଣ୍ଡାୟମାନ ହେଲେ ଲକ୍ଷ୍ମୀପତି
କାରଣ ପୁଛିଲେ ଦେଖି ଶଶବ୍ୟସ୍ତେ ଅତି ।
ଉତ୍ତରେ ବୋଇଲେ ତାଙ୍କୁ ବ୍ରହ୍ମାଣ୍ଡ ଠାକୁର
ବିପଦେ ପଡ଼ିଛି ଜଣେ ଚିରଭକ୍ତ ମୋର ।
ଯାଉଛି ମୁଁ ତହିଁ ତାର ଉଦ୍ଧାର ନିମନ୍ତେ
ଚାଲିଗଲେ ନାରାୟଣ କହିଣ ଏମନ୍ତେ ।
କ୍ଷଣକାଳ ପରେ ଦେବ ଯଦା ବାହୁଡ଼ିଲେ
ଅତି ଆଚମ୍ବିତେ ଦେଖି କାରଣ ପୁଛିଲେ ।
ପ୍ରଭୁ ନାରାୟଣ ତହୁଁ ସହାସ୍ୟ ବଦନେ
ଉତ୍ତରେ ଭାଷିଲେ ତାଙ୍କୁ ମଧୁର ବଚନେ ।
ମୋ ପ୍ରେମେ ବିହ୍ୱଳ ହୋଇ ଜନୈକ ଭକତ
ଯାଉଥିଲା ବାଟେ ବାଟେ ରଖି ମୋଠି ଚିତ୍ତ ।
ଧୋବାଏ ଶୁଖାଉଥିଲେ ଧୌତ ବସ୍ତ୍ରମାନ
ତାକୁ ମାଡ଼ି ଚାଲିଗଲା ସେହି ଭକ୍ତଜନ ।
ଧୋବାଯାକ ସର୍ବେ ତହୁଁ ହୋଇ ଉତ୍ତେଜିତ
ଧାଇଁଲେ ତା ପଛେ ପଛେ ମାରିବା ନିମିତ୍ତ ।
ଏ ବିପଦୁଁ ସେ ଭକ୍ତକୁ ଉଦ୍ଧାରିବା ଆଶେ
ଖରତରେ ଯାଉଥିଲି ମୁହିଁ ସେହି ଦେଶେ ।
ଯେମନ୍ତ ଦେଖିଲି ଭକ୍ତ ଟେକା ଗୋଟେ ଧରି
ଧୋବାକୁ ମାରିବା ପାଇଁ ଅଇଲା ହୁଙ୍କାରି ।
ସାହାଯ୍ୟ ପ୍ରଦାନେ ଆଉ ନାହିଁ ପ୍ରୟୋଜନ
ବୈକୁଣ୍ଠେ ଅଇଲି ଫେରି ମୁହିଁ ସେ କାରଣ ।
ଅହଂକାରୁଁ ବଳି କୁପଦାର୍ଥ ଯେ ନ ଥାଇ
ଶତ ଚେଷ୍ଟା ସତ୍ତ୍ୱେ ତାର ନାଶ ନ ଘଟଇ ।
କେମନ୍ତ ଅଟଇ ତାର ସ୍ୱଭାବ ପ୍ରକୃତି
ଦୃଷ୍ଟାନ୍ତ କହୁଛି ଶୁଣ ସ୍ଥିର କରି ମତି ।
ଭୂତ ସାଧନା କରିଣ ଏକ ସମୟରେ
ସିଦ୍ଧି ଲଭିଥିଲା ଜଣେ ଶ୍ରମ ସହକାରେ ।
ଭୂତକୁ ଯେମନ୍ତ ଦିନେ ଗୁଣିଲା ମନେ
ତତକ୍ଷଣେ ଅଇଲା ଭୂତ ତାର ସନ୍ନିଧାନେ ।
କି କାରଣେ ମୋତେ ତୁମ୍ଭେ କଲ ଆବାହନ
କରିବି କି କାର୍ଯ୍ୟ, କର ଆଦେଶ ପ୍ରଦାନ ।
କାର୍ଯ୍ୟ କର୍ମ ନ ପାରିବ ଯଦ୍ୟପି ଯୋଗାଇ
ଛେଦିବି ମସ୍ତକ ହାତ ଗୋଡ ଭାଙ୍ଗିଦେଇ ।

ଯେତେ କର୍ମ କରିବାକୁ ଥିଲାକ ତାହାର
ଆଣିଦେଲା ସେ ସକଳ ଭୂତ ସମୀପର ।
ଆଉ କିଛି କାର୍ଯ୍ୟ କର୍ମ ନାହିଁ କରିବାକୁ
ତାହା ଦେଖି କହିଲାକ ସେ ପ୍ରେତ ତାହାକୁ ।
କାର୍ଯ୍ୟ କର୍ମ ସବୁଗଢ଼େ ହେଲା ଶକ୍ରସ୍ଥାନ
ଛେଦିବ ଏଥର ଶିର ହୁଅ ସାବଧାନ ।
ହଠରେ କହିଲା ସେହୁ କିଛି ଭୟ ନାହିଁ
ଟିକିଏ ସମ୍ଭାଳ ତୁମ୍ଭେ ଆସୁଅଛି ମୁହିଁ ।
ଏମନ୍ତ ଭାଷିଣ ସେହୁ ଧାଇଁଲା ତୁରନ୍ତେ
ଫେଡ଼ିଲା ସକଳ କଥା ଗୁରୁପଦପାନ୍ତେ ।
ଅତୀବ ବିପଦେ ମୁହିଁ ହୋଇଛି ପତିତ
ଅଧମେ କହନ୍ତୁ ପ୍ରଭୋ ! ଉପାୟ ବିହିତ ।
ଜୟକାଳ ତନ୍ତ୍ରଣ ଯେ ଗୁରୁଦେବ ତାର
କହିଲେ ଶୁଣ ହେ ତେବେ ଉପାୟ ଏହାର ।
କେଶ କେଉଁଏ ଯତନେ ସରଳ କରିଣ
ସଳଖ କରିବା ପାଇଁ କର ଆଜ୍ଞା ଦାନ ।
ଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କରି ସେହି ବ୍ୟକ୍ତି
ଭୂତକୁ ସେ କାରଯରେ କଲାକ ନିଯୁକ୍ତ ।
ଦିନଗତ ପ୍ରେତ ସେହି କେଶଗୁଚ୍ଛ ଧରି
ସଳଖିବା ପାଇଁ ମନ ନିବେଶିଲା ତାରି ।
ସଳଖ ଭାବରେ ତାକୁ ରଖଇ ସେ ଯେତେ
ପୁନର୍ବାର ବକ୍ରାକୃତ ଧରଇ ମୁହୂର୍ତ୍ତେ ।
ଅହଂକାରର ସ୍ୱଭାବ ତେସନ ଅଟଇ
ସମୂଳେ କେବେହେଁ ତାହା ଦୂର ନ ହୁଅଇ ।
ମନେ ହୁଏ ଅହଂକାର କରିଛି ବର୍ଜ୍ଜନ
କାହୁଁ ଆସି ପୁଣି ତହିଁ କରେ ଅଧିଷ୍ଠାନ ।
ଅହଂକାର ଅଛି ପୁଣି ଦୁଇ ପରକାର
କାର୍ଯ୍ୟ ଭେଦେ କଞ୍ଚା ପକ୍ୱା ନାମ ଯେ ତାହାର ।
ମୁଁ, ମୋହର କନ୍ୟାପୁତ୍ର, ପରିବାର ମୋର
ମୋର ଜମିବାଡ଼ି, ଟଙ୍କା, ମୋର ଘରଦ୍ୱାର ।
ଏ ଭାବ ହୁଅଇ କଞ୍ଚା ଅହଂକାରୁଁ ଜାତ
ଶୁଣ ଏବେ ଆରେକର ସ୍ୱଭାବ ଚରିତ ।
ଈଶ୍ୱର ଅଟନ୍ତି କର୍ତ୍ତା, ମୁଁ ତାଙ୍କର ଦାସ
ଏଥିରେ ନ ଥାଏ କର୍ତ୍ତା ଭାବର ଆଭାସ ।
ଏ ଅହଂକାର ଅଟଇ ଶିଶୁର ସ୍ୱଭାବ
କ୍ଷଣକେ କଳହ ପୁଣି କ୍ଷଣ ମଧ୍ୟେ ଭାବ ।
ଖେଳିବାକୁ ଘର କଲେ କେତେ ଯତ୍ନ କରି
ଭାଙ୍ଗିଦେଲେ ପରକ୍ଷଣେ କିଛି ନ ବିସ୍ମର ।
ବଶୀଭୂତ ନୁହନ୍ତି ସେ କୌଣସି ଗୁଣର
ଦୋଷ ନାହିଁ ଯାର ଆଏ ଏହି ଅହଂକାର ।
ମିଷ୍ଟାନ୍ନ ମଧ୍ୟରେ ଯଥା ଅଟଇ ମିଶିରି
ନିର୍ଦ୍ଦୋଷ ହେତୁ ମିଷ୍ଟାନ୍ନେ ନ ହୁଏ ପ୍ରମାଣ ।
ଅନ୍ୟାନ୍ୟ ମିଷ୍ଟାନ୍ନେ ଦେହ-ଅସୁସ୍ଥ ହୁଅଇ
ମିଶିରିଟି କିନ୍ତୁ ଅମ୍ଳ ଦୋଷ ନିବାରଇ ।
ଶବଦ ମଧ୍ୟରେ ଯଥା ଅଟଇ ଓଁକାର
ଗଣା ନ ହୁଅଇ ତାହା ଶବଦ ମଧ୍ୟର ।
'ମୁଁ ଅଟଇ ଦାସ' ଏହି ଅହଂକାର ବଳେ
ପ୍ରେମ ଭକ୍ତି ଜନ୍ମେ ବିଭୁ ଚରଣ କମଳେ ।
ଗୋପୀଙ୍କର ପ୍ରେମ ଆହା ଅଟେ କି ମଧୁର
ଶୁଣିବାକୁ ଅଭିଳାଷ ବୃତ୍ତାନ୍ତ ତାହାର ।
ତୁମ୍ଭର କଣ୍ଠସ୍ଥ ଅଛି ଗୋଟା ଭାଗବତ
ସେ ବିଷୟେ କିଛି କହି ତୋଷ ମୋର ଚିତ୍ତ ।

ବିଶ୍ୱନାଥ—
କୃଷ୍ଣଚନ୍ଦ୍ର ଯେତେବେଳେ ବୃନ୍ଦାବନେ ଥିଲେ
ଐଶ୍ୱର୍ଯ୍ୟ ବିସ୍ମାନ ସେହୁ ଥିଲେ ଏକାବେଳେ ।
ତେବେ ସୁଦ୍ଧା ଗୋପୀଗଣ ପ୍ରାଣ ଢାଳି ଦେଇ
ପ୍ରେମରେ ଲୋଟିଲେ ତଳେ କୃଷ୍ଣ କୃଷ୍ଣ କହି ।
ତାଙ୍କର ନିଃସ୍ୱାର୍ଥ ପ୍ରେମ ଦର୍ଶନ କରିଣ
ଖେଦେ କହିଥିଲେ ଥରେ ଶ୍ରୀ ବଂଶୀ ବଦନ ।
ଯେ ଗୋପୀଏ ସେମାନଙ୍କ ପ୍ରେମପ୍ଳୁତ ଚିତ୍ତ
ମୋଠି ଦେଲେ ଭଲ ମନ୍ଦ ନ ଭାବି କିଞ୍ଚିତ,
କେମନ୍ତେ ସୁଝିବି ମୁହିଁ ତାହାଙ୍କର ଋଣ
ଏମନ୍ତେ ଭାବିତ ହେଲେ ଯଶୋଦା ନନ୍ଦନ ।
ଶ୍ରବଣ ମାତ୍ରକେ ଏହା ପ୍ରଭୁ ଶ୍ରୀଠାକୁରେ
ଗୋବିନ୍ଦ ଗୋବିନ୍ଦ ବୋଲି ନିମଗ୍ନ ଭାବରେ ।
କ୍ଷଣକ ମଧ୍ୟରେ ତାଙ୍କ ବାହ୍ୟଜ୍ଞାନ ଶୂନ୍ୟ
ବିଶ୍ୱନାଥ କହିଲେକ ଧନ୍ୟ ଧନ୍ୟ ଧନ୍ୟ ।
କେତେ କ୍ଷଣ ପରେ ଯେବେ ଚେତନା ଲଭିଲେ
ତଦନ୍ତେ ଘଟିଲା କିସ ନାଥଙ୍କୁ ପୁଚ୍ଛିଲେ ।

ବିଶ୍ୱନାଥ—
ଶତ ଶତ ବର୍ଷ ଯୋଗେ ବସି ଯାଙ୍କ ଲାଗି
ଦର୍ଶନ ନ ପାନ୍ତି ଭବେ ମୁନି ଋଷି ଯୋଗୀ ।
ସେହି ମହାପୁରୁଷଙ୍କ ଦିବ୍ୟ ଦରଶନ
ଅନାୟାସେ ଲବ୍ଧ ହେଲେ ଗୋପ ଗୋପୀଗଣ ।

ଶ୍ରୀରାମକୃଷ୍ଣ —
କେବଳ ଦର୍ଶନ ଲଭି ନୋହିଥିଲେ ଧନ୍ୟ
ତାଙ୍କ ସଙ୍ଗେ କ୍ରୀଡ଼ା କଲେ କାହ୍ନୁ କେତେ ପୁଣ ।
କ୍ଷୀର ସର ମାଗି ମାଗି ଖାଇଲେ ସେ ଯେତେ
ନ ଦେଲେ ବିଷାଦେ ପୁଣି କହିଲେ ବା କେତେ ।
ଗେଲବଣରେ କହିଲେ ସ୍ନେହେ କେତେ କଥା
ଯେତେରଙ୍ଗେ କ୍ରୀଡ଼ା କଲେ ନାହିଁ ତା ଇୟତ୍ତା ।

ଜଣେ ଭକ୍ତ —
ବଂକିମ ଚଟ୍ଟୋର୍ଯ୍ୟା ଖଣ୍ଡେ ଲେଖିଛନ୍ତି ବହି
ଶ୍ରୀକୃଷ୍ଣ ଚରିତ ଭଲ ଆଙ୍କିଛନ୍ତି ତହିଁ ।

ଶ୍ରୀରାମକୃଷ୍ଣ —
ଶ୍ରୀକୃଷ୍ଣଙ୍କୁ ମାନିଛନ୍ତି ଚଟ୍ଟୋର୍ଯ୍ୟା ବଙ୍କିମ
ଅସ୍ୱୀକାର କରିଛନ୍ତି ରାଧିକା ଆଖ୍ୟାନ ।

ବିଶ୍ୱନାଥ —
ମାନବ ଶରୀର ଧରି ପ୍ରଭୁ ଭଗବାନେ
ଲୀଳା ଖେଳା କରିଥିଲେ ପୁଣ୍ୟ ବୃନ୍ଦାବନେ ।
ରାଧାକୃଷ୍ଣ ଲୀଳାର ଯେ ଅମୃତ କାହାଣୀ
ସ୍ୱୀକାର କରନ୍ତି ନାହିଁ ସୁଧୀ ଶିରୋମଣି ।।

ଶ୍ରୀ ରାମକୃଷ୍ଣ—
ଖବରକାଗଜେ ଯାହା ଉଲ୍ଲେଖ ନ ଥାଇ
କେମନ୍ତେ ବିଶ୍ୱାସ ଯିବେ ଏତେ ଜ୍ଞାନୀ ହୋଇ ।
ଜଣେ ଲୋକ ଯାଇଥିଲା ସହର ଭ୍ରମଣେ
ଘରପୋଡ଼ି ଦେଖି ଆସି କଉଣସି ସ୍ଥାନେ ।
ବନ୍ଧୁକୁ କହିଲା ଆଜ ଯାଇଥିଲି ବୁଲି
ବହୁଘର ପୋଡିଯିବା ସେଠାରେ ଦେଖିଲି ।
ଉତ୍ତରେ କହିଲା ବନ୍ଧୁ ଏଥିର ବିଷୟ
ଖବରକାଗଜେ ଲେଖା ଥିବ ତ ନିଶ୍ଚୟ ।
ଏମନ୍ତ କହିଣ ସେହୁ ତରତରେ ଯାଇ
କାଗଜ ଦେଖିଲା ଗୁରପଟ ଓଲଟାଇ ।
ଖବରକାଗଜେ ଲେଖା ନାହିଁ ଏ ବାରତା
କେମନ୍ତେ ବିଶ୍ୱାସ ଯିବି ମୁହିଁ ତବ କଥା ।
ଦର୍ଶକ ବୋଇଲା ତହୁଁ ବନ୍ଧୁ ମୁଖ ଚାହିଁ
କାଗଜରେ ଲେଖା ନାହିଁ କି କରିବି ମୁହିଁ ।
ଥାଉ ବା ନ ଥାଉ ତାହା କାଗଜରେ ଲେଖା
ତୁମ୍ଭ ଆଗେ ଯା କହିଲି ନେତ୍ରେ ମୋର ଦେଖା ।
ମନୁଷ୍ୟ ଆକାର ଧରି ପ୍ରଭୁ ଭଗବାନ
ଲୀଳା ଖେଳା କରିଥାନ୍ତି ମର୍ତ୍ତ୍ୟେ ଆଗମିଣ ।
ଏ ସବୁ ବିଷୟ ନାହିଁ ଇଂରାଜୀ ଗ୍ରନ୍ଥରେ
ସେମାନେ ପ୍ରତ୍ୟୟ ଯିବେ ତାହା କି ପ୍ରକାରେ ।
ଚଉଦ ପା ଦେହ ମଧ୍ୟେ ଅନନ୍ତ ଈଶ୍ୱର
କେମନ୍ତେ ରହନ୍ତି ତାହା ଅଗମ୍ୟ ପ୍ରାଣୀର ।
ବୁଝାଇ କହିବା ଏହା ସହଜ ନୁହଇ
କହିଲେ ବିଶ୍ୱାସ ଅବା ହେବ କାର ତହିଁ ।

ବିଶ୍ୱନାଥ —
ଶ୍ରୀକୃଷ୍ଣ ଅଟନ୍ତି ସ୍ୱୟଂ ପ୍ରଭୁ ଭଗବାନ
ପୂର୍ଣ୍ଣ ବା ଅଂଶ ବୋଲନ୍ତୁ ଯାହାର ଯା ମନ ।

ଶ୍ରୀରାମକୃଷ୍ଣ —
ଭକ୍ତଙ୍କ ନିମନ୍ତେ ବିଭୁ ହୋନ୍ତି ଅବତାର
ଜ୍ଞାନୀ ପକ୍ଷେ ଏ ସକଳ ନୁହେ ଦରକାର ।
ଯେ ପ୍ରାଣୀର ବ୍ରହ୍ମଜ୍ଞାନ ଲବଧ ହୁଅଇ
ଗୁରେଟି ଲକ୍ଷଣ ତାହା ସ୍ପଷ୍ଟ ଜ୍ଞାତ ହୋଇ ।
କେବେ ସେହୁ ପାଞ୍ଚବର୍ଷ ବାଳକ ସମାନ
ଆସକ୍ତିବିହୀନ ହୋଇ କରେ କାର୍ଯ୍ୟମାନ ।
କେବେ ପୁଣି କାର୍ଯ୍ୟ କରେ ପାଗଳ ଯେପରି ।
ଭଲମନ୍ଦ ଦୃଷ୍ଟି କିଛି ନ ଥାଏ ତାହାରି ।
କେତେବେଳେ ଜଡ଼ ତୁଲେ ପଡ଼େ ଏକଠାଇଁ
କାର୍ଯ୍ୟ କରିବା ଶକତି ସମ୍ପୂର୍ଣ୍ଣ ହରାଇ ।
ଜ୍ଞାନମାର୍ଗେ ଯେତେ ଯେହୁ ହୁଏ ଅଗ୍ରସର
କର୍ମ୍ମ ଆଡ଼ମ୍ବର କମିଯାଏ କ୍ରମଶଃ ତାହାର ।
ପୂର୍ଣ୍ଣଜ୍ଞାନ ଲବ୍ଧ ହୁଏ ସେହୁ ଯେତେବେଳେ
ତାହାର ସ୍ୱଭାବ ହୁଏ ପିଶାଚଙ୍କ ତୁଲେ ।
ଆହାର ବିହାରେ କିଛି ନ ଥାଏ ବିଚାର
ଶୁଚି ଅଶୁଚିକୁ ସମ ବୋଧହୁଏ ତାର ।
ପୂର୍ଣ୍ଣଜ୍ଞାନୀ ଗଣ୍ଡମୂର୍ଖ ଦୁହିଁଙ୍କୁ ଦେଖିଲେ
ବାହାର ଲକ୍ଷଣେ କିଛି ପାର୍ଥକ୍ୟ ନ ମିଳେ ।
ପୂର୍ଣ୍ଣଜ୍ଞାନୀ ଯେତେବେଳେ କରେ ଦେବାର୍ଚ୍ଚନ
ପୂଜା ବିଧି ପାଳିବାକୁ ହୁଏ ଶକ୍ତିହୀନ ।
ତନ୍ତ୍ର ମନ୍ତ୍ର ନ ଉଚ୍ଚାରି କିଞ୍ଚିତ ପ୍ରମାଣେ
ଆରମ୍ଭିଲା ଦେବପୂଜା ଯା ଆସିଲା ମନେ ।
କୁସୁମ ଚନ୍ଦନ ଦେଇ ଦେବଙ୍କ ପୟରେ
ପୂଜା ଶେଷ କରି ଚାଲିଗଲା ସ୍ଥାନାନ୍ତରେ ।
ସଂସାର-ଭୋଗ-ବାସନା ଥାଏ ଯେତେଦିନ
କର୍ମ୍ମ ଛାଡ଼ି ନ ପାରନ୍ତି ପ୍ରାଣୀ କଦାଚନ ।

ଅମନସ୍କ ହୋଇ ଥରେ ବିହଙ୍ଗ ଗୋଟିଏ
ଜାହାଜ ମାସ୍ତୁଲୋପରେ ବସିଥିଲା ଶୁଏଁ ।
ଜାହାଜ କ୍ରମଶଃ ଗଙ୍ଗାନଦୀ ପାର ହୋଇ
ଗମ୍ଭୀର ସମୁଦ୍ର ଗର୍ଭେ ପ୍ରବେଶିଲା ଯାଇ ।
ଏ ସ୍ଥାନେ ସେ ବିହଙ୍ଗର ହେଲା ଜ୍ଞାନୋଦୟ
ଯେ ଦିଗେ ଚାହିଁଲା ସେହି ଦିଗେ ଜଳମୟ ।
ଥଳକୂଳ ନ ଦେଖିଣ କଉଣସି ଦିଗେ
ଆଶ୍ରୟ ଲୋଡ଼ିଲା ଉଡ଼ି ଉଡ଼ି ଚତୁର୍ଦ୍ଦିଗେ ।
ପ୍ରଥମେ ଉତ୍ତର ଦିଗେ ଗଲା ବହୁଦୂର
ସ୍ଥଳ ନ ପାଇ ଲେଉଟି ଆସିଲା ସତ୍ୱର ।
କ୍ଳାନ୍ତ ହୋଇ କିୟତ୍କାଳ ମାସ୍ତୁଲେ ବସିଣ
ପୂର୍ବଦିଗେ ଉଡ଼ିବାକୁ ଆରମ୍ଭିଲା ପୁଣ ।
ଉଡ଼ି ଉଡ଼ି ଅତଃପର ଗଲା ବହୁଦୂର
ଥଳ ନ ପାଇ ଫେରିଲା ତହିଁ ପୁନର୍ବାର ।
ଯେ ଦିଗେ ଦେଖିଲା ସେହି ତା ନେତ୍ର ବୁଲାଇ
ସୁବିସ୍ତୀର୍ଣ୍ଣ ଜଳରାଶି ରଙ୍ଗେ ନାଚୁଥାଇ ।
ଅତଏବ କ୍ଳାନ୍ତ ହୋଇ ପୁଣି ଫେରି ଆସି
ବିଶ୍ରାମ ଲଭିଲା ସୁଖେ ମାସ୍ତୁଲରେ ବସି ।
ଦକ୍ଷିଣ ଦିଗକୁ ପୁଣି ଗଲା ଉଡ଼ି ଉଡ଼ି
ଥଳକୂଳ ନ ପାଇଣ ଅଇଲା ବାହୁଡ଼ି ।
ତଦନ୍ତେ ପଶ୍ଚିମ ଦିଗେ ହୋଇଲା ବାହାର
ଫେରିଲା ନିରାଶ ହୋଇ ପୂର୍ବେ ଯେ ପ୍ରକାର ।
ଏମନ୍ତେ ସେ ଚତୁଃପାଶେ ସମ୍ୟକେ ଭ୍ରମିଣ
ନ ପାଇଲା ଯେତେବେଳେ ଥଳକୂଳ ଆନ ।
ନିଶ୍ଚେଷ୍ଟ ହୋଇଣ ତଦା ବସିଲା ମାସ୍ତୁଲେ
ଛଟପଟ ଭାବ ଛାଡ଼ି ଦୂର ଏକାବେଳେ ।
ନିଶ୍ଚିନ୍ତ ହୋଇଣ ଏବେ ଭୁଞ୍ଜିଲାକ ଶାନ୍ତି
ନ ରହିଲା ତାର ଚିତ୍ତେ କୌଣସି ଅଶାନ୍ତି ।
ବିଶ୍ୱନାଥ—
ଆହା ! ଆହା ! ଏହା କିବା ମଧୁର ଦୃଷ୍ଟାନ୍ତ
ଧନ୍ୟ ଧନ୍ୟ ମହାପ୍ରଭୋ ! ଶ୍ରୀଦେବ ଅନନ୍ତ ।
ବିଶ୍ୱନାଥ—
ବିହଙ୍ଗ ସଦୃଶ ସବୁ ସଂସାରୀ ମାନବେ
ଚୌଦିଗେ ଧାବନ୍ତି ସୁଖ କେବଣେ ପାଇବେ ।
ପ୍ରକୃତ ଯେ ସୁଖ ତାହା କୁତ୍ରାପି ନ ପାଇ
ଅବଶେଷେ ବସନ୍ତି ଯେ ପରିଶ୍ରାନ୍ତ ହୋଇ ।
କାମିନୀ କାଞ୍ଚନେ ପ୍ରାଣୀ ଆସକ୍ତ ଥାଇଣ
ଶୋକ ଦୁଃଖେ ପଡ଼ି ଯେବେ ଦଗ୍ଧୀଭୂତ ପ୍ରାଣ ।
କାମିନୀ କାଞ୍ଚନାସକ୍ତ ତେଜି ଯେତେବେଳେ
ପୋଷନ୍ତି ବୈରାଗ୍ୟ ଭାବ ହୃଦୟ କମଳେ ।
ଅନେକ ଅଛନ୍ତି ପୁଣି ପ୍ରାଣୀ ଏ ମହୀର
ଭୋଗ ବିନୁ ନ ଆସଇ ତ୍ୟାଗ ତାହାଙ୍କର ।
କି ଭୋଗ ବାଞ୍ଛା କରିବ ଅନିତ୍ୟ ସଂସାରେ
କାମିନୀ କାଞ୍ଚନ ଲୋଭ ନ ରଖ ଅନ୍ତରେ ।
କ୍ଷଣକ ନିମନ୍ତେ ଯାହା ସୁଖ ଦିଏ ନାହିଁ
ନିରବଚ୍ଛିନ୍ନ ଆନନ୍ଦ ପାଇବ କି ତହିଁ ?
କାମିନୀ କାଞ୍ଚନ ଘନ ମେଘମାଳ ପରି
ବିଭୁରୂପ ଭାସ୍କରଙ୍କୁ ରଖିଛି ଆବୋରି ।
କାମିନୀ କାଞ୍ଚନୁଁ ସବୁ ଶୋକ ଦୁଃଖ ଜାତ
ଶୋକ ଦୁଃଖେ ପଡ଼ି ମନ ସଦା ପ୍ରପୀଡ଼ିତ ।
କେମନ୍ତେ ଉଇଁବ ତହିଁ ଜଗତ-ତପନ
ମେଘମାଳ କରିଅଛି ଯାଙ୍କୁ ଆବରଣ ।
ସାଧକ ମଧ୍ୟରେ ପୁଣି ଅଛନ୍ତି କେତେକ
ଧର୍ମାର୍ଥେ ଭ୍ରମନ୍ତି ପୁଣ୍ୟ ତୀରଥ ଅନେକ ।
ଏକ ସ୍ଥାନେ ନିବସିଣ ଏକାନ୍ତ ମନରେ
ଭଜି ନ ପାରନ୍ତି ବିଭୁ କରୁଣାସାଗରେ ।
ନାନା ତୀର୍ଥେ ଭ୍ରମି ନାନା ତୀର୍ଥ ଜଳପାନ
ତହିଁ ନ ମେଣ୍ଟଇ ଚିତ୍ତ ଆଶା କଦାଚନ ।
ଅବଶେଷେ ଏକସ୍ଥାନେ ବାନ୍ଧିଣ କୁଟୀର
ମଗ୍ନ ହୋନ୍ତି ବିଭୁଧ୍ୟାନେ ଚିତ୍ତ କରି ସ୍ଥିର ।
ଜଣେ ଭକ୍ତ—
ଈଶ୍ୱର ରଚିଲେ କିପାଁ ଏପରି ସଂସାର
କି ଉପାୟେ ତହୁଁ ଆମ୍ଭେ ପାଇବୁ ଉଦ୍ଧାର ।
ଶ୍ରୀରାମକୃଷ୍ଣ—
ଉପାୟ ଅଟଇ ମାତ୍ର ବିଭୁଙ୍କ ଶରଣ
ଅବିରତ ଡାକ ତାଙ୍କୁ ବ୍ୟାକୁଳ ହୋଇଣ ।
ସେ ପଥେ ଗମିବା ପାଇଁ ଅନୁକୂଳ ବାୟୁ
ଶୁଭ ଯୋଗେ ଯେ ପ୍ରକାର ପ୍ରବାହିତ ହେଉ !
ବ୍ୟାକୁଳ ହୃଦୟେ ଥରେ ଯେ ଡାକଇ ତାଙ୍କୁ
ଶୁଣନ୍ତି ଜଗତକର୍ତ୍ତା ତାହାର କଥାକୁ ।
ମୃତ ପ୍ରାୟ ହୋଇଥିଲା ଜଣକର ସୁତ
ବ୍ୟାକୁଳେ ଚୌଦିଗେ ସେହି ହୋଇ ପ୍ରଧାବିତ ।
ଯାହାକୁ ଦେଖିଲା ତାକୁ ପୁଛିଲା ଉପାୟ
କେବଣେ ବଞ୍ଚିବ ବୋଲି ମୋହର ତନୟ ?

ତା ଦୁଃଖେ କାତର ହୋଇ ଆଗନ୍ତୁକ ଜଣେ
ଉପାୟ କହିଲା ତାକୁ ଡାକ ସନ୍ନିଧାନେ ।
ସ୍ୱାତୀ ନକ୍ଷତ୍ର ଥାଉଣୁ ଯଦି ବୃଷ୍ଟି ହେବ
ନରମୁଣ୍ଡ ଖପୁରିରେ ତାହା ଜମା ଥିବ ।
ସେ ଜଳ ପିଇବା ପାଇଁ ଯାଉଥିବ ବେଙ୍ଗ
ତାହାକୁ ଦଂଶିବା ହେତୁ ଆସିବ ଭୁଜଙ୍ଗ ।
ଭେକ ଉପରେ ନ ପଡ଼ି ସେ ସର୍ପ-ଆଘାତ
ଖପୁରି ସଳିଳେ ତାହା ହେବ ନିପତିତ ।
ସେ ବିଷ ସଂଯୁକ୍ତ ଜଳ ସଂଗ୍ରହ କରିଣ
ରୋଗୀକୁ ଯଦ୍ୟପି ଦେବ କରିବାକୁ ପାନ,
ନିଶ୍ଚୟ ସେ ରୋଗୀ ସେଥେ ଆରୋଗ୍ୟ ଲଭିବ
ଭାଗ୍ୟବଳେ ଏ ପ୍ରକାର ପାଗଯୋଗ ହେବ ।
ଏମନ୍ତ ବିଧାନ ଶୁଣି ସେ ରୋଗୀର ପିତା
କେମନ୍ତେ ଘଟିବ ଏହା ନିରନ୍ତର ଚିନ୍ତା ।
ବିଭୁଠି ନିର୍ଭର ରଖି ହୋଇଲା ବାହାର
ଗଗନେ ଉଇଁଲା କ୍ରମେ ସ୍ୱାତୀ ନକ୍ଷତର ।
ଘନଘଟାକାରେ ମେଘ ଧରି ଅଗ୍ରନିକ
ତୁହାଏ ବରଷା ହେଲା ଯଥା ଆବଶ୍ୟକ ।
ଏସନ ସୁଯୋଗ ଦେଖି ଡାକିଲା ଠାକୁରେ
ଖପୁରି ଭେଟାଇ ଦିଅ କୃପାନିଧି ! ମୋରେ ।
ଖୋଜୁ ଖୋଜୁ ଖପୁରି ବି ହୋଇଲା ପ୍ରାପତ
ସ୍ୱାତୀ ନକ୍ଷତ୍ରର ଜଳ ତହିଁ ସୁରକ୍ଷିତ ।
କ୍ରମଶଃ ହୃଦୟେ ହେଲା ଆଶାର ସଞ୍ଚାର
କରୁଣ ପ୍ରାର୍ଥନା କଲା ବିଭୁଙ୍କ ପୟର ।
ସବୁତ ଘଟାଇ ଦେଲେ ପ୍ରଭୋ ! ଦୟାନିଧି
ଭେକ ସର୍ପ ପ୍ରବେଶିଲେ ଧନ୍ୟ ହେବ ମୁହିଁ ।
ଦେଖୁ ଦେଖୁ ଭେକ ଗୋଟେ ଅଇଲା ସେ ସ୍ଥାନ
ତାହାକୁ ଦଂଶିବା ପାଇଁ ସର୍ପ ଧାବମାନ ।
ଭେକ ଉପରେ ନ ପଡ଼ି ସର୍ପର ଆଘାତ
ଖପୁରି ସଳିଳେ ତାହା ହେଲା ନିପତିତ ।
ବିଭୁଙ୍କ ଶରଣ ପଶି ଡାକିଲେ ବ୍ୟାକୁଳେ
ନିଶ୍ଚୟ ଶୁଣିବେ ଡାକ ଭକତବତ୍ସଳେ ।
ସୁପଥେ ଗମିବା ପାଇଁ ଯାହା ଆବଶ୍ୟକ
ସୁଯୋଗ କରାଇ ଦେବେ ପ୍ରଭୁ ପଦ୍ମମୁଖ ।
ବିଳମ୍ବ ନ କରି ସାଧକ ସର୍ବାନ୍ତଃକରଣେ
ହୁଏତ ଅର୍ପିଲା ମନ ବିଭୁଙ୍କ ଚରଣେ ।
ଅନ୍ୟାନ୍ୟ ଭ୍ରାତାଏ ତାର କରି ରୋଜଗାର
ବୁଝାସୁଝା କଲେ ସବୁ ଘରର ଖବର ।
କମ୍ବା ତାଙ୍କର ପିଲାଏ ହୋଇ ପାରଙ୍ଗମ
ସମ୍ଭାଳି ନେଲେ ତାହାର ଗୃହର ଭରମ ।
ଏଭଳି ସାଧୁଜନର ସଂସାର ନିମିତ୍ତେ
ଭାବନା ଚିନ୍ତା ନ ଥାଏ ଚିତ୍ତରେ କିଞ୍ଚିତେ ।
ଗୋବିନ୍ଦ ପଦାରବିନ୍ଦେ ସମର୍ପି ତା ମନ
ଅନାୟାସେ କରିପାରେ ସାଧନ ଭଜନ ।
ସ୍ମରଣ ରଖିବ କିନ୍ତୁ ଗୋଟିଏ ବିଷୟ
କାମିନୀକାଞ୍ଚନ ତ୍ୟାଗ ମୂଳ ସୁନିଶ୍ଚୟ ।
କାମିନୀକାଞ୍ଚନ ତ୍ୟାଗ କରି ନ ପାରିଲେ
ଅବିଦ୍ୟା ଅଜ୍ଞାନ ନାଶ ନ ହୁଅଇ ଭଲେ ।
ଦୂରବୀଣ ଯନ୍ତ୍ରରେ ଥାଏ ଯେଉଁ କାଚଖଣ୍ଡ
ତାକୁ ଆଣି ସୂର୍ଯ୍ୟତାପେ ଧରିବ ଯେ ଦଣ୍ଡ ।
ଲୁଗାପଟା ପୋଡ଼ିଦିଏ ତାହା କ୍ଷଣକରେ
ଏ ଶକ୍ତି ନ ଥାଏ ତାର ଗୃହ ଅଭ୍ୟନ୍ତରେ ।
ଗୃହତ୍ୟାଗ କରି ତେଣୁ ବାହାରେ ଆସିଣ
ସୂର୍ଯ୍ୟ କିରଣରେ କାଚ ଧରିବା ବିଧାନ ।
ଜ୍ଞାନଲାଭ ପରେ କେହି ରହନ୍ତି ସଂସାରେ
ଜନକାଦି ଋଷିଗଣ ଥିଲେ ଯେ ପ୍ରକାରେ ।
ଅଜ୍ଞାନ ଅଟନ୍ତି ଭବେ ଯେ ସକଳ ନର
ବିଭୁ ପାଦେ ନ ଥାଏକ ବିଶ୍ୱାସ ତାଙ୍କର ।
ଦୁଃଖେ ସୁଖେ ଏ ସଂସାରେ ଯାପନ୍ତି ଜୀବନ
ତାଙ୍କର ସ୍ୱଭାବ କଥା ସାବଧାନେ ଶୁଣ ।
ମାଛି ଗୃହେ ଥାଇ କ୍ଷୀଣାଲୋକ ସାହାଯ୍ୟରେ
ଗୃହ ଦ୍ରବ୍ୟ ନିରେଖନ୍ତି କୌଣସି ପ୍ରକାରେ ।
ଜ୍ଞାନରୁ ଯେଉଁ ଲୋକ କରିଣ ଅର୍ଜନ
ଜୀବନେ ଲଭି ପାରିଛି ବିଭୁଙ୍କ ଦର୍ଶନ ।
ସେ ପ୍ରାଣୀ କରଇ ଯଦି ପୁନଶ୍ଚ ସଂସାର
ବଶବର୍ତ୍ତୀ ନ ହୁଅଇ କେବେ ହେଁ ମାୟାର ।
କାଚଗୃହ ମଧ୍ୟେ ଯେହ୍ନେ ତାହାର ଆବାସ
ଭିତର ବାହାର ସବୁ ତା ଠାରେ ପ୍ରକାଶ ।
ଭିତର ପଦାର୍ଥ ଯଥା ସ୍ପଷ୍ଟ ସେ ଦେଖଇ
ବାହ୍ୟ ଦ୍ରବ୍ୟ ସବୁ ମଧ୍ୟ ତଥା ନିରେଖଇ ।
ଜ୍ଞାନାଲୋକ ତାର ହୃଦେ କରିଣ ପ୍ରବେଶ
ସର୍ବତୋଭାବେ କରଇ ସବୁହିଁ ପ୍ରକାଶ ।
ପଦାର୍ଥରେ କିଏ ଭଲ, ମନ୍ଦ ବା କେଉଁଟି
ଅନିତ୍ୟ ଅଟେ କେ ଅବା ନିତ୍ୟ କେଉଁ ଗୋଟି ।

ଏ ସମସ୍ତ ସୃଷ୍ଟି ଭାବେ ହୁଏ ତାଙ୍କୁ ଜଣା
ମାୟାଜାଲେ ଆଉ ସେହୁ ଆବଦ୍ଧ ହୁଏନା ।
ଏକମାତ୍ର କର୍ତ୍ତା ବିଭୁ ପରମ-ଈଶ୍ୱର
ବାକି ସବୁ ତାହାଙ୍କର ଯନ୍ତ୍ର ଯେ ପ୍ରକାର ।
ଏମନ୍ତେ ଜାଣିଣ ବୁଦ୍ଧେ ଜ୍ଞାନୀ ମହାଜନ
ଅହଂକାର ଅଭିମାନ କରନ୍ତି ବର୍ଜ୍ଜନ ।
"ଶିକ୍ଷାଦାତା ଗୁରୁ ମୁହିଁ" ଏମନ୍ତ ଯେ ଭାବେ
ମଙ୍ଗଳ ହୁଅଇ ନାହିଁ ତାହାର ଯେ କେବେ ।
ଏକମାତ୍ର ଈଶ୍ୱରଙ୍କ ଆଦେଶ ବ୍ୟତୀତ
ଆଚାର୍ଯ୍ୟ-କାର୍ଯ୍ୟ କରିବା ନୁହଇ ଉଚିତ ।
ଆପଣାକୁ ଆପେ ଯେହୁ ମନେ କରେ ଗୁରୁ
ଜ୍ଞାନ ବୃଦ୍ଧି କେହୁ ନାହିଁ ଆଉ ତାହାଠାରୁ ।
ତରାଜୁର ଯେଉଁପଟ ହୁଅଇ ହାଲୁକା
ସେହି ପଟ ସଦା ତାର ଊର୍ଦ୍ଧ୍ୱରେ ଟେକା ।
ଯେଉଁ ବ୍ୟକ୍ତି ଆପଣାକୁ ଉଚ୍ଚ ମନେକରେ
ସାରବସ୍ତୁ ନ ଆସଇ ତାହାର ଅନ୍ତରେ ।
ଗୁରୁ ହେବାକୁ ସରବେ ହୋନ୍ତି ଅଗ୍ରସର
ଶିଷ୍ୟ ଖୋଜି ନ ମିଳଇ ଗୋଟିଏ କାନ୍ତର ।
ଭକତ ବତ୍ସଳ ହରି, ଭକ୍ତ ତାଙ୍କ ପ୍ରାଣ
ଭକ୍ତିବଳେ ସର୍ବଦା ସେ ଭକ୍ତଙ୍କ ଅଧୀନ ।
ପଢ଼ିଛ ତ ତୁମ୍ଭେ ମହାଭାରତ ଗ୍ରନ୍ଥରେ
ରାଜା ଦୁର୍ଯ୍ୟୋଧନ ତାଙ୍କ ହସ୍ତିନା ନଗରେ,
ଶ୍ରୀକୃଷ୍ଣଙ୍କୁ ରଖିବାକୁ ଚେଷ୍ଟା କଲେ ଯେତେ
ଗଲେ ନାହିଁ କିନ୍ତୁ ସେହୁ କୌଣସିମତେ ।
ଦୀନଜନ ବନ୍ଧୁ ପ୍ରଭୁ କରୁଣାସାଗର
ରାଜପ୍ରାସାଦେ ଯିବାକୁ କରି ଅସ୍ୱୀକାର ।
ଅଯାଚିତ ଭାବେ ଯାଇ ବିଦୁର କୁଟୀରେ
ଶାକାନ୍ନ ଭୋଜନ କଲେ ପ୍ରୀତି ସହକାରେ ।
ପ୍ରାଣୀ ମାତ୍ରେ ସରବେ ଯେ ବିଭୁଙ୍କ ସନ୍ତାନ
ପିତା ରୂପେ ତାଙ୍କୁ ସେହୁ କରନ୍ତି ପାଳନ ।
ଯେତେକ୍ଷଣ ବିଭୁପାଦ ଲଭ ନ ହୁଅଇ
ଏ ଭାବ କଦାପି ପ୍ରାଣୀ ଚିତ୍ତେ ନ ଆସଇ ।
ପ୍ରାଣୀଙ୍କଠୁଁ ବିଭୁ ଥାନ୍ତି ନିରତେ ଅନ୍ତର
ଏମନ୍ତ ଭାଳିଣ ନିତ୍ୟ ପ୍ରମାଦ ତାଙ୍କର ।
କିନ୍ତୁ ଯେହୁ ଲଭିଥାଏ ଈଶ୍ୱର ଦର୍ଶନ
ତାଙ୍କଠି ହୁଅଇ ତାର ମାତାପିତା ଜ୍ଞାନ ।
ବିଭୁ ରୂପେ ନିଜ ଲୋକ ନାହିଁ ଆଉ କେହୁ
ଶ୍ରୀପାଦେ ଅର୍ପିଲି ମନ ଏ ପ୍ରକାର କହି ।
ଶ୍ରବଣ କରିଣ ଏତେ ଜନ-ହିତ କଥା
ନାଥଙ୍କ ମନ ମାୟାରେ ଆଚ୍ଛନ୍ନ ସର୍ବଥା ।
ସର୍ବାନ୍ତଃକରଣେ ପ୍ରଭୁ ହରିଙ୍କ ଚରଣ
ଭଜନ କରିବା ପାଇଁ ନ ଲାଗିଲା ମନ ।
କେମନ୍ତ କୌଶଳ କରି ପ୍ରଭୁ ଦୟାମୟ
ବଦଳାଇ ଦେଲେ ଚିତ୍ତ-ବୃତ୍ତି ସମୁଦାୟ ।
ଭକ୍ତି ସହକାରେ ଶୁଣ ସେଥିର ବାରତା
ତ୍ରିଭୁବନେ ନାହିଁ ପ୍ରଭୁ-ଦୟାର ଇୟତ୍ତା ।
ନେପାଳ ରାଜାଙ୍କ ଥିଲା କାଠ କାରବାର
ତା ପରିଚାଳନା ଭାର 'ନାଥଙ୍କ ଉପର ।
କାଠଯାକ ଜମା ଥାଏ ଜାହ୍ନବୀର କୂଳେ
ମଧ୍ୟେ ମଧ୍ୟେ ଭାସିଯାଏ ତାହା ବନ୍ୟାଜଳେ ।
ବୃହତ ବୃହତ କାଠ, ବହୁ ମୂଲ୍ୟବାନ
ବ୍ୟବସାୟେ ଏ ପ୍ରକାର ହେଲା ଲୋକସାନ ।
ବିଶ୍ୱନାଥ ଭୀତ ହୋଇ ଏଥିର ଖବର
ଦରବାରେ ପ୍ରେରିବାକୁ ହୋଇଲେ କାତର ।
ସ୍ୱାର୍ଥପ୍ରିୟ ଲୋକମାନେ ଏହି ଅବସରେ
ନୃପପାଶେ ବାର୍ତ୍ତା ଦେଲେ ବିକୃତଭାବରେ ।
କାଠ ବିକି କରି ବିଶ୍ୱନାଥ ଉପାଧ୍ୟାୟ
ନିଜ କାର୍ଯ୍ୟେ କରୁଅଛି ସେ ସବୁ ଯେ ବ୍ୟୟ ।
ଏମନ୍ତ ସଂବାଦ ପାଇ ନେପାଳ ନୃପତି
ହିସାବ ମାଗିଲେ ହୁରା ବିଶ୍ୱନାଥ କତି ।
ଅଳପ ବେତନଭୋଗୀ ଅଟନ୍ତି ଯେ ନାଥ
କ୍ଷତିପୂର୍ତ୍ତି କରିବାକୁ ତେଣୁ ଅସମର୍ଥ ।
ଦରବାରେ ବୁଝାଇବେ ହିସାବ କିପରି
ଏଥିପାଇଁ ଚିନ୍ତାନ୍ୱିତ ହୋଇଲେ ଯେ ଭାରି ।
ବ୍ୟବସାୟେ କ୍ଷତି ହେଲା ଜାଣିଲେ ନୃପତି
ମୁଣ୍ଡକଟା ଶାସ୍ତିରୁ ଯେ ନାହିଁ ଅବ୍ୟାହତି ।
ଉପାୟ ନ ଦେଖି 'ନାଥ ପ୍ରଭୁପାଶେ ଆସି
ଶ୍ରୀଚରଣେ ସବୁ କଥା କହିଲେ ପ୍ରକାଶି ।
ବିପଦଭଞ୍ଜନ ବାନା ପ୍ରଭୁ ଭଗବାନ
ଆଶ୍ୱାସ ବଚନେ କଲେ ଅଭୟ ପ୍ରଦାନ ।
ପ୍ରଭୁଙ୍କ ଅଭୟ ପାଦେ କରିଣ ନିର୍ଭର
ଉପାଧ୍ୟାୟ ଯାତ୍ରା କଲେ ନେପାଳ ସହର ।
ରାଜଦରବାରେ ତହୁଁ ହାଜର ହୋଇଣ
ଠିକ ଠିକ ସବୁ କଥା କଲେ ନିବେଦନ ।

ଏକ ବସ୍ତୁ ନାନା ଘଟେ ନାନା ରୂପେ 'ଛନ୍ତି
ଯାହାକୁ ଯେମନ୍ତ ଦଣ୍ଡ ତାହା ନିରୂପନ୍ତି ।
ଏକ ଦେହେ ନରପତି, ଅନ୍ୟେ ମନ୍ତ୍ରୀବର
କାହିଁ ବା ପିଆଦା ଭୃତ୍ୟ, କାହିଁ ଅବା ଚୋର ।
ସେହି ବ୍ରହ୍ମା, ସେହି ବିଷ୍ଣୁ, ମହେଶ୍ୱର ପୁଣ
ଦେବତା, କିନ୍ନର, ଯକ୍ଷ, ରାକ୍ଷସ ବି ଆନ ।
ସେହି ନାଗ, ନର, ଗ୍ରହ, ତାରା, ଶଶଧର
ଅଖିଳ ବ୍ରହ୍ମାଣ୍ଡ ସେହି ଉଜ୍ଜ୍ୱଳ ଭାସ୍କର ।
ଅଚଳ ଅଟଳ ଗିରି, ସେହି ନଦନଦୀ
ସେହି ବି ଆରେକ ରୂପେ ପ୍ରକାଣ୍ଡ ଜଳଧି ।
ରୂପରସ ଗନ୍ଧ ସ୍ପର୍ଶ ସେହି ଶବ୍ଦାକୃତି
ମନପ୍ରାଣ ବାୟୁରୂପ ବିରାଟ ମୂରତି ।
ସର୍ବ ଘଟେ ପ୍ରଭୁଦେବ ଏମନ୍ତେ ବିରାଜ
ଶୁଣି କରି ଦଣ୍ଡ ଆଜ୍ଞା ଦେଲେ ମହାରାଜ ।
ସତ୍ୟ କଥା ଜାଣି ଏବେ ନୃପତି ସନ୍ତୋଷ
ଦୂର ହେଲା ତାହାଙ୍କର ପୂରବ ଆକ୍ରୋଶ ।
ଦଣ୍ଡ ପରିବର୍ତ୍ତେ ଏବେ ସଦୟ ଏମନ୍ତ
ଚତୁର୍ଗୁଣେ ଦର୍ମା ବୃଦ୍ଧି କଲେକ ତୁରନ୍ତ ।
କାପ୍ତାନ ଉପାଧି ପୁଣି ତାଙ୍କୁ ପ୍ରଦାନିଣ ।
ରାଜପ୍ରତିନିଧି ରୂପେ କଲେ ନିର୍ବାଚନ ।
ବ୍ରିଟିଶ ସାମ୍ରାଜ୍ୟେ ତାଙ୍କ ପ୍ରତିନିଧି ହୋଇ
କଲିକତାରେ ରହିଲେ, କାପ୍ତାନ ଗୋସାଇଁ ।
ଏମନ୍ତେ ଖଲାସ ପାଇ ନାଥ ଉପାଧ୍ୟାୟ
ପ୍ରଭୁଙ୍କ ଉଦ୍ଦେଶ୍ୟେ ପ୍ରଣମିଲେ ଭୂୟୋଭୂୟଃ ।

ସଙ୍କଟୁ ମୁକତି ଲଭି ହେଲା ପଦୋନ୍ନତି
ହରିଙ୍କର ଲୀଳାଖେଳା ଚମତ୍କାର ଅତି ।
ଏ ପ୍ରକାର ଆଶାତୀତ ଫଳର କାରଣ
ଶ୍ରୀଦେବଙ୍କ ଆଶୀର୍ବାଦ ତା ମୂଳେ ଜାଣିଣ,
ନେପାଳ ରାଜ୍ୟରୁ ବିଶ୍ୱନାଥ ମହୋଦୟ
ଉଲ୍ଲାସେ ଫେରିଲେ କାର୍ଯ୍ୟାନ୍ତରେ ପୁନରାୟ ।
କଲିକତାଠି ଯେମନ୍ତ କଲେ ପଦାର୍ପଣ
ଊର୍ଦ୍ଧ୍ୱଶ୍ୱାସେ ଧାଇଁଲେ ଯେ ପ୍ରଭୁ ସନ୍ନିଧାନ ।
ଚିତ୍ତେ ଉପୁଜିଲା ଏତେ ଆନନ୍ଦ ହିଲ୍ଲୋଳ
ବାକ୍ୟେ ପ୍ରକାଶିବା ପାଇଁ ନ ପାଇଲା ବଳ ।
ରୁଦ୍ଧକଣ୍ଠେ ଶ୍ରୀପ୍ରଭୁଙ୍କ ଚରଣ ଧରିଣ
ଆନନ୍ଦେ ଲୋଟିଲେ ତହିଁ ଭକତ କାପ୍ତାନ ।
ଲୋଚନରୁ ଆନନ୍ଦାଶ୍ରୁ ବହି ଦରଦର
ସିକ୍ତ କଲା ପ୍ରଭୁଙ୍କର ପଙ୍କଜ ପୟର ।
ଆଦ୍ୟପ୍ରାନ୍ତ ଫେଡ଼ି ତହୁଁ ସକଳ ବାରତା
ଶ୍ରୀଚରଣେ ଜଣାଇଲେ ନିଜ କୃତଜ୍ଞତା ।
ସେହିଦିନୁ ପରିବାରବର୍ଗଙ୍କ ସହିତ
ପ୍ରଭୁପାଦେ ମନ ପ୍ରାଣ ଢାଳିଦେଲେ ନାଥ ।
କେତେ ଯେ କରିଲେ ସେବା ସୀମା ନାହିଁ ତାର
ଯା ବଳେ ତାଙ୍କଠି ବନ୍ଧା ହେଲେ ଶ୍ରୀଠାକୁର ।
ରାମକୃଷ୍ଣ ଲୀଳାମୃତ ମଧୁର ଆଖ୍ୟାନ
ଏକ ଚିତ୍ତେ ସାଧୁଜନେ କର ତା ଶ୍ରବଣ ।
ଅବହେଳେ ତରିଯିବ ଏ ଭବବାରିଧି
ସେ ଅମିୟ ନାମ ମୁଖେ ରଟ ନିରବଧି ।



ମୁଦ୍ରାକର ଶ୍ରୀ ରାମକୃଷ୍ଣ ନନ୍ଦ, ବି.ଏ., ଡି.ଇଡି.
ପାରିଜାତ ପ୍ରେସ, ତେଲେଙ୍ଗାବଜାର, କଟକ-୧—୧୯୫୯